ଅନ୍ତର୍ଭାରତୀୟ ପୁସ୍ତକମାଳା

# ଜାଗରୀ

ସତୀନାଥ ଭାଦୁଡ଼ୀ
ଅନୁବାଦ
ସୁରେନ୍ଦ୍ର ମହାନ୍ତି



ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN 81-237-2746-1

1999 (ଶକାବ୍ଦ 1921)



Jagari *(Oriya)*

**ଟ. 55.00**

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ୍,
ନୂଆଦିଲ୍ଲୀ-110 016 ଙ୍କଦ୍ୱାରା ପ୍ରକାଶିତ ।

# ବଙ୍ଗଳା ଉପନ୍ୟାସର କାଳାନ୍ତର ଓ 'ଜାଗରୀ'

"ଆଲାଲେର୍ ଘରେର୍ ଦୁଲାଲ୍" (୧୮୫୮) ଠାରୁ ବଙ୍ଗଳା ଉପନ୍ୟାସର ବର୍ଷ ଗଣନାର ଆରମ୍ଭ। ଯଦ୍ୟପି ଏହି ଉପନ୍ୟାସର ଲେଖକ ପ୍ୟାରୀଚାନ୍ଦ୍ ପ୍ରୟୋଜନୀୟ ବସ୍ତୁଜ୍ଞାନର ପରିଚୟ ଏଥିରେ ଦେଇଛନ୍ତି ; ତଥାପି ଏହା ନିଃସନ୍ଦେହ ଯେ, ଆମ୍ଭମାନଙ୍କ ଉପନ୍ୟାସର ପ୍ରଥମ ପ୍ରଧାନ ପୁରୁଷ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ। ଏହା ମଧ୍ୟ ଅନସ୍ୱୀକାର୍ଯ୍ୟ ; "ଆଲାଲେର ଘରେର ଦୁଲାଲ୍" ଉପନ୍ୟାସରେ ଉପନ୍ୟାସର ସର୍ତ୍ତ ପରିପୂରିତ ହୋଇଛି, ମାତ୍ର ଉପନ୍ୟାସର ପ୍ରାଣସ୍ପନ୍ଦନ ଅନୁଭୂତ ହୋଇନାହିଁ। ବଙ୍କିମଚନ୍ଦ୍ର ହିଁ ବଙ୍ଗଳା ଉପନ୍ୟାସକୁ ପ୍ରତିଷ୍ଠିତ କଲେ, ଏକ ଶକ୍ତିଶାଳୀ ଶିଳ୍ପ ମାଧ୍ୟମ ରୂପେ। ସନ୍ଦେହ ରହିଲା ନାହିଁ, ତାଙ୍କର ସୃଷ୍ଟ ଚରିତ୍ର ପାତ୍ର ମାନଙ୍କର ସଜୀବ, ଏକାନ୍ତ ଜୀବନାକାଂକ୍ଷାରେ, ସନ୍ଦେହ ରହିଲା ନାହିଁ ସେହି ଚରିତ୍ର ମାନଙ୍କର ଅଦୃଷ୍ଟ ବା ନିୟତି ସମ୍ବନ୍ଧରେ ଲେଖକଙ୍କର ଉନବିଂଶ ଶତାବ୍ଦୀୟ ଧାରଣାରେ, ସନ୍ଦେହ ରହିଲା ନାହିଁ, ତାଙ୍କର ସାମାଜିକ-ପାରିବାରିକ ଉପନ୍ୟାସର ଚରିତ୍ର ଗୁଡ଼ିକ ସହିତ, ସେ ଯୁଗର ଭଦ୍ର-ଗୋଷ୍ଠୀର ବିଶିଷ୍ଟ ଚେତନା-ଲବ୍ଧ ନବକାଲୋଚିତ ଯନ୍ତ୍ରଣାର ସାଦୃଶ୍ୟରେ। ତଥାପି ଆଜି ଶତାବ୍ଦୀର ବ୍ୟବଧାନ ପରେ, ଏକଥା ବି ଭୁଲି ହୁଏନା ଯେ, ତାଙ୍କର ସାମାଜିକ ଭଦ୍ରଲୋକମାନେ ଥିଲେ କେତେକ ପରିମାଣରେ ସ୍ଥାଣୁ ; ନୀତି ଓ ପ୍ରଥା ମଧ୍ୟରେ ସେମାନେ ବୃଥାରେ ଆନ୍ଦୋଳିତ ହୋଇଛନ୍ତି। କିନ୍ତୁ ତା ସତ୍ତ୍ୱେ ବି, ତାଙ୍କର ସୃଷ୍ଟ ନାରୀଚରିତ୍ର ଗୁଡ଼ିକୁ ଅଗ୍ରାହ୍ୟ କରିବା ସମ୍ଭବ ନୁହେଁ। ବ୍ୟକ୍ତିତ୍ୱର ମହିମା ଛନ୍ଦ ଓ ସଜୀବତାରେ, ଜୀବନର ସମସ୍ତ ବାସ୍ତବତାରେ ଅବିସ୍ମରଣୀୟା ଶୈବାଳିନୀ (ଚନ୍ଦ୍ରଶେଖର, 1875), ଅତୁଳନୀୟା ରୋହିଣୀ (କୃଷ୍ଣକାନ୍ତର ଉଇଲ୍ 1878) ବିସ୍ମୟକର ମୃଣ୍ମୟୀ (କପାଳକୁଣ୍ଡଳା ୧୮୬୬) ; ଏ ସମ୍ପର୍କରେ ଉଲ୍ଲେଖ କରାଯାଇପାରେ। ତାଙ୍କର ଭଦ୍ର-ପୁରୁଷମାନେ ଯେଉଁଠି ବୃଥାରେ ଘୂରି ବୁଲିଛନ୍ତି, ଏକ କୃତ୍ରିମ ସଂଶ୍ଳେଷଣ ବା false synthesis ର ସନ୍ଧାନରେ, ସେଠାରେ ତାଙ୍କର ନାରୀଚରିତ୍ର ଗୁଡ଼ିକ, ଏପରିକି 'ଦେବୀ ଚୌଧୁରାଣୀ' (୧୮୮୪) ପରି ପରିସିମୀତ କଳ୍ପନାର କ୍ଷେତ୍ରରେ ସୁଦ୍ଧା ନିର୍ଭୁଲ ଜୀବନାବେଗ ସ୍ପନ୍ଦିତ ରହିଛି। ଘର ବାହାରର ଏଇ ବ୍ୟବଧାନ, ଏଇ ବିବର୍ଣ୍ଣ ପୁରୁଷ ଓ ଗତିଚଞ୍ଚଳ ନାରୀ ମଧ୍ୟରେ ଯେଉଁ ଦୂରତ୍ୱ, ତା ବି ହୁଏତ ଇଂରେଜ ମାନଙ୍କର ପ୍ରୟୋଜନବୋଧରେ ଗଢ଼ା ଉପନିବେଶର ମଧ୍ୟବିତ୍ତୀୟ ଅସ୍ତିତ୍ୱର ଅନ୍ୟ ଏକ ବିଡ଼ମ୍ବନା, ଆଉ ଏକ ଗଢ଼ଣା।

ରବୀନ୍ଦ୍ରନାଥ ଅନ୍ତତଃ 'ଚୋଖେର ବାଲି' (୧୨୦୦)ଠାରୁ ଧରିପାରିଥିଲେ, ଆମ୍ଭ-ମାନଙ୍କର ମଧ୍ୟବିତ୍ତ ଜୀବନର ଖଣ୍ଡତା-ପୀଡ଼ିତ ନାନା ବିକୃତି। ତାଙ୍କର ପୁରୁଷଚରିତ୍ର ଗୁଡ଼ିକ

ନାୟକ ଭୂମିକାରେ ଏହି ଔପନିବେଶିକ ଖଣ୍ଡତା ଓ ବିଚ୍ଛିନ୍ନତା ସହିତ ଲଢ଼ାଇ କରିଛନ୍ତି। ଏହି ଜାତୀୟ ନାୟକ ପରିକଳ୍ପନା ଫଳରେ ତାଙ୍କ ଉପନ୍ୟାସରେ ଆମ୍ଭେମାନେ ପାଉ, ଆପାତ-ଅନାଟକୀୟ, କିନ୍ତୁ ଗୂଢ଼ 'ଟେନ୍‌ସନ୍'ରେ ସ୍ପନ୍ଦିତ ବ୍ୟକ୍ତିଜୀବନର ଅନ୍ତଃସ୍ୱର। ଏହି ଜାତୀୟ ନାୟକମାନଙ୍କ ମଧ୍ୟରେ ନିଶ୍ଚୟ ଚିରସ୍ମରଣୀୟ ହୋଇ ରହିବେ, ଗୋରା, ଶଚୀଶ୍, ଅତୀନ୍ଦ୍ର। ତାଙ୍କର ନାରୀ-ଚରିତ୍ର କଳ୍ପନାର ବୈଶିଷ୍ଟ୍ୟ ମଧ୍ୟ ସ୍ମରଣ ରଖିବାପାଇଁ ପଡ଼ିବ। ବିନୋଦିନୀ, ସୁଚରିତା, ଦାମିନୀ, କୁମୁ, ଏମାନେ କେହି ଅବକାଶ-ବହୁଳ, ଆରାମି-ପୁଷ୍ଟ ଜୀବନରୁ ଉଠି ଆସି ନାହାନ୍ତି। ସମସ୍ତଙ୍କର ଜୀବନ ଗଢ଼ି ଉଠିଛି ଦୁଃଖ, ଦାରିଦ୍ର୍ୟର ଅଭିଜ୍ଞତା ଅତିକ୍ରମ କରି। ସେମାନେ ଏ ଦେଶର ସୀମିତ ଜୀବନ ମଧ୍ୟରେ ସ୍ୱାତନ୍ତ୍ର୍ୟଚର୍ଚ୍ଚା କରିଛନ୍ତି, ଏହିପରି ଭାବରେ। ଏପରିକି ତାଙ୍କର ଶେଷ ବୟସର, ପରମ ରୋମାଣ୍ଟିକ୍ ଉପନ୍ୟାସ 'ଶେଷର କବିତା'ର (1929) ନାୟିକା, ଲାବଣ୍ୟ ବି ସ୍ୱାବଲମ୍ବିନୀ ଗଭର୍ଣ୍ଣେସ୍। 'ଚୋଖେର ବାଲି' ଉପନ୍ୟାସରେ ହିଁ ପ୍ରକୃତପକ୍ଷେ, ବଙ୍ଗଳା ଉପନ୍ୟାସ ସାହିତ୍ୟର ବିଂଶ ଶତକୀୟ ପର୍ଯ୍ୟାୟ ଆରମ୍ଭ ହେଲା। ଚରିତ୍ର ଏବଂ ଘଟଣା ସଂସ୍ଥାନରେ ବଙ୍କିମଚନ୍ଦ୍ରୀୟ ବିନ୍ୟାସ, ଏହାପରେ ଅଚଳ ହୋଇ ପଡ଼ିଲା। ଆରମ୍ଭ ହେଲା, ପାତ୍ରପାତ୍ରୀମାନଙ୍କର ମନୋଜଗତର ଘାତ-ପ୍ରତିଘାତର ଟେନସନ୍-ଭରା ଉପନ୍ୟାସର ଯୁଗ। ଚରିତ୍ର ପରିବର୍ତ୍ତେ ପ୍ରାଧାନ୍ୟ ପାଇବାକୁ ଲାଗିଲା, ପାତ୍ରପାତ୍ରୀମାନଙ୍କର ବ୍ୟକ୍ତିତ୍ୱ ଓ ବ୍ୟକ୍ତି ସ୍ୱାତନ୍ତ୍ର୍ୟ। ରବୀନ୍ଦ୍ରନାଥ ଏ ସବୁର ପ୍ରବର୍ତ୍ତକ। 'ଗୋରା' (1910) ଓ ଚତୁରଙ୍ଗ (1915)। ଏହି ଦୁଇ ଉପନ୍ୟାସରେ ନାୟକନାୟିକା ମାନଙ୍କର ଅସ୍ତିତ୍ୱର ଯନ୍ତ୍ରଣା ସବୁଠାରୁ ବେଶୀ ଶୈଳ୍ପିକ ସାର୍ଥକତା ଲାଭ କରି ପାରିଛି। 'ଗୋରା' ଓ 'ଚତୁରଙ୍ଗ' ଅନେକ ବର୍ଷ ତଳର ରଚନା, କିନ୍ତୁ ଆଜି ସୁଦ୍ଧା ପ୍ରଥମଟି ରହିଯାଇଛି ମହାକାବ୍ୟୋଚିତ ଲକ୍ଷଣରେ ଅତୁଳନୀୟ, ଦ୍ୱିତୀୟଟି ତୀକ୍ଷ୍ଣ ସୌନ୍ଦର୍ଯ୍ୟ ଓ ଟେକ୍‌ନିକ୍‌ର ଦୀପ୍ତିରେ ଅପ୍ରତିଦ୍ୱନ୍ଦ୍ୱୀ।

ବଙ୍କିମଚନ୍ଦ୍ରଙ୍କର ନାୟକ, ନାୟିକାମାନେ ଘଟଣାର ଉଞ୍ଚା ଉଞ୍ଚା ପାହାଡ଼ ମାନଙ୍କରେ ଚଢ଼ାଉତରା କରିଛନ୍ତି। ରବୀନ୍ଦ୍ରନାଥଙ୍କ ଉପନ୍ୟାସରେ ସେପରି ଘଟଣା ନାହିଁ, କିନ୍ତୁ ତାଙ୍କ ଉପନ୍ୟାସର ନରନାରୀମାନଙ୍କର ବ୍ୟକ୍ତିତ୍ୱସ୍ପର୍ଶରେ ସାଧାରଣ ଘଟଣା ସୁଦ୍ଧା ହୋଇ ପଡ଼ିଛି ଅତି ଅସାଧାରଣ। ଘଟଣାଜନିତ ଟେନ୍‌ସନ୍‌କୁ ରବୀନ୍ଦ୍ରନାଥ ଖୋଜିଛନ୍ତି, ବ୍ୟକ୍ତିର ନିଜସ୍ୱ ଜୀବନଛନ୍ଦର ଉତ୍ସ ମଧ୍ୟରେ। ଗୋରାର ଜନ୍ମରହସ୍ୟ ପାଠକ ଠାରୁ ଲୁଚାଇ ରଖିବାପରି, ନାଟକୀୟତାରେ ରବୀନ୍ଦ୍ରନାଥଙ୍କର ସମ୍ମତି ନାହିଁ। ବଙ୍କିମଚନ୍ଦ୍ର ଏହି ଶିଳ୍ପମାଧ୍ୟମର ପ୍ରତିଷ୍ଠାତା ହେଲେ ହେଁ ରବୀନ୍ଦ୍ରନାଥ ଏହି ମାଧ୍ୟମଟିକୁ ପ୍ରଥମେ ବ୍ୟବହାର କଲେ, ବଙ୍ଗାଳୀ ମଧ୍ୟବିତ୍ତର ଆତ୍ମ-ଆବିଷ୍କାରର ପ୍ରେରଣାରେ। ବଙ୍କିମଚନ୍ଦ୍ର ଆଙ୍କିଛନ୍ତି ରକ୍ତ-ମାଂସ ସ୍ନାୟୁରେ ଗଢ଼ା ବ୍ୟକ୍ତିର ଆକାଂକ୍ଷା ଓ ବ୍ୟର୍ଥତାର ସ୍ୱରୂପ। ରବୀନ୍ଦ୍ରନାଥ ବାରମ୍ବାର ବୁଝିବାକୁ ଚେଷ୍ଟା କରିଛନ୍ତି, ବ୍ୟକ୍ତିର ସର୍ବାଙ୍ଗୀନ ଚରିତାର୍ଥତାର ପଥରେ ବାଧା, ପ୍ରତିବନ୍ଧକ କେଉଁଠି? ସେଥିପାଇଁ ତାଙ୍କର କୌଣସି ଦୁଇଟି ଉପନ୍ୟାସ, ବକ୍ତବ୍ୟ ଓ ବାଙ୍ଗରୀତିରେ ଗୋଟିଏ ଅନ୍ୟର ଅନୁସାରୀ ହୋଇ ପାରିଲା ନାହିଁ। ବଙ୍କିମଚନ୍ଦ୍ରଙ୍କର ଉପନ୍ୟାସ, କ୍ଲାସିକ୍ ସ୍ଥାପନାର ନିଦର୍ଶନ, ତାଙ୍କର ଯେ କୌଣସି ପ୍ରଧାନ ପରିଚ୍ଛେଦର ନାଟକୀୟ ବିନ୍ୟାସ ସ୍ମରଣୀୟ। ରବୀନ୍ଦ୍ରନାଥଙ୍କ ଉପନ୍ୟାସରେ

ବୌଦ୍ଧିକ (intellectual) ଅନ୍ୱେଷ ହିଁ ଗୁରୁତ୍ୱ ପାଇଛି— ସେଥିପାଇଁ 'ଚାର ଅଧ୍ୟାୟ'ର (1934) ଶେଷଦୃଶ୍ୟ ଛଡ଼ା, ନାଟକୀୟତା ତାଙ୍କଠାରେ ବର୍ଜନୀୟ ରହିଛି।

1913 ସାଲରେ ଶରତଚନ୍ଦ୍ରଙ୍କର 'ବଡ଼ଦିଦି' ଗ୍ରନ୍ଥାକାରରେ ପ୍ରକାଶିତ ହୁଏ। ଇତିପୂର୍ବରୁ ଅବଶ୍ୟ 'ଭାରତୀ' ପତ୍ରିକାରେ ଏହା ଏକ ବଡ଼ ଗଳ୍ପ ଆକାରରେ ପ୍ରକାଶ ପାଇ ସାରିଥିଲା। 1915 ସାଲରେ ପ୍ରକାଶିତ ହୁଏ ରବୀନ୍ଦ୍ରନାଥଙ୍କ 'ଚତୁରଙ୍ଗ'। କହିବା ବାହୁଲ୍ୟ ଯେ, 'ଚତୁରଙ୍ଗ', 'ବଡ଼ଦିଦି' ପରି ଜନପ୍ରିୟତା ଲାଭକରି ପାରିନଥିଲା। ଏଠାରେ ବିଶେଷ ଭାବରେ ଏଇ କଥାଟି ଉଲ୍ଲେଖ କରିବା ପ୍ରୟୋଜନ ଯେ, ଶରତଚନ୍ଦ୍ର ନିଟୋଳ, ସମାପ୍ତି-ସୁନ୍ଦର କାହାଣୀ ଗୁଡ଼ିକ ଲେଖିବା ଆରମ୍ଭ କହିବା ବେଳକୁ ରବୀନ୍ଦ୍ରନାଥ ବଙ୍ଗଳା ଉପନ୍ୟାସକୁ ପୂର୍ଣ୍ଣବୃତ୍ତ କାହାଣୀକଥନର ବାହାରେ ପହଞ୍ଚାଇ ଦେଇ ସାରିଥିଲେ। 'ଚତୁରଙ୍ଗ'ଠାରୁ ହିଁ ସେ ଉପନ୍ୟାସର ଆଙ୍ଗିକ ବା ଫର୍ମ (form)ର ନବ-ବିନ୍ୟାସ ଆରମ୍ଭ କରିଦେଲେ। ଆଙ୍ଗିକର ସେହି ନବ-ବିନ୍ୟାସରେ ଏହା ହିଁ ପ୍ରକାଶିତ ହେଲା ଯେ, ବଡ଼ ବଡ଼ ଲେଖକମାନେ ଟେକ୍‌ନିକ୍ ବା ଶୈଳୀର ନବ ନବ-ବିନ୍ୟାସରେ ମାତନ୍ତି, ଖେଳିବାର ନିଶାରେ ନୁହେଁ— ଜୀବନର ଜଟିଳତାର ଗହନ ଗଭୀରତାରେ ପ୍ରବେଶ କରିବାପାଇଁ। ଏ କ୍ଷେତ୍ରରେ ସ୍ମରଣ ରଖିବା କଥା, 'ଚତୁରଙ୍ଗ' ଉପନ୍ୟାସରେ ଆଙ୍ଗିକର ନୂତନ ରୀତି, ରବୀନ୍ଦ୍ରନାଥ ପ୍ରବର୍ତ୍ତନ କଲା ବେଳକୁ ୟୁରୋପ ବିଶେଷତଃ ଇଂଲଣ୍ଡରେ ଉପନ୍ୟାସର ଆଙ୍ଗିକ ଘେନି ପରୀକ୍ଷା ନିରୀକ୍ଷା ଆରମ୍ଭ ହୋଇଯାଇଛି।

ଶରତଚନ୍ଦ୍ର ଏସବୁ ଜଟିଳତା ଭିତରେ ମୁଣ୍ଡ ପୂରାଇ ନାହାନ୍ତି। ତାଙ୍କର ବକ୍ତବ୍ୟର ପରିମାଣ ସ୍ୱଳ୍ପ। ବଙ୍କିମଚନ୍ଦ୍ର ଆଙ୍କିଥିଲେ, ନାରୀ ଓ ପୁରୁଷର ଦେହାଧିଷ୍ଠିତ ଭବିତବ୍ୟର ଆଲେଖ୍ୟ। ରବୀନ୍ଦ୍ରନାଥଙ୍କ ବକ୍ତବ୍ୟ ବ୍ୟକ୍ତିତ୍ୱର ଯନ୍ତ୍ରଣାମୟ ଆତ୍ମବିକାଶ। ଶରତଚନ୍ଦ୍ର କହିବା ପାଇଁ ଆସିଲେ, ପୁରୁଷର ବିଶେଷତଃ ନାରୀର ସ୍ନେହ ଓ ପ୍ରେମରେ ସ୍ୱାଧିକାରର କଥା। ବଙ୍ଗଳାର ପାଠକ ସାଧାରଣ ବା reading public, ରବୀନ୍ଦ୍ରନାଥଙ୍କ ଉଚ୍ଚକୋଟୀର ପରିଶୀଳିତ ନାୟକ, ନାୟିକାମାନଙ୍କୁ ଯେତେବେଳେ ଠିକ୍ ଧରିପାରୁ ନାହାନ୍ତି, 'ଭାରତୀ' ଯୁଗର ଲେଖକ ବୃନ୍ଦଙ୍କର କୃତ୍ରିମ ନାଗରିକତା ଓ ସୌଖୀନ ରୋମାଣ୍ଟିସିଜମ୍ ଭିତରେ ଯେତେବେଳେ ସାଧାରଣ ମଧ୍ୟବିତ୍ତ ଜୀବନର ପ୍ରାତ୍ୟହିକ ବାସ୍ତବତା ଫୁଟି ଉଠି ପାରୁନାହିଁ— ଏପରିକି ଅବ୍ୟବହିତ ପରବର୍ତ୍ତୀ କାଳର ବହୁ ଢକ୍କା-ନିନାଦିତ 'କଲ୍ଲୋଳ'ର ବିଦ୍ରୋହ, ଯେତେବେଳେ ମନେ ହେଉଛି ବିଦେଶୀ ଶାସନର ଅନୁକୃତି— ସେତେବେଳେ ଏକମାତ୍ର ଶରତଚନ୍ଦ୍ର ହିଁ ଆମ୍ଭମାନଙ୍କର ଧୂଳିଧୂସର ଜୀବନ ଉପରେ କଲେ ଅପୂର୍ବ ରୋମାଣ୍ଟିକ୍ ଆଲୋକସମ୍ପାତ। ରକ୍ଷଣଶୀଳ ବଙ୍ଗାଳୀ ମଧ୍ୟବିତ୍ତ ଶରତଚନ୍ଦ୍ରଙ୍କ ରଚନା ମଧ୍ୟରେ ଆବିଷ୍କାର କଲା — ସେମାନେ ଯେଉଁ ଜୀବନ ଯାପନ କରିଛନ୍ତି, ତାହାର କାବ୍ୟକରୁଣ ଗୌରବର ଦିଗ। 'ଗୃହଦାହ' (1920) ଛଡ଼ା, ଶରତଚନ୍ଦ୍ରଙ୍କର ଅନ୍ୟ ସବୁ ଉପନ୍ୟାସ ସମ୍ପର୍କରେ ଏକଥା ପ୍ରଯୋଜ୍ୟ। ଯେଉଁ ସମାଜ, ଯେଉଁ ଆର୍ଥନୀତିକ ପ୍ୟାଟର୍ନ ଭାଙ୍ଗି ପଡ଼ୁଛି ତାହାର ମୂଳ ସମ୍ପର୍କରେ ଶରତଚନ୍ଦ୍ରଙ୍କର କୌଣସି ଜିଜ୍ଞାସା ନଥିଲା। ସେଇ ଭଗ୍ନପ୍ରାପ୍ତ ସମାଜ ମଝିରେ ଠିଆ ହୋଇ, ଶରତଚନ୍ଦ୍ର ଡିକେନ୍‌ସଙ୍କ ପରି କେବଳ ବ୍ୟକ୍ତିଗତ ସହାନୁଭୂତି ଓ ସୁବିଚାରର ପ୍ରାର୍ଥୀ ହୋଇଛନ୍ତି। ଡିକେନ୍‌ସଙ୍କ ପରି ସେ ମଧ୍ୟ Great entertainer— କିନ୍ତୁ ତାଙ୍କ ହୃଦୟର

ମହତ୍ତ୍ୱ ସମ୍ପର୍କରେ ସନ୍ଦେହ ନାହିଁ। କିନ୍ତୁ ହୃଦୟବାନ୍ ହେଲେ କେବଳ ଯେ ବଡ଼ ଔପନ୍ୟାସିକ ହେବା ସମ୍ଭବ କି ନୁହେ ସେ ସମ୍ପର୍କରେ ସନ୍ଦେହ ସ୍ୱାଭାବିକ।

## II

ଚଳିତ ଶତାବ୍ଦୀର ଚତୁର୍ଥ ଦଶକରେ, ବଙ୍ଗଳା ଉପନ୍ୟାସ ପହଞ୍ଚିଲା ତାର ତୃତୀୟ ଯୁଗରେ। ତିରିଶର ଔପନ୍ୟାସିକ ବୋଲି, ଯେଉଁମାନଙ୍କୁ ଆମ୍ଭେମାନେ ଅଭିହିତ କରୁ ସେଇମାନେ ଏ ଯୁଗରେ ପ୍ରମାଣ କରିଦେଲେ ଯେ, ବଙ୍ଗଳା ଉପନ୍ୟାସ ଆଉ ବଙ୍କିମଚନ୍ଦ୍ର- ରବୀନ୍ଦ୍ରନାଥ- ଶରତଚନ୍ଦ୍ରଙ୍କ ପରି ଏକକ ପ୍ରତିଭାର ଲୀଳାଭୂମି ହୋଇ ରହିନାହିଁ। ସଂଖ୍ୟାରେ ଏକାଧିକ ଔପନ୍ୟାସିକ, ନାନା ଦିଗରୁ ବଙ୍ଗଳା ଉପନ୍ୟାସକୁ ସମୃଦ୍ଧ କରିବାରେ ଲାଗିଲେ। ଜନ୍ମ ନେଲା ଆଞ୍ଚଳିକ ଉପନ୍ୟାସ। ଫ୍ରୟେଡ଼ୀୟ ମନୋବିକଳନ ଓ ମାର୍କସୀୟ ସମାଜଦୀକ୍ଷା, ଏକ ସମୟରେ ବଙ୍ଗଳା ଉପନ୍ୟାସରେ ସହାବସ୍ଥିତ ରହିଛି। ତୀବ୍ରତା ପାଇଛି ସ୍ୱଦେଶ ଜିଜ୍ଞାସା। ଏସବୁ ହୁଏତ ଉନ୍ମେଷିତ ହୋଇଛି 'କଲ୍ଲୋଳ' (1923)ର ଉଚ୍ଛାଶୀ ଦିନଗୁଡ଼ିକର ଅସଂବୃତ ପକ୍ଷ ବିଧୂନନ ଫଳରେ, କିନ୍ତୁ ଏଥିରେ ସନ୍ଦେହ ଜନ୍ମିଲା, ସେଇମାନଙ୍କ ଯୋଗୁ ଯେଉଁମାନେ ନାମକୁ ମାତ୍ର 'କଲ୍ଲୋଳୀ' ଅଥବା ଆରମ୍ଭରୁ 'କଲ୍ଲୋଳୀ' ନୁହନ୍ତି। ଯଦ୍ୟପି ଆଞ୍ଚଳିକ ଉପନ୍ୟାସର ସୂତ୍ରପାତ ହେଲା ଶୈଳଜାନନ୍ଦଙ୍କ ହାତରେ, ତଥାପି ତାହାର ଯଥାର୍ଥ ପରିଣତ ରୂପଟି ରଚନା କଲେ ତାରାଶଙ୍କର ବନ୍ଦୋପାଧ୍ୟାୟ। ପ୍ରେମେନ୍ଦ୍ର ମିତ୍ରଙ୍କ ହାତରେ, ଅବହେଳିତ ମଣିଷର ଚିତ୍ରଟି ଫୁଟି ଉଠିବା ପାଇଁ ଚାହିଁଛି, 'ଯୁବନାଶ୍ୱ'ଙ୍କର ଲେଖା ''ପଟଳଗଙ୍ଗାର ପାଁଚାଳୀ''ରେ ଏହା ମଧ୍ୟ ସୁସ୍ପଷ୍ଟ, ତଥାପି ମାଣିକ ବନ୍ଦୋପାଧ୍ୟାୟଙ୍କର ରଚନାରେ ହିଁ ଆମ୍ଭେମାନେ ପାଉ ଏହାର ଯଥାର୍ଥ ଔପନ୍ୟାସିକ ରୂପାୟନ। ବିଭୂତିଭୂଷଣ ବନ୍ଦୋପାଧ୍ୟାୟ ସମ୍ପୂର୍ଣ୍ଣ ନୂତନ ଦିଗନ୍ତ ଖୋଲିଦେଲେ, 'ପଥେର ପାଁଚାଳୀ' (1929) ଏବଂ 'ଆରଣ୍ୟକ' (1938) ଉପନ୍ୟାସରେ। ତିରିଶର ଔପନ୍ୟାସିକ ମାନଙ୍କର କେତୋଟି ଉପନ୍ୟାସ ଶୈଳ୍ପିକପୂର୍ଣ୍ଣାଙ୍ଗତାରେ, ବଙ୍ଗଳା କଥା ସାହିତ୍ୟରେ ଧ୍ରୁପଦୀ ଉପନ୍ୟାସର ମର୍ଯ୍ୟାଦା ପାଇବାର ଅଧିକାରୀ। ତାରାଶଙ୍କରଙ୍କର 'ଗଣଦେବତା' (1942), 'କବି' (1942) ମାଣିକ ବନ୍ଦୋପାଧ୍ୟାୟଙ୍କର 'ପୁତୁଲ କାଚେର ଇତିକଥା' (1936), 'ପଦ୍ମାବତୀର ମାଝୀ' (1936) ଓ ବିଭୂତିଭୂଷଣ ମୁଖୋପାଧ୍ୟାୟଙ୍କର ପୂର୍ବୋକ୍ତ ଉପନ୍ୟାସ ଦୁଇଗୋଟି ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଉପନ୍ୟାସମାନଙ୍କ ମଧ୍ୟରେ କେତେଗୋଟି ମାତ୍ର। ଅଥଚ ଏଇ ଉପନ୍ୟାସ ଗୁଡ଼ିକରେ କେତେ ବୈପରୀତ୍ୟ, ବିଷୟ ଓ ଭଙ୍ଗୀରେ କେତେ ତଫାତ୍! ଜୀବନ ବିଚିତ୍ର ଅନ୍ତହୀନ ଆମ୍ଭମାନଙ୍କର ସ୍ୱଦେଶ ଜୀବନର ରୂପ, ମଣିଷର କେତେ ପରିଚୟ ବିସ୍ତୃତ ହୋଇ ପଡ଼ିଛି, ଏଇ ଦେଶର ପ୍ରାନ୍ତେ ପ୍ରାନ୍ତେ — ତିରିଶର ଔପନ୍ୟାସିକମାନେ, ଶ୍ରମ, ଜିଜ୍ଞାସା ଓ ଅଭିନିବେଶରେ ସେ ସବୁକୁ ପ୍ରସ୍ଫୁଟିତ କରିଦେଲେ। ଅଥଚ ଏ ଜାତୀୟ ଉପନ୍ୟାସର ଯେଉଁଟା ପ୍ରକୃତ ବୈଶିଷ୍ଟ୍ୟ — ଚରିତ୍ରର ବ୍ୟକ୍ତିରୂପ ଓ ଟାଇପ୍ ରୂପର ବିଚିତ୍ର ସମନ୍ୱୟ — ଏହିସବୁ ଉପନ୍ୟାସର ଲେଖକମାନେ ସେଇ ସମନ୍ୱୟ ସାଧନରେ ମଧ୍ୟ ପରମ ପାରଦର୍ଶିତା ଦେଖାଇଛନ୍ତି।

'ବନଫୁଲ'' ଯାହାଙ୍କର ପ୍ରକୃତ ନାମ ବଲାଇଚାନ୍ଦ ମୁଖୋପାଧ୍ୟାୟ, ଏହି ଅଧ୍ୟାୟର ଆଉ ଜଣେ ଔପନ୍ୟାସିକ, ଯିଏ ବିଶିଷ୍ଟତା ଅର୍ଜନ କରିଛନ୍ତି, ତାଙ୍କର ବକ୍ତବ୍ୟ ପାଇଁ ଯେତେଟା ନୁହେଁ

ସେତେଟା ତାଙ୍କର ବିଷୟ-ବୈଚିତ୍ର୍ୟ ଓ ଶୈଳୀ ସଚେତନତା ପାଇଁ। କିନ୍ତୁ ସାର୍ବିକ ଦୃଷ୍ଟିରୁ ମନେହୁଏ, ତିରିଶର ଔପନ୍ୟାସିକମାନଙ୍କ ମଧ୍ୟରେ ଏକମାତ୍ର ତାରାଶଙ୍କର ବନ୍ଦୋପାଧ୍ୟାୟଙ୍କର ରଚନାରେ ହିଁ ମହତ୍ ଔପନ୍ୟାସିକର ଉପାଦାନ ଉପଲବ୍ଧ ହୋଇଥାଏ। ମାଣିକ ବନ୍ଦୋପାଧ୍ୟାୟ ପ୍ରଥମ ଜୀବନରେ ଥିଲେ ଅନ୍ଧ ଅଦୃଷ୍ଟର କ୍ରୀଡ଼ନକ, ନିଃସଙ୍ଗ, ଅସହାୟ ମନୁଷ୍ୟର ଆଲେଖ୍ୟକାର। ପରବର୍ତ୍ତୀ ପର୍ଯ୍ୟାୟରେ ମାଣିକ ମାର୍କ୍ସୀୟ ମତବାଦର ଆଲୋକରେ ଜୀବନକୁ ବିଚାର କରିବାପାଇଁ ଚାହିଁଥିଲେ। ଏଥିରେ ପ୍ରମାଣିତ ହେଲା, ସେ ଥିଲେ ଗତିଶୀଳ ଚେତନାର ଅଧିକାରୀ। କିନ୍ତୁ ଏ ରୂପାନ୍ତର ମାଣିକଙ୍କର କେତେଗୋଟି କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଫଳପ୍ରସୂ ହେଲେ ହେଁ ଔପନ୍ୟାସିକ ହିସାବରେ ସେ ଲାଭବାନ ହୋଇ-ଥିଲେ କି ନାହିଁ କହିବା କଠିନ। ବିଭୂତିଭୂଷଣ ପ୍ରକୃତିର ନିତ୍ୟ ଲୀଳାରେ ଏବଂ ଦୀନ, ଦରିଦ୍ର ମନୁଷ୍ୟର ଜୀବନର ନାନା ମୁହୂର୍ତ୍ତରେ ଅନନ୍ତର ପ୍ରକାଶକୁ ଲକ୍ଷ୍ୟ କରି କେବଳ ପରିତୃପ୍ତ ରହିଥିଲେ। ତାରାଶଙ୍କର କିନ୍ତୁ ଦେଖିଛନ୍ତି ଭାରତବର୍ଷର ମଣିଷର ନୈତିକ ଦୃଷ୍ଟିଭଙ୍ଗୀ, ଏହାର ବିଚିତ୍ର ଜନଗୋଷ୍ଠୀ, ସର୍ବୋପରି ଏହାର ଆଧୁନିକ ଇତିହାସର ଚଳିଷ୍ଣୁ ରୂପକୁ। ଏ ବିଷୟରେ ତାରାଶଙ୍କରଙ୍କର ଦୃଷ୍ଟି ଅବିଚଳ ଥିଲା ବୋଲି ତାଙ୍କର ପ୍ରଥମ ଜୀବନର ମାର୍କସବାଦପ୍ରୀତି ଓ ପରବର୍ତ୍ତୀ ପର୍ଯ୍ୟାୟରେ ଗାନ୍ଧୀବାଦରେ ଦୀକ୍ଷାଗ୍ରହଣ ତାଙ୍କର ଶିଳ୍ପକୀର୍ତ୍ତୀର ପ୍ରଧାନାଂଶର କୌଣସି କ୍ଷତି କରି ପାରି ନାହିଁ। ଭାରତୀୟ ଜୀବନ, ଭାରତୀୟତ୍ୱ, ତାଙ୍କର ଦୃଷ୍ଟିସୀମାରୁ କେତେବେଳେ ହେଲେ ଯାଇନାହିଁ— ଏହାହିଁ ସମଗ୍ର ଭାବରେ ତାଙ୍କର ମହତ୍ତ୍ୱର କାରଣ।

III

ତିରିଶର ଔପନ୍ୟାସିକମାନେ ଯେତେବେଳେ ରୀତିମତ ସୁପ୍ରତିଷ୍ଠିତ, ସେହି ସମୟରେ 1945 ସାଲରେ ସତୀନାଥ ଭାଦୁଡ଼ୀଙ୍କର 'ଜାଗରୀ' ପ୍ରକାଶିତ ହେଲା। ସତୀନାଥଙ୍କର ଜନ୍ମ 1906ରେ, ମୃତ୍ୟୁ 1965ରେ। ବିହାର ରାଜ୍ୟର ଅଞ୍ଚଳବିଶେଷ ଏହାଙ୍କ ଗଳ୍ପ ଉପନ୍ୟାସର ପଟ୍ଟଭୂମି। "ଢୋଡ଼ାଁଇ ଚରିତ ମାନସ" 1ମ ଓ 2ୟ (1949-51) ଏବଂ "ଅଚିନ ରାଗିଣୀ" (1954) ଏହାଙ୍କର ଆଉ ଦୁଇଟି ଅନ୍ୟତମ ଉପନ୍ୟାସ। ହାର୍ଦ୍ଦିକ ଭଙ୍ଗୀ, ଅଭିନବ ବିଷୟବସ୍ତୁ ଓ ପ୍ରଶ୍ନ ପ୍ରୋଜ୍ଜ୍ୱଳ ମାନବବାଦୀ ଦୃଷ୍ଟି ଏହାଙ୍କର ରଚନାର ବୈଶିଷ୍ଟ୍ୟ। "ଜାଗରୀ" ମାଧ୍ୟମରେ ହିଁ, ଏହି ଲେଖକଙ୍କର ଯାତ୍ରା ଆରମ୍ଭ ହୁଏ। ପ୍ରକାଶ ପାଇବା ସଙ୍ଗେ ସଙ୍ଗେ, "ଜାଗରୀ" ପାଠକମାନଙ୍କୁ ସବଳେ ଅଧିକାର କରି ନେଇଥିଲା। ଆବିର୍ଭାବ ଓ ଜୟଲାଭ ମଧ୍ୟରେ ଯେ କ୍ଷଣମାତ୍ର ବିଳମ୍ବ ଘଟିନାହିଁ, ତାହାର କାରଣ ଦୁଇଗୋଟି— ଗୋଟିଏ ହେଲା, ଅଗ୍ନିଗର୍ଭ ବୟାଳିଶ ଆନ୍ଦୋଳନ ସମ୍ପର୍କରେ, ଏହା ହିଁ ଲେଖାହେଲା ପ୍ରଥମ ସାର୍ଥକ ଉପନ୍ୟାସ। ଅନ୍ୟଟି ହେଲା ଏହାର ବିଶିଷ୍ଟ ଆଙ୍ଗିକରୀତି। ମାତ୍ର ତିନି ବର୍ଷ ପୂର୍ବେ ଘଟିଯାଇଥିଲା ବୟାଳିଶର ଗଣ-ଅଭ୍ୟୁତ୍‌ଥାନ। ସେ ପର୍ଯ୍ୟନ୍ତ ଜନମାନସରେ ତାହା ପ୍ରତ୍ୟକ୍ଷ ପରି ଜୀବନ୍ତ। କାରା ପ୍ରାଚୀରର ଅନ୍ଧକାର ଅନ୍ତରାଳରେ ରାତ୍ରିଶେଷରେ ପ୍ରାଣ ଦେଇଛନ୍ତି କେତେ ଦେଶକର୍ମୀ। ସେହି ସମୟର ଚିତ୍ର, ଏହି ଉପନ୍ୟାସରେ ବିଶ୍ୱସ୍ତ ବାସ୍ତବତାରେ ଫୁଟି ଉଠିଛି। ବିଲୁ, ବାବା, ମା ଏବଂ ନୀଲୁ ଗୋଟିଏ ଭୟାବହ ରାତ୍ରିଶେଷ ପାଇଁ ପ୍ରତୀକ୍ଷମାନ। ସେଇ ରାତ୍ରିଶେଷରେ ବିଲୁର ଫାଶୀ ହେବା ନିର୍ଦ୍ଧାରିତ। ଏହି ଚାରିଜଣଙ୍କର ଚାରିଗୋଟି ଅନ୍ତର୍ଗତ

ଏକୋକ୍ତି ବା ସ୍ୱଗତ-ସଂଳାପର ସମାହାର ଏଇ ଉପନ୍ୟାସ। ଟେକ୍‌ନିକ୍ ଦିଗଟି ପରେ ବିଚାରଣୀୟ, ପ୍ରଥମେ ଉପନ୍ୟାସଟିର ବିଷୟପ୍ରସଙ୍ଗ ଆଲୋଚନା କରାଯାଉ।

ସାରା ଭାରତବର୍ଷ 1921 ଠାରୁ 1942 ଭିତରେ, ଅନ୍ତତଃ ଚାରିଥର ଗଣଆନ୍ଦୋଳନର ତରଙ୍ଗୀ ଘାତରେ ଚଞ୍ଚଳ ହୋଇ ଉଠିଛି। ରାଜନୀତି ଏହା ଫଳରେ ଆଉ କେବଳ ସମ୍ବାଦପତ୍ରର ବିଷୟବସ୍ତୁ ହୋଇ ରହି ନାହିଁ। ରାଜନୀତି କ୍ରମେ ମନୁଷ୍ୟର ପ୍ରତ୍ୟକ୍ଷ ଜୀବନଯାତ୍ରାର ଅଂଶ ହୋଇ ପଡ଼ିଲା। ମାଷ୍ଟର ସାହେବଙ୍କ ସଂସାର ପରି କେତେ ରାଷ୍ଟ୍ରୀୟ-ପରିବାର ଗଢ଼ି ଉଠିଲା। ବଙ୍ଗଦେଶର ଇତିହାସରେ ଏହିପରି ଆଉ ଗୋଟିଏ ଆଲୋଡ଼ନ ସୃଷ୍ଟି ହୋଇଥିଲା, 1905ର ସ୍ୱଦେଶୀ ଯୁଗରେ। ସେ ଆନ୍ଦୋଳନ ମଧ ବଙ୍ଗାଳୀର ଜୀବନ, ତାର ପାରିବାରିକ ପରିସର ଓ ବୃହତ୍ତର କର୍ମକ୍ଷେତ୍ରକୁ ସ୍ପର୍ଶ କରିଥିଲା। ସୁତରାଂ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ଠାରୁ ଯାହାକୁ ଆମ୍ଭେମାନେ ଠିକ୍ ରାଜନୈତିକ ଉପନ୍ୟାସ କହିଥାଉ ତାହାର ଆବିର୍ଭାବ ଅନିବାର୍ଯ୍ୟ ହୋଇ ଉଠିଲା। 'ଘରେ ବାହିରେ' (1916) ଉପନ୍ୟାସରେ ରବୀନ୍ଦ୍ରନାଥ ବଙ୍ଗଭଙ୍ଗ ଯୁଗର ରାଜନୈତିକ ଉତ୍ତେଜନାକୁ ରଙ୍ଗ ଦେଇ ଆଙ୍କିଲେ ଏକ ପଟ୍ଟଭୂମି। ତାହା ମଧ୍ୟ ପାତ୍ରପାତ୍ରୀମାନଙ୍କର ଏକୋକ୍ତିର ସମାହାର। ରାଜନୈତିକ ବାତାବରଣ ସତ୍ତ୍ୱେ ବି ଉପନ୍ୟାସରେ ପ୍ରାଧାନ୍ୟ ପାଇଛି ଗୋଟିଏ ପାରିବାରିକ ସଙ୍କଟ। ବଙ୍ଗଳା କଥା ସାହିତ୍ୟର ଦ୍ୱିତୀୟ ବିଖ୍ୟାତ ରାଜନୈତିକ ଉପନ୍ୟାସ ''ପଥେର ଦାବୀ'' (1926)ର ଲେଖକ ଶରତଚନ୍ଦ୍ର। ସନ୍ତ୍ରାସବାଦୀ ମାନଙ୍କର ଅଗ୍ନିମୟ ଉତ୍ତେଜନା ଏହି ଉପନ୍ୟାସର ଅନ୍ତର୍ଗତ କାହାଣୀଗୁଡ଼ିକୁ ଆବୃତ କରି ରଖିଥିଲା ଏକ ରଙ୍ଗୀନ୍ ଆବରଣ ତଳେ। ସେଥିପାଇଁ ଏହି ଉପନ୍ୟାସଟି ସହଜ ଲୋକପ୍ରିୟତା ଲାଭ କରିବାରେ ସମର୍ଥ ହୋଇ ପାରିଥିଲା। ରବୀନ୍ଦ୍ରନାଥ ପୁଣି ଆଉ ଖଣ୍ଡେ ରାଜନୈତିକ ଉପନ୍ୟାସ ଲେଖିଲେ 1934 ସାଲରେ। ଏହାର ନାମ ''ଚାରି ଅଧ୍ୟାୟ।'' ''ଘରେ ବାହିରେ'' ଓ ''ଚାରି ଅଧ୍ୟାୟ'', ଏହି ଦୁଇଟି ରାଜନୈତିକ ଉପନ୍ୟାସରେ ରବୀନ୍ଦ୍ରନାଥ ପାର୍ଟି ବା ଦଳକୁ ଦେଖିଛନ୍ତି, ବ୍ୟକ୍ତି-ସ୍ୱାତନ୍ତ୍ର୍ୟ-ବିରୋଧୀ Pressure groupର ଭୂମିକାରେ। ରବୀନ୍ଦ୍ରନାଥ ଦୁଇଥର ଦେଖାଇଦେଲେ ବ୍ୟକ୍ତିର ସ୍ୱାଧୀନ ବିକାଶ ପଥରେ, ପାର୍ଟିନେତୃତ୍ୱ ବା ହୁକୁମନାମା ଏକ ପ୍ରତିବନ୍ଧକ।

ଆମ୍ଭମାନଙ୍କର ପୁରାତନ ବହମାନ ଜୀବନଧାରାରେ ଇତିମଧ୍ୟରେ ବିପୁଳ ଭାରତବର୍ଷର ଗଣଆନ୍ଦୋଳନ ଯେଉଁ ଅଭିଘାତ ସୃଷ୍ଟି କରିଥିଲା ସୁଯୋଗ୍ୟ ପରିପ୍ରେକ୍ଷିରେ, ତାରାଶଙ୍କର ତାହାକୁ ରୂପାୟିତ କଲେ ତାଙ୍କର ''ଧାତ୍ରୀ ଦେବତା'' (1939) ଉପନ୍ୟାସରେ। ସନ୍ତ୍ରାସବାଦୀ ଆନ୍ଦୋଳନ କ୍ରମେ ସ୍ୱତଃ କିପରି ଧୀରେ ଧୀରେ ରୂପାନ୍ତରିତ ହେଲା, ସନ୍ତ୍ରାସବାଦୀ କର୍ମୀମାନେ ବ୍ୟକ୍ତିଗତ ସନ୍ତ୍ରାସର ପଥ ପରିହାର କରି କିପରି ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଗଣ-ଆନ୍ଦୋଳନରେ ଯୋଗ ଦେଲେ ''ଧାତ୍ରୀଦେବତା'' ତାହାର ଏକ ବୃହତ ଆଲେଖ୍ୟ। କିନ୍ତୁ କେବଳ ସେତିକି ନୁହେଁ ''ଧାତ୍ରୀଦେବତା'' ପ୍ରକୃତପକ୍ଷେ ଏକ ରାଜନୈତିକ ପାରିବାରିକ ଉପନ୍ୟାସ। ଆଲୋଚ୍ୟ ''ଜାଗରୀ'' ଉପନ୍ୟାସରେ ଆମ୍ଭେମାନେ ପାଉ ଏକ ରାଷ୍ଟ୍ରୀୟ ପରିବାରର ପରିଚୟ। ''ଧାତ୍ରୀଦେବତା''ରେ ଆମ୍ଭେମାନେ ପାଇଥିଲୁ ଏକ ରାଷ୍ଟ୍ରୀୟ ପରିବାରର ଜନ୍ମବୃତ୍ତାନ୍ତ। ନାୟକ ଶିବନାଥ ସହିତ ତାର ସ୍ତ୍ରୀ ଗୌରୀ,

ପିଉସିମା, ଏପରିକି ଅର୍ଦ୍ଧସ୍ଫୁଟବାକ୍ ଶିଶୁସନ୍ତାନ ସୁଦ୍ଧା ବନ୍ଦେ ମାତରମ୍ ମନ୍ତ୍ରରେ ଦୀକ୍ଷିତ ହେଲେ– ଏହା ହିଁ ଉପନ୍ୟାସର ଶେଷକଥା। ସେଇ ଉପସଂହାରର ଘଟଣାମୟ, ମାନସିକ-ସଂଘାତ-ସମାକୀର୍ଣ୍ଣ ଇତିହାସ ହିଁ ଧାତ୍ରୀଦେବତା ଉପନ୍ୟାସର ମୂଳ ରସ। ମାମୁଲି ଭୁଲ୍ ବୁଝାମଣା ଫଳରେ ଗୋଟାଏ କ୍ରମକ୍ଷୟମାଣ ପରିବାର କିପରି ଭାବରେ ବିଖଣ୍ଡିତ ହେବାକୁ ଯାଉଥିଲା, କିପରି ଜାତୀୟ ଇତିହାସର ସହସାଜାଗ୍ରତ କାଳପୁରୁଷ ତାହାକୁ ପୁଣି ସୁଗ୍ରଥିତ କରିଦେଲା, କେବଳ ସେତିକି ନୁହେଁ, ତାହାକୁ ମଧ୍ୟ ନବଜନ୍ମ ଦେଲା। ଏକ ବୃହତ୍ତର ଚେତନା କ୍ଷେତ୍ରରେ – ତାରାଶଙ୍କରଙ୍କ ପରି ଆଉ କେହି ଏପରି ଦେଖାଇ ପାରି ନାହାନ୍ତି।

ସତୀନାଥ ଭାଦୁଡ଼ୀଙ୍କ "ଜାଗରୀ" ବଙ୍ଗଳା ରାଜନୈତିକ ଉପନ୍ୟାସ ସାହିତ୍ୟରେ ଗୋଟିଏ ନୂତନ ସ୍ତର ସଂଯୋଜିତ କରିଛି। 1942 ସାଲର ରାଜନୈତିକ ଚେତନା ଓ ଦୃଷ୍ଟିକୋଣର ପାର୍ଥକ୍ୟ ଧୀରେ ଧୀରେ ମୂର୍ତ୍ତ ହୋଇ ଉଠିଛି ଭିନ୍ନ ଭିନ୍ନ ପାର୍ଟି ବା ଦଳରେ। ସି. ଏସ୍. ପି. ବା କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ ପାର୍ଟି କଂଗ୍ରେସ ସୃଷ୍ଟ ସୁବୃହତ ଐକତାନ ବାଦନ ମଧ୍ୟରେ ନିଜ ନିଜର ସ୍ୱତନ୍ତ୍ର ସୁରଟିକୁ ସ୍ୱଷ୍ଟତା ଦେବାକୁ ପ୍ରୟାସ କରିଛନ୍ତି। ଅଗଷ୍ଟ ଆନ୍ଦୋଳନର ଔଚିତ୍ୟ ଘେନି କମ୍ୟୁନିଷ୍ଟ ପାର୍ଟି ଓ କଂଗେସ ମଧ୍ୟରେ ଥିଲା ଗୁରୁତର ମତଭେଦ। ଆନ୍ଦୋଳନର ପଦ୍ଧତି ଘେନି ମତଭେଦ ଥିଲା, କଂଗ୍ରେସ ଓ ସି.ଏସ୍.ପି. ମଧ୍ୟରେ। "ଜାଗରୀ" ଉପନ୍ୟାସରେ ବର୍ଣ୍ଣିତ ମାଷ୍ଟର ସାହେବଙ୍କ ସଂସାରଟି ଯେପରି ଭାରତୀୟ ରାଜନୈତିକ ଜଗତର କ୍ଷୁଦ୍ର ପ୍ରତିରୂପ। ବିଲୁ କଂଗ୍ରେସ ସୋସିଆଲିଷ୍ଟ, ବାବା, ମା ଗାନ୍ଧୀବ୍ରତୀ କଂଗ୍ରେସୀ, ନୀଲୁ କମ୍ୟୁନିଷ୍ଟ। ଅଗଷ୍ଟ ଆନ୍ଦୋଳନର ଅଭିଘାତ ଆସି ପଡ଼ିଛି ଏହି ପରିବାର ଉପରେ– ବୃହତ୍ତର ଅର୍ଥରେ ଭାରତବର୍ଷରେ। "ଜାଗରୀ" ଲେଖକଙ୍କର ପ୍ରଥମ ଉପନ୍ୟାସ– କିନ୍ତୁ ଆଉ ଦୁଇଗୋଟି ଉପନ୍ୟାସରେ ଲେଖକ ରାଜନୈତିକ ଆନ୍ଦୋଳନର ବାତାବରଣ ପ୍ରୟୋଗ କରି ଅଛନ୍ତି– "ଚିତ୍ରଗୁପ୍ତର ଫାଇଲ୍" (1949) ଏବଂ 'ଚୌଁଡ଼ାଇ ଚରିତ ମାନସ' (1949)ର ଦ୍ୱିତୀୟ ପର୍ବରେ ସେ ପୁଣି' 42ର ଅଗ୍ନିଗର୍ଭ ପଟଭୂମି ପ୍ରୟୋଗ କରିଛନ୍ତି। ଅଭିଜ୍ଞତା ଦିଗରୁ ଏ ଘଟଣାରେ ଲେଖକ କିପରି ଗଭୀର ଭାବରେ ଆଲୋଡ଼ିତ ହୋଇଥିଲେ ଏଥିରୁ ସ୍ୱଷ୍ଟ ବୁଝାପଡ଼େ। ଏକ ଯୁଗାନ୍ତକାରୀ ମହାନ୍ ଅଗ୍ନିତାଣ୍ଡବର ଆଲୋକରେ ମଣିଷର ସବୁ ବହିରାବରଣ ଏଡ଼ାଇ ଲେଖକ ଯେପରି ଦେଖିବାକୁ ପ୍ରତ୍ୟେକ ମଣିଷର ଚେହେରା। ରାଜନୈତିକ ଉପନ୍ୟାସର ଆଧାରରେ ସେ ଯେଉଁ ଆଧେୟ ପରିବେଷଣ କଲେ, ତା' ହେଲା ବିଚିତ୍ର ମାନବ ରସ। ଏଠାରେ 'ଜାଗରୀ'ର ଆଉ ଏକ ବୈଶିଷ୍ଟ୍ୟ ଯେ ରାଜନୀତି ଏଠାରେ ପ୍ରଚାରର ରାଜନୀତି ନୁହେଁ। ଆଙ୍ଗିକର ଆଲୋଚନାରେ ତାହା ସ୍ୱଷ୍ଟ ହୋଇଛି, କିନ୍ତୁ ଅନ୍ତର୍ଗତ ସ୍ୱଗତୋକ୍ତି ବା ଏକୋକ୍ତି କାରଣରୁ ସ୍ମୃତିଚାରଣର ସ୍ୱାଧୀନତାରେ ସମୟର କ୍ରମରକ୍ଷା ଏଠାର ପ୍ରୟୋଜନ ନଥିଲା। ଗୋପାଳ ହାଲଦାରଙ୍କ "ଏକଦା" (1939) ଉପନ୍ୟାସରେ ଆମ୍ଭେମାନେ ଗୋଟିଏ ଦିନର କଥା ପଢ଼ିଚୁ। ସେଠାରେ ନାୟକର ଚେତନାସ୍ରୋତ ବହୁ ଅନୁଷଙ୍ଗର (association) ଭିତର ଦେଇ ବାରଘଣ୍ଟାର ସମୟସୀମାକୁ

ଅତିକ୍ରମ କରି ଯାଇଛି। କିନ୍ତୁ 'ଜାଗରୀ'ର ଆଙ୍ଗିକ ରୀତି ଆଉରି ଅନିର୍ବାର୍ଯ୍ୟ ହୋଇ ଉଠିଛି, ଅନ୍ୟ କାରଣରୁ। ଏଥିରେ ବର୍ଣ୍ଣିତ ସମଗ୍ର ରାତ୍ରିଟି ଯେପରି ଗୋଟିଏ ନାଟକର ଶେଷଦୃଶ୍ୟ। ଆସନ୍ନ ଯବନିକା ତଳେ ଚାରିଜଣ ପାତ୍ରପାତ୍ରୀଙ୍କର ସଂଳାପ ସମ୍ଭାଷଣ ଅପେକ୍ଷା ସେମାନଙ୍କର ଦୀର୍ଘ ସ୍ୱଗତୋକ୍ତି ଗୁଡ଼ିକ ଶୁଣିବା ଅଧିକ ବେଶୀ ପ୍ରୟୋଜନ ଥିଲା। ସେଇ ନିର୍ଦ୍ଧାରିତ ଭୟଙ୍କର ମୁହୂର୍ତ୍ତର ପଦକ୍ଷେପ ଗଣନା କରି କରି ଚାରିଜଣଙ୍କର ଚାରିଗୋଟି ପରସ୍ପର ପ୍ରଥିତ ଜଗତ ବା ଚାରିଗୋଟି ବିଶ୍ୱାନୁଭୂତି ଆମ୍ଭମାନଙ୍କ ନିକଟରେ ପ୍ରମୂର୍ତ୍ତ ହୋଇଛି। ଏହି ବିଶିଷ୍ଟ ଟେକ୍‌ନିକ୍ ଯୋଗୁ ହିଁ ନାଟକୀୟ ପରିସମାପ୍ତିଟି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଅନାବୃତ ରହିପାରିଛି। ଅନ୍ୟ ଏକ କାରଣରୁ ଏହି ଟେକ୍‌ନିକ୍‌ଟି ଥିଲା ଅପରିହାର୍ଯ୍ୟ। ଲେଖକ କୌଣସି ପ୍ରକାର ରାଜନୈତିକ ଉଦ୍ଦେଶ୍ୟ ଘେନି ଏ ଉପନ୍ୟାସ ଲେଖିନାହାନ୍ତି। ନୀଳୁ ଚରିତ୍ରଟିକୁ ଯଥାର୍ଥ ଭୂମିକାରେ ଠିଆ କରାଇବାପାଇଁ ଏହି ଟେକ୍‌ନିକ୍‌ର ପ୍ରୟୋଜନ ଥିଲା। ପ୍ରଥାସିଦ୍ଧ ଉପନ୍ୟାସ ନୀଳୁକୁ ଭିତରୁ ଏପରି ଚିହ୍ନିବା ସମ୍ଭବ ହୋଇ ନଥାନ୍ତା। ପାର୍ଟିକର୍ମୀ ନୁହେଁ, ମଣିଷ ହିଁ ''ଜାଗରୀ''ର ଉପଜୀବ୍ୟ।

ସରୋଜ ବନ୍ଦୋପାଧ୍ୟାୟ

# ଫାଶୀ ସେଲ୍

ଦୁଇ ନମ୍ବର ୱାର୍ଡ଼ର ଅଶ୍ୱତ୍ଥ ଗଛଟାର ଉପର ଶାଖାରେ ଗୋଧୂଳିର ମ୍ଳାନ ଆଲୋକ ଚିକ୍ ଚିକ୍ କରୁଛି। ଦଳେ ପକ୍ଷୀ ଏ ଡାଳରୁ ସେ ଡାଳ ହେଉଛନ୍ତି। ଦଣ୍ଡେ ସୁଦ୍ଧା ସେମାନଙ୍କର ବିଶ୍ରାମ ନାହିଁ। ଆଉ ଅଳ୍ପ ସମୟ ଭିତରେ ଚାରିଆଡ଼ ଅନ୍ଧାରରେ ଢାଙ୍କି ହୋଇଯିବ। ତାପରେ ସାରା ରାତି ସ୍ତବ୍ଧତାର ପାଳା– ସେଥିପାଇଁ ବୋଧ ହୁଏ ଏଇ ଶେଷ ମୁହୂର୍ତ୍ତରେ ଏଇ ଚଞ୍ଚଳତା, ଏତେ ଡେଣା ପିଟାପିଟି ଏତେ ଆନନ୍ଦ ଉତ୍ସବ– ଯେତିକି ଆନନ୍ଦ ସମୟର ହାତ ମୁଠାରୁ ଛିଣ୍ଡାଇ ନେବା ସମ୍ଭବ। ସତରେ କଣ ସନ୍ଧ୍ୟାବେଳେ ପକ୍ଷୀମାନେ ଏଇଥିପାଇଁ ଏତେ ଚଞ୍ଚଳ ହୁଅନ୍ତି ? ଏଇ ସେଲ୍‌କୁ ଆସିବା ଆଗରୁ ଦୁଇ ନମ୍ବର ୱାର୍ଡ଼ରେ ଥିବା ବେଳେ, ପ୍ରତି ସନ୍ଧ୍ୟାରେ ଲକ୍–ଅପ୍ ପୂର୍ବରୁ ଆମେ ସବୁ ମଧ ବାହାରେ ବୁଲି ଖୋଲା ହାୱା କିଛିଟା ଉପଭୋଗ କରୁଥିଲୁ। ସତରେ କଣ ତାହା ପ୍ରୟୋଜନ ପାଇଁ ? ନାଁ। ତଥାପି ବାହାରକୁ ଥରେ ଚାଲି ଆସିଲି। ଅଧିକାଂଶ ରାଜବନ୍ଦୀଙ୍କ ଠାରେ ଏଇ ମନୋବୃତ୍ତି ଲକ୍ଷ୍ୟ କରିଚି। ୱାର୍ଡ଼ରମାନେ ବିରକ୍ତ ହୁଅନ୍ତି, ନିଜ ଭିତରେ କଣ ସବୁ କଥାବାର୍ତ୍ତା ହୁଅନ୍ତି– ମନୋଭାବଟା ଏଇଆ ଯେ, ସ୍ୱରାଜୀମାନେ ଇଚ୍ଛା କରି ସେମାନଙ୍କୁ ଏପରି ହଇରାଣ କରୁଛନ୍ତି। କିନ୍ତୁ ୱାର୍ଡ଼ରମାନଙ୍କୁ ହଇରାଣ କରିବା ଉଦ୍ଦେଶ୍ୟରେ କେହି ଏପରି କରନ୍ତି ନାହିଁ। ଯେତେ ଟିକିଏ ଉପଭୋଗ କରିନେବା ସମ୍ଭବ; ତାକୁ କିଏ ଛାଡ଼ିବ କାହିଁକି ?

ସେ ଚଢ଼େଇ ଗୁଡ଼ାକ ବୋଧହୁଏ କାଉ–ଏତେ ଦୂରରୁ ଠିକ୍ ଚିହ୍ନି ହେଉ ନାହିଁ– ପକ୍ଷୀମାନେ ରାତିରେ କିନ୍ତୁ ଡେଣା ଫଡ଼୍‌ଫାଡ଼୍ କରନ୍ତି।

ସେଥର ଦିନେ ବକ୍‌ଡ଼ୀକୋଳରୁ ମିଟିଙ୍ଗ୍ ସାରି ଫେରିବା ବାଟରେ କାମାକ୍ଷା-ଠାକୁରାଣୀଙ୍କ ବିରାଟ ବରଗଛ ତଳେ ଆମକୁ ରାତିଟା କଟାଇବା ପାଇଁ ପଡ଼ିଥିଲା। ଏ ମାଟିରେ ଶୋଇଲେ କୁଆଡ଼େ କୁଷ୍ଠରୋଗ ଭଲ ହୋଇଯାଏ। ଦୂର ଦୂରାନ୍ତରରୁ ବହୁ କୁଷ୍ଠରୋଗୀ ଏଇ ଉଦ୍ଦେଶ୍ୟରେ ଏଠାକୁ ଆସିଥାନ୍ତି। ଦଳେ କୁଷ୍ଠରୋଗୀ ଆଖପାଖରେ ଗଛ ଗୁଡ଼ାକ ତଳେ ଶୋଇଥିଲେ। ଥିଲୁ ମୁଁ ଆଉ ନୀଳୁ, ସାଙ୍ଗରେ ଥିଲା ବୋଧହୁଏ ସହଦେଓ। ରାତିସାରା ଚଢ଼େଇମାନଙ୍କର ଡେଣା ଝାଡ଼ିବାର ସେ କି ଶବ୍ଦ! ଗଛ ତଳେ ତିନିଜଣ ପାଖାପାଖି ଶୋଇଛୁ। ଏଇ ଗଛ ମୂଳେ ଆସ୍ଥାନ୍ ବାନ୍ଧିଥିବାରୁ ନୀଳୁ ଯେପରି ବିରକ୍ତ ମନେ ହେଉଥିଲା। ମୁଁ ପଚାରିଲି ‘‘ଚଢ଼େଇ ଗୁଡ଼ା କାହିଁକି ଡେଣା ଫଡ଼୍‌ଫାଡ଼୍ କରୁଛନ୍ତି କହି ପାରିବୁ ?’’ ନୀଳୁ କହିଲା.... ‘‘ପିମ୍ପୁଡ଼ି କାମୁଡ଼ୁଛନ୍ତି ବୋଧହୁଏ।’’ ଭାବି ଉତ୍ତର ଦେବା

ପାଇଁ ତାକୁ ସମୟ ଲାଗେ ନାହିଁ। ପ୍ରତ୍ୟେକ ବିଷୟରେ ତାର ଗୋଟାଏ ସ୍ଥିର ସିଦ୍ଧାନ୍ତ ଅଛି। ସହଜରେ ସେ ସିଦ୍ଧାନ୍ତର ଏପାଖ ସେ ପାଖ ହୁଏ ନାହିଁ। ନୀଳୁଟା ସବୁ ଦିନେ ସେଇଆ....

ସନ୍ଧ୍ୟାରେ ନାଲିଚ୍ଚା ଆଲୋକ ଧୂସର ହୋଇ ଆସୁଛି। ଅଶ୍ୱତ୍ଥ ଗଛ ଚୂଡ଼ାରେ ଲାଗିଚ୍ଚି ସିନ୍ଦୁରିଆ ଆକାଶର ରଙ୍ଗ। ଗଛର ପତ୍ର ସବୁ ଆଉ ଠିକ୍ ସବୁଜ ଦେଖା ଯାଉ ନାହିଁ। ଯାଉ—ଗଛ ପତ୍ରର ସବୁଜିମା ଟିକିକ ନିଭିଗଲା — କେବଳ ଏଇ ଟିକିଏ ସବୁଜ ଏଇଠାରୁ ଦେଖାଯାଉଚ୍ଚି। ତା ଛଡ଼ା ଦେଖାଯାଉଚ୍ଚି ଚେନାଏ ନେଳି ଆକାଶ, ଲୁହା ଗାରଦ ଭିତରେ, ଲୁହାତାରର ଚୋଷ୍ଟର ଭିତରେ ଗୋଟାଏ ସ୍ଲାଇସ୍ ପାଉଁରୁଟି ପରି। ସେଲ୍‌ର ବାସିନ୍ଦା ପକ୍ଷରେ ଏ ରୂପକ ଇ ବାସ୍ତବ — 'ସି' କ୍ଲାସ ବନ୍ଦୀର ଡାୟେଟ ଅପେକ୍ଷା ତୃପ୍ତିକର। ଆଉରି ଦେଖାଯାଏ ଜେଲ୍‌ଗୁମ୍‌ଟିର ଉପରମହଲା — କାନ୍ଥରେ ବଡ଼ ବଡ଼ ଅକ୍ଷରରେ ଇଂରାଜୀରେ ଲେଖା — 'ପୂର୍ଣ୍ଣିୟା ସେଣ୍ଟ୍ରାଲ୍ ଜେଲ୍, ବିହାର'। ଆକାଶର ଏଇ ଚେନାକ ମୋର ଏକାନ୍ତ ଆପଣା — ମୋର ନିଜସ୍ୱ ସମ୍ପଦ। ଯେତେ ସମୟ ଏଇ ସ୍ୱଚ୍ଛ ନୀଳରଙ୍ଗ ଦେଖାଯାଏ, ଦେଖି ନେଉଛି। ମୋପରି ଏପରି ଭାବରେ ଆଉ କଣ କେହି ଆକାଶର ଠିକ୍ ଏଇ ଅଂଶ ଟିକକ ପାଇ ପାରିଚ୍ଚି ? ମୋର ନୀଳ ଆକାଶ, ପ୍ରତି ମୁହୂର୍ତ୍ତରେ ରୂପ ବଦଳାଉଛି। ସିନ୍ଦୁର ରଙ୍ଗ ବାଇଗଣି ହୋଇ ଉଠିଲା — ଚାହୁଁ ଚାହୁଁ ଧୂସର ହୋଇ ଉଠୁଛି — ଆଉ ଟିକକ ପରେ ବହଳ ଅନ୍ଧାରରେ ବୁଡ଼ିଯିବ। ଏପରି ବୈଚିତ୍ର୍ୟମୟ ରସର ଉସକୁ ଜେଲର ସାହେବ ଜଣେ ସର୍ବହରା କୟଦୀର ବ୍ୟକ୍ତିଗତ ସମ୍ପତ୍ତି ରୂପେ କାହିଁକି ଛାଡ଼ି ଦେଇଛନ୍ତି, ତାହା ଭାବି ଠିକ୍ କରିପାରେ ନାହିଁ। ସେମାନେ ବୋଧହୁଏ ଜାଣନ୍ତି ନାହିଁ — ଜାଣି ପାରିଲେ ହୁଏତ କାଲିଠାରୁ ରାଜମିସ୍ତ୍ରୀ କମାଣ୍ଡର କୟଦୀମାନଙ୍କୁ ମୋ ସାମନା ପାଚେରୀ ଆଉରି ଉଞ୍ଚା କରିବାର କାର୍ଯ୍ୟ ଦିଆଯାନ୍ତା — ହୁକୁମ୍ ହୁଅନ୍ତା, "ଔର ଉଚା, ଔର ଭି ଉଚା, ଜରୁରତ୍ ପଡ଼େ ତୋ ଆସ୍‌ମାନ ତକ୍ ଭିଡ଼ା ଦୋ।" ସେଇ ଗଛର ସବୁଜ ଟିକକ ଆଉ ଚେନାଏ ଆକାଶ ଛଡ଼ା, ଏଠାରୁ ଆଉ ଯାହା କିଛି ଦେଖା ଯାଏ, ସେସବୁ କେବଳ ଲୁହା, ଇଟା ଆଉ ସିମେଣ୍ଟ — ସିମେଣ୍ଟ, ଇଟା ଆଉ ଲୁହା। ସେସବୁ ଚକ୍ଷୁକୁ ପ୍ରଲୁବ୍‌ଧ କରେନାହିଁ — ଦୃଷ୍ଟିକୁ ପ୍ରତିହତ କରେ ମାତ୍ର, ତାହାକୁ ଆଘାତ ଦେଇ ଫେରାଇ ଦିଏ। ଏଇ ସବୁଜ ଆଉ ନୀଳ ଛଡ଼ା, ଆଉ ଯେଉଁ ରଙ୍ଗ ସବୁ ଆଖିରେ ପଡ଼େ, ମନେହୁଏ ରୁକ୍ଷ ଓ କଠୋର — ଆଖିକୁ ପୀଡ଼ା ଦିଏ। ସେଲ୍‌ରେ ଚୂନବୋଳା ଧଳା କାନ୍ଥ ମଧ୍ୟ ବଡ଼ ପ୍ରାଣହୀନ, ନିତାନ୍ତ ପାଣ୍ଡୁର। ତା ଉପରେ କେତେ ଦିନୁ ଚୁନକାମ ହୋଇନାହିଁ, କିଏ ଜାଣେ ? କାନ୍ଥ ସାରା ନାନା ରକମର ଦାଗ, ଛେପ ଦାଗ ଇ ବେଶୀ — ରଙ୍ଗ କେମିତି ପାଉଁଶିଆ — ବୋଧହୁଏ ମୋର ପୂର୍ବ କୌଣସି ବାସିନ୍ଦାକୁ ସିପାହୀମାନେ 'ଖୟନୀ' ଖୁଆଇଥିଲେ। ସେ କୟଦୀ କେବେଠୁ ହୁଏତ ସବୁ ଛାଡ଼ି କେଉଁ ଅଜଣା ଦେଶକୁ ଚାଲି ଗଲାଣି — ପଛରେ ରଖିଯାଇଛି କେବଳ, କାନ୍ଥ ଉପରେ, ସିପାହୀମାନଙ୍କ ପ୍ରତି କୃତଜ୍ଞତାର ଛାପ ......

କଥା କହିବା ପାଇଁ ଲୋକ ନାହିଁ। ସେଥିପାଇଁ ସେଲ୍ ବାହାରର ଜେଲ୍—ଜଗତ ସହିତ ସମ୍ବନ୍ଧ ମୁଁ ସ୍ଥାପନ କରେ କାନ ଦେଇ। କଥାବାର୍ତ୍ତା ହୋଇପାରେ ଏକମାତ୍ର ୱାର୍ଡ଼ର ସହିତ—ତା' ବି ଭଲ ଲାଗେ ନାହିଁ। ଚାରି ପଟେ କାନ୍ଥ ଆଉ କାନ୍ଥ। ଯୁଆଡ଼କୁ ଚାହିଁ ସେଁ ଆଡୁ ଦୃଷ୍ଟି ପ୍ରତିହତ ହୋଇ ଫେରିଆସେ; କିନ୍ତୁ ସବୁବେଳେ ଉତ୍‌କର୍ଣ୍ଣ ହୋଇ ରହିଥାଏ,

ବାହାରୁ ଯଦି କିଛି ଶୁଣାଯାଏ ! ଷୋଳ ପାଦ ଲମ୍ବ, ଦଶ ପାଦ ଚଉଡ଼ା ସେଲ୍। ସାମ୍ନା ପଟକୁ ଦରଜାର ମୋଟା ଲୁହା ଗାରଦ। ଦକ୍ଷିଣ ପଟ କାନ୍ଥରେ ଛାତର ଠିକ୍ ତଳକୁ ଗୋଟିଏ ଛୋଟ ଗବାକ୍ଷ। ତା ତଳକୁ କାନ୍ଥରେ ଛାତର ଠିକ୍ ତଳକୁ ଗୋଟିଏ ଛୋଟ ଗବାକ୍ଷ। ତା ତଳକୁ ଚଟାଣ ସାଙ୍ଗରେ, ହାତେ ଚଉଡ଼ା ଦେଢ଼ହାତ ଲମ୍ବର ଦୁଇଖଣ୍ଡ ମୋଟା ଲୁହାପାତିଆ କାନ୍ଥରେ ବସାଯାଇଛି। ଏଥିରେ ଅନେକ ଗୁଡ଼ିଏ ଛିଦ୍ର ରହିଛି। ଏହାର ପ୍ରୟୋଜନ କଣ, ଜାଣେ ନାଁ—ବୋଧହୁଏ ପବନ ଯିବା ଆସିବା ପାଇଁ କିମ୍ବା ଏଇ ଛିଦ୍ର ପଥରେ କୟଦୀ କଣ କହୁଛି ବାହାରର ୱାର୍ଡ଼ର୍ କାନପାତି ଶୁଣିପାରେ। ସାମ୍ନା ଗାରଦର ଲୁହା ଦରଜା ପାଖରେ ଜଣେ ୱାର୍ଡ଼ର ତ ବରାବର ରହିଥାଏ—କୟଦୀ କଣ କରୁଛି ନ କରୁଛି, ତାହା ସେ ବେଶ୍ ପରିଷ୍କାର ଭାବରେ ଦେଖିପାରେ। ତଥାପି କେଉଁଥିପାଇଁ ଏ ବ୍ୟବସ୍ଥା କହି ପାରିବି ନାହିଁ। ଘର ଭିତରର ଆସ୍‌ବାବ୍ ଭିତରେ ଆଲ୍‌କାତରାବୋଳା ଦୁଇଟା ମାଟି 'ମାଲ୍‌ସା' (ସ୍ଥାନୀୟ ଜେଲ୍ ପରିଭାଷାରେ ଟୋକ୍‌ରୀ) ଗୋଟିଏ କୋଣରେ ରଖାଯାଇଛି। ଏଇ କୋଣର ଚଟାଣରେ ଚୂନକାମ ହୋଇଛି, ଗୋଟାଏ ବୃତ୍ତର ଚତୁର୍ଥାଂଶ ଆକାରରେ। ସେଲ୍ ବାହାରେ ଜଳାକବାଟି ପାଖର କାନ୍ଥ କଡ଼ ଦେଇ ଯାଇଛି ଗୋଟାଏ ଚଉଡ଼ା ପକ୍କା ରାସ୍ତା। ରାସ୍ତାଟି ବୃତ୍ତାକାରରେ ଜେଲ୍‌ର ସବୁ ୱାର୍ଡ଼୍‌କୁ ଘେରି ରହିଛି। ଏଇ ରାସ୍ତାର ଆର ପାଖକୁ ଜେଲ୍‌ର ହାସପାତାଳର ପାଚେରୀ। କେତେ ଲୋକ ଯାତାୟତ କରନ୍ତି ଏଇ ରାସ୍ତାରେ—କୟଦୀ, ୱାର୍ଡ଼ର୍, ଡାକ୍ତର, କମ୍ପାଉଣ୍ଡର, ଠିକାଦାର, ଅଫିସର, ମିସ୍ତ୍ରୀ, ଆଉରି କେତେ କିସମ୍‌ର ଲୋକ। ଦିନବେଳା ରାସ୍ତାଟା ବେଶ୍ ଜନବହୁଳ, ମଫସଲି ସହରର ରାସ୍ତା ପରି ମନେହୁଏ। ଏଇ ବିରାଟ ପୂର୍ଣ୍ଣିୟା ସେଣ୍ଟ୍ରାଲ୍ ଜେଲ୍ ସହର ଠାରୁ ଊଣା ବା କୋଉ ଗୁଣରେ ? ସାଧାରଣ ସମୟରେ ଏଇ ଜେଲ୍‌ରେ ଥାନ୍ତି ପ୍ରାୟ ପଚିଶ ଶହ କୟଦୀ। ଆଉ ବର୍ତ୍ତମାନ 1943 ସାଲ ମେ' ମାସରେ ଅଛନ୍ତି ସାଢ଼େ ଚାରିହଜାର। ଆଉ କାହିଁକି ବଢ଼ୁ ନାହାନ୍ତି ତାହା ହିଁ ଆଶ୍ଚର୍ଯ୍ୟ। ବାହାରେ ଖାଇବାକୁ ନ ପାଇ ରାସ୍ତା ଘାଟରେ ମରି ପଡ଼ିବେ—ତଥାପି ଆମ ଦେଶର ଲୋକେ ଏପରି କିଛି କରିବେ ନାହିଁ, ଯେଉଁଥିପାଇଁ ସେମାନଙ୍କୁ ଜେଲ୍ ଖଟିବା ପାଇଁ ପଡ଼ିବ। ଥରେ 'ଇନ୍‌କିଲାବ୍ ଜିନ୍ଦାବାଦ୍' କହିଲେ ବା ଗୁଡ଼ିଆ ଦୋକାନରୁ ମୁଠାଏ ଖାଇବା ଜିନିଷ ଉଠାଇ ନେଲେ ଯଦି ଛଅମାସ ପାଇଁ ଅନ୍ନଜଳ ଆଉ ମୁଣ୍ଡ ଗୁଞ୍ଜିବା ପାଇଁ ଜାଗା ମିଳିଯାଏ, ତା ହେଲେ ଅନାହାରରେ ମରିବାର ପ୍ରୟୋଜନ କଣ ? ... ସାଢ଼େ ଚାରିହଜାର; ... କୌଣସି ସହରରେ ପାଞ୍ଚ ହଜାର ଲୋକଙ୍କର ବସତି ହେଲେ ତାହା ମ୍ୟୁନିପାଲିଟି ବୋଲି ଗଣ୍ୟ ହୋଇପାରେ। ଜେଲ୍ ମଧ୍ୟ ସେପରି ଗୋଟିଏ ଛୋଟିଆ ସହର। ଏଇ ସହରର ନାମ 'ଲୌହ ଗାରଦ' ହେଲେ ବେଶ୍ ହୁଅନ୍ତା। ଧ୍ୱନିର ଝଙ୍କାରରେ ଠିକ୍ 'ଲେନିନ୍ ଗ୍ରାଦ୍' ପରି ଶୁଣାଯାଏ... ଲୁହାପାତର ଛିଦ୍ରପଥରେ କାନ ଦେଇ ବସିଥାଏ। ମଣିଷର କଣ୍ଠସ୍ୱର ପୁଣି ଏତେ ମିଠାଲାଗେ। ଜେଲ୍ ପଲିଟିକ୍ସ, ଜେଲ୍ ବାହରର ପଲିଟିକ୍ସ, ଏଇଠି ବସି ରହିଲେ, ସବୁ ଜାଣି ହୁଏ—ସୁପରିଟେଣ୍ଡେଣ୍ଟଙ୍କ ସହିତ ଜେଲର୍ ବାବୁଙ୍କ ମନ ମିଳୁ ନାହିଁ, ହେଡ୍ ଜମାଦାରକୁ 'ଜେଲର୍ ବାବୁ 'ଆପ୍' କହନ୍ତି ନାଁ 'ତୁମ୍' କହନ୍ତି, ଜାପାନୀ ମାନଙ୍କ ରଣକୌଶଳ କଥା, ସଂଖ୍ୟାଧିକ ହେତୁ କେତେ କୟଦୀଙ୍କୁ ଜେଲ୍‌ରୁ ଛାଡ଼ି ଦିଆଯିବ (ଜେଲ୍ ପରିଭାଷାରେ 'ଛାଟାଇୟା'), ବର୍ମାର ଜେଲ୍ ଷ୍ଟାଫ୍ ଦଳ ବାନ୍ଧି, ବିହାରୀ ଜେଲ୍ କର୍ମଚାରୀ ମାନଙ୍କୁ କିପରି ନୟାନ୍ତ କରିବାକୁ ଚେଷ୍ଟା କରୁଛନ୍ତି—ଏଇପରି ସବୁ କଥା—ଆଉରି

କେତେ କଥା କାନରେ ପଡ଼େ। ରାଜବନ୍ଦୀ ମାନଙ୍କ ଉପରେ ସେଦିନ ଲାଠି ଚାର୍ଜ୍ ହେବା ପରେ, ହାସପାତାଳ ଷ୍ଟ୍ରେଚର୍‌ର କେତେଥର ଆସିଲା ଗଲା, ତାର ହିସାବ କରା ହୋଇଥିଲା, ଏଇଠି ବସି। ଝଣ୍‌ଝାଣ୍ ଲୁହା ଶବ୍ଦ ଶୁଣିଲେଇ ବୁଝିପାରେ ଯେ, ଯେଉଁ କୟଦୀଟି ଯାଉଛି, ତାକୁ 'ବାର୍ ଫେଟର୍ସ୍' (ସ୍ଥାନୀୟ ଭାଷାରେ ଦଣ୍ଡାବେଡ଼ୀ) ସଜା ହୋଇଛି। ବୋଧହୁଏ ସେ କୌଣସି ଜେଲ୍ କର୍ମଚାରୀଙ୍କ ହୁକୁମ୍ ଅମାନ୍ୟ କରିଥିଲା...

କି ମଶା ! ସନ୍ଧ୍ୟା ହେଲେ ଆଉ କଣ ରକ୍ଷା ଅଛି ? ସେଦିନ ସୁପରିଟେଣ୍ଡେଣ୍ଟ୍ ଆସି ମୋତେ ପଚାରିଲେ – କୌଣସି ଜିନିଷ ପତ୍ର ଦରକାର ଅଛି କି ନାହିଁ ଅର୍ଥାତ୍ ଯାହା ଚାହିଁବି ସମ୍ଭବ ହେଲେ ଦେବି। ପିଲା ଦିନୁ ଶୁଣି ଆସୁଛି, ଫାଶୀ ଆସାମୀ ମାନଙ୍କୁ ଏଇପରି ପଚରା ଯାଇଥାଏ, ଆଉ ଅଧିକାଂଶ ଲୋକ ଭଲ ଖାଇବା ପଦାର୍ଥ ମାଗନ୍ତି। ନୂଆ ସୁପରିଟେଣ୍ଡେଣ୍ଟ ମୋ ଠାରୁ ସେଇପାରି ପ୍ରାର୍ଥନା ଆଶା କରୁଛନ୍ତି ନାଁ କଣ ? ମୋର ଭାରି ଲୋଭ ହେଉଥିଲା, ଖଣ୍ଡେ ମସାରୀ ମାଗିବା ପାଇଁ – ଯେଉଁ କେତେଟା ଦିନ ଆରାମରେ ଶୋଇହୁଏ – କିନ୍ତୁ କହିଲା ବେଳକୁ କହି ପାରିଲି ନାହିଁ। ଆତ୍ମ ସମ୍ମାନରେ କିପରି ଆଘାତ ଲାଗିଲା। କହିଲି, "ଧନ୍ୟବାଦ୍ ! ମୁଁ ବେଶ୍ ଆରାମରେ ଅଛି। କୌଣସି ଜିନିଷ ଦରକାର ନାହିଁ।" ୱାର୍ଡ଼ରଟା ମୋତେ ପରେ କହିଥିଲା – ଓଡ଼ିଶାର କୌଣସି କରଦ ରାଜ୍ୟର ଦୁଇଜଣ 'ସ୍ୱରାଜୀ' ବାବୁଙ୍କର ଏଇ ଜେଲ୍‌ରେ ଫାଶୀ ହୋଇଥିଲା। –ଜଣେ ଥିଲା ଆପଣଙ୍କର ଏଇ ଏକ ନମ୍ବର ସେଲ୍‌ରେ, ଆଉ ଜଣେ ଦୁଇ ନମ୍ବରରେ – ସେମାନେ ସାହେବ ମାରିଥିଲେ – ଏକଦମ୍ ଚାନ୍‌ସେ –.ପାଞ୍ଚ ସାଲ୍ କି ବାତ୍ – ଫାଶୀ। ଆଗଦିନ ରାତିରେ କୁଆଡ଼େ ସେମାନେ ଗୁଡ଼ାଏ କୁକୁଡ଼ା ଅଣ୍ଡା ଭାଜି ଖାଇଥିଲେ। ତା ପର ଦିନ ରାତିରେ 'ଇନ୍‌କିଲାବ୍ ଜିନ୍ଦାବାଦ୍' ଆଉରି କଣ କଣ * ନାରା ସବୁ ଲଗାଇଥିଲେ। ସେ ରାତିରେ ଜଣେ ହେଲେ କୟଦୀ ଶୋଇ ପାରି ନାହାନ୍ତି। ଆପଣଙ୍କର ବି ଯୋଉ ପଦାର୍ଥ ଖାଇବା ପାଇଁ ମନ, ମାଗିଲେ ନାହିଁ କାହିଁକି ?"

ୱାର୍ଡ଼ର କଥାକୁ ଅବିଶ୍ୱାସ କରି ନାହିଁ, କିନ୍ତୁ ତା'ର ଉପଦେଶ ମନେ ରଖି ନାହିଁ। ଏଇ ୱାର୍ଡ଼ର ମାନେ ଅଶିକ୍ଷିତ। ସୁବିଧା ପାଇଲେଇ ଚୋରୀ କରନ୍ତି। କୟଦୀ ମାନଙ୍କ ଉପରେ ପ୍ରଭୁତ୍ୱ ଦେଖାନ୍ତି। ଦୁର୍ବଳଚିତ୍ତ କୟଦୀ ମାନଙ୍କ ଉପରେ ଅତ୍ୟାଚାର କରନ୍ତି। କିନ୍ତୁ ଗମ୍ଭୀର ପ୍ରକୃତିର କୟଦୀମାନଙ୍କୁ ସମ୍ମାନ ଦେଖାଇ ଚଳନ୍ତି। ଏମାନେ ସରଳ ସ୍ୱଭାବର ଲୋକ—କଥାର ମାରପେଞ୍ଚ ବୁଝନ୍ତି ନାହିଁ—ସୌଜନ୍ୟର ଧାର ଧାରନ୍ତି ନାହିଁ। ସୁପରିଟେଣ୍ଡେଣ୍ଟ ପ୍ରଭୃତି ସମସ୍ତେ ଶିଷ୍ଟାଚାର ଖାତିର୍‌ରେ ମୋ ସାମ୍‌ନାରେ ଫାଶୀ ବା ସେ ସଂକ୍ରାନ୍ତରେ କୌଣସି କଥା ଉଲ୍ଲେଖ କରନ୍ତି ନାହିଁ। କିନ୍ତୁ ୱାର୍ଡ଼ରମାନେ ପ୍ରତ୍ୟେକେ, ଗୋଟାଏ ଦୁଇଟା କଥା ପରେ ଫାଶୀ କଥା କହିଥାନ୍ତି। ପ୍ରଥମେ କେତେଦିନ କଥାଟା ଶୁଣିବା ମାତ୍ରେ ଛାତି ଭିତରଟା ଚାଇଁ କରି ଉଠୁଥିଲା – ନିଜକୁ ଦୁର୍ବଳ ଦୁର୍ବଳ ମନେ ହେଉଥିଲା – କିପରି ଅନ୍ୟମନସ୍କ ହୋଇ ଉଠୁଥିଲି – ଫାଶୀର ଦୃଶ୍ୟ ସବୁ ମୋ ଆଖି ଆଗରେ ଭାସି ଉଠୁଥିଲା। ହୁଏତ ମୋର ଫାଶୀ ହୁକୁମ ରଦ୍ଦ ହୋଇଯିବ, ଏଇଆ ଭାବି ମନକୁ ପ୍ରବୋଧ ଦେବା ପାଇଁ ପଡୁଥିଲା। ଦିନ କେତେଟା ଭିତରେ ଏସବୁ ଦିହସହା ହୋଇଗଲା। ଆଉ ବର୍ତ୍ତମାନ

---

* ଧ୍ୱନି

ଫାଶୀ କଥାରେ କିଛି ମନେ ହୁଏ ନାହିଁ। ସେଲ୍‌ର ଠିକ୍ ପଶ୍ଚିମକୁ ଫାଶୀମଞ୍ଚ। ୱାର୍ଡ଼ର ମାନେ ଅଯାଚିତ ଭାବରେ ଆସି ଖବର ଦିଅନ୍ତି—ଆଜି ଫାଶୀକାଠରେ କଳାରଙ୍ଗ ବୋଳା ହେଲା—ଆଜି ଦଉଡ଼ିରେ ମୋ ଓଜନର ଗୋଟିଏ ବାଲିବସ୍ତା ବାନ୍ଧି ଦଉଡ଼ିଟା ଠିକ୍ ମଜବୁତ୍ କି ନାହିଁ, ତାର ପରୀକ୍ଷା କରା ହେଲା—ଆଉରି କେତେ ଏଇ ରକମର ଖବର।

ଆଶ୍ଚର୍ଯ୍ୟ ମୋର ମନର ଗତି। କଳାରଙ୍ଗ କଥା ଶୁଣିଲେଇ ଭାବେ, ବ୍ଲାକ୍—ଜାପାନ୍ ନାଁ ଆଲକତରା? ୱାର୍ଡ଼ର୍‌କୁ ପଚାରେ ଆଲ୍‌କାତରା ବୋଲିଲେ ନାଁ କଣ? ଦଉଡ଼ୀଟା କେଉଁଥିର? ଛଣପଟର? ନିଜ ମନକୁ ନିଜେ ବିଦ୍ରୂପ କରିବାକୁ ଇଚ୍ଛା ହୁଏ। ଦଉଡ଼ିଟି 'କେଉଁଥିରେ କଳା ହୋଇଚି; ସେଇ କଥା ଜାଣିବା ବର୍ତ୍ତମାନ କଣ ମୋର ବେଶୀ ଦରକାର?' ଚିରକାଳ ମୋ ମନର ଏଇ ଅଦ୍‌ଭୁତ ଗତି ମୁଁ ଲକ୍ଷ୍ୟ କରି ଆସିଛି। ପ୍ରୟୋଜନୀୟ ଅପେକ୍ଷା ଅପ୍ରୟୋଜନୀୟ ବିଷୟ ପ୍ରତି ମୋର ଆକର୍ଷଣ ବେଶୀ। ପରୀକ୍ଷା ଆଗରୁ ସମସ୍ତେ ପ୍ରଶ୍ନ ସବୁ ପ୍ରସ୍ତୁତ କରିବାରେ ବ୍ୟସ୍ତ—ଆଉ ମୋର ସେ ସବୁ ତିଆରି ନଥିଲେ ସୁଦ୍ଧା, ତାହା ସହିତ ସଂଶ୍ଳିଷ୍ଟ କୌଣସି ତୁଚ୍ଛ କଥାରେ ମୋର ମନଯୋଗ ହୁଏତ୍ ନ୍ୟସ୍ତ। ଜ୍ୟାମିତିର ପ୍ରୟୋଜନୀୟ ଥିଓରେମ୍ ଅପେକ୍ଷା ଅପ୍ରୟୋଜନୀୟ ପ୍ରଶ୍ନଟା ଉପରେ ମୋର ଅଯଥା ମନୋଯୋଗ—ଫୁଟ୍‌ନୋଟ୍, ଭୂମିକା ପ୍ରଭୃତି ପରୀକ୍ଷାର ପୂର୍ବଦିନ ପର୍ଯ୍ୟନ୍ତ ସୁଦ୍ଧା ଦେଖୁଚି। ବର୍ଷ ଆରମ୍ଭରୁ ମନେ ହୋଇଛି—ଦରକାରୀ ଗୁଡ଼ା ତ ପରେ ପଢ଼ିବା ପାଇଁ ପଡ଼ିବ—ବର୍ତ୍ତମାନ ଅଦରକାରୀ କଥା ଗୁଡ଼ାକ ପଢ଼ାଯାଉ—ଫଳରେ ଶେଷ ପର୍ଯ୍ୟନ୍ତ ଅସଲଟା ଇ ହୁଏତ ପଢ଼ା ହେଲା ନାହିଁ।

ମନେ ପଡୁଚି, କାଶୀ ବିଦ୍ୟାପୀଠରେ ପଢ଼ିବା ବେଳେ ଗୋଟିଏ ରାତିର କଥା। ରାତି ଉଜାଗର ହୋଇ ପଢୁଚୁ ମୁଁ ଆଉ ଶକଳ ଦେଓ। ଟିପେ ନାସ ଶୁଙ୍ଘି ରାତି ଅଧରେ 'ଆଜ୍'ର ସମ୍ପାଦକୀୟ ସେ ମୋତେ ପଢ଼ି ଶୁଣାଇବାକୁ ଲାଗିଲା...କାଶୀ ବିଦ୍ୟାପୀଠରେ ପଢ଼ିବା ବେଳେ ସେଥର ପୋଲିଶ ଯେତେବେଳେ ମୋତେ ଗିରଫ କଲା—ସନ୍ଦେହ କ୍ରମେ ରାଜନୈତିକ ହତ୍ୟାକାଣ୍ଡ ଚାର୍ଜରେ—ସେତେବେଳେ ସ୍ୱତଃ ଫାଶୀ କଥା ମନେ ପଡୁଥିଲା। ପରେ ପ୍ରମାଣ ଅଭାବରେ ପୋଲିସ ଅବଶ୍ୟ ଛାଡ଼ି ଦେଲା। ପ୍ରକୃତରେ ମୁଁ ସେଥିରେ ଲିପ୍ତ ନଥିଲି। କିନ୍ତୁ ଫାଶୀ ପାଇବାର ଭୟ ମୋର ବରାବର ରହିଥିଲା। ବୋଧହୁଏ ବର୍ତ୍ତମାନ ସତକୁ ସତ ଫାଶୀ ହୁକୁମ ହୋଇଛି ବୋଲି ଭୟ କମି ଯାଇଛି। ଦୂରରୁ ଭୟଟା ବେଶୀ ଥାଏ। ଯେଉଁମାନେ ଜେଲ୍ ଭୋଗି ନାହାନ୍ତି, ଜେଲ୍ ଆସିବାଟାକୁ ସେମାନେ କି କଠିନ ବ୍ୟାପାର ମନେ କରନ୍ତି। କିନ୍ତୁ ଥରେ ଆସିଯିବା ପରେ ଭୟ ଭାଙ୍ଗିଯାଏ।

ଉଃ! ମଶାକାମୁଡ଼ା ଭାରି କଷ୍ଟ। ଜାଣେ ନାଁ କାହିଁକି, ଆମ ଗାନ୍ଧୀ—ଆଶ୍ରମର ମଶା ଗୁଡ଼ାକ ଏମାନଙ୍କ ଅପେକ୍ଷା ବେଶୀ ଗୁଣ୍‌ଗୁଣ୍ ହୁଅନ୍ତି, ଆକାରରେ ବି ବଡ଼, କିନ୍ତୁ ମନେ ହୁଏ କାମୁଡ଼ିଲେ କମ୍ ଜ୍ୱାଳା କରେ। ନୀଳୁ ଥିଲେ ମତେ ଥଟ୍ଟା କରି କୁହେ "ଏମାନେ ଆଶ୍ରମର ମଶା କିନା! ଅହିଂସା ଉପାୟରେ ରକ୍ତ ଶୋଷି ଶିଖିଛନ୍ତି।" ମା' ହସ ଚାପି, ମୁହଁରେ ବିରକ୍ତିର ଭାବ ଫୁଟାଇ କହନ୍ତି, "ଆଚ୍ଛା ହେଲା, ଆପଣ ଏବେ ଯାନ୍ତୁ ତ!" ମାଙ୍କର ଏଇ ବେଳର ମୁହଁଟି ସ୍ପଷ୍ଟ ଯେପରି ଦେଖିବାକୁ ପାଉଚି। ଆଖିକୋଣରେ ପଡ଼ିଚି ଦୁଇଟି କରି ବଳିରେଖା। ମା'ଙ୍କ ମନରେ ସବୁ ସମୟରେ ଗୋଟାଏ ଭୟ, ଭୟ ଭାବ ଲକ୍ଷ୍ୟ କରେ—ଏଇ ବୋଧହୁଏ ବାବାଙ୍କୁ ଆଘାତ ଦେଲା ଭଳି ନୀଳୁ କିଛି କହିଲା। ଅଥଚ୍

କିଛି କହିଲେ ସେ କଥାଟା ଯେପରି ବାବାଙ୍କ କାନରେ ନପଡ଼େ ସେଥିପାଇଁ ମଧ୍ୟ ଯଥେଷ୍ଟ ପ୍ରଚେଷ୍ଟା ଲକ୍ଷ୍ୟ କରିଛି। ନୀଲୁ ବଡ଼ ସ୍ପଷ୍ଟବାଦୀ। ସେଥିପାଇଁ ସେ କେତେଥର ଅସୁବିଧାରେ ପଡ଼ିଛି। କିନ୍ତୁ ଅନ୍ୟ ଲୋକମାନେ ତା କଥାରେ କିଛି ମନେ କରି ପାରନ୍ତି ବା ତା କଥାରେ କ୍ଷୁବ୍ଧ ହୋଇ ପାରନ୍ତି, ଏହାକୁ ସେ ଚିରଦିନ ଉପେକ୍ଷା କରିଯାଇଛି। ସୂକ୍ଷ୍ମ କଥା ତା ମନରେ କୌଣସି ସ୍ପନ୍ଦନ ଆଣେ ନାହିଁ। ନୀଳୁର ମନ ଓ ଦୃଷ୍ଟିଭଙ୍ଗୀ ସ୍ଥୂଳ। କଲମ, ତୁଳୀ ତା' ପାଇଁ ନୁହେଁ—ସେ ବୁଝେ କାୟିକ ପରିଶ୍ରମର କଥା, ହାତୁଡ଼ୀ କୋଦାଳ, ଶାବଳର କଥା, ଆଉ ତା ହାତରେ ଶୋଭା ପାଏ ଇସ୍ପାତର କ୍ଷୁରଧାର ଅସୀ—ପରଶୁରାମର କୁଠାର ପରି ନିଷ୍କରୁଣ ଓ କର୍ତ୍ତବ୍ୟନିଷ୍ଠ। ନୀଲୁ ଥରେ କହୁଥିଲା, କବିତା ତାକୁ ଭଲ ଲାଗେ ନାହିଁ। ମୁଁ ଉତ୍ତର ଦେଇଥିଲି, ଏପରି କବିତା ଲେଖିଦେବି, ଯାହା ତାକୁ ନିଶ୍ଚୟ ଭଲ ଲାଗିବ। ଲେଖି ଦେଇଥିଲି, ଧନୀକ, ଶ୍ରମିକ ପ୍ରଭୃତି ଯୋଡ଼ି, ଠେଙ୍ଗାପିଟା ଗୋତ୍ରୀୟ ସନେଟ୍। ନୀଲୁକୁ ଖୁବ୍ ଭଲ ଲାଗିଥିଲା। କବିତାଟା ମନେ ନାହିଁ—ଗୋଟାଏ ଲାଇନ୍ ସୁଦ୍ଧା ନୁହେଁ। ନୀଲୁ ସେଇ କବିତାଟିକୁ ବନ୍ଧେଇ ଆଶ୍ରମରେ ଟଙ୍ଗେଇ ରଖିଥିଲା—ମା'ଙ୍କ ଘରେ।...

ମନେ ପଡୁଚି ମା' ବସିଚନ୍ତି ବାରଣ୍ଡାରେ। ମୁଣ୍ଡ ହଲାଇ ହଲାଇ ନୀଲୁ ଆଡ଼େ ଚାହିଁ ଦାନ୍ତ ମୂଳେ ଜିଭ ଚିପି ଶବ୍ଦ କଲେ... 'ଚିକ୍'। ତାପରେ ଢଗ ମେଲିଲେ 'ସ୍ୱଭାବ ନ ଯାଏ ମଲେ'। ନୀଲୁ ମୋ ଆଡ଼େ ଚାହିଁ ଆଖି ଠାରିଲା—ଭାବଟା ଏଇଆ, ''ଦାଦା ଏଇଥର।'' ଦୁଇଜଣ ଯାହା ଭାବିଥିଲୁ—ଠିକ୍ ଯାହା ଭାବିଥିଲି—ମା ସଂସ୍କୃତ ଶ୍ଲୋକ ବୋଲିଲେ—''ଅଙ୍ଗାର ଶତଧୌତେନ ମଳିନତ୍ୱ ନଃ ମୁଞ୍ଚ୍ୟତେ।'' ଆମେ ଦୁହେଁ ହସି ଉଠିଲୁ। ମା' ପୁଣି 'ମଳିନତ୍ୱ' କହିଛନ୍ତି। ମା' ଆମ ହସରୁ ବୁଝିପାରିଲେ ଯେ, ଭୁଲ୍ ହୋଇଗଲା। କହିଲେ ''ପୋଡ଼ା ପାଉଁଶ ! କଥାଟା କଣ ମନେ ରୁହେ ?'' ନୀଲୁ ଟିପ୍ପଣୀ କଲା ''ତେବେ କହିବା ଦରକାର କଣ ?'' ... ମାଙ୍କ କଥାରେ ଏପରି ଭୁଲ୍ ସବୁ ଆମର ମୁଖସ୍ଥ। ନୀଲୁ ସେ ସବୁ ଦେଖାଇ ଦିଏ। ତା ନ ହେଲେ ମୁଁ ହୁଏତ ଖିଆଲ୍ ସୁଦ୍ଧା କରୁ ନଥାନ୍ତି। ମା' କହନ୍ତି ''ଦୟା, ଦାକ୍ଷିଣାତ୍ୟ।'' ମୁଁ ଦିନେ ମାଙ୍କୁ କହି ଦେଇଥିଲି 'ଦୟା ଦାକ୍ଷିଣ୍ୟ' କହିବା ପାଇଁ। କିନ୍ତୁ ବରାବର ଦେଖିଚି କହିଲା ବେଳେ ମା' ଙ୍କର ଏଇଟା ମନେ ରହେ ନାହିଁ। କହିଦେଲେ ଅପ୍ରସ୍ତୁତ ହୋଇଯିବେ ବୋଲି, ମୁଁ ଭୁଲ୍‌ଟା ଆଉ ଦେଖାଇ ଦିଏ ନାହିଁ। ନୀଲୁ କିନ୍ତୁ ଏସବୁ ସୂକ୍ଷ୍ମ କଥା ବୁଝେ ନାହିଁ। ଅନ୍ୟର ଯେ କୌଣସି ଦୁର୍ବଳତା, ଚାଲିଚଳନରେ ବିଦ୍ରୁପର ଖୋରାକ ତା ନଜରରେ ସହଜରେ ପଡ଼ିଯାଏ। କିନ୍ତୁ ତା ଆଚରଣ ଫଳରେ ଅନ୍ୟ ମନରେ ଯେ ଆଘାତ ଲାଗିପାରେ, ଏ କଥା ସେ ଭାବି ସୁଦ୍ଧା ପାରେ ନାହିଁ। ...ବାବାଙ୍କ ଠାରୁ ଆମେ ସବୁଦିନେ ଟିକିଏ ଦୂରଛଡ଼ା ହୋଇ ଥାଉଁ। ନିତାନ୍ତ ଦରକାରୀ କଥା ଛାଡ଼ା ଅନ୍ୟ କୌଣସି କଥାବାର୍ତ୍ତା ତାଙ୍କ ସାଙ୍ଗରେ ପ୍ରାୟ ହୁଏ ନାହିଁ। ସେଥିପାଇଁ ବାବା ଏବଂ ଆଶ୍ରମର ଅନ୍ୟ ସମସ୍ତଙ୍କର ଖାଇବା ଶେଷ ହେବା ପରେ ମୁଁ ଆଉ ନୀଲୁ ମା'ଙ୍କ ସାଙ୍ଗରେ ଖାଇବା ପାଇଁ ବସୁ। ଟୋପାଏ ଦୁଧ ନହେଲେ ମାଙ୍କ ଖାଇବା ହୁଏ ନାହିଁ। ଏଇଟି ବୋଧହୁଏ ମାଙ୍କର ଏକମାତ୍ର ବିଳାସ। ଆଶ୍ରମରେ ଅନେକ ଲୋକ ତ ଥାନ୍ତି। ଆଉ ସମୟ ଅସମୟରେ ନୂଆ ନୂଆ ଅତିଥି ଆସିବା ପ୍ରାୟ ନୈମିତ୍ତିକ ବ୍ୟାପାର। ଏଥିପାଇଁ ଦୁଧର ପରିମାଣ ଅନେକ ସମୟରେ କମିଯାଏ। ଦୁଧ ହୁଏତ ଅଳ୍ପ ଅଛି। ମା' ମୋତେ ଆଉ ନୀଲୁକୁ ସେତକ ଦେଇଦେଲେ। ମୁଁ ଆଉ ଗୋଟାଏ ଗିନାରେ ଆମ ଗିନାରୁ ଅଳ୍ପ ଅଳ୍ପ କରି ଢାଳି ମା'ଙ୍କ

ପାଇଁ ରଖିଲି । ନୀଳୁ ଏପରି ସମୟରେ ବରାବର କହିବ, ''ଦୁଧ ନହେଲେ ମା'ଙ୍କର ଖାଇବା ଚଳେ ନାଇଁ ।'' କଥାଟା ଏମିତି କିଛି ନୁହେଁ । କିନ୍ତୁ ମା' ଅପ୍ରସ୍ତୁତ ହୋଇ ପଡ଼ନ୍ତି – ଯେପରି କୌଣସି ଗୋପନ ଦୁର୍ବଳତା ଧରା ପଡ଼ିଗଲା । ନୀଳୁ ଆଖିରେ ଏତେ କଥା ପଡ଼େ–କିନ୍ତୁ ଏ କଥାଟା ପଡ଼େ ନାହିଁ।

ମା' ବେରାମ ପଡ଼ିଲେ, ବେରାମ୍‌ଟା ଟିକିଏ ବେଶୀ ହୋଇଛି କହିଲେ, ସେ ଯେପରି ଖୁସୀ ହୁଅନ୍ତି । ସେଥିପାଇଁ ଜାଣି ଶୁଣି ମାଙ୍କ କପାଳ ଉପରେ ହାତ ଦେଇ କହିଲି – ''ଦେହଟା ପୋଡ଼ିଯାଉଚ଼ି ଭାରି ଜର ହୋଇଚ଼ି ।'' ନୀଳୁ ସେଠି ଉପସ୍ଥିତ ଥିଲେ ହାଃ–ହାଃ–ହାଃ କରି ଘର କମ୍ପାଇ ହସି ଉଠିବ । ... ମୋର କୌଣସି ଜିନିଷ ଦରକାର ନାହିଁ ବୋଲି ସେଦିନ ସୁପରିଟେଣ୍ଡେଣ୍ଟଙ୍କୁ କହିବା ପରେ ମୋ ମନରେ ବେଶ୍ ତୃପ୍ତି ଆସିଥିଲା – ଖାଲି ତୃପ୍ତି ନୁହେଁ, ଗର୍ବ ମଧ୍ୟ । ''ସାହେବ୍'' ତ ଏକା ଆସନ୍ତି ନାହିଁ, ସଙ୍ଗରେ ଥିଲେ ଜେଲର୍, ଡାକ୍ତର, ଆସିଷ୍ଟାଣ୍ଟ୍ ଜେଲର୍, ଜମାଦାର, କେତେଜଣ ଦେହରକ୍ଷୀ, ୱାର୍ଡ଼ର ଓ ମେଟ୍, ସମସ୍ତେ । ହଁ, ଆଉ ଯେଉଁ ଶିଖ କୟଦୀଟି ସାହେବଙ୍କ ଖାକୀ ରଙ୍ଗର ବିରାଟ ରାଜଛତ୍ରଟି ଧରି ତାଙ୍କ ପଛେ ପଛେ ଦୌଡ଼େ ତା କଥା ଉଲ୍ଲେଖ କରିବାକୁ ଭୁଲିଯାଇଚି । ଦୁର୍ଦ୍ଦଣ୍ଡ ପ୍ରତାପ ସୁପରିଟେଣ୍ଡେଣ୍ଟ୍ ପ୍ରକୃତରେ ଜେଲ୍–ସାମ୍ରାଜ୍ୟର ଏକଛତ୍ରାଧିପତି... ସେଦିନ ତାଙ୍କ ପ୍ରଶ୍ନର ଉତ୍ତର ଦେବା ପରେ ମୁଁ କାହା ମୁହଁକୁ ଆଉ ଅନାଇ ପାରିଲି ନାହିଁ। ସବୁ କିପରି ଗୋଳମାଳ ହୋଇଗଲା । ଅଥଚ଼ ଇଚ୍ଛା ହେଉଥିଲା, ମୋ କଥାର ପ୍ରତିକ୍ରିୟା ସେମାନଙ୍କ ଉପରେ କିପରି ହୋଇଛି ଜାଣିବା ପାଇଁ। ନିଜକୁ ବେଶ୍ ମନେ ହେଉଥିଲା ନାଟକର ନାୟକ ପରି... ସନ୍ତୋଷଦାଙ୍କ ଠାରୁ ପିଲାଦିନେ ସ୍ୱଦେଶୀ ଯୁଗର ଗପ ଶୁଣି, କେତେଥର ମୋ ଆଖି ଲୁହରେ ଛଳଛଳ ହୋଇ ଉଠୁଥିଲା । –ଅମର ଶହୀଦ୍ ମାନଙ୍କର ସେଇ ସ୍ମୃତି ମୋ ଆଖି ଆଗରେ ଭାସି ଉଠୁଚ଼ି । ''ଏବେ ମୋତେ ଆଉ ବିରକ୍ତ କର ନାଇଁ, ଶାନ୍ତିରେ ମରିବାକୁ ଦିଅ ।'' –ବନ୍ଧୁକଗୁଳିରେ ଆହତ ମରଣାପନ୍ନ ଶହୀଦ୍‌ର ସେଇ କଥା ସହିତ ମୋ କଥାର ତୁଳନା କରିଥିଲି। ଏଇ ଗପ ଶୁଣିଲେ ମୋ ଆଖିରେ ଲୁହ ଭରିଯାଏ–ଆଉ ମୋ କଥା କଣ ଶ୍ରୋତାମାନଙ୍କ ମନରେ କୌଣସି ସ୍ପନ୍ଦନ ଆଣିବ ନାଇଁ! ହୁଏତ ଆଣିବ ନାଇଁ । ଏମାନେ ପ୍ରତ୍ୟହ ଏଇ ଏକ କଥା ଦେଖୁଚ଼ନ୍ତି । ଏମାନେ ବୟସ୍କ, ସଂସାରିକ ବିଷୟରେ ଅଭିଜ୍ଞ–ବାଳକ ପରି ଭାବପ୍ରବଣ ନୁହନ୍ତି । ମୁଁ ଚାହେଁ ଲୋକେ ମୋର ପ୍ରଶଂସା କରନ୍ତୁ, ମୋ କଥା ଗଳ୍ପ କରନ୍ତୁ – ଇଏ ମୋର ମନର ଦୁର୍ବଳତା । ବେଳେ ବେଳେ ନିଜ ଉପରେ ସନ୍ଦେହ ହୁଏ – ଦେଶର ଭବିଷ୍ୟତ ଅପେକ୍ଷା ମୋ ନାମର ଭବିଷ୍ୟତ ସମ୍ବନ୍ଧରେ ମୁଁ ହୁଏତ ବେଶୀ ସଜାଗ । ପ୍ରକୃତରେ କଣ ସେଇଆ ? ଜୀବନର ସ୍ଥୂଳ ଉପଭୋଗ ମଧ୍ୟରେ ଦିନକ ପାଇଁ ସୁଦ୍ଧା ମୁଁ ନିଜକୁ ବୁଡ଼ାଇ ଦେଇ ନାହିଁ। ଦେଶ ପାଇଁ ଯାହା ଭଲ ଭାବିଛି, ତାହା କରିବା ପାଇଁ ବିନ୍ଦୁ ମାତ୍ର ବିଚ଼ଳିତ ହୋଇନାହିଁ। ନିଜ ବ୍ୟକ୍ତିଗତ ସୁଖ ବା ଭବିଷ୍ୟତର କଥା କୌଣସି ଦିନ ଭାବି ନାହିଁ। ଏହା ପରିବର୍ତ୍ତେ ଯଦି ଆଶା କରେ ଯେ, ଦେଶ ଲୋକେ ମୋ ସମ୍ବନ୍ଧରେ ପଦେ ଅଧେ ପ୍ରଶଂସାସୂଚ଼କ କଥା କୁହନ୍ତୁ ତା ହେଲେ ମୋର ଆକାଂକ୍ଷା କଣ ଅନ୍ୟାୟ ? ଜେଲ୍ ଡାକ୍ତର ନିଶ୍ଚୟ ମୋ କଥା ନିଜ ଘରେ କହିଛନ୍ତି । ଆସିଷ୍ଟାଣ୍ଟ ଜେଲର୍ ସେତିକିବେଳେ ହୁଏତ, ଅପର ଡିଭିଜନ୍ ରାଜବନ୍ଦୀ ମାନଙ୍କର ୱାର୍ଡ଼କୁ ଯାଇଁ ଏଇ କଥା ଗପ କରି ଆସିଛନ୍ତି।

ବାବାତ ସେଇ ୱାର୍ଡ଼ରେ ଅଛନ୍ତି; ତାଙ୍କ କାନରେ କଥାଟା ନିଶ୍ଚୟ ପଡ଼ିବ। ବାବା ନିର୍ବିକାର ଲୋକ, ବାହାରୁ ଦେଖି ମନର ଭାବ ବୁଝିବାର ଉପାୟ ନାହିଁ। ଏକାନ୍ତରେ ବସି ଚରଖା କାଟୁଚନ୍ତି; ଆଖିକୋଣର ଦୁଇବିନ୍ଦୁ ଲୁହରେ ସୂତା ଅସ୍ପଷ୍ଟ ହୋଇଗଲା। ନାଁ—ବାବାଙ୍କ ପାଖରୁ ଏତେଟା ବ୍ୟାକୁଳତା ଆଶା କରେ ନାଇଁ। ହୁଏତ ଟିକିଏ ଅନ୍ୟମନସ୍କ ହୋଇଯିବେ, ଚରଖାକଟାର କନ୍ଟ୍ରୁଯତା ହୁଏତ କିଛିକ୍ଷଣ ପାଇଁ କମି ଯାଇପାରେ—ସୂତା ହୁଏତ ଥରେ ଦୁଇଥର ପାଇଁ ଛିଣ୍ଡି ଯାଇ ପାରେ। ନିଜ ମନରେ ଯେପରି ସନ୍ଦେହ ହେଉଛି, ଆଶଙ୍କା ହେଉଛି, ଯେପରି ଆଶା କରିଥିଲି, ଜେଲ୍ ଷ୍ଟାଫ୍‌ଙ୍କ ମନରେ ସେପରି ଭାବ ଉଦ୍ରେକ କରି ପାରି ନାହିଁ। ଦୃଢ଼ କଣ୍ଠରେ କହି ପାରି ନାହିଁ—ଆଖି ନୁଆଇଁ ନେଇଛି। ସେମାନେ ହୁଏତ ଭାବିଲେ ମୋର ମନ ସରଳ ନୁହେଁ। ମୋର ହାବଭାବ ଯେପରି ସରକାର ବିରୁଦ୍ଧରେ ଅଭିମାନ ଦେଖାଇବା ଭଳି। ଦିନରାତି ସେମାନେ, ଚୋର, ଡକାୟତ, ଖୁଣୀ ନେଇ କାରବାର କରନ୍ତି। ଏହା ଫଳରେ ଏମାନଙ୍କ ମନର ଭାବପ୍ରବଣତା ଓ ଅନେକ ଗୁଡ଼ିଏ କୋମଳ ପ୍ରବୃତ୍ତି ଶୁଖିଯାଇଛି। ରାଜବନ୍ଦୀ ମାନଙ୍କୁ ସେମାନେ ଅନ୍ୟାନ୍ୟ ଚୋର ଡକାୟତ ଠାରୁ ପୃଥକ ବୋଲି ଭାବନ୍ତି ନାହିଁ। ବ୍ୟବହାରରେ ଯାହା କିଛି ପାର୍ଥକ୍ୟ, ତାହା କେବଳ ଗଣ୍ଡଗୋଳ ଭୟରେ, ନୋହିଲେ ସ୍ୱାର୍ଥର ଖାତିର୍‌ରେ। ଯେଉଁ ଡାକ୍ତର ଡିଭିଜନ୍ ଥ୍ରୀର ରାଜବନ୍ଦୀ ମାନଙ୍କୁ ବେମାର ହେଲେ ଗାଳି ଦିଅନ୍ତି, ''ଆମାଶୟ ହୋଇଚି, ଔଷଧ ଦିଅ'' କହିଲେ ଇ କହନ୍ତି ''But don't expect Dahi'' ଅର୍ଥାତ୍ ଦହି ଖାଇବା ଆଶାରେ ଚେଷ୍ଟା କରି, ଯଦି ବେରାମ୍ ହୋଇଥାନ୍ତି, ତାହେଲେ ନିରାଶ ହେବେ; ସେଇ ଡାକ୍ତର ଉଚ୍ଚଶ୍ରେଣୀର ରାଜବନ୍ଦୀ ମାନଙ୍କ ପାଖରେ ଯେପରି ମାଟିର ମଣିଷ। ଏଇତ ଦୁଇ ବର୍ଷ ପୂର୍ବେ, ବ୍ୟକ୍ତିଗତ ସତ୍ୟାଗ୍ରହ' ସମୟରେ ଏଇ ଜେଲ୍ ଷ୍ଟାଫ୍‌କୁ କଂଗ୍ରେସ ନେତା ମାନଙ୍କ ଚାରିପଟେ ଘୁରାଘୁରି କରିବା ଓ କାର୍ଯ୍ୟ ଅକାର୍ଯ୍ୟରେ ଖୋସାମତ୍ କରିବା ଦେଖିଛି। ସେତେବେଳେ ସେମାନେ ଭାବୁଥିଲେ, କଂଗ୍ରେସ ବିହାରରେ ପୁଣି ମନ୍ତ୍ରୀମଣ୍ଡଳ ଗଠନ କରିପାରେ। ଆଉ ଆଜି...

ଏଇ ଜେଲ୍ କର୍ମଚାରୀ ମାନଙ୍କୁ କଣ ସେଦିନ ମୋର କଥା ଆଉ ଆଚରଣ ଦ୍ୱାରା ପ୍ରଭାବିତ କରି ପାରିଛି? ଏହା ଅପେକ୍ଷା ଯଦି ନାଟକୀୟ ଭଙ୍ଗିରେ ଜୋର୍ ଗଳାରେ କହି ପାରିଥାନ୍ତି—''ଜୋତା ମାରି ଗୋରୁ ଦାନ? ତୁମ ମାନଙ୍କ ଠାରୁ ମୁଁ ଦୟା ଚାହୁଁ ନାହିଁ'', କିମ୍ବା ଏଇ ଧରଣର ଅନ୍ୟ କିଛି, ତାହେଲେ ଏମାନେ ବେଶୀ ପ୍ରଭାବିତ ହୋଇଥାନ୍ତେ। ମନେ ପଡୁଛି—ଦୁଇ ନମ୍ବର ୱାର୍ଡ଼ରେ ଅକ୍ଟୋବର ମାସରେ ଲାଠି ଚାର୍ଜ୍ ପରେ, ମୁଣ୍ଡଫଟା ଅବସ୍ଥାରେ ଶୁକ୍ଳ ଦେଓର ବକ୍ତୃତା—ଶୋଇ ଶୋଇ—ଏକଟଣା ସୁରରେ—ଥିଏଟରରେ ମରିବା ସିନ୍ ପରି—''ତୁମ୍ ଲୋଗୌଁକୋ ସରମ୍ ନେହିଁ ଆତା''* ବୋଲି ଆରମ୍ଭ। ଏବେ ବି ସ୍ପଷ୍ଟ କାନରେ ଭାସି ଉଠୁଛି। ମୁଁ ସ୍କୁଲ୍‌ରେ ଥରେ ପ୍ରାଇଜ୍ ଡିଷ୍ଟ୍ରିବ୍ୟୁସନ୍ ବେଳେ, ''ମେଘନାଦ ବଧ'' ଆବୃତ୍ତି କରିଥିଲି। କାଳୀବାବୁ ଆସିଷ୍ଟାଣ୍ଟ ହେଡ଼ମାଷ୍ଟର ଶିଖାଉଥିଲେ—'ଏ ପର୍ଯ୍ୟନ୍ତ ଶୋଇ ରହି, କହୁଣୀ ଉପରେ ଭରା ରଖି କହିବ, ତାପରେ ଏକାଥରେ ଶୋଇ ପଡ଼ି

* ତୁମ ମାନଙ୍କୁ ଲଜ୍ଜା ଲାଗୁ ନାଇଁ?

ଟାଣି ଟାଣି, ଆସ୍ତେ ଆସ୍ତେ କହିବ''—''କେବା ଏ କଳଙ୍କ ତୋର ଭୁଂଜିବ ଜଗତେ କଳଙ୍କି''! ...ଶୁକ୍ ଦେଓର ବକ୍ତୃତା ପାରିପାର୍ଶ୍ୱିକ ଅବସ୍ଥା ସହିତ ଆଦୌ ଖାପ୍ ଖାଇ ନଥିଲା। କିନ୍ତୁ ଲକ୍ଷ୍ୟ କରିଥିଲି ଯେ, ଏହାର ଅସାମଞ୍ଜସ୍ୟ ଅଳ୍ପ ଲୋକଙ୍କ ଆଖିରେ ଧରା ପଡ଼ିଥିଲା।

''ବାବୁ ବିଜେ ଭୈଲ ବା ?'' (ବାବୁ ଖିଆ ସରିଲାଣି ?) ଚିନ୍ତାର ସୂତ୍ର ଛିଣ୍ଡିଗଲା। ଦେଖିଲି ଓ୍ୱାର୍ଡ଼ର୍ ସାହେବ ସାମ୍ନାରେ। କଥାର ସ୍ୱରରେ ଟିକିଏ ଯେପରି ସହାନୁଭୂତିର ସ୍ପର୍ଶ। ବହୁ ବେଳୁ ବାହାରେ ଆଲୁଅ ଦେଇଗଲାଣି। ଏତେ ବେଳ ଯାଏ ତାହା ଲକ୍ଷ୍ୟ କରି ନଥିଲି। ସେଲ୍ ଭିତରେ ଆଲୁଅଟା ଦେଲେ ଏମାନଙ୍କର କି କ୍ଷତି ହୁଅନ୍ତା, ବୁଝି ପାରେ ନାହିଁ। କିରୋସିନ୍ ବୋଳି ହୋଇ ଆତ୍ମହତ୍ୟା କରିବାଟା, ଖୁବ୍ ଆରାମଦାୟକ ବ୍ୟାପାର ନୁହେଁ। ତଥାପି ଏମାନଙ୍କର ସାହସ ହୁଏ ନାହିଁ। ହୋଇ କି ପାରେ, ଏମାନଙ୍କର ପ୍ରତ୍ୟେକ ନିୟମ ଅନେକ ଅଭିଜ୍ଞତାପ୍ରସୂତ। କେବଳ ଏଇପରି ଗୋଟିଏ ଆପାତତୁଚ୍ଛ ନିୟମ ପାଇଁ, ଗତ ବର୍ଷର ଜେଲ୍—ମ୍ୟୁଟିନୀ ସଫଳ ହୋଇ ପାରି ନଥିଲା। ଗେଟ୍ ଓ୍ୱାର୍ଡ଼ର୍‌କୁ କୟଦୀମାନେ ଚାବିଗୋଛା ହସ୍ତଗତ କରିଥିଲେ। କିନ୍ତୁ ବିରାଟ ରିଙ୍ଗ୍‌ରେ ଥିଲା ଦୁଇ ଶତାଧିକ ଚାବି। ତା ଭିତରେ ଅଧିକାଂଶ ଥିଲା ଅଦରକାରୀ। ଜେଲ୍‌ର ନିୟମ ଏଇପରି, ବହୁ ସଂଖ୍ୟକ ବାଜେ ଚାବି ରିଙ୍ଗ୍‌ରେ ରଖିବାକୁ ହେବ। ଜେଲ୍—ବିଦ୍ରୋହୀମାନେ ଚାବିଗୋଛା ହାତରେ ପାଇ ସୁଦ୍ଧା, କେଉଁ ଚାବି ତାଲାରେ ଲାଗିବ, ତାହା ଠିକ୍ କରି ପାରିଲେ ନାହିଁ। ଚେଷ୍ଟା କରୁ କରୁ ପାଞ୍ଚ ମିନିଟ୍ ସମୟ ବିତିଗଲା। ଇତି ମଧ୍ୟରେ 'ପାଗ୍‌ଲୀ' (ଆଲାର୍ମ୍) ବାଜିଲା—ବନ୍ଧୁକ, ସିପାହୀ, ଫୌଜ ପହଞ୍ଚିଗଲେ। ତାପରେ...

ସିପାହୀଜୀଙ୍କର ପ୍ରଶ୍ନର ଜବାବ ନ ଦେଇ ପଚାରିଲି...'' ବର୍ତ୍ତମାନ କେତେଟା ବାଜିଛି ?''

ସିପାହୀଜୀ ଉତ୍ତର ଦେଲେ, ''ଦଫା ବଦ୍‌ଲିର ଟୈମ୍ ହେଲାଣି। —ଅର୍ଥାତ୍ ଏମାନଙ୍କ ସ୍ଥାନରେ ରାତିରେ ଡିଉଟୀ ଦେବା ପାଇଁ ଓ୍ୱାର୍ଡ଼ର୍ ଦଳ ଆସିଗଲେଣି। ଗୁମ୍‌ଟିରେ (Central Tower) ବର୍ତ୍ତମାନ କେଉଁ ଓ୍ୱାର୍ଡ଼ରେ କେତେ କୟଦୀ ବନ୍ଦୀ ହେଲେ, ଆଜି ନୂଆ କୟଦୀଙ୍କ ''ଆମଦାନୀ'' କେତେ, କେତେ 'ଖର୍ଚ୍ଚା' ଅର୍ଥାତ୍ ଛାଡ଼ ପାଇଲେ, ତାପରେ ଗାୟ ମୋଟ ମିଳିଲା କି ନାହିଁ, ତାର ହିସାବ ହେଉଛି। ସିପାହୀଜୀ ସେ ପର୍ଯ୍ୟନ୍ତ ତାଙ୍କ ପ୍ରଶ୍ନଟି ପଚାରି ନାହାନ୍ତି। ପୁଣି ଥରେ ସେ ପଚାରିଲେ ''ଭୋଜନ୍ ନହିଁ କିୟେ ?''

ସେ ଲକ୍ଷ୍ୟ କରିଛନ୍ତି, ମୁଁ ଭାତ ଖାଇନାହିଁ। କହିଲି—''ନାଁ, ଭୋକ କରୁନାହିଁ।''

ସେ କହିଲେ, ''ଦହି ହେଁ। ଥୋଡ଼ା ଭୋଜନ୍ କର୍ ଲିୟା ଯାୟ।'' ସପ୍ତାହରେ ଦିନେ କରି, ତଳ ଶ୍ରେଣୀର ରାଜବନ୍ଦୀମାନେ ଦହି ଖାଇବାକୁ ପାନ୍ତି—ପିତ୍ତଳ ଥାଳି ଉପରେ ପତଳା ଘୋଳ ଦହି—ସେଥିରେ ପୁଣି ଟିକିଏ ପୋଡ଼ା ପୋଡ଼ା ଗନ୍ଧ—କଂଗ୍ରେସ ମିନିଷ୍ଟ୍ରିର ପ୍ରବର୍ତ୍ତିତ ନିୟମ—ତୃତୀୟ ଶ୍ରେଣୀ ରାଜବନ୍ଦୀ ମାନଙ୍କର ନିତ୍ୟ ଉପହାସର ବସ୍ତୁ। ଆକ୍ଷେପଟା କଂଗ୍ରେସର ବଡ଼ କର୍ତ୍ତା ମାନଙ୍କ ପ୍ରତି—ସବୁ ରାଜବନ୍ଦୀ ମାନଙ୍କ ପାଇଁ— ସେମାନେ କାହିଁକି ଗୋଟିଏ ଶ୍ରେଣୀ କରୁ ନାହାନ୍ତି ? ରାଜବନ୍ଦୀ ମାନଙ୍କ ମଧ୍ୟରେ ଉପର ଶ୍ରେଣୀ ତଳ ଶ୍ରେଣୀ ରଖିବାର ଅର୍ଥ କଣ ? ଉପରଶ୍ରେଣୀର ଦଶଅଣା 'ଖୋରାକି' ଓ ତଳ ଶ୍ରେଣୀର ସାଢ଼େ ତିନିଅଣା—ଏହାର ମଝାମଝି ଗୋଟିଏ ଶ୍ରେଣୀ, କେବଳ ରାଜନୈତିକ ବନ୍ଦୀମାନଙ୍କୁ ନିଜ ପଇସା ଖର୍ଚ୍ଚ କରିବା ପାଇଁ ଅଧିକାର ଦେଲେ କି କ୍ଷତିଟା ବା ହୁଅନ୍ତା ? ବାହାରୁ ସେମାନଙ୍କ

ପାଇଁ ଖାଦ୍ୟ ପଦାର୍ଥ ବା ଅନ୍ୟ କୌଣସି ଜିନିଷ ଆସିଲେ, ତାହା ନେବା ପାଇଁ ଅନୁମତି ଦେଲେ, ବଡ଼ କର୍ତ୍ତା ମାନଙ୍କର କେଉଁ ପାଚ଼ିଲା ଧାନକ୍ଷେତ ଉଜୁଡ଼ି ଯା'ନ୍ତା ? ମାସକୁ ଦୁଇଖଣ୍ଡ କରି ଚିଠି ଲେଖିବା ପାଇଁ ଦେଲେ, କେଉଁ ମହାଭାରତ ଅଶୁଦ୍ଧ ହୋଇଯା'ନ୍ତା ? ନିଜ ପଇସାରେ ବିଡ଼ି, ସିଗାରେଟ ଖାଇବାର ଅଧିକାର ଦେଲେ, ସେମାନଙ୍କର କି କ୍ଷତି ହୁଅନ୍ତା ? ଆଉରି କେତେ କଣ ଅଭିଯୋଗ ।

ଉଚ୍ଚ ଗୁମ୍‌ଟି ଉପରୁ ସୁର୍ ଧରି ଜଳଦ–ମନ୍ଦ୍ର ସ୍ୱରରେ ରାଗିଣୀ ଉଠିଲା – "ବୋଲୋରେ ଏକ ନମ୍ବର୍ ! –ବୋଲୋରେ ଦୁଇ ନମ୍ବର – ବୋଲୋରେ ତି – ଇ – ଇନ୍ ନମ୍ବର – ବୋଲୋରେ ଚା – ଆ – ରି ନମ୍ବର୍ । ବୋଲୋରେ ଏ – ଏ – ଏ ପାଞ୍ଚ ନମ୍ବର୍ । ବୋଲୋରେ – ଏ ଛେ – ଏ ନମ୍ବ–ଅ–ଅ–ର୍ । ବୋଲୋରେ – ଏ ନୟାଗୋଲ୍ । ବୋଲୋରେ ଔରତ୍ କିମ – ଆ – ଆ ।"

ସବୁ ୱାର୍ଡ଼ରୁ ଜବାବ ମିଳିଲା ନାହିଁ – ବୋଧହୁଏ ମୋ ସେଲ୍ ପର୍ଯ୍ୟନ୍ତ ସେ ଶବ୍ଦ ପହଞ୍ଚି ପାରିଲା ନାହିଁ । ଗୁମ୍‌ଟି ଉପରେ ସିପାହିଟି ମଧ୍ୟ ସବୁ ୱାର୍ଡ଼ରୁ ଯେପରି ଉତ୍ତରର ପ୍ରତ୍ୟାଶା ରଖେ ନାହିଁ । ତାର କାର୍ଯ୍ୟ ଯନ୍ତ୍ର ପରି, କଳଗାଉଣା ପରି ଥରେ ଚିତ୍କାର କରିଯିବା । ପ୍ରତ୍ୟେକ ୱାର୍ଡ଼ରୁ ଉତ୍ତର ମିଳିବା ଉଚିତ୍ କେତେ କୟଦୀ, ପ୍ରତି ୱାର୍ଡ଼ରେ ବନ୍ଦୀ ଅଛନ୍ତି ! ଏହାର 'ଟୋଟାଲ୍' ପୂର୍ବରୁ ଗୁମୁଟିର ତଳ ମହଲାରେ ଜେଲ୍ କର୍ମଚାରୀମାନେ କରି ରଖିଛନ୍ତି – ଚିତ୍କାରଟା କେବଳ ଗୋଟାଏ ବିଧିରକ୍ଷା ମାତ୍ର । ସବୁ ୱାର୍ଡ଼ର 'ମେଟ୍' ବା 'ପହରା' ଏ କଥା ଜାଣନ୍ତି । ସେଥିପାଇଁ ଏହାର ଉତ୍ତର ଦେଇ ବୃଥା ପରିଶ୍ରମ କରିବା ପାଇଁ ସେମାନେ ରାଜି ନୁହନ୍ତି । ଢଂ ଢଂ କରି ଘଣ୍ଟା ବାଜିଲା । ନ'ଟା ବାଜିଗଲାଣି । କାଲିର 'ଗିନ୍‌ତୀ ମିଲାନ୍' ଆଉ ଶୁଣିବାକୁ ହେବ ନାହିଁ...ଗୁମ୍‌ଟି ଉପରେ ଆଲୁଅଟା ନିଶ୍ଚୟ ପାଞ୍ଚଶହ କାଣ୍ଡଲ୍ ପାୱାର୍‌ର । ବ୍ଲାକ୍–ଆଉଟ୍ ପାଇଁ ତା ଉପରେ କଳା ଢାଙ୍କୁଣୀ । କିନ୍ତୁ ଠିକ୍ ତା ତଳକୁ ବାଉଁଶ ଚଟାଇରେ ବୁଣା ଗୋଟାଏ ପ୍ରକାଣ୍ଡ ଛତା–ୱାର୍ଡ଼ରକୁ ଖରା ଓ ବର୍ଷାରୁ ବଞ୍ଚାଇବା ପାଇଁ । ବ୍ଲାକ୍ – ଆଉଟ୍ ପାଇଁ ଗୁମଟୀରେ କଳାରଙ୍ଗ ବୋଳା ଯାଇଛି । କିନ୍ତୁ ଏଇ ଛତା ଉପରେ ଆଲୁଅ ପଡ଼ି ଏତେ ଆଲୁଅ ଚାରିଆଡ଼େ ପ୍ରତିଫଳିତ ହୋଇଛି ଯେ, ବେଶୀ ବେଳ ଏହା ଆଡ଼େ ଚାହିଁ ହୁଏ ନାହିଁ । ଛତାଟି ବ୍ଲାକ୍ – ଆଉଟ୍‌ର ସବୁ ପ୍ରଚେଷ୍ଟା ବ୍ୟର୍ଥ କରି ଦେଇଛି । ...ଗୁମୁଟି ଓ ତା ଉପରର ଛତାଟି ଦେଖିଲେ, କାଶୀର ଅହଲ୍ୟାବାଈ ଘାଟ କଥା ମନେ ପଡ଼େ । ଘାଟର ସେଇ ଗମ୍ବୁଜ ଉପରେ ଜମୁଥିଲା ଆମର ପ୍ରାତ୍ୟହିକ ସାନ୍ଧ୍ୟ ଆଡ୍‌ଡ଼ା । ...ସିନ୍‌ହେଶ୍ୱର ଶୁକ୍ଳୁଲ୍ ଦିନେ ତା ଉପରୁ ପାନ ପିକ ତଳକୁ ପକାଇଥିଲା – ସେଇ ଘଟଣା ଘେନି କି ହୁଲସ୍ଥୁଳ କାଣ୍ଡ ! ସିନ୍‌ହେଶ୍ୱରର ଅଦ୍ଭୁତ ସାହସ । ଦେଖିଚ଼ି ମରିବା ପାଇଁ ତାର ତିଳେ ମାତ୍ର ଭୟ ନାହିଁ । ଫାଶୀ ଯିବା କଥାକୁ ସେ ଏପରି ତାଛଲ୍ୟ ସହିତ କୁହେ ଯେ, ଶୁଣିଲେ ମୋର ଈର୍ଷା ହୁଏ । ବୁଝି ପାରିଥିଲି ସେ ମୋତେ ତାଙ୍କ ଦଳର ସଦସ୍ୟ କରିବାକୁ ଚାହେଁ, କିନ୍ତୁ ତାର ଇଚ୍ଛା ପୂର୍ଣ କରି ପାରି ନାହିଁ । ଅନ୍ତର ଭିତରେ ଯେତେବେଳେ ଖୋଜି ଦେଖେ, ସେତେବେଳେ ଗୋଟାଏ ଗୋଟାଏ ସମୟରେ ମନେ ହୁଏ ଯେ, ମୋର ସାହସର ଅଭାବ ପାଇଁ, ବୋଧହୁଏ ତାର ମନୋବାଞ୍ଛା ପୂର୍ଣ କରି ପାରି ନାହିଁ – ସେମାନଙ୍କର କାର୍ଯ୍ୟକ୍ରମ ମୋର ପସନ୍ଦ ହୋଇନାହିଁ ବୋଲି ନୁହେଁ, କିନ୍ତୁ ଆଜି ସେ ଭୟ ଗଲା କୁଆଡ଼େ ? ଶୁଣିଛି, ବୟସ ବଢ଼ିବା ସଙ୍ଗେ ସଙ୍ଗେ ମଣିଷର ମୃତ୍ୟୁଭୟ ବଢ଼େ । ମୋ ବେଳକୁ ଏ ନିୟମର ବ୍ୟତିକ୍ରମ ହେଲା ନାଁ କଣ ? ସିନ୍‌ହେଶ୍ୱର ସହିତ ଦେଖା ହେଲେ ବର୍ତ୍ତମାନ କେତେ କଥା

ପଡ଼ନ୍ତା । ଅନେକ ଦିନ ପରେ ତା ସହିତ ରାମଗଡ଼ କଂଗ୍ରେସ ବେଳେ ହଠାତ ଦିନେ ଦେଖା ହୋଇଗଲା । କଂଗ୍ରେସର ମିନିଷ୍ଟ୍ରି ବେଳେ ସେ ବେରିଲୀ ଜେଲ୍‌ରୁ ଖଲାସ ହୋଇଥିଲା । ମେଲ୍ ଡକାୟତିରେ ସେ ସଜା ପାଇଥିଲା । —ଲକ୍ଷ୍ନୌ ପାଖରେ ସେ ଜାଗାଟିର ନାଁ ମନେ ପଡୁନାହିଁ, ପିପ୍ରାହା ନାଁ ସେଇପରି କଣ....

ନୂଆ ସିପାହି କେତେବେଳେ ଆସିଛି, ଜାଣି ପାରି ନାହିଁ। ସେ ପଚାରିବାରୁ ତନ୍ମୟତା ଭାଙ୍ଗିଲା... ''ବାବୁ ଖଣ୍ଡେ ବିଡ଼ି ଟାଣିବେ ?''

ଆଜି ଓ୍ୱାର୍ଡ଼ରମାନେ ସୁଦ୍ଧା ମୋ ସହିତ ଅନ୍ତରଙ୍ଗ ହେବା ପାଇଁ ବ୍ୟାକୁଳ – ଯଦି ମୋର କୌଣସି ଉପକାର କରି ପାରନ୍ତି – ମୋତେ ଯଦି ଟିକିଏ ଖୁସୀ କରି ପାରନ୍ତି । ଏ ସହାନୁଭୂତି ସ୍ୱତଃସ୍ଫୂର୍ତ୍ତ – ଏଥିରେ କୃତ୍ରିମତା ନାହିଁ। ତା'ର ସହାନୁଭୂତିର ଦାନ ପ୍ରତ୍ୟାଖ୍ୟାନ କରିବାରୁ ସେ ବୋଧହୁଏ ମନ କ୍ଷୁର୍ଣ୍ଣ କଲା। କିନ୍ତୁ– କିନ୍ତୁ କରି ସେ ତାର ଡିଉଟୀ ଶେଷ କରି ନେଲା । ତାଲାଟାକୁ ଥରେ ହଲାଇ ଖଟାଙ୍ଗ୍ କରି ଗୋଟାଏ ଶବ୍ଦ କଲା । ତାପରେ ଧଡ଼୍‌ଧଡ଼୍ କରି ଗାରଦର ଦରଜାଟାକୁ ହଲାଇ ଦେଲା । ଏ କାର୍ଯ୍ୟଟି ତାର ଆଗେ କରିବା ଉଚିତ୍ ଥିଲା – ପୂର୍ବ ଓ୍ୱାର୍ଡ଼ର ଥିବା ବେଳେ। ଉଦ୍ଦେଶ୍ୟ ହେଉଛି, ଦରଜା ଠିକ୍ ବନ୍ଦ ଅଛି କି ନାହିଁ, ଆଉ ଛିଟ୍‌କିଣି ଠିକ୍ ପଡ଼ିଛି କି ନାହିଁ ଦେଖିବା। ପୂର୍ବ ଡିଉଟୀର ଓ୍ୱାର୍ଡ଼ର୍ ମାନଙ୍କ ସହିତ ସଲାସୁତରା ହୋଇ କୟଦୀ ତାଲାଟା ଝୁଲାଇ ରଖି ପାରିଥାଏ। ଅଥଚ୍ କୟଦୀ ଚମ୍ପଟ୍ ଦେଲେ ପୂର୍ବ ଓ୍ୱାର୍ଡ଼ର୍‌ର କୌଣସି ଦାୟିତ୍ୱ ନାହିଁ। କାହିଁକି ନାଁ, ସେ ତାର ପରବର୍ତ୍ତୀ ଓ୍ୱାର୍ଡ଼ରକୁ ଚାର୍ଜ ବୁଝାଇ ଦେଇ ଯାଉଚି। ଏଇଥିପାଇଁ ଏତେ ସତର୍କତା, ଏଇ ବ୍ୟବସ୍ଥା। କିନ୍ତୁ ପୂର୍ବ ଓ୍ୱାର୍ଡ଼ର ଚାଲି ଗଲାଣି। ଘର ମୁହାଁ ଗୋରୁ – ଏଇ ସମୟ ଟିକକ ପାଇଁ ତର ସହେ ନାହିଁ। ଦିନରେ ଲମ୍ବା ଏକ୍‌ଟଣା ଆଠଘଣ୍ଟା ଡିଉଟୀ ଦେଇଛି – ଦୋଷ ବା କଣ ?

ସିପାହିର ମନ କ୍ଷୁର୍ଣ୍ଣ ହୋଇଛି, ଭାବି, କହିଲି ''ସେ ଆଡ଼ର 'ଡିଗିରୀ' (cell) ଗୁଡ଼ାର କାମ ଶେଷ କରି ଆସିଲ ନାଁ କଣ ?''

ଉତ୍ତର ଦେଲା– ହଁ । ଦଶ ନମ୍ବର, ନଅ ନମ୍ବର, ସାତ ନମ୍ବର, ତିନି ନମ୍ବର, ଆଉ ଏକ ନମ୍ବର୍, ଏଇ ପାଞ୍ଚ ଡିଗ୍ରୀରେ ଆସାମୀ ଅଛନ୍ତି। ଆଜି ଦଶ ନମ୍ବର ଆଡୁ ଆରମ୍ଭ କରିଛି। ଓ୍ୱାର୍ଡ଼ର ସିପାହି ତ କୁଆଡ଼େ ବାହାରେ ବସି ଗପ ମାରୁଚି। ମୁଁ ଆଉ ତିନି ନମ୍ବର ସେଲ୍‌ର ସିପାହୀ ଉପରେ 'ଗିନ୍‌ତି'ର ଦାୟିତ୍ୱ ପଡ଼ିଛି।

'କନ୍‌ଡେମ୍‌ଡ଼୍' ସେଲ୍‌ସ୍‌ରେ ପାଞ୍ଚଜଣ କୟଦୀ। ଜେଲ୍ ପରିଭାଷାରେ ଏଇ ଓ୍ୱାର୍ଡ଼ର ନାଁ ଫାଶୀ – ସେଲ୍। Condemned cell ଶୁଣିଲେଇ ମୋର ମନେ ହୁଏ ଯେପରି ଇଞ୍ଜିନିୟରିଙ୍ଗ୍ ବିଭାଗ ଏଇ ସେଲ୍ ଗୁଡ଼ିକୁ condemned ଘୋଷଣା କରିଛନ୍ତି – ଏହା କିନ୍ତୁ condemned prisoner ମାନଙ୍କ ପାଇଁ ଉଦ୍ଦିଷ୍ଟ – ସେଇଥିରୁ ଯେ ଓ୍ୱାର୍ଡ଼ର ଏଇ ନାମ, ସେ କଥାଟା ପ୍ରଥମେ ମନକୁ ଆସେ ନାହିଁ। ନଅ ଓ ଦଶ ନମ୍ବର ସେଲ୍‌ରେ ଥାନ୍ତି, ଦୁଇଜଣ ବୋମା ମାମ୍‌ଲାର ଆସାମୀ – ଅଣ୍ଡରଟ୍ରାୟାଲ୍। ସେମାନଙ୍କୁ ଏ ସେଲ୍‌ରେ କାହିଁକି ରଖିଛନ୍ତି, ଜାଣେ ନାଁ। ଫାଶୀ–ସେଲ୍‌ର କୋଡ଼ିଏଟି ସେଲ୍ ବ୍ୟତୀତ ଏଇ ଜେଲ୍‌ରେ ଆଉରି ଚାଳିଶି ପଚାଶଟି ସେଲ୍ ଅଛି। ତଥାପି ଏମାନଙ୍କୁ ଏଠାରେ କାହିଁକି ରଖାଯାଇଛି, କହିବା କଠିନ। ହୁଏତ ପୋଲିସ ହୁକୁମ ସେଇପରି। ପୋଲିସ ବୋଧହୁଏ ଏମାନଙ୍କ ଠାରୁ ସ୍ୱୀକାରୋକ୍ତି ଯୋଗାଡ଼ ପାଇଁ ଚେଷ୍ଟା କରୁଛି। ସେଥିପାଇଁ ଅନ୍ୟ ରାଜବନ୍ଦୀ ମାନଙ୍କ ସହିତ

ମିଳାମିଶା କରିବାକୁ ଦେବା ପାଇଁ ରାଜି ନୁହନ୍ତି। ସାତ ନମ୍ବର ସେଲ୍‌ରେ ଥାଏ ଜଣେ ପାଗଳ। ସେ ମନକୁ ମନ ବାଜେ କଥା ସବୁ ଗପୁଥାଏ। ୱାର୍ଡ଼ର ମାନଙ୍କୁ ଦେଖିଲେ ଅଶ୍ରାବ୍ୟ ଭାଷାରେ ଗାଳିଗୁଲଜ କରେ। ନଅ ଓ ଦଶ ନମ୍ବର ସେଲ୍‌ର ଦରଜା ଦିନସାରା ଖୋଲା ରହେ। ଦିନେ ଦିନେ ଖରାବେଳେ ସେମାନେ ମୋ ସେଲ୍‌ର ସ୍ପେଶାଲ ୱାର୍ଡ଼ରକୁ ବିଡ଼ି, ଚିନି ପ୍ରଭୃତି ଲାଞ୍ଚ ଦେଇ ମୋ ସହିତ ପଦେ ଅଧେ କଥାବାର୍ତ୍ତା ହୋଇଯାନ୍ତି। ସନ୍ଧ୍ୟାରେ ସେମାନଙ୍କ ଦରଜା ବନ୍ଦ ହେବା ପରେ ସେମାନେ ନିଜ ନିଜ ସେଲ୍‌ରୁ ପାଗଳକୁ ବିରକ୍ତ କରାନ୍ତି। ତା ନାଁ ଧରି ଡାକିବା ମାତ୍ରେ ସେ ଗାଳି ଗୁଲଜ ଆରମ୍ଭ କରିଦିଏ। ୱାର୍ଡ଼ରମାନେ କହନ୍ତି, ମିଛରେ ସେ ପାଗ୍‌ଲାମିର ଛଳନା କରେ। ଏପରି ଅନେକ ସେମାନେ ଦେଖିଛନ୍ତି। ''ସରକାର ଐସା ଗୁଡ଼ବକ୍ ନହିଁ ହୈ''* ... ରିହାଇ ପାଇବା ଏତେ ସହଜ ନୁହେଁ। ... ତିନି ନମ୍ବରରେ ଥାଏ ଜଣେ ଖୁନି ଆସାମୀ। ଭାଇକୁ ଖୁନ୍ କରିଚି। ସେ ଏକ ଅତି କୁତ୍ସିତ କାହାଣୀ। ତାର ପାରିବାରିକ ଜୀବନର କଦର୍ଯ୍ୟ ପଙ୍କିଳତାର କାହାଣୀ, ତାର ସ୍ତ୍ରୀ, ଜଜ୍‌ସାହେବଙ୍କ ଇଜ୍‌ଲାସ୍‌ରେ ସମସ୍ତଙ୍କ ଆଗରେ ଫିଟାଇ କହିଚି। ହାଇକୋର୍ଟରେ ଆପିଲ୍ ହୋଇଥିଲା, ଖାରଜ୍ ହୋଇଯାଇଚି। ଲୋକଟା ଦିନରାତି 'ସୀତାରାମ୍, ସୀତାରାମ୍'' ହୁଏ ଆଉ ଭଜନ ଗାଏ।

ୱାର୍ଡ଼ର ମୋତେ ଆସାମୀ କହିବା, ମୋର ପସନ୍ଦ ହେଲା ନାହିଁ। ମନେ ହେଲା, ଏହା ଅପେକ୍ଷା ଭଦ୍ରଭାଷା ବ୍ୟବହାର କରିବା ତାର ଉଚିତ୍ ଥିଲା। ପିଲା ଦିନର ଶିକ୍ଷା, ଦୀକ୍ଷା ଓ ସଂସ୍କାର ମୋ ମନରେ ଯେଉଁ ଛାପ ରଖିଯାଇଛି, ତାହାକୁ ପୁରାପୁରି ପୋଛି ଦେବା କଠିନ। ସତରେ ତ, ୱାର୍ଡ଼ର ଠିକ୍ କଥା କହୁଛି। ମୋତେ ଆସାମୀ ନ କହି ସେ ଆଉ କଣ କହିବ? ମୁଁ ତ ଆଜି ଜେଲ୍ ଭିତରେ ସମସ୍ତଙ୍କ ଅପେକ୍ଷା ବଡ଼ ଆସାମୀ। ଯାହାର ଶୀଘ୍ର ଫାଶୀ ହେବ, ତାକୁ ରଖାଯାଏ ଏକ ନମ୍ବର ସେଲ୍‌ରେ। ଏକ ନମ୍ବର ସେଲ୍ ପରେ ଗୋଟିଏ ଦରଜା। ଫାଶୀ ମଞ୍ଚ ଉପରକୁ ନିଆଯାଏ। ଅନ୍ୟ ସମୟରେ ଦରଜାଟା ବନ୍ଦ ରହିଥାଏ। ସେଇ ଚରମ ମୁହୂର୍ତ୍ତ ଦରଜାଟାକୁ ଥରେ ଦେଖିବାର ଇଚ୍ଛା ହେଉଛି। ତାର ତାଲାରେ କଣ କଳଙ୍କି ଲାଗିଛି? ମୁଁ ଆଉ ମୃତ୍ୟୁ ଭିତରେ ବ୍ୟବଧାନ କେବଳ ମାତ୍ର ଏଇ ଦରଜାଟି। ତଥାପି ''ଆସାମୀ'' କଥାଟା ମୋ ମନକୁ କୁତ୍ କୁତ୍ କଲା। ବୋମା ବାବୁ ମାନଙ୍କୁ ମଧ୍ୟ ସିପାହିଜୀ ଆସାମୀ କହେ; ତାହା କିନ୍ତୁ ମୋର ଶ୍ରୁତିକଟୁ ହୁଏ ନାହିଁ। ବୋଧହୁଏ ''ବୋମା ମାମ୍‌ଲାର ଆସାମୀ'' କଥାରେ ମୋ କାନ ଅଭ୍ୟସ୍ତ। ଏଇ କଥା ଗୁଡ଼ାକ ସହିତ ଦେଶସେବକ ମାନଙ୍କର ସ୍ୱଦେଶପ୍ରେମର ଅନେକ ସ୍ମୃତି ବିଜଡ଼ିତ—ଅନ୍ତତଃ ମୋ ମନରେ। କିନ୍ତୁ ଫାଶୀ ଆସାମୀ କଥାଟା ଶୁଣିଲେ ମାମୁଲି ଖୁନି ଡକାୟତଙ୍କ କଥା ମୋର ମନେ ପଡ଼ିଯାଏ। 'ଆସାମୀ' ଶବ୍ଦ ସହିତ ଏମାନଙ୍କ ଚିତ୍ର ମୋ ମନରେ ବଦ୍ଧମୂଳ ହୋଇ ରହିଛି। ମନେ ହେଲା, ଆସାମୀ ଶବ୍ଦ ବ୍ୟବହାର କରି, ସିପାହିଜୀ ଚୋର, ଡକାୟତଙ୍କ ସହିତ ମୋତେ ସମାନ କରିଦେଲା। ଏଇଥିପାଇଁ ବୋଧହୁଏ କଥାଟିରେ ମୋର ଅପସନ୍ଦ ଓ ଆପତ୍ତି। ମନରେ ଦୁଃଖ ହୁଏ—ଜଣେ ୱାର୍ଡ଼ରର ଦୃଷ୍ଟିରେ ସୁଦ୍ଧା ମୁଁ ପୂଜ୍ୟ ଦେଶସେବକ ନୁହେଁ। ମୁଁ ତାଠାରୁ ପ୍ରଶଂସା ଆଶା କରେ କଥାରେ ନ ହେଉ, ଅନ୍ତତଃ ବ୍ୟବହାରରେ—ମୋର ତ୍ୟାଗ ପାଇଁ। ଏମାନଙ୍କ ପାଇଁ

ମୁଁ ପ୍ରାଣବଳି ଦେଉଛି; ସେଥିପାଇଁ ଏମାନେ କୃତଜ୍ଞ ରହିବେ କ'ଣ ; ତା ପରିବର୍ତ୍ତେ ଜଣାଉଛନ୍ତି ସହାନୁଭୂତି – ଶହୀଦ୍ ପ୍ରତି ସହାନୁଭୂତି ନୁହେଁ, ଯେଉଁ ହତଭାଗ୍ୟ ମାତ୍ର ଆଉ କେତେ ଘଣ୍ଟା ଏଇ ଲୀଳାମୟୀ ଧରଣୀକୁ ଉପଭୋଗ କରି ପାରିବ, ତା ପ୍ରତି କରୁଣା...

ମାଉସୀଙ୍କ କଥା ମନେ ପଡ଼ିଲା। ନୈହାଟୀ ଷ୍ଟେସନ୍‌ରେ ମାଉସୀଙ୍କୁ ପଶ୍ଚିମର ଗାଡ଼ିରେ ଚଢ଼ାଇ ଦେବାକୁ ଯାଇଛି। ମାଉସୀଙ୍କ ମୁଣ୍ଡବାଳ ଛୋଟ, ପରିଧାନରେ ଗେରୁଆ ବସ୍ତ୍ର ଗଳାରେ ତୁଳସୀ ମାଳା। ନିଜର ସଂସାର ସହିତ ବିଶେଷ କୌଣସି ସମ୍ବନ୍ଧ ନାହିଁ। ମଠରେ ନୋହିଲେ ଆଶ୍ରମରେ ରହନ୍ତି। ନବଦ୍ୱୀପରୁ ଯାଉଛନ୍ତି ବୃନ୍ଦାବନ। ସାଙ୍ଗରେ ବିସ୍ତର ମାଲପତ୍ର – ସୁନାମୁଗର ବସ୍ତା, ଛେନାବରା ଟିଣ, ଆଉ ଖସା। ଗୁରୁଭାଇ ଭଉଣୀ ମାନଙ୍କ ପାଇଁ ଯାଉଛି। ଏଇ ମାଲପତ୍ର ସବୁ ଗାଡ଼ିରେ ଉଠାଇ ଦେବା ମୋ ଆସିବାର ଉଦ୍ଦେଶ୍ୟ। ମାଉସୀ ଗାଡ଼ିରେ ଚଢ଼ିଲେ। ସବୁ ମାଲପତ୍ର କୁଲିମୁଣ୍ଡରୁ ଓହ୍ଲାଇ ଗାଡ଼ିରେ ରଖିଲି। ମାଉସୀ ପଚାରିଲେ, ''ସବୁ ଜିନିଷ ଉଠିଲା ତ ?'' ମୁଁ ଏକ ଦୁଇ କରି ଗଣି କହିଲି,'' ହଁ, ମୋଟ ବାଇଶିଟି ମାଲ୍ ଉଠିଚି।'' ନିମିଷକ ମଧ୍ୟରେ ମାଉସୀଙ୍କ ଆଖି ଲୁହରେ ଛଳ ଛଳ ହୋଇ ଉଠିଲା। ମୁଁ ମଧ୍ୟ ବଡ଼ ଅପ୍ରସ୍ତୁତ ହୋଇ ପଡ଼ିଥିଲି। ପରେ ମାଉସୀ ତାହା ପରିଷ୍କାର କରି ଦେଇ କହିଲେ – ରେଶ୍‌ମୀ କନାରେ ଗୁଡ଼ା ହୋଇଥିବା ତାଙ୍କ ସ୍ୱର୍ଗୀୟ ଗୁରୁଦେବଙ୍କ ତୈଳଚିତ୍ରଟିକୁ ମୁଁ ''ମାଲ୍'' ମଧ୍ୟରେ ଗଣି ଦେଇଚି। ସେତେବେଳେ ମାଉସୀଙ୍କ ଏଇ ମନସ୍ତତ୍ୱ ମୋତେ ଅଦ୍‌ଭୁତ ଲାଗିଥିଲା – ଆଉ ଆଜି 'ଆସାମୀ' କଥାଟା ଶୁଣିବା ପରେ, ନିଜର ଚିନ୍ତାଧାରା ଲକ୍ଷ୍ୟ କରି ଆଶ୍ଚର୍ଯ୍ୟ ହୋଇ ଯାଉଛି। ...ଫାଶୀ ଆସାମୀକୁ ଆସାମୀ ନ କହିଲେ ଆଶ୍ଚର୍ଯ୍ୟ ହେବା କଥା।

ଫାଶୀମଞ୍ଚ କଥାଟାକୁ ଯେପରି ଅଗଣିତ ଶହୀଦ୍‌ଙ୍କ ସ୍ମୃତିର ସୁବାସ ଘେରି ରହିଛି। କିନ୍ତୁ ସେଇଆକୁ 'ଫାଶୀକାଠ' କୁହ, ପୁଣି ମନେ ପଡ଼ିବ ସେଇ ଆସାମୀଙ୍କ କଥା। ଆଉ ସବୁଠାରୁ ଆଶ୍ଚର୍ଯ୍ୟ ମନଶ୍ଚକ୍ଷୁରେ ଦେଖେ ଗୋଟାଏ ଲାସ୍ ଜିମ୍‌ନାଷ୍ଟିକ୍ ବାର୍ ଦେହରେ ଝୁଲୁଚି – ନିର୍ଜୀବ ପାଦ ଦୁଇଟା ଶୂନ୍ୟରେ ଦୋହଲୁଚି – ଧୀରେ ଧୀରେ ଏକଟଣା ଗତିରେ – ଉତ୍ତର, ଉତ୍ତରପୂର୍ବ, ପୂର୍ବ, ପୂର୍ବଦକ୍ଷିଣ, ଦକ୍ଷିଣ, ଦକ୍ଷିଣପଶ୍ଚିମ, ଦକ୍ଷିଣ, ପୂର୍ବ–ଦକ୍ଷିଣ, ପୂର୍ବ, ଉତ୍ତରପୂର୍ବ – କୌଣସି ଇଂରାଜୀ ନଭେଲ୍‌ରେ ପଢ଼ା ଗୋଟିଏ ଦୃଶ୍ୟ।

ଦଶ ନମ୍ବର ୱାର୍ଡ୍ ଆଡୁ ୱାର୍ଡ଼ର୍ ଡିଭଟୀ ଆରମ୍ଭ କରିଛି ବୋଲି କହିଲା। ତା ମାନେ ଆଜି ଏଗାରରୁ କୋଡ଼ିଏ ନମ୍ବର ସେଲ୍ ଖାଲି। ଯେଉଁ କୟଦୀମାନେ ଜେଲ୍‌ର ନିୟମ, ଶୃଙ୍ଖଳା ଭଙ୍ଗ କରନ୍ତି, ସେମାନଙ୍କୁ ଜେଲ୍ କର୍ତ୍ତୃପକ୍ଷ ସାଧାରଣତଃ ସେଲ୍‌ର ସଜା ଦେଇଥାନ୍ତି। ସେମାନେ ଏଇ ସେଲ୍ ଗୁଡ଼ିକରେ ରହନ୍ତି। ସେଲ୍‌ରେ କିଛିଦିନ ଏକୁଟିଆ ରହିବା ପାଇଁ ପଡ଼ିବ – ଏଇ ହେଉଚି ଶାସ୍ତି। ଦିନ କେଇଟା ଏକୁଟିଆ ରହିବା ଯେ କି ଶାସ୍ତି, ମୁଁ ବୁଝିପାରେ ନାହିଁ। ୱାର୍ଡ଼ର ହଟ୍ଟଗୋଳ ଭିତରୁ ମଝିରେ ମଝିରେ ଦିନ କେତେଟା ନିର୍ଜନବାସ ଖୁବ୍ ଖରାପ ଲାଗିବା କଥା ନୁହେଁ। ଏଇ ସେଲ୍ ଗୁଡ଼ିକ ମଧ୍ୟ ବହୁ ବ୍ୟବହୃତ। ଆଜି ସେଇ ସେଲ୍ ଘର ସବୁ ଖାଲି ହୋଇଗଲା କିପରି ? ଏମିତିତ କେବେ ହୁଏ ନାହିଁ। ବୋଧହୁଏ ଇଚ୍ଛା କରି ସେମାନଙ୍କୁ ସ୍ଥାନାନ୍ତରିତ କରାଯାଇଛି – ହୁଏତ ସୁପରିଟେଣ୍ଡେଣ୍ଟ ସେମାନଙ୍କ ଶାସ୍ତି ମାପ୍ କରି ଦେବାର ନିର୍ଦ୍ଦେଶ ଦେଇଛନ୍ତି। ସେ ବୋଧହୁଏ ଚାହାନ୍ତି, ଆଜି ଯେତେ କମ୍ ଲୋକ 'କଣ୍ଡେମଡ୍ ସେଲ୍‌ସ'ରେ ରହନ୍ତି ସେତେ ଭଲ। ହୁଏତ ଆଜି ଏଠାରେ ରହିଲେ

ସେମାନଙ୍କ ମନ ଉପରେ କିଛି ପ୍ରତିକ୍ରିୟା ହୋଇପାରେ। ସେଥିପାଇଁ ଯେଉଁମାନଙ୍କୁ ଏଠାରୁ ହଟାଇ ନେବା ସମ୍ଭବ, ସେମାନଙ୍କୁ ହଟାଇ ନିଆ ଯାଇଛି। କର୍ତ୍ତାଙ୍କ ଇଚ୍ଛା ଅନୁସାରେ କର୍ମ। ତେର ନମ୍ବରର କୁଷ୍ଠ କୟଦୀଟିକୁ କଣ ଜେନେରାଲ୍ ୱାର୍ଡ଼କୁ ମଧ୍ୟ ନିଆ ଯାଇଛି ? ଜଣେ ଜଣେ ସୁପରିଟେଣ୍ଡେଣ୍ଟଙ୍କର ଗୋଟିଏ ଗୋଟିଏ ଖିଆଲ୍। ମେଜର୍ ଫିଲ୍‌ପଟ୍‌ସ୍‌କୁ ଦେଖିଛି, ନାରୀ ଚିତ୍ର ସମ୍ବଳିତ କୌଣସି ପୁସ୍ତକ ସେ ଜେଲ୍ ଭିତରକୁ 'ପାସ୍' କରାନ୍ତି ନାହିଁ। ଶୁଣିଥିଲି, ସେ ମାନସିକ ବ୍ୟାଧିର ବିଶେଷଜ୍ଞ ଥିଲେ। ତାଙ୍କର ଧାରଣା, ନାରୀ ଦେହର ଚିତ୍ର ଯେଉଁମାନେ ଅନେକ ଦିନ ଧରି ଜେଲ୍‌ରେ ଅଛନ୍ତି, ସେମାନଙ୍କ ମନ ଉପରେ ନାନା ପ୍ରକାର ପ୍ରତିକ୍ରିୟା ଆଣିପାରେ। ସେଥର ହଜାରୀବାଗ୍ ଜେଲ୍‌ରେ ରାମ୍‌ଖେଲାଓନ୍ ବାବୁଙ୍କ ସହିତ କି ଝଗଡ଼ା ! ବିଚାରାର ଏତେ ସଉକ୍‌ର 'ରୟଲ୍ ଏକାଡ଼େମୀ'ର ସେଇ ବର୍ଷର ଛବି ବହିରୁ ଦଶ ପନ୍ଦରଟି ପୃଷ୍ଠା କଇଁଚିରେ ସଯତ୍ନରେ ବାଦ୍ ଦିଆ ଯାଇଥିବା ଅବସ୍ଥାରେ ସେ ପାଇଥିଲେ। ଛବି ଗୁଡ଼ିକ ପାଇଥିଲେ, ତାଙ୍କ ମନ ଉପରେ କି ପ୍ରତିକ୍ରିୟା ହୋଇଥାନ୍ତା, ତାହା ହୁଏତ ଆମେ ଦେଖିବାକୁ ପାଇ ନଥାନ୍ତୁ—କିନ୍ତୁ ନ ପାଇବା ଫଳରେ, ସାମୟିକ ଭାବରେ କଣ ହୋଇଥିଲା, ତାହା ଆମେ ଦେଖିଥିଲୁ, ଫିଲିପ୍‌ଟସ୍ ସାହେବ ମଧ୍ୟ ଦେଖିଥିଲେ। ଫଳରେ ତାଙ୍କୁ ଚଉଦ ଦିନ ନିର୍ଜନ ସେଲ୍—ଶାସ୍ତି ମିଳିଥିଲା।

ଭାରି ଗରମ। ସେଲ୍ ଭିତରେ ବାୟୁ ସଞ୍ଚାଳନର ପଥ ରୁଦ୍ଧ। ବୈଶାଖ ମାସ ଶେଷ ହୋଇଗଲା। ବର୍ତ୍ତମାନ ବୋଧହୁଏ ସେଲ୍ ବାହାରେ ଏଇପରି ଗରମ। ଚଟାଣ ଉପରେ ଗାରଦ ଧରି ବସିରହେ—ଯଦି ବାହାରର କିଛି ଥଣ୍ଡା ମିଳିପାରେ। ଘର ଭିତରର ଆବଦ୍ଧ ପବନରେ ମୁଣ୍ଡ ଭାରି ଭାରି ମନେ ହେଉଛି। ଲକ୍ଷ୍ୟ କରିଛି ଏଇପରି ସମୟରେ, ଗାରଦ ଭିତରେ ମୁହଁ ନାକ ଯେତେଦୂର ବାହାର କରାଯାଇପାରେ, ସେତେ ପର୍ଯ୍ୟନ୍ତ ବାହାର କରି, ମୁକ୍ତବାୟୁ ସେବନ କଲେ, ମୁଣ୍ଡର ଭାରି ଭାରି ଭାବଟା କଟିଯାଏ। ...ଆଗେ ମୁଣ୍ଡର ଯନ୍ତ୍ରଣା ଆଉରି ବେଶୀ ହେଉଥିଲା। କିଛି ଦିନ ହେଲା ୱାର୍ଡ଼ର ଗାଧୋଇଲା ବେଳେ ଟୋପାଏ ଟୋପାଏ ସୋରିଷ ତେଲ ଦେଉଚି। କେଉଁଠୁ ଗୋଟାଏ ପୁରୁଣା ବଟର୍—ଟିଣରେ ସାମାନ୍ୟ ତେଲ ଯୋଗାଡ଼୍ କରିଛି। ଫାଶୀ—ଆସାମୀ ପ୍ରତି ଏଇ ଅନୁକମ୍ପା—ପ୍ରଥମେ ଭାବିଥିଲି ନେବି ନାହିଁ। କିନ୍ତୁ ସେ ଯେତେବେଳେ କିଛି କଥା ନକହି, ହାତରେ ଢାଳି ଦେଲା, ସେତେବେଳ ଆଉ ଆପତ୍ତି କଲି ନାହିଁ—ବୋଧହୁଏ ମୁଣ୍ଡର ଅସ୍ୱସ୍ତି କଥା ମନେ କରି—ଆଉ କିଛି ନକହି ସିପାହିଜୀ ଯେଉଁ ତେଲ ଟିକିକ ହାତରେ ଢାଳି ଦେଲା ତାହା ଦେଖି। ବାକ୍—ସଂଯମ ଏମାନେ ଜାଣନ୍ତି ନାହିଁ। ଦିନରେ ଆଠ ଘଣ୍ଟା ଡିଉଟୀ ଆଉ ରାତିରେ ଦୁଇଘଣ୍ଟା। ଭାରି ଏକ୍‌ଟଣା ଏମାନଙ୍କର ଜୀବନ। ଏଇ ଡିଉଟୀ ବେଳେ କଥାବାର୍ତ୍ତା ହେଲେ ତାହା କିଛିଟା ଲାଘବ ହୁଏ। ସେ ପଦେ ସୁଦ୍ଧା କଥା କହିଲା ନାହିଁ, ତା ଉପରେ ଲଗାଇବା ପାଇଁ ସୋରିଷ ତେଲ ଦେଲା—ଏତେ ଗୁଡ଼ାଏ ସୋରିଷ ତେଲର ମାୟା ଛାଡ଼ି ଦେଲା। ଆଶ୍ଚର୍ଯ୍ୟ। ଏମାନେ ଯାହା ପାନ୍ତି, ଜେଲ୍‌ରୁ ଚୋରୀ କରନ୍ତି। ଲୁଗାଧୁଆ ସାବୁନ୍, ଚାଉଳଭଜା, ଚିନାବାଦାମ୍, ଆଳୁ, ନଡ଼ିଆକତା ଦଉଡ଼ି, ଲୁହାକଣ୍ଟା, ହାରିକେନ୍ ଲଣ୍ଠନ୍ ଠିପି—କୌଣସି ଜିନିଷ ଏମାନଙ୍କ ହାତରୁ ବାଦ୍ ପଡ଼େ ନାହିଁ। ଉଚ୍ଚଶ୍ରେଣୀ ରାଜବନ୍ଦୀମାନଙ୍କର ଚା' ପିଆଲା ଠାରୁ ଆରମ୍ଭ କରି, ଗାମୁଛା ପର୍ଯ୍ୟନ୍ତ ରାତିରେ ସବୁ ଚୋରି ହୋଇଯାଏ, ସେତେବେଳେ ୱାର୍ଡ଼ର ମାନଙ୍କ ବ୍ୟତୀତ ଜେଲ୍‌ର ଆଉ ସମସ୍ତେ କିନ୍ତୁ ୱାର୍ଡ଼ରେ ତାଲା ବନ୍ଦ ଅବସ୍ଥାରେ

ରହିଥାନ୍ତି। ଚୋର ମାନଙ୍କ ଘରେ ତାଲା ବନ୍ଦ, ତଥାପି ଚୋରୀ ବନ୍ଦ ହୁଏ ନାହିଁ। ଏଇପରି ୱାର୍ଡ଼ଗ୍‌ର ଏଇ ଉଦାହରଣ ମୋତେ ବିହ୍ୱଳ କରିଥିଲା। ଆଉରି ଆଶ୍ଚର୍ଯ୍ୟ ହୋଇଥିଲି, ସେଦିନ ଯେତେବେଳେ ପାଗଳ କୟଦୀକୁ ଲଗାଇ ସେ ମୋର ଜଂଘିଆ ଆଉ କୁର୍ତ୍ତା କଚ଼ାଇ ସଫା କରି ଦେଇଥିଲା। ଗାଧୋଇ ସାରି, ଶୁଖିଲା ପାଇଜାମା ପିନ୍ଧୁଚି; ସେ ମୋତେ ପ୍ରାୟ ଜୋର୍ କରି ସେଲ୍ ଭିତରେ ପୁରାଇ ଦେଲା। ପ୍ରତିବାଦ କରିବା ପାଇଁ ସୁଦ୍ଧା ସେ ମୋତେ ଅବକାଶ ଦେଇ ନଥିଲା। ତାପରେ ନିଜ ହାଫ୍‌ପ୍ୟାଣ୍ଟର ବେଲ୍‌ଟ୍ କାଢ଼ି, ପଛ ପଟେ ଅଣ୍ଟା ତଳକୁ ହାତ ପୁରାଇ ସେ ଖଣ୍ଡେ ବିଡ଼ି କାଢ଼ିଲା। ବିଡ଼ିଟା ପାଗଳକୁ ଦେଇ, ସେଥିରେ ନିଜ ଦିଆସିଲଇରୁ ନିଆଁ ଲଗାଇ ଦେଲା। —ବୁଝିଲି, ତାର ଲୁଗା କାଚ଼ିବାର ପାରିଶ୍ରମିକ। ଅଯାଚ଼ିତ ଭାବରେ କେହି ଯଦି କୌଣସି କାର୍ଯ୍ୟ କରିଦିଏ, ତା ହେଲେ ତାକୁ ଏଡ଼େଇ ଦେବା ବଡ଼ କଷ୍ଟକର। ମନେହେଲା, ସିପାହିଜୀଟି ମୋର ତ୍ୟାଗ ଓ ଦେଶଭକ୍ତି ସମ୍ବନ୍ଧରେ ସଚେତନ—ଅନ୍ୟ ସିପାହି ମାନଙ୍କ ପରି ନୁହେ। ମନଟା ବେଶ୍ ହାଲୁକା ହୋଇଗଲା। ତା ପର ଠାରୁ ଆଜିକି କେତେ ଦିନ ହେଲା ଦେଖୁଛି, ଦିନବେଳା ସେଇ ସିପାହିଟି ଡିଭଟୀରେ ଥାଏ।

...ତେଲ ଲଗାଏ ନାହିଁ ଆମ ପାର୍ଟିର ଚନ୍ଦ୍ରିମା। କହେ ତେଲ ଲଗାଇଲେ କୁଆଡ଼େ ତାର ମୁଣ୍ଡ ଗରମ ହୋଇଯାଏ। ଛୋଟିଆ ବାଙ୍ଗରା ମଣିଷଟିଏ—ଅତି ସରଳ, ନୀରବ, ଅକ୍ଳାନ୍ତ କର୍ମୀ। ଅନ୍ୟର କୌଣସି କାମରେ ଆସି ପାରିଲେ, କୃତାର୍ଥ ହୋଇଯାଏ। ଦୁଇ ନମ୍ବର ୱାର୍ଡ଼ରେ, ଚରକି ପରି, ଦିନରାତି, ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନ ଘୂରି ବୁଲେ ସେ। ମୁଣ୍ଡରେ ଗୋଛାଏ ନୁଖୁରା ବାବୁରୀ ବାଳ, ତେଲ ବାଜେ ନାହିଁ ସେଥିରେ। 1932 ସାଲରେ ମିଲିକ—ଗଞ୍ଜ୍ କଂଗ୍ରେସ ଆଶ୍ରମରେ "ଜପତୀ—ଉଦ୍ଧାର" ସତ୍ୟାଗ୍ରହ ବେଳେ ତା କାନରେ କୁଆଡ଼େ ସାଇକଲ୍ ପମ୍ପ୍ ଦେଇ ପବନ ପୁରାଇ ଥିଲେ। ସେଇ ଦିନୁ ସେ କାନରେ ଶୁଣି ପାରେ ନାହିଁ। ...ଆଜି ସକାଳେ ଚନ୍ଦ୍ରିମା ଦୁଇ ନମ୍ବର ୱାର୍ଡ଼ରେ ଶୋକସଭାର ଆୟୋଜନ କରିଥିଲା। ରାମଭଜନ ବାବୁ ସଭାପତି। ସଭାପତିଙ୍କ ସହିତ ସମସ୍ତେ ଏକ ମିନିଟ ନୀରବରେ ଠିଆ ହେଲେ— ତାପରେ ଧୀରେ ଧୀରେ ବସି ପଡ଼ିଲେ। ଚନ୍ଦ୍ରିମା କିନ୍ତୁ ବସିଲା ନାହିଁ, ଠିଆ ହୋଇ ରହିଲା। ଇତସ୍ତତଃ ବିଛି ପଡ଼ିଥିବା ନୁଖୁରା ବାଳ ଗୁଡ଼ାକୁ ସେ କାନ ପାଖକୁ ଘୁଞ୍ଚାଇ ଦେଲା—ବାଳ ଗୁଡ଼ାକ ଦେଖାଯାଉଚ଼ି ସିଂହର କେଶର ପରି। କୟଦୀର ଦୁଇ ହାତରେ ହାତକଡ଼ା ପିନ୍ଧାଇ ଠିଆ କରାଇ ଦେଲେ, ସେ ଯେପରି ଭଙ୍ଗୀରେ ଠିଆ ହୁଏ, ସେଇପରି ଅବସ୍ଥାରେ ଠିଆ ହୋଇ ସେ ଆରମ୍ଭ କଲା ବକ୍ତୃତା, "ମେରେ ଗୋଲାମ୍ ଭାଇଓ। ଆଜ୍..." ଚାରିପଟୁ ଉଠିଲା ଅସ୍ପଷ୍ଟ ପ୍ରତିବାଦର ଧ୍ୱନି। ସମସ୍ତେ ଚନ୍ଦ୍ରିମାକୁ କହୁଛନ୍ତି ଚୁପ୍ ହେବା ପାଇଁ, ଜେଲ୍ କର୍ତ୍ତୃପକ୍ଷଙ୍କ ନିକଟକୁ ହୁଏତ ମିଟିଙ୍ଗ୍‌ର ଖବର ଚାଲିଯିବ, ହୁଏତ ଲାଠିଚାର୍ଜ ହେବ, "ହମ୍‌ହୀ ଲୋଗୌଁକେ ଭିତର୍ କିତ୍‌ନେ ସି.ଆଇ.ଡି ହାୟ" "ଶୋକ୍‌ସଭାମେଁ କହାଁ ଭାଷଣ୍ ହୋତା ହ୍ୟାୟ", "ବୟରା ହାୟ ଓ କୁଛ ନେହିଁ ଶୁନେଗାଁ, ଆଉରି କେତେ ପ୍ରକାରର ମନ୍ତବ୍ୟ। ଚନ୍ଦ୍ରିମା କିନ୍ତୁ ମୋ କଥା କହି ଚାଲିଛି—ମୋର ତ୍ୟାଗର କଥା—ମୋର ଦେଶଭକ୍ତିର କଥା—ତା ସହିତ ମୋର ବ୍ୟକ୍ତିଗତ ବନ୍ଧୁତ୍ୱର କଥା, ଅପର—ଡିଭିଜନ୍ ୱାର୍ଡ଼ର ବର୍ତ୍ତମାନ ବାସିନ୍ଦା ମୋର ବାବା "ମାଷ୍ଟର୍ ସାହେବ"ଙ୍କ ପ୍ରତି

ସମବେଦନାର କଥା – ଔରତ୍ କୟଦୀ ଦେବୀଜୀ, ବିଲୁବାବୁଙ୍କ ମା, ଏ ଆଘାତ ସହ୍ୟ କରିବା ପାଇଁ ଯେପରି ଶକ୍ତି ପା'ନ୍ତି, ସେଥିପାଇଁ ପ୍ରାର୍ଥନା – ଏଇ ରାଷ୍ଟ୍ରୀୟ ପରିବାର* ଭାରତ ସମ୍ମୁଖରେ ଯେଉଁ ଉଜ୍ଜ୍ୱଳ ଦୃଷ୍ଟାନ୍ତ ରଖିଗଲେ ସେଇ କଥା – ଶ୍ରୋତା ମାନଙ୍କର କର୍ତ୍ତବ୍ୟର କଥା, ଆଉରି କଥା ପରେ କଥା ଗୁନ୍ଥି ଚାଲିଚି ସେ। ଅର୍ଦ୍ଧନିମିଳିତ ଆଖି କୋଣରେ ଲୁହ ଢଳେଇ ଆସିଛି। ...ସମସ୍ତେ ଧରାଧରି କରି ଚନ୍ଦ୍ରିମାକୁ ବସାଇ ଦେଲେ। ସ୍ଥିର ହେଲା ବିଗତ ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ କରିବା ପାଇଁ ସମସ୍ତେ ସାରାଦିନ ଉପବାସ କରିବେ। ...ଉପବାସ କଥାରେ ଚନ୍ଦ୍ରିମାର ଚିରଦିନ ଆପତ୍ତି। ତା ପାର୍ଟିର ଲୋକମାନେ ରାଜନୀତି କ୍ଷେତ୍ରରେ ଉପବାସର କୌଣସି ପ୍ରୟୋଜନୀୟତା ଅଛି ବୋଲି ସ୍ୱୀକାର କରନ୍ତି ନାହିଁ। ଚନ୍ଦ୍ରିମା କେତେଜଣ ସନ୍ଦିଗ୍ଧଚେତା ଶ୍ରୋତାଙ୍କୁ ବୁଝାଇଲା, ଏ ଉପବାସ ପାପର ପ୍ରାୟଶ୍ଚିତ୍ତ ପାଇଁ ନୁହେଁ। ଶତ୍ରୁର ହୃଦୟ ପରିବର୍ତ୍ତନ ପାଇଁ ଉପବାସ ନୁହେଁ, ''ବିଲୁବାବୁକେ ପ୍ରତିଷ୍ଠାକେ ଖେୟାଲ୍‌ମେ ଦେଶପ୍ରେମୀକେ ନାତେ ହାମେ ୟହ କର୍‌ନା ହ୍ୟାୟ।''**

ତା'ପରେ ଦୁଇ ନମ୍ବର ୱାର୍ଡ୍‌ରେ ଓସ୍ତ ଗଛ ମୂଳେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟିମେମ୍ବର ମାନଙ୍କର ଏକ ମିଟିଙ୍ଗ୍ ବସିଲା। ଗୋରେ ସିଂ ବକ୍ତୃତା ଦେଉଛି – ସବୁ ଜିନିଷ Objectively ଦେଖିବାକୁ ହେବ। ...ପ୍ରତି ମାର୍କସିଷ୍ଟର କର୍ତ୍ତବ୍ୟ... ଆଉରି କେତେ କଣ। ଜାତୀୟ ସଂଗ୍ରାମରେ ପାର୍ଟିର ଅବଦାନ ପାଇଁ ସେମାନେ ଗର୍ବିତ। କିନ୍ତୁ ଜଣେ କମ୍‌ରେଡ୍‌ର ମୃତ୍ୟୁରେ ସେମାନେ ଶୋକରେ ମୂହ୍ୟମାନ ନୁହନ୍ତି। ପାର୍ଟିର ଯେ ଏଥିରେ ଅପୂରଣୀୟ କ୍ଷତି ହେଲା ଏପରି ଭାବ ସେମାନଙ୍କ ଠରେ ପ୍ରକାଶ ପାଏ ନାହିଁ.... କେତେ ଲୋକ ଆସିବେ ଯିବେ। –କେତେ ପ୍ରକାର ସାମାଜିକ ଜୀବନ ଅଚ୍ଛେଦ୍ୟ ପାରିବାରିକ ଶୃଙ୍ଖଳ ଛିଣ୍ଡାଇ ସେମାନେ ରାଜନୀତି କ୍ଷେତ୍ରରେ ଓହ୍ଲାଇଛନ୍ତି – ସମସ୍ତେ ନ ହୁଅନ୍ତୁ ଅନେକ। ନିଜ ଆଦର୍ଶ ପାଇଁ ସେମାନେ କେହି ପ୍ରାଣ ଦେବାକୁ କୁଣ୍ଠିତ ନୁହନ୍ତି। ନିଜ ପ୍ରାଣକୁ ସେମାନେ ମୂଲ୍ୟବାନ ମନେ କରନ୍ତି ନାହିଁ – ଅନ୍ୟର ପ୍ରାଣ ପ୍ରତି ସେହିପରି ସେମାନଙ୍କର ଦରଦ କମ୍। –କମ୍ରେଡ୍ ଭୋଳା ପଛରେ ବସି ହସୁଛି। ଗୋଟିଏ ଆଶ୍ଚର୍ଯ୍ୟ କଥା ଲକ୍ଷ୍ୟ କରିଛି ରାଜବନ୍ଦୀ ମାନଙ୍କ ମଧ୍ୟରେ। ଯେଉଁ ରାଜନୈତିକ କୟଦୀ ଦେଶ ପାଇଁ ନିଜର ସ୍ୱାର୍ଥ ଓ ଭବିଷ୍ୟତ ସବୁ ଜଳାଞ୍ଜଳି ଦେଇଛି, ଯିଏ ସ୍ୱଦେଶ ପାଇଁ ହସ ହସ ମୁହଁରେ ସର୍ବଦା ମୃତ୍ୟୁ ବରଣ କରିବାକୁ ପ୍ରସ୍ତୁତ, ଜେଲ୍ ଭିତରେ ସାମାନ୍ୟ ସ୍ୱାର୍ଥ ପାଇଁ, ସେ ସଂକୀର୍ଣ୍ଣ ମନର ପରିଚୟ ଦେଇଥିବା ଦେଖିଛି। କମରେଡ୍ ଭୋଲା ଫାଶୀ ଦଣ୍ଡରୁ ବଞ୍ଚି ଯାଇଛି; କିନ୍ତୁ କେତୋଟି ମୋକଦ୍ଦମାରେ ତାକୁ ମୋଟ ତେତିଶ ବର୍ଷ ସଜା ହୋଇଛି। ଭାରି ଫୁର୍ତ୍ତିବାଜ୍। ସବୁବେଳେ ହସ ହସ ମୁହଁ – ଫାଶୀଦଣ୍ଡ ହେଲେ ବି ଓଠରେ ହସଟି ଲାଗି ରହିଥାଏ। ଯେଉଁ କାର୍ଯ୍ୟରେ ଯେତେ ବିପଦ, ସେଥିରେ ତାହାର ସେତେ ବେଶୀ ଆନନ୍ଦ। ବାଳକ ପରି ଏହି ସରଳ, ଏକନିଷ୍ଠ ସ୍ୱଦେଶ ପ୍ରେମୀଟିର ଚିନ୍ତାଶକ୍ତି ଅଳ୍ପ। କିନ୍ତୁ ଯେ କୌଣସି ହୁକୁମ ତାମିଲ କରିବା ପାଇଁ ସେ ଦ୍ୱିଧାହୀନ। ଦୁଇ ନମ୍ବର ୱାର୍ଡ୍‌ରେ ଥିବା ବେଳେ, ଏଇ କମ୍ରେଡ୍‌କୁ ସୁଦ୍ଧା ଡାଲିଲଙ୍କା ପାଇଁ କାଳେଶ୍ୱର ପ୍ରସାଦ ସହିତ ମୁଣ୍ଡ ଫଟାଫଟି କରିବା ଦେଖିଛି।

* ଯେଉଁ ପରିବାରରେ ସମସ୍ତେ ରାଜନୈତିକ କର୍ମୀ

** ବିଲୁବାବୁଙ୍କ କଥା ସ୍ମରଣ କରି ଓ ଆମେ ଦେଶପ୍ରେମୀ ବୋଲି ଆମର ଏହା କରିବା ଉଚିତ।

ରାଜବନ୍ଦୀ ମାନଙ୍କର ଏଇ ସବୁ ଦୁର୍ବଳତା ନିତ୍ୟ ଜେଲ୍‌କର୍ମଚାରୀ ମାନଙ୍କର ନଜରରେ ପଡ଼ିଥାଏ। ଦେଶଲୋକେ ରାଜବନ୍ଦୀ ମାନଙ୍କୁ ଯେଉଁ ସମ୍ଭ୍ରମ ଦୃଷ୍ଟିରେ ଦେଖନ୍ତି, ଜେଲ୍ କର୍ମଚାରୀ ମାନେ କିପରି ସେମାନଙ୍କୁ ସେଇ ଦୃଷ୍ଟିରେ ଦେଖିବେ ? ଏଇଥିପାଇଁ ବୋଧହୁଏ ଦେଶଲୋକଙ୍କ ପ୍ରଶଂସା ବ୍ୟତୀତ, ସେମାନଙ୍କ ପ୍ରଶଂସା ପାଇଁ ମୁଁ ଲାଳାୟିତ। ...ଜେଲର୍ ଦିନେ ସୁପରିଟେଣ୍ଡେଣ୍ଟଙ୍କୁ ବୁଝାଉଥିଲେ ଯେ, ନଅ ଓ ଦଶ ନମ୍ବରର କଏଦୀମାନେ ଖୁବ୍ ଭଲ... "They never grudge and grumble" —ଏହାଇ ସେମାନଙ୍କ ପ୍ରଶଂସାର ମାପକାଠି... ସୁପରିଟେଣ୍ଡେଣ୍ଟ ସେଦିନ ଯେତେବେଳେ ମୋର କଣ ଦରକାର ବୋଲି ପଚାରୁଥିଲେ, ସେତେବେଳେ ଜେଲର୍ ବାବୁ ପକେଟ୍‌ବୁକ୍ ଖୋଲି, ଫାଉଣ୍ଟେନ୍ ପେନ୍ ଧରି ମୋର କଣ ଦରକାର, ତାହା ନୋଟ୍ କରିବା ପାଇଁ ଏକାଥରେ ପ୍ରସ୍ତୁତ ହୋଇ ଯାଇଥିଲେ। ଭଦ୍ରଲୋକଙ୍କୁ ଖୁବ୍ ହତାଶ କରିଥିଲି... ସେଲ୍ ବାହାରେ ଯେଉଁଠି ପାଣି ସୁରାଇଟି ରହିଛି, ସେଇଠି ସେଦିନ ଜେଲର୍ ବାବୁ ଠିଆ ହୋଇଥିଲେ।

...ସେଲ୍ ବାହାରେ ଦରଜା ସାମ୍ନାରେ ଗୋଟିଏ ସୁରାଇରେ ପାଣି ରହିଥାଏ। ଏଇଟି ଥାଏ କିନ୍ତୁ ବାହାରେ। ଆତ୍ମହତ୍ୟାରୁ ମତେ ବଞ୍ଚାଇବା ପାଇଁ ନୁହେଁ। ସେଲ୍‌ର ସବୁ କଏଦୀଙ୍କୁ ଏଥିରୁ ପିଇବା ପାଣି ସରବରାହ କରାଯାଏ—ଅବଶ୍ୟ ନଅ ଓ ଦଶ ନମ୍ବର ପରେ। ଯାହାକୁ ଶୋଷ କରେ ସେ ସିପାହିଜୀଙ୍କୁ ଡାକେ ନୋହିଲେ ସେଲ୍‌ର ଘଣ୍ଟା ବଜାଏ। ସିପାହିଜୀ ନିଜର ଇଚ୍ଛା ଓ ଅବକାଶ ଅନୁସାରେ ଉଠି ତାହାକୁ ପାଣି ଦିଏ। ସାଧାରଣତଃ ଯିଏ ଯେତେବେଳେ ପାଣି ଖୋଜେ, ସେତେବେଳେ ସିଏ ପାଏ ନାହିଁ। ଅନେକଙ୍କ କାକୁତି ମିନତି ଯେତେବେଳେ ଏକ ସଙ୍ଗରେ ବେଶ୍ ମୁଖର ହୋଇ ଉଠେ, ସେତେବେଳେ ସିପାହିଜୀ ଉଠି ସୁରାଇରୁ ପାଣି ଗଡ଼ାଇ ଦିଅନ୍ତି। ଏକ ନମ୍ବର ସେଲ୍‌ର ବିଶେଷ ଖାତିର୍। ସେଥିପାଇଁ ମୋର ଦରଜା ସାମ୍ନାରେ ସୁରାଇଟି ରଖା ଯାଇଥାଏ। ସୁରାଇ ନଳକୁ ଗାରଦ ଭିତରେ ଭିତରକୁ ଟାଣି ନେଇ ଗ୍ଲାସ୍‌ରେ ପାଣି ଢାଳି ନେଲି। ଯେତେ ଦୂର ପାରେ ଗାରଦ ବାହାରେ ପାଣି ପକାଇବାକୁ ଚେଷ୍ଟା କରି ଆଖିରେ ମୁହଁରେ ପାଣି ଛାଟି ନେଲି। ଆଖିରୁ ମୁହଁରୁ ନିଆଁ ବାହାରୁଥିଲା ଯେପରି। ସେଲ୍ ଭିତରେ ବାହାରକୁ ପାଣି ଯିବା ପାଇଁ ନାଳୀ ନାହିଁ। ଏଇ ଦରଜା ତଳ ଦେଇ ବାହାରକୁ ପାଣି ଯିବା କଥା। ମୁହଁ ଆଖି ଧୋଇବା ବେଳେ ପାଣିର ବେଶୀ ଭାଗ ଭିତରେ ଇ ପଡ଼ିଲା। କୁଳକୁଞ୍ଚା କରି ବାହାରକୁ ପକାଇଲି—କାନ୍ଥ ଆଉ ମେଜିଆର ସଂଯୋଗ ସ୍ଥଳରେ ସେଇ ଛୋଟ ଗଛଟି ଉପରେ। ଏହି ଗଛ ଉପରେ ପ୍ରତ୍ୟହ କୁଳକୁଞ୍ଚା ପକାଇ ମୁଁ ଜଳସିଞ୍ଚନ କରେ। ପ୍ରତିଥର ଯେତେବେଳେ କୁଳକୁଞ୍ଚା କରେ, କେତେଦୂର ପର୍ଯ୍ୟନ୍ତ ପାଣି ଯାଇ ପାରୁଛି, ତାହା ପରୀକ୍ଷା କରେ। ଏ ସମ୍ବନ୍ଧରେ ମୋଟାମୋଟି ଗୋଟାଏ ଧାରଣା ହୋଇ ଯାଇଛି। ଠିଆ ହୋଇ, ବସି, ମୁହଁରଭଙ୍ଗୀ ବଦଳାଇ, କେତେ ରକମ ନିଜ ସହିତ ପ୍ରତିଯୋଗିତା କରେ, —ଆଗର ରେକର୍ଡ଼ ଭାଙ୍ଗିବା ପାଇଁ ଚେଷ୍ଟା କରେ। ଦିନ ଦି' ପହରେ, ଯେତେବେଳେ ବାହାର ସିମେଣ୍ଟ ମେଜିଆ ତାତି ନିଆଁ ହୋଇଥାଏ, ସେତେବେଳେ କୁଳକୁଞ୍ଚା କରି ତା ଉପରକୁ ପାଣି ପକାଏ। ତାପରେ, ଏକ, ଦୁଇ କରି ଗଣି ଦେଖେ, କେତେ ସମୟ ଭିତରେ ପାଣି ନିଶ୍ଚିହ୍ନ ହୋଇ ଶୁଖି ଯାଉଛି। କି ଗଛ ଜାଣେ ନାଁ, ତମ୍ବାଟିଆ ରଙ୍ଗର ପତ୍ର। ପତ୍ର ଗୁଡ଼ିକ ଦେଖିବାକୁ ନିମ୍ବପତ୍ର ପରି। ଲଣ୍ଠନ୍ ପାଖରେ ଥିବାରୁ ଗଛଟି ସ୍ପଷ୍ଟ ଦେଖାଯାଉଚି। ଛୋଟ ଲତାକିଆ ଗଛ। କାନ୍ଥକୁ ଜାବୁଡ଼ି

ଧରିଛି । ଲଣ୍ଡନ୍ ଆଲୁଅରେ ଛୋଟ ଛୋଟ ହଳଦିଆ ଫୁଲ ଗୁଡ଼ିକ ଦେଖାଯାଉନାହିଁ । ବଞ୍ଚିବାର କି ଆକାଂକ୍ଷା ଗଛଟିର । ଇଟା ଆଉ ସିମେଣ୍ଟ ଭିତରେ ଫାଙ୍କି । ସେଇବାଟେ ଏଇ ଗଛ ଜୀବନୀ ଶକ୍ତି ଆକର୍ଷଣ କରି ନେଉଛି । ମୋ ଅବର୍ତ୍ତମାନରେ ମଧ ନେଉଥିବ । ମୋ କୁଳକୁଞ୍ଚା ପାଣି ପାଇଁ ସେ ଆଶା ରଖି ନାହିଁ । ଗଛଟିକୁ ଚାହିଁଲେ ମନେ ହେଉଛି, ତାର ଡେମ୍ଫ ଭାଙ୍ଗି ଦେଲେ, ସେଥିରୁ ଧଳା, ଘନ ଦୁଧ ପରି ରସ ବୋହି ପଡ଼ିବ । କ୍ଷେତ୍‌ପାଗଡ଼ା, ଆମେ ଯାହାକୁ କହୁ ସିଝୁ ତାର ରସ ଦେଖିବାକୁ ଠିକ୍ ଏଇ ପରି... ଏଇ ରସ ଥରେ ଜେଠେଇମା ମୋ ଅଣ୍ଟା ତଳେ ଗୋଟାଏ ବଥ ଉପରେ ଲଗାଇ ଦେଇଥିଲେ, ବଥ ଫଟାଇବା ପାଇଁ । ତା'ପର ଠାରୁ ଦୁର୍ଗାଦି'ର ଖେଳଘର ପାଇଁ ଗୋଟିଏ ପୁରୁଣା ମାଟି ଦୀପରେ ମୁଁ ଆଉ ନୀଲୁ, ଅନେକ ଦିନ ପର୍ଯ୍ୟନ୍ତ ସିଝୁ କ୍ଷୀର ସଂଗ୍ରହ କରିଛୁ ।

...ଦୁର୍ଗାଦିର ଛୋଟ ଭଉଣୀ ଟେପୀ । ଅଧା ମଇଳା ଫ୍ରକ୍ ପିନ୍ଧିଥାଏ, ମୁଣ୍ଡରେ ବେଣୀ । ମୁଁ ଆଉ ନୀଲୁ ତାକୁ ଥରେ, ଆଶ୍ରମ ପାଖରେ ଗାଞ୍ଜେସ୍–ଦାର୍ଜିଲିଙ୍ଗ୍ ରୋଡ୍ ଉପରେ ସେଇ ରବର ଗଛ ତଳକୁ ନେଇ ଯାଇଥିଲୁ । ରବର ଗଛର ରସକୁ କିପରି ଜମାଟ କରି ରବର ତିଆରି କରାଯାଏ ସେଇଆ ଦେଖାଇବା ପାଇଁ । ମୁଁ ଗଛ ଉପରକୁ ଉଠି, ଛୁରୀରେ ଗୋଟାଏ ଡାଳର ଉପର ଛାଲି କାଟି ଦେଲି । ଟପ୍ ଟପ୍ କରି ଦୁଧ ପରି ରସ ଝରି ପଡ଼ିଲା । ନୀଲୁ ଟେପୀକୁ ଧରି ତା ତଳେ ଠିଆ କରାଇ ଦେଲା । କହିଲା "ଉପରକୁ ଚାହିଁବୁ ନାହିଁ, ଖବର୍ଦ୍ଦାର୍ । ତୋ ମୁଣ୍ଡ ଉପରେ ଇରେଜର୍ ତିଆରି କରି ଦେଉଛି । ଟେପୀ ବିଚାରୀର କି କାନ୍ଦ ! ରବର ଗଛର ରସ ଜମି ତା ମୁଣ୍ଡ ବାଳକୁ କାମୁଡ଼ି ଧରିଥିଲା । ଆମେ ଦୁଇ ଭାଇ ସେଦିନ ମା'ଙ୍କ ପାଖରୁ କି ମାଡ଼ ନ ଖାଇଚୁ ! ଭାଗ୍ୟକୁ ବାବା ଯାଇଥିଲେ 'ଦେହାତ୍'* । ଏହାର ମାସେ ଖଣ୍ଡକ ପରେ ଟେପୀ ମରିଗଲା । ତା'ପରେ ମୋର ଆଉ ନୀଲୁର କି ମାନସିକ ଦୁଶ୍ଚିନ୍ତା । କି ଅନୁଶୋଚନା । ଆଶ୍ରମର ଶିଶୁ ଗଛ ତଳେ ବସି ଆମେ ଠିକ୍ କଲୁ, ରବର ରସ ତା ମୁଣ୍ଡରେ ଢାଳିବାରୁ ଡିପ୍‌ଥେରିଆ ହେଲା । ନୀଲୁ ପୁଣି ଖବର ସଂଗ୍ରହ କରିଥିଲା, କାର୍ତ୍ତିକ ଡାକ୍ତର କୁଆଡ଼େ ଟେପୀର ଗଳା ଅପରେସନ୍ କରି ତା ଭିତରୁ ରବର ରସ କାଢ଼ିଥିଲେ । ମା' ସେଦିନ ଦୁର୍ଗାଦି ଘରର ସବୁ ପିଲା ଛୁଆଙ୍କୁ ଆମ ଆଶ୍ରମକୁ ନେଇ ଆସିଥିଲେ । ଟେପୀର ଭାଇ ଭୋଁଦା, ଏ ବର୍ଷ ଓକିଲ ହେଲା, ସେତେବେଳକୁ କେତେ ଛୋଟ ! ମା'ଙ୍କ ପାଖରେ ଶୋଇଥିଲା । ରାତିରେ ଘରକୁ ଯିବା ପାଇଁ ଯିଦ୍ ଧରି ତାର କି ବାହୁନା !

ଦରଜା ସାମ୍ନାରେ ବସିବାର ଉପାୟ ନାହିଁ, ଜାଗାଟା ପାଣିରେ ଭିଜିଯାଇଛି । ନେଳି ଗାରିଗାରିକିଆ ପାଇଜାମାରେ ଜାଗାଟା ପୋଛି ଦେଲି । ପାଇଜାମା ମଇଳା ହେଲେ ବି ଆଉ କ୍ଷତି ନାହିଁ । କାଲିଠୁ ଆଉ ସେଟାକୁ ପିନ୍ଧିବାକୁ ପଡ଼ିବ ନାହିଁ । ନଅ ବର୍ଷ ପୂର୍ବେ ଭୂମିକମ୍ପ ବେଳେ ଏଇ ସ୍ଥାନଟାରେ ଗାତ ହୋଇ ଯାଇଥିଲା । ଆଜି ପର୍ଯ୍ୟନ୍ତ ସେଇ ଅବସ୍ଥାରେ ରହି P.W.D.ର କର୍ମନିଷ୍ଠାର ସାକ୍ଷ୍ୟ ହୋଇଅଛି । ଏକ ନମ୍ବର ସେଲ୍ ବାସିନ୍ଦାର ପୁଣି ଏତେ ବାଛ ବିଚାର ! ଫାଶୀମଞ୍ଚ ଠାରୁ ସର୍ବାପେକ୍ଷା ନିକଟରେ ଏଇ ଘର, ଆଉ ଯେଉଁ ଆସାମୀର ଫାଶୀ–ଦିନ ସର୍ବାପେକ୍ଷା ନିକଟବର୍ତ୍ତୀ ତାର ଦାବୀ ଏଇ ଘର ଉପରେ । ସେଲ୍‌ର ସାଢ଼େ ଚାରିହଜାର ବାସିନ୍ଦାଙ୍କ ମଧ୍ୟରେ ଏଇ ଘର

ଉପରେ ମୋର ଦାବୀ ସମସ୍ତଙ୍କ ଉର୍ଦ୍ଧ୍ୱରେ। P.W.D.ର ଲୋକମାନଙ୍କ ବିଚାରଟା ଠିକ୍ – ଭିଜା ଚଟାଣରେ ବସି ବାତଗ୍ରସ୍ତ ହେବା ପାଇଁ ଯେତେ ସମୟ ଦରକାର, ଏ ବାସିନ୍ଦାଙ୍କୁ ସେତେଦିନ ବଞ୍ଚିବା ପାଇଁ ପଡ଼ିବ ନାହିଁ। ଆଉ ଯଦି ବିଲେଇ କପାଳକୁ ଶିକା ଛିଣ୍ଡି ତାର ମର୍ସି ପିଟିସନ୍ ମଞ୍ଜୁର ହୋଇଯାଏ, ତାହେଲେ ସାମାନ୍ୟ ବେମାରି କଥା ଧର୍ତ୍ତବ୍ୟ ମଧ୍ୟରେ ନୁହେଁ। ଆଜି ପରି ଦିନରେ ସୁଦ୍ଧା ମନେ ହେଉଛି, ଏଇ ଭିଜା ଜାଗା ଉପରେ ବସିଲେ ଦେହ ଅସୁସ୍ଥ ହୋଇ ପାରେ। ଗୋଟିଏ ଗପ ପଢ଼ିଥିଲି। – ଜଣେ ଲୋକ ଆତ୍ମହତ୍ୟା କରିବା ପାଇଁ ପ୍ରସ୍ତୁତ। ବିଷ ଶିଶି ମୁହଁ ପାଖକୁ ନେଇ ଯାଉଛି; ହଠାତ୍ ତାର ବନ୍ଧୁ ଏହା ଦେଖି ପିସ୍ତଲ୍‌ଟି ତା ଆଡ଼କୁ ଲକ୍ଷ୍ୟ କରି କହିଲା... ''ପକାଇ ଦେ କହୁଛି ଶିଶିଟା, ନୋହିଲେ ଏଇ ଗୁଳି କଲି।'' ହାତରୁ ଶିଶିଟା ତଳେ ଖସି ପଡ଼ିଲା। କିଏ ବୁଝି ପାରିବ ମନର ଏଇ ଗତି ?

ହୁଏତ ଭୂମିକମ୍ପ ପରେ ମରାମତି ବେଳେ ଏଇ ଗର୍ତ୍ତଟି ନଜରରେ ପଡ଼ିନାହିଁ, ନଜରରେ ହଠାତ୍ ପଡ଼େ ନାହିଁ। ପାଖରେ ପାଣି ଇଡ଼ି ହେଲେ ଏଇ ସ୍ଥାନରେ ଜମା ହୁଏ – ସେତେବେଳେ ବୁଝାପଡ଼େ – ଏହି ସ୍ଥାନରେ ଗୋଟିଏ ଗର୍ତ୍ତ। ...ସେଥର ଭୂମିକମ୍ପ ସମୟରେ ସେ କି କାଣ୍ଡ। 1934 ସାଲ ଭୂମିକମ୍ପ କଥା କହୁଛି। ପାଟ୍ନା କ୍ୟାମ୍ପଜେଲ୍‌ର ଉତ୍ତର–ବିହାରର ସବୁ ରାଜବନ୍ଦୀଙ୍କୁ ଗଭର୍ଣ୍ଣମେଣ୍ଟ ଛାଡ଼ିଦେଲେ – ଭୂମିକମ୍ପ ପୀଡ଼ିତ ଜନତାର ସେବା ପାଇଁ। ନୀଲୁ 1932 ସାଲ ଶେଷ ଆଡ଼କୁ ଛାଡ଼ ପାଇଥିଲା। ବାବା ମା' ଦୁହେଁ ସେତେବେଳେକୁ ଜେଲ୍‌ରେ। ନୀଲୁ ଜେଠେଇମା'ଙ୍କ ଘରେ ରହି ପଢ଼େ। ଆମେ ବି.ଏନ୍.ଡବ୍ଲ୍ୟୁ ରେଳ ପଥରେ ଆସୁଛୁ। ପ୍ରତି ଷ୍ଟେସନ୍‌ରେ ଭୂମିକମ୍ପରେ ଧ୍ୱଂସଲୀଳାର ଚିହ୍ନ ସୁସ୍ପଷ୍ଟ। 'ପଥିହାରୀ' ନାଁ କେଉଁ ଷ୍ଟେସନ୍ ପାଖରେ ପୂରା ଗୋଟାଏ ଦିନ ଅଟକି ଯିବା ପାଇଁ ପଡ଼ିଲା। ପୋଲ ଭାଙ୍ଗି ଯାଇଛି। ଡଙ୍ଗାରେ ପାର ହେବାର ବନ୍ଦୋବସ୍ତ ହେଉଛି। ଗଭର୍ଣ୍ଣମେଣ୍ଟ ପକ୍ଷରୁ ତିନିଅଣା ଖୋରାକି ମିଳିଥିଲା। ସେଇ ନଈକୂଳ ହାଟରେ ଦହିବାଲା ସାଙ୍ଗରେ ଚୁକ୍ତି ହେଲା, ଚାରି ପଇସାରେ ଯିଏ ଯେତେ ଦହି ଖାଇ ପାରିବେ। ନାଗିନ୍ଦର୍ ସିଂହ ପ୍ରାୟ ଚାରିପାଞ୍ଚ ସେର ଦହି ପିଇଗଲା। – କଷରା ରଙ୍ଗର ମହୁଆ ଦହି। ସେଥିରେ ମିଠା ନାହିଁ। ପାଖରେ ପଇସା ନାହିଁ। କାର୍‌ଖୋଲା ରୋଡ୍ ଷ୍ଟେସନ୍‌ରୁ ପୂର୍ଣ୍ଣିଆ ପର୍ଯ୍ୟନ୍ତ ଚାଲି ଚାଲି ଯିବା ପାଇଁ ପଡ଼ିବ। ଗାଞ୍ଜେସ୍ – ଦାର୍ଜିଲିଙ୍ଗ୍ ରୋଡ୍‌ରେ କି ବଡ଼ ବଡ଼ ଫାଟ। ହର୍‌ଦା ପୋଲଟା ଭାଙ୍ଗି ଯାଇଛି। ହର୍‌ଦା ବଜାର ପାଖରେ ପହଞ୍ଚି ପାଦ ଆଉ ଚଳିଲା ନାହିଁ। ଦୁବେଜୀ କଂଗ୍ରେସ କର୍ମୀ। ତାଙ୍କ ଦୋକାନ ପାଖରେ ପହଞ୍ଚିବା ମାତ୍ରେ, ତାଙ୍କ ସ୍ତ୍ରୀ ଆମକୁ ଦେଖି, ଦଉଡ଼ି ଭିତରକୁ ପଳାଇଲେ। ଅଳ୍ପ ସମୟ ପରେ 'ପରଣାମ୍', କହି କହି ବାହାରି ଆସିଲେ। ଇତି ମଧ୍ୟରେ ମିଲ୍ ଶାଢ଼ୀ ବଦଳାଇ, ସବୁଜଧଡ଼ିଆ ଖଦଡ଼ ଶାଢ଼ୀ ଖଣ୍ଡେ ପିନ୍ଧି ଆସିଛନ୍ତି। ଦେହର ରଙ୍ଗ ଏତେ ବୟସ ସତ୍ତ୍ୱେ ବି ସୁନ୍ଦର। – ପତଳା ଦେହ – ଶୁଆପରି ନାକ – ସର୍ବୋପରି ଆଖିରେ ମୁହଁରେ ଆତ୍ମମର୍ଯ୍ୟାଦାର ଭାବ ବୃଦ୍ଧାଙ୍କ ରୂପକୁ ଆଉରି ଶ୍ରୀମୟୀ କରି ଦେଇଛି। ଦୁବେଜୀଙ୍କ ସ୍ତ୍ରୀ ଓ ଦୁବେଜୀ ଆମର ଖୁବ୍ ଚର୍ଚ୍ଚା କଲେ। – ଦୁଧରେ ଚୁଡ଼ା ଭିଜାଇ ସେଥିରେ ଦହି ମିଶାଇ, ଆମେ ହସ ପରିହାସ ଭିତରେ, ବେଶ୍ ତୃପ୍ତିରେ ଖାଇଲୁ। ପରିହାସର ଲକ୍ଷ୍ୟ ଦୁବେଜୀ। ସମସ୍ତେ ତାଙ୍କର ଭୋଜପୁରୀ ବୋଲି ଅନୁକରଣ କରି କଥା କହିବାର ଚେଷ୍ଟା କରୁଛନ୍ତି। ''ଦୁବେଜୀ 'ପହଞ୍ଚିଲି' କୁ 'ଟୈପଲ୍'

କହନ୍ତି । ଏଇ କଥା ଘେନି କେତେ ହସ ପରିହାସ । ବୃଦ୍ଧା ଓ ବୃଦ୍ଧା ମଧ ଏଇ ହସ ତାମ୍‌ସାରେ ଯୋଗ ଦେଇଥିଲେ । ନିଆଁ 'ଘୁରି' ପାଖରେ ଅନେକ ରାତି ପର୍ଯ୍ୟନ୍ତ ବସି, ଦୁବେଆଣୀଙ୍କ ସହିତ ଗପସପ ହେଲା । —ମା'ଙ୍କ କଥା—ଏଥର ସାଦୀ କରିବା ପାଇଁ ପଡ଼ିବ—ଆଉରି କଣ ସବୁ ମନେ ପଡୁନାଇଁ । ଦୁବେଆଣୀ 'ନିମକ୍ ସତ୍ୟାଗ୍ରହ' ସମୟରେ ଲୁଣ ମାରି ଜେଲ୍ ଯାଇଥିଲେ । କିନ୍ତୁ କେଜାଣି କାହିଁକି ପୋଲିସ ଦୁବେଜୀଙ୍କୁ ଗିରଫ କରି ନଥିଲା । ବୋଧହୁଏ ବୟସ ହୋଇ ଯାଇଥିଲା ବୋଲି । —ଦୁବେଜୀ ମୋ ପାଖରେ ଏଇ ସବୁ ନାଲିଶ୍ କଲେ । ଭାରି ସରଳ ମନ, ଏହି ସ୍ୱାମୀ ସ୍ତ୍ରୀ ଦୁଇ ଜଣଙ୍କର । ନିଜର ଜମିଜମା ଯାହା ସାମାନ୍ୟ ଥିଲା, ସବୁ କଂଗ୍ରେସକୁ ଦାନ କରିଛନ୍ତି । ରାତିରେ ଶୋଇଛି; ସେମାନେ ଭାବିଲେ ଆମକୁ ନିଦ ହୋଇ ଗଲାଣି । କାଳେ ଆମ ନିଦରେ ବ୍ୟାଘାତ ହେବ, ସେଥିପାଇଁ ଆମ କମ୍ବଳ ଉପରେ, ଆଉ ପରସ୍ତେ କମ୍ବଳ ଘୋଡ଼ାଇ ଦେଇଗଲେ । ତା ପରେ ଏ ସ୍ଥାନ ଛାଡ଼ି ଯିବା ପୂର୍ବରୁ, ସ୍ଥାନୀୟ ପ୍ରାଇମେରୀ ସ୍କୁଲ ଆଡ଼କୁ ମୋତେ ଡାକି ନେଇ ଦୁବେଦୀ କହିଲେ, "ଆମର ଗୋଟିଏ ଅନୁରୋଧ ରଖିବା ପାଇଁ ପଡ଼ିବ । ଆମର ପିଲା ଛୁଆ ନାହାନ୍ତି । ତୁମକୁ ଅନେକ ଦିନ ହେଲା, ସେଇ ଏଡ଼େ ଟିକିଏ ଦିନୁ ଦେଖି ଆସୁଚି । ମାଷ୍ଟର ସାହେବଙ୍କ ପୁଅ ତ, ଆମର ବି ପୁଅ । ଆମେ ଗରୀବ ମଣିଷ । ତୁମେ ଝୁଲ ବଙ୍ଗାଳୀ—ବିଲୁବାବୁ । କିନ୍ତୁ ଆମର ଗୋଟିଏ ଦାୟିତ୍ୱ ତୁମକୁ ନେବା ପାଇଁ ପଡ଼ିବ । ଆମର ଯେଉଁ କେତେ ବିଘା ଜମି ଅଛି, ସେଥିରୁ ଆୟ, ମୁଁ କଂଗ୍ରେସ କାମରେ ଖର୍ଚ୍ଚ କରେ । ଏଇ ଜମି ଗୁଡ଼ାକୁ ଲେଖାପଢ଼ି କରି ଦେଇ ଯିବାକୁ ଚାହେଁ । ମୁଁ ମରିଯିବା ପରେ, ତୁମେ ଏ ଜମିଜମାକୁ ମହାତ୍ମାଜୀଙ୍କ କାମରେ ଲଗାଅ । ଆମେ ଆଉ କେତେ ଦିନ ବା ବଞ୍ଚିବୁ ? ସେମାନଙ୍କ ପାଖରେ କଥା ଦେଇଥିଲି । ଦୁବେଜୀ ବର୍ତ୍ତମାନ ବି ବୋଧହୁଏ ସେଇ ରଙ୍ଗୀନ୍ କାଗଜ ତିଆରି ରଥର ମଧ ସ୍ଥିତ ରାମ୍‌ଜୀଙ୍କ 'ମୂରତ୍' ସାମ୍‌ନାରେ ବସି, ପ୍ରଦୀପ ଆଲୋକରେ ତକ୍‌ଲୀରେ ଏଣ୍ଡୀ ସୂତା କାଟୁଥିବେ ।

...ହର୍‌ଦା ବଜାରରୁ ବାହାରି ପୂର୍ଣ୍ଣିଆ ପହଞ୍ଚିଲୁ ତାପର ଦିନ ବେଳ ଦି'ପହର ସରିକି । "ଗାନ୍ଧୀ—ଆଶ୍ରମ" ଗଭର୍ଣ୍ଣମେଣ୍ଟ 'ଜବତ୍' କରିଛନ୍ତି । ତଥାପି ସେଇ ଆଡ଼କୁ ଚାଲିଲୁ । ...ଦୂରରୁ ଦେଖା ଯାଉଛି, ଜିଲ୍ଲା କଂଗ୍ରେସ ଅଫିସ ଘର ପାଖରେ, ଶିଶୁ ଗଛଟି ପୀତାଭ ରଙ୍ଗର ବିଗ୍ନୋଲିଆ ଫୁଲରେ ଭର୍ତ୍ତି ହୋଇ ଯାଇଛି । ମୁଁ ସେଥର ଲତାଟିକୁ ଏଇ ଗଛ ଉପରକୁ ଉଠାଇ ଦେଇଥିଲି । ପତାକା ସ୍ତମ୍ଭର ଜାତୀୟ ପତାକା ପୂର୍ବେ ବହୁ ଦୂରରୁ ଦେଖାଯାଉଥିଲା । ବର୍ତ୍ତମାନ ତାହା ଆଉ ନାହିଁ । କିନ୍ତୁ ଖଣ୍ଡ ଖଣ୍ଡ ଧଳାମେଘର ପୃଷ୍ଠଭୂମିରେ ବିଗ୍ନୋଲିୟା ଫୁଲରେ ଭରା 'ଶିଶୁ' ଗଛଟି ଜାତୀୟ ପତାକାର କାର୍ଯ୍ୟ କରୁଛି—ସାଦା, ଜାଫ୍‌ରାନି, ସବୁଜ, ତିନୋଟି ରଙ୍ଗ ।... ଆଶ୍ରମର ଘର ଗୁଡ଼ିକ ଚାଳଘର । ଆମ ଘରର ବେଡ଼ା ସବୁ ଭାଙ୍ଗି ପଡ଼ିଛି । ଟିଉବ୍‌ୱେଲ୍‌ର ଉପର ଅଂଶଟି ନାହିଁ । ଏସ୍. ଡି. ଓ. ସାହେବ ସୀଲ୍ କରିଥିବା ଦରଜାରେ ତାଲାର ଚିହ୍ନ ସୁଦ୍ଧା ନାହିଁ । ତକ୍ତପୋଷ ଓ ବଡ଼ ଆଲ୍‌ମାରୀଟି ଛାଡ଼ି ଘରେ ଆଉ କୌଣସି ଜିନିଷର ଚିହ୍ନବର୍ଣ୍ଣ ନାହିଁ । ଛୋଟ ଛୋଟ ଜିନିଷପତ୍ରସବୁ ଯିଏ ଯାହା ପାରିଛି ନେଇଯାଇଛି । ନ'ଦିଦିଙ୍କ ହାତବୁଣା, ଫେମ୍ ବନ୍ଧା, ତୁଳାର ପେଟାଟାକୁ କୋଉଠି ଦେଖିବାକୁ ପାଇଲି ନାହିଁ । ସହଦେଓର ଭଉଣୀ ସରସ୍ୱତୀର ପିଲାଦିନେ କାର୍ପେଟ ଉପରେ ବୁଣା "Untouchability is a sin" —ସିନ୍‌ର 'N' ଟି 'Z' ପରି

ଲେଖା — ତାହା ମଧ୍ୟ ଉଭାନ୍। ମୋର ଲେଖା ଗୋଟାଏ କବିତା ନୀଲୁ ପେଷ୍ଟବୋର୍ଡ଼ ଉପରେ ଆଣ୍ଠି ଟଙ୍ଗାଇ ଦେଇଥିଲା। — ସେଇଟି ସେମିତି ଝୁଲୁଛି। ଲେଖା କିନ୍ତୁ ଅସ୍ପଷ୍ଟ ହୋଇ ଯାଇଛି। ଆଉ ରବିବାବୁଙ୍କର ଯେଉଁ ଛବିଟା ଆଙ୍କି, ପେଷ୍ଟବୋର୍ଡ଼ ଉପରେ ଚପାଇ କାନ୍ଥରେ ଝୁଲାଇଥିଲି, ତାହାକୁ ଦେଖିଲି, ନେଇଯିବା ପାଇଁ କେହି ଯୋଗ୍ୟ ବିବେଚ଼ନା କରିନାହାନ୍ତି। ହୁଏତ ଫ୍ରେମ୍‌ରେ ବନ୍ଧା ହୋଇ ଯାଇଛି। କେବଳ ଧଳା ଆଉ ଗୋଲାପି ଭିନ୍‌କା ଫୁଲରେ ସାରା ଅଗଣାଟା ଭରି ଯାଇଛି। ବୋଧହୁଏ ଛେଳି ଗୋରୁ ସେ ଗଛ ଖା'ନ୍ତି ନାହିଁ। ମଝିରେ ମଝିରେ ଗୋଟାଏ ଦି'ଟା ଭେରେଣ୍ଡା ଗଛ ଠିଆ ହୋଇଛି, ନଗଣ୍ୟ ଭିନ୍‌କାକୁ ଯେପରି ତାଚ୍ଛଲ୍ୟ କରିବା ପାଇଁ। ଗୋଟିପୋକ ଚାଷଘର ଭୁଷୁଡ଼ି ଏକା ଥରେ ମାଟିରେ ଶୋଇଛି। ଶଗଡ଼ର ଚକା ଦୁଇଟାକୁ କିଏ ହୁଗାଳି ନେଇଛି। ତେଲ ଘଣି ଘରଟା ରହିଛି ଅକ୍ଷତ ଅବସ୍ଥାରେ। ଘର ଭିତରଟା କିନ୍ତୁ ହରଡ଼ ଗଛ ପରି ଦେଖିବାକୁ ଅଗଛାରେ ଭରା। ଭିତରକୁ ପଶିବାର ଉପାୟ ନାହିଁ। ଆଶ୍ରମ ଲାଇବ୍ରେରୀରେ ଖଣ୍ଡିଏ ହେଲେ ସୁଦ୍ଧା ବହି ନାହିଁ। ହଲ୍ ଘର ଭିତରେ ରାଶୀକୃତ ଆବର୍ଜନା। ସେଠାରେ ପ୍ରତିଦିନ ଗୁଡ଼ିଏ ଛେଳି ଗୋରୁ ବୋଧହୁଏ ବନ୍ଧା ହେଉଥିଲେ। ତା'ରି ଚିହ୍ନ ସୁସ୍ପଷ୍ଟ। ପ୍ରତିବେଶୀମାନେ ଦେଖୁଛନ୍ତି। କଂଗ୍ରେସର ଏଇ ଦୁର୍ଦ୍ଦିନରେ ସୁଦ୍ଧା ଆଶ୍ରମଟିକୁ ଭୁଲି ନାହାନ୍ତି।

ମନଟା ଉଦାସ ହୋଇଗଲା। ଆଶ୍ରମରୁ ବାହାରି ଜେଠେଇ ମା'ଙ୍କ ଘର ଫାଟକ ଭିତରକୁ ପଶିଗଲି। ଏଇଟା ବାବାଙ୍କ ଅନ୍ତରଙ୍ଗ ବନ୍ଧୁଙ୍କ ଘର। ଘରର ଠିକ୍ ସାମ୍ନାରେ ଗୋଟାଏ ତମ୍ବୁ। ଗୋଟାଏ ଧଳା ତମ୍ବୁ ଦରଜା ପାଖରେ ଊର୍ଦ୍ଧ୍ୱମୁଖ ହୋଇ, ଏକ ମନରେ, ଲତାପତ୍ର ଏମ୍ବ୍ରୋୟଡ଼ରୀ କରା ଟେବୁଲ୍ କ୍ଲଥ୍ ବୋଲାଉଛି। ନନୀଦିଦିଙ୍କ ଝିଅ ବୁଡ଼ିଆ ଆଉ ତାର ଖେଳସାଥୀମାନେ, ପଡ଼ିଆ ଭିତରେ ଯେଉଁ ବିରାଟ ଫାଟଟାଏ ଆଁ ମେଲି ଚାଲି ଯାଇଛି, ତା ଭିତରକୁ ଚାହିଁ ମୁହଁ ମାଡ଼ି ଶୋଇଛନ୍ତି। ମୋତେ ଦେଖି ସମସ୍ତେ ଦଉଡ଼ି ଆସିଲେ। ମୁଁ ପଚାରିଲି, ''ସେଠି ସବୁ କଣ କରୁଥିଲ ?'' ସେମାନେ ଉତ୍ତର ଦେଲେ, ''ସାନମାମୁଁ କହିଛି, ଫାଟ ଭିତରକୁ ଚାହିଁଲେ ଆମେରିକା ଦେଖାଯିବ।'' ...ବାହାରୁ ଚିତ୍କାର କରି କରି ସେମାନେ ଘର ଭିତରକୁ ପଶିଲେ। ...''ଆଇମା, ଦେଖିଲଣି କିଏ ଆସିଛି।'' ଜେଠେଇମା ଆଉ ନ'ଦିଦି ହବିଷ୍ୟ ଘର ଭିତରେ ଖାଇବାକୁ ବସିଥିଲେ। ''ନ'ଦିଦି କାହାନ୍ତି ?'' କହି ମୁଁ ପଶିବା ମାତ୍ରେ ସେମାନେ ଖାଇବା ଛାଡ଼ି ବାହାରକୁ ଆସିଲେ। ଜେଠେଇ ମା'ଙ୍କ ଡାହାଣ ହାତଟା ଅଇଁଠା। ବାଁ ହାତରେ ମୋତେ କୋଳକୁ ଟାଣିନେଲେ। ନୀଳୁ ଘର ଭିତରେ ଥିଲା। ଆଖି ମଳି ମଳି ବାହାରକୁ ଆସିଲା। ''ଜେଠେଇ ମା'ଙ୍କ ଖାଇବାଟା ନଷ୍ଟ କଲ ତ! ଏଥର ତାଙ୍କ ପତ୍ରରେ ବସି ସେତକ ଗିଳ।'' — କହି ଠୋ ଠୋ ହୋଇ ହସି ଉଠିଲା। ନ'ଦିଦି କହିଲେ... ''ଦେଖୁଚ୍ ଦେଖୁଚ୍ ଆମ ଖାଇବା ତ ସରି ଯାଇଥିଲା।'' ନ'ଦିଦିଙ୍କ ଆଖିରେ କପଟ କ୍ରୋଧର ଚିହ୍ନ। ଦେଠେଇ ମା' ନୀଳୁକୁ ଧମକେଇ କହିଲେ, ''ତୁ ପୁଣି ସେଇ ଭଙ୍ଗାଘର ଭିତରେ ଶୋଇଥିଲୁ ? କାନ୍ଥ ଚାପାରେ ମରିବୁ ନାଁ କଣ ? ତୋତେ ନେଇ ମୁଁ ଆଉ ପାରିବି ନାଇଁ ? ତତେ ମୁଁ ଆଉ ଏଠି ରଖିବି ନାଇଁ। ମାମୁଁ ଘରକୁ ପଠାଇ ଦେବି। କି ଦୁଷ୍ଟ। କି ବଦ୍‌ମାସ୍। କାଲି ରାତିରେ ବି ଏଇ ଆଣ୍ଠୁ ଫଟା ଘରେ ଶୋଇଥିଲା।'' ତା ଉପରେ କେତେ କଥା। କେତେ ଗପ। ନୀଳୁ କଥା ଶେଷକୁ ଠିକ୍ ହେଲା। ସେଇ ପତ୍ରରେ ମୋତେ ବସିବାକୁ ପଡ଼ିଲା। ଆମେ କେତେବେଳେ ସୁଦ୍ଧା ଜେଠେଇମା'ଙ୍କ ଘରକୁ

ନିଜ ଘର ଛଡ଼ା ଅନ୍ୟ କିଛି ଭାବି ପାରି ନାହୁଁ। ଜେଠେଇ ମା'ଙ୍କ ଘର ସବୁଦିନେ ଆମର ''ଆର ଘର।''

ଜେଠେଇମା' ମନେ ପଡ଼ନ୍ତି – ସାମ୍ନାରେ ଦୁଇଟି ବଡ଼ ବଡ଼ ଦାନ୍ତ ମୁହଁ ପଦାକୁ ବାହାରି ପଡ଼ିଛି। କପାଳରେ ଦୁଇ ଭ୍ରୂଲତା ମଝିରେ ଗୋଟିଏ ନେଳିଚିତାର ଦାଗ। ମୁଣ୍ଡରେ କଞ୍ଚା ପାଚିଲା ବାଳ ମିଶାମିଶି, ମୁହଁଟି ଛୋଟ। ମୁହଁରେ ହସ ଲାଗି ରହିଛି। ଆଉ ହସିଲେ ଦେଖାଯାଏ ସାମ୍ନା ତଳ ପାଟିର ଦୁଇଟି ଦାନ୍ତ ପଡ଼ି ଯାଇଛି। ପିନ୍ଧିଥାନ୍ତି ମଝିକା ଥାନ। ଦେଠେଇ ମା'ଙ୍କ ଆଖିରେ, ମୁହଁରେ କଥାବାର୍ତ୍ତାରେ ମାତୃ ସ୍ନେହର ଏପରି ଭାବ ସଚରାଚର ଦେଖାଯାଏ ନାହିଁ। ରାଫେଲ୍‌ଙ୍କ ମାତୃମୂର୍ତ୍ତି ବଡ଼ ଗମ୍ଭୀର, ଟିକିଏ କିପରି ସଙ୍କୁଚିତ ଭାବ। ଶରୀର ସର୍ବାଙ୍ଗରେ ସାବଲୀଳ ଛନ୍ଦ ଓ ସ୍ୱଚ୍ଛନ୍ଦ ଗତିର ଅଭାବ, ହାସପାତାଳ ନର୍ସମାନଙ୍କ ମେଟ୍ରନ୍ ପରି, କୃତ୍ରିମ ଗାମ୍ଭୀର୍ଯ୍ୟରେ ଭଗ। କିନ୍ତୁ ଜେଠେଇ ମା' ଦେଶୀ ପଟୁଆରେ ଅଙ୍କା ଯଶୋମତୀର ଛବି ପରି – ଚାକଚକ୍ୟ ନାହିଁ, କିନ୍ତୁ ଅନ୍ତରକୁ ସ୍ପର୍ଶ କରେ। ମୋ ପ୍ରତି ଆଉ ନୀଳୁ ପ୍ରତି ମା'ଙ୍କର ଯେଉଁ ଭାବ, ଜେଠେଇମା'ଙ୍କ ସେଇ ଭାବ, ପଡ଼ାର ସବୁ ପୁଅ ଝିଅଙ୍କ ପ୍ରତି। ସମସ୍ତଙ୍କ ପାଇଁ ସେଠାରେ ଅବାରିତ ଦ୍ୱାର, କିନ୍ତୁ ମୋର ଗର୍ବ ଯେ, ମୋର୍ ସ୍ଥାନ ସେମାନଙ୍କ ମଧ୍ୟରେ ସର୍ବୋଚ୍ଚରେ, ନୀଳୁ ପ୍ରଭୃତି ସବୁବେଳେ ଜେଠେଇମା'ଙ୍କୁ ଚିଡ଼ାନ୍ତି ଯେ, ସେ ମୋ ପ୍ରତି ପକ୍ଷପାତିତ୍ୱ କରନ୍ତି, ଅନ୍ୟ ମାନଙ୍କୁ ନଦେଇ, ଲୁଚାଇ ଲୁଚାଇ ମୋ ପାଇଁ ଖାଇବା ପଦାର୍ଥ ରଖି ଦିଅନ୍ତି। ମୁଁ ଜେଲ୍‌ରେ ଥିବା ବେଳେ ଦେଠେଇ ମା' ଥରେ ଭାରି ବେମାର ପଡ଼ିଥିଲେ। ସେତିକିବେଳେ ସେ କୁଆଡ଼େ ତାଙ୍କର ସବୁ ସମ୍ପତ୍ତି ମୋତେ ଦେଇଯିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ। ସେତେବେଳେ ଦେଖାଗଲା, ତାଙ୍କ ନିଜ ସମ୍ପତ୍ତି ମଧ୍ୟରେ ଅଛି, ଗୋଟିଏ ପୁରୁଣା ତକିଆଖୋଳରେ ଛବିଶିଟି ଟଙ୍କା – ଆଉ ମାଠିଆଏ ପୁରୁଣା ଘିଅ – ପ୍ରତି ମାସରେ କିଛି କିଛି କରି ସଞ୍ଚୟ କରିଛନ୍ତି। ନୀଳୁ ବେଶ୍ ରସେଇ ରଙ୍ଗେଇ ଏଇ ସବୁ ଗପ କହେ ଓ ଯେତେବେଳେ ନାଇଁ ସେତେବେଳେ ଜେଠେଇମାଙ୍କୁ ଏଥିପାଇଁ ବ୍ୟସ୍ତ କରି ପକାଏ।

...ସେଥର ଜେଠେଇ ମା'ଙ୍କୁ ତାଙ୍କ ଭାଇର ନାତୁଣୀ ବାହାଘରକୁ ତାଙ୍କ ଗାଁକୁ ନେଇ ଯାଇଥିଲି। ପାବ୍‌ନା ଜିଲ୍ଲାର ଛୋଟ ଗୋଟିଏ ଗାଁ। ଯମୁନା ନଦୀ କୂଳରେ। ତାଙ୍କ କବିରାଜ ଭାଇଙ୍କ ଘର-ଡିହ, ଗ୍ରାମର ବାବୁ ମାନଙ୍କର ଭଙ୍ଗା ମନ୍ଦିର, ଭୈରବୀ ଭୂୟାଁ ଯାହାଙ୍କ ନାଁ ଧରିଲେ ଶୁଖିଲା ଗଛରେ ଫଳ ଫଳେ, ବାଘ ଗୋରୁ ଏକା ଘାଟରେ ପାଣି ପିଅନ୍ତି, ସେମାନଙ୍କ ପ୍ରାଚୀନ ଘରବାଡ଼ି, ଆଉରି କେତେଜାଗା ଦେଖିଲି, ଜେଠେଇ ମା'ଙ୍କ ପାଖରୁ ଏଇ ସବୁ ସ୍ଥାନର ଏତେ ଗଳ୍ପ ଶୁଣିଥିଲି ଯେ, କିଛି ଯେପରି ନୂଆ ଲାଗୁ ନଥିଲା। ତା'ପରେ ଆମେ ଜାମାଇ – ଦୀଘି ପୋଖରୀ ହୁଡ଼ା ବନ୍ଧ ଉପରେ ଯାଉଛୁ – ଜେଠେଇ ମା' ଦେଖାଇଦେଲେ, ଏଇଠାରେ ନବଦ୍ୱୀପ ଡାକ୍ତର ସାଇକଲ୍‌ରୁ ପଡ଼ି ଯାଇଥିଲେ। ସେତେବେଳେ ଏ ଜିଲ୍ଲାରେ ଖଣ୍ଡେ ମାତ୍ର ସାଇକଲ ଥିଲା। ସାଇକଲ୍ ଦେଖିବା ପାଇଁ ଆମ ଗାଁର ସମସ୍ତେ ଏଇଠି ଆସି ଠିଆ ହୋଇଚୁ। – ଡାକ୍ତର ବିଚାରା ପଡ଼ିଗଲା ପୋଖରୀ ପାଣି ଭିତରେ, ଏକା ଥରେ ସାଇକଲ୍ ସହିତ। ମୁଁ କହିଲି ''ଜେଠେଇମା' ତୁମେ ଯେ କହିଥିଲ ଫେରୀମେଣ୍ଟ୍ ରାସ୍ତା ଉପରେ! (ଅସଲରେ କଥାଟି ହେଉଛି ferry fund)।

''ଆରେ ଏଇ ବନ୍ଧ ଉପରେ ସେଇ ଫେରୀମେଣ୍ଟ୍‌ର ରାସ୍ତା । ଆଉ ଦେଖ, ତତେ ଗୋଟାଏ କଥା କହୁଚି । ତୁ ଯେ ମତେ ଜେଠେଇମା' ଜେଠେଇମା' ଡାକୁ ମତେ ଆଦୌ ଭଲ ଲାଗେ ନାହିଁ । ମତେ ମା' ଡାକି ପାରୁନୁ ?'' ମୁଁ କିପରି ଧକ୍କା ଖାଇଗଲି । ତାଙ୍କ ଆଡ଼କୁ ଚାହିଁ ଦେଖିଲି, ଆଗ୍ରହାନ୍ୱିତ ଭାବରେ, ଜିଜ୍ଞାସୁ ଆଖିରେ, ଉତ୍ତର ଅପେକ୍ଷାରେ ସେ ମୋ ଆଡ଼େ ଚାହିଁ ରହିଛନ୍ତି । ପ୍ରଗାଢ଼ ସ୍ନେହପୂର୍ଣ୍ଣ ମାତୃତ୍ୱର ଝଲକରେ ମୁହଁଟି ଉଜ୍ଜ୍ୱଳ ଦେଖାଯାଉଛି । ପ୍ରଶ୍ନଟା ଏପରି ଅପ୍ରତ୍ୟାଶିତ ଯେ ମୋତେ ଉତ୍ତର ବୁଝିବା ପାଇଁ କିଛି କ୍ଷଣ ସମୟ ଲାଗିଲା । ଭାବି ଚିନ୍ତି କହିଲି, ''ଜେଠେଇମା' ଯାହା, ମା' ବି ସେଇଆ । ଦୁହେଁ ତ ଏକା'' ଲକ୍ଷ୍ୟ କଲି, ମୋ ଉତ୍ତରରେ ସେ ଅପ୍ରସ୍ତୁତ ହୋଇ ପଡ଼ିଲେ । ଅପରାଧୀ କଣ୍ଠରେ କହିଲେ, ''ତୋର ମା' ଅଛି । ତୋତେ ଏପରି ଅନୁରୋଧ କରିବା ମୋର ଅନ୍ୟାୟ ହୋଇଚି ।'' ତାଙ୍କ ଦୃଷ୍ଟି ଦୀଘିର ସେପାରରେ, କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ବସ୍ତୁ ଉପରେ ନୁହେଁ ।...

ସେଇ ଦିନ ଠାରୁ ଅନ୍ୟ କେହିଁ ନଥିବା ବେଳେ, ଜେଠେଇ ମା'ଙ୍କୁ ମା' ଡାକେ । ସମସ୍ତେ ଏକଥା ଜାଣନ୍ତି । ତଥାପି ଜେଠେଇମା' ଡାକରେ ପିଲାଦିନୁ ଏପରି ଅଭ୍ୟସ୍ତ ଯେ, ସମସ୍ତଙ୍କ ସାମ୍ନାରେ ମା' ବୋଲି ଡାକିବାକୁ କିପରି ସଙ୍କୋଚ଼ ଲାଗେ । ନବ ଦ୍ୱୀପ ଡାକ୍ତର ସାଇକଲ୍‌ରୁ ପଡ଼ିଯିବା ସ୍ଥାନ ଦେଖାଇଦେବା ବେଳେ ଜେଠେଇମା'ଙ୍କର ମୋର ମା' ହେବା ପାଇଁ ଇଚ୍ଛା କାହିଁକି ହେଲା, ତାହା ଆଜି ସୁଦ୍ଧା ଠିକ୍ କରି ପାରି ନାହିଁ ।

... ଏହାର କିଛି ଦିନ ପରର କଥା । ଯାହା ଆଶଙ୍କା କରିଥିଲି ଠିକ୍ ସେଇଆ । ଜେଠେଇମା'ଙ୍କୁ 'ମା' ଡାକିବା, ମା' ପସନ୍ଦ କରିନ୍ତି ନାହିଁ । ମୁଁ ଆଉ ନୀଲୁ ରୋଷେଇ ଘର ପିଣ୍ଡାରେ ଖାଇବାକୁ ବସିଚୁ । ମା' ପରିବେଷଣ କରୁଛନ୍ତି । ମୁଁ ହଠାତ୍ କହି ପକାଇଲି ''ମା' ଜାଣିଚ଼, ଖସାବଟା ଦେଇ, ଜେଠେଇମା' ଜହ୍ନିକୁ ଖୁବ୍ ସୁନ୍ଦର ଝୋଳ କରନ୍ତି ।'' କି କଥାର କି ଉତ୍ତର ! ମା' ସ୍ୱଭାବତଃ ମିଷ୍ଟଭାଷିଣୀ । ତାଙ୍କ କଥାର ଏଇ ଆକସ୍ମିକ ଝଙ୍କାର ମୋତେ ଅବାକ୍ କରି ଦେଇଥିଲା । ନୀଲୁ ହଠାତ୍ କହିଲା ''ଆଜି ମା'ଙ୍କୁ କହିଦେଇଛି, ତୁମେ ଜେଠେଇମାଙ୍କୁ 'ମା' ଡାକ, ସେଥିପାଇଁ ମା' ରାଗିଚି । ଦେଖିଲ ନାଇଁ 'ତୁମେ' କହିଲେ ।'' ସତରେ, ମା' ବେଶୀ ରାଗିଲେ ଆମକୁ ଆଉ 'ତୁ' କହନ୍ତି ନାହିଁ । ...ନୀଲୁଟା ବି ଏପରି ବୋକା ! ମା' ନଥିଲା ବେଳେ ସେ ତ ମୋତେ ଏଇ ଖବରଟା ଦେଇ ପାରିଥାନ୍ତା । ଦେଖିଲି ମା'ଙ୍କ ଦୁଇ ଆଖିରେ ଲୁହ ଜକେଇ ଆସିଛି । ଲୁଚାଇବା ପାଇଁ ସେ ରୋଷେଇ ଘର ଭିତରକୁ ପଶିଗଲେ । ମୋର ମନେହେଲା, ଗୋଟିଏ ଗୁରୁତର ଅପରାଧ କରି ପକାଇଛି ।

...ମା' ଯେଉଁ ୱାର୍ଡ଼ରେ ଅଛନ୍ତି ତା ନାଁ 'ଔରତ୍ କିତା' । ଆଜି ସେ ଆଉ ଶୋଇ ପାରିବେ ନାହିଁ । ମା' ବୋଧହୁଏ ମଶାରୀ ପକାଇ ଜପରେ ବସିଛନ୍ତି । ଦେଖିଚି, ମନ ଖରାପ ହେଲେ, ମା' ଜପରେ ବସନ୍ତି, ନୀଲୁ ଯେତେବେଳେ ଦେଉଳରେ ଗତବର୍ଷ ଆରମ୍ଭରେ ବେମାରୀ ପଡ଼ିଥିଲା; ସେଇ ବେଳର କଥା କହୁଚି । ହଠାତ୍ ଖବର ଆସିଲା, ନୀଲୁର ଆପେଣ୍ଡିସାଇଟିସ୍ ଅପରେସନ୍ ହୋଇଚି ଆଜ୍‌ମୀର ହାସପାତାଳରେ । ସେଦିନ ସାରା ରାତି ମା' ପୂଜା ଘରେ ରହିଲେ । ରାତି ପ୍ରାୟ ଏଗାରଟା ବେଳେ, ଥରେ ମୋ ଘର ଭିତରକୁ ଆସି, ଅଇନା ପାଖରେ, ସେଇ ଥାକ ଉପରେ, ଶିଶି ବୋତଲ୍ ଗୁଡ଼ାକ ପାଖରେ କଣ ଖୋଜିଲେ । ମୋର ମନେ ହେଲା, ମା' ହୁଏତ ନୀଲୁର ବେମାରୀ ସମ୍ପର୍କରେ ମୋ ସହିତ କଥାବାର୍ତ୍ତା କରିବାକୁ

ଚାହାନ୍ତି। ଅଥଚ୍ ସାହସ ଖୋଜି ପାଉନାହାନ୍ତି। କାଳେ ମୁଁ ବେମାରୀର ଗୁରୁତ୍ୱ ବା ପ୍ରାଣର ଆଶଙ୍କା ସମ୍ପର୍କରେ କିଛି କହି ପକାଏ, ସେଇଥିପାଇଁ। ବୋଧହୁଏ ଜପରେ ବସି ସୁଦ୍ଧା ସମ୍ପୂର୍ଣ୍ଣ ମନୋବଳ ପାଇ ନାହାନ୍ତି। ମା' ଭାବିଲେ, ମୋ ଦୃଷ୍ଟି ବହି ଉପରେ ନିବଦ୍ଧ। ମୁଁ ତାଙ୍କୁ ଦେଖି ପାରୁ ନାହିଁ। କିନ୍ତୁ ଦେଖିଲି, ଅତି ଭକ୍ତିରେ ସେ କାନ୍ଥରେ ଝୁଲୁଥିବା ଗାନ୍ଧିଜୀଙ୍କ ଛବିଟିକୁ ପ୍ରଣାମ କଲେ। ତାଙ୍କ ଆଲ୍‌ନାରେ ଟଙ୍ଗା ହୋଇଥିବା ଲୁଗା ଗୁଡ଼ାକୁ ପୁଣି ସଜାଡ଼ିବା ପାଇଁ ଆରମ୍ଭ କଲେ। ସେତେବେଳେ ମୁଁ ମା'ଙ୍କୁ କହିଲି, "ଆପେଣ୍ଡିସାଇଟିସ୍ ଅପରେସନ୍ ଅତି ମାମୁଲି କଥା। ଆଜି କାଲି ବିଲାତରେ ସୁସ୍ଥ ଲୋକମାନେ ଏଇ ଅପରେସନ୍ କରାଇ ନିଅନ୍ତି।" ମା' ଏପରି ଭାବ ଦେଖାଇଲେ, ଯେପରି, ଏ ବିଷୟରେ ତାଙ୍କର କୌଣସି ଚିନ୍ତା ବା ଔତ୍ସୁକ୍ୟ ନାହିଁ। "ଦେଉଳୀରୁ ଆଜ୍‌ମୀର୍ କେତେ ବାଟରେ?" ତା'ପରେ ସାରା ରାତି ଜପରେ କଟିଲା।...

ଗୁମ୍‌ଟୀ ଉପରୁ ଜଣେ ୱାର୍ଡ଼ର୍ ଏକଟଣା ଚିତ୍କାର କରି ଚାଲିଚି—"ବୋଲେରେ ନୟଗୋଲ୍, ବୋଲୋରେ ଜୁଭଲିନ୍ (Juveline Ward) ...।" ରାତି ବର୍ତ୍ତମାନ କିଛି ବେଶୀ ହୋଇନାହିଁ, କିନ୍ତୁ ଏହାରି ଭିତରେ ଅଧିକାଂଶ ୱାର୍ଡ଼ର୍ ପହରା କର୍ତ୍ତବ୍ୟ କୌଣସି ମତେ ସାରିଦେବା ଭାବରେ ଜବାବ ଦେବା ଆରମ୍ଭ କରିଛନ୍ତି। ୱାର୍ଡ଼ର୍ ଗୀତ ବୋଲିବା ପରି ସୁର ଧରି ଡାକୁଚି "ବୋଲୋରେ...।" "ବୋଲେରେ ପାଞ୍ଚନମ୍ବର", ଏତକ କହିବା ପାଇଁ ମୋତେ ଷୋହଳ ଗଣିବା ପାଇଁ ଯେତିକି ସମୟ ଲାଗିଲା, ତାକୁ ସେତିକି ସମୟ ଲାଗିଲା। ଜଣେ ୱାର୍ଡ଼ର୍ ମତେ ଦିନେ ବୁଝାଇଥିଲା। ସେମାନେ ସୁର୍ ଧରି ଗୀତ ବୋଲିବା ପରି କଥା ଗୁଡ଼ା ଯେ କହନ୍ତି, ସେଥିରେ କଷ୍ଟ କମ୍ ହୁଏ; ପୁଣି କଣ୍ଠ ପଡ଼ିଯିବାର ସମ୍ଭାବନା ନ ଥାଏ। ପ୍ରତି ୱାର୍ଡ଼ରେ ଚାରୋଟି କରି ବଡ଼ ହଲ୍—ଦୁଇଟି ଉପରେ ଦୁଇଟି ତଳେ। ଜେଲ୍ ପରିଭାଷାରେ ଏଇ ହଲ୍ ଗୁଡ଼ିକର ନାମ "ଖାଟଲ୍"। ପାଞ୍ଚନମ୍ବର ୱାର୍ଡ଼ର ପ୍ରଥମ ହଲ୍‌ରୁ ଜବାବ ଆସିଲା—ଭଙ୍ଗା ଘାଜଡ଼ା ଗଳାରେ "ପାଞ୍ଚନମ୍ବର ଖାଟାଲ୍—ଜମା ଏକ୍ ଶୋ ସତାଔନ୍—ଆସାମୀ, ତାଲା, ବାର୍ତ୍ତ (ଆଲୁଅ)* ଠିକ୍ ହାହେ।" ଲୋକଟିର କଣ୍ଠସ୍ୱର ଶୁଣି ମନେ ହେଉଛି, ତାର ମୁହଁଯାକ ପାଚିଲା ରୁଢ଼। ଭାରି କର୍ତ୍ତବ୍ୟନିଷ୍ଠ। ତା ମୁଣ୍ଡରେ ନେଳି ଟୋପି। ଅର୍ଥାତ୍ ସେ 'ପହରୀ'। ଫି ମାସରେ ଚାରିଅଣା କରି ବେତନ, ତା ନାଁରେ ସରକାର ବାହାଦୁରଙ୍କ ତରଫରୁ ଜମା ହୁଏ। ତା ବଦଳରେ ରାତିରେ ଦୁଇଘଣ୍ଟା ସେ ଏଇ ପହରାଦିଆ କାମ କରେ। ସେ ସରକାରର 'ନିମକ୍' ଖାଉଚି। କାମରେ ଫାଙ୍କି ଦେବ କାହିଁକି? ପାଞ୍ଚ ନମ୍ବରର ଅନ୍ୟ ତିନି ଖାଟଲ୍‌ରୁ ଯେଉଁ ଉତ୍ତର ଆସିଲା, ତାହା ଏତେ ସ୍ୱଷ୍ଟ ନୁହେଁ। ସେମାନେ ସବୁ କଥା ସ୍ୱଷ୍ଟ ଭାବରେ ମଧ୍ୟ କହିଲେ ନାହିଁ। କେବଳ ଗୋଟାଏ "ହୋ...ଓ....ଓ...ଓ...ହେଁ" ପରି ଶବ୍ଦଟି ଶୁଭିଲା। ନିଶୁନ୍ ରାତିରେ ଗାଁ ଚୌକୀଦାର୍‌ର ଡାକ ପରି। ଗୀତ ପରି ସୁର ଧରି ବୋଲିବାର ପ୍ରଚେଷ୍ଟା ନାହିଁ। —କେବଳ କୌଣସି ମତେ ପାପ କ୍ଷୟ କରିବା ଧରଣର କହିବା। ଏମାନେ ନିଶ୍ଚୟ ଧଳାଟୋପିଧାରୀ 'ମେଟ୍' ଅର୍ଥାତ୍ ଏମାନେ 'ପହରୀ' ମାନଙ୍କ ଅପେକ୍ଷା ପୁରୁଣା କୟଦୀ। ମାସିକ ସେମାନେ ଆଠ ଅଣା ବେତନ ପାନ୍ତି ସତ; କିନ୍ତୁ ଜେଲ୍‌ର ଅନେକ କଥା ଦେଖିଛନ୍ତି, ଶୁଣିଛନ୍ତି ସେମାନେ। ସେମାନେ ଜାଣନ୍ତି ଯେ, ଏ କାର୍ଯ୍ୟ ଭଲ ଭାବରେ

* ଆଲୁଅ।

କରିବା ନ କରିବା ଉପରେ ସେମାନଙ୍କର "ମାର୍କା" (Remission) ନିର୍ଭର କରେ ନାହିଁ। ସେମାନେ ଆଉରି ମଧ୍ୟ ଜାଣନ୍ତି ହେଡ୍ ଜମାଦାରକୁ କିପରି ସନ୍ତୁଷ୍ଟ ରଖିବାକୁ ହୁଏ। ଜଣେ ମେଟ୍ ନିହାତି ଅକିଞ୍ଚନ ନୁହେଁ। ତା ଅଧୀନରେ ଥା'ନ୍ତି ଗୁଡ଼ିଏ କଯଦୀ। ସେମାନଙ୍କୁ ଶାସନରେ ରଖିବାକୁ ହେଲେ, ଜେଲ୍‌ର କର୍ମଚାରୀ ମାନଙ୍କ ପ୍ରତି, ଜେଲ୍‌ର ନିୟମ କାନୁନ୍ ପ୍ରତି ତାଚ୍ଛଲ୍ୟ ଦେଖାଇବାକୁ ପଡ଼ିବ।

"ବୋଲୋରେ ନୟାଗୋଲ୍" (Segregation Ward)। ଯେତେ ସମୟ ୱାର୍ଡ଼ର୍ "ବୋଲୋରେ" ଡାକୁଥିଲା, ମୁଁ ଉତ୍କର୍ଣ୍ଣ ହୋଇ ଶୁଣୁଥିଲି, ପାଞ୍ଚ ନମ୍ବର ପରେ ଛଅ ନମ୍ବର କହିବ, ନାଁ 'ନୟାଗୋଲ୍' କହିବ। ସେଇଥିରୁ ବୁଝା ପଡ଼ିବ, ୱାର୍ଡ଼ରଟି ନୂଆ, ନାଁ ପୁରୁଣା। ଛଅ ନମ୍ବରର ଆଉ ଗୋଟାଏ ନାଁ ଅଛି—'ଦାମ୍ଲୀ କିତା।' ଯେଉଁମାନଙ୍କୁ ଯାବଜ୍ଜୀବନ କାରଦଣ୍ଡ ଆଦେଶ ହୋଇଛି, ସେଇମାନେ ରହନ୍ତି ଏଇ ୱାର୍ଡ଼ରେ। ଏଇ କଯଦୀମାନେ ଅନ୍ୟ ୱାର୍ଡ଼ର କଯଦୀମାନଙ୍କୁ 'କଦ୍ଦୁଚୋର୍" ବୋଲି ଥଟ୍ଟା କରନ୍ତି ଓ ତାଚ୍ଛଲ୍ୟ ଦୃଷ୍ଟିରେ ଦେଖନ୍ତି। ସେମାନେ କୁଆଡ଼େ ଲାଉ ଚୋରୀ କରି ଜେଲ୍‌କୁ ଆସିଛନ୍ତି। ଏଇ 'ଦାମୁଲୀ' (lifer) ମାନଙ୍କୁ ୱାର୍ଡ଼ର୍ ମାନେ ଟିକିଏ ସମ୍ମାନ ଦେଖାଇ ଚଳନ୍ତି। ପୁରୁଣା ୱାର୍ଡ଼ର ମାନଙ୍କ ସହିତ ପୁଣି ଏମାନଙ୍କର ଗୋଟିଏ ବନ୍ଦୋବସ୍ତ ଅଛି। ସେମାନେ ଗୁମୁଟି ଉପରେ ଡିଉଟୀରେ ଥିଲେ, ଏମାନେ ସାରା ରାତି ଶାନ୍ତିରେ ଶୋଇ ପାରନ୍ତି। 'ମେଟ୍' ପହରାର ଚିତ୍କାର ଆଉ ସଂଖ୍ୟାଗଣନାରୁ ସେମାନେ ଅବ୍ୟାହତି ପାଆନ୍ତି। ଦିନସାରା ବିଚାରାମାନେ ଜେଲ୍ ଫାକ୍ଟରୀରେ କାମ କରନ୍ତି। ବିନା ବ୍ୟାଘାତରେ ଟିକିଏ ଶାନ୍ତିରେ ଶୋଇବାର ସୁଯୋଗ ନ ପାଇଲେ, ଏମାନେ ସାରା ଜୀବନ ଏଇ ଖଟଣି ଖଟିବେ କିପରି ? ...ନୂଆ ୱାର୍ଡ଼ର ହୋଇଥିଲେ ନିଶ୍ଚୟ "ବୋଲୋରେ ଛଅ ନମ୍ବର" ବୋଲି ଡାକ ଦେଇଥାନ୍ତା। ଦୁଇ ନମ୍ବର ୱାର୍ଡ଼ରୁ ଛଅ ନମ୍ବର ୱାର୍ଡ଼ ଆଡ଼କୁ ଚାହିଁଲେ, ମନେ ହୁଏ ଯେପରି ଗୋଟିଏ ବଡ଼ ଜଙ୍କସନ୍ ରେଲଷ୍ଟେସନ୍‌ର ପ୍ଲାଟ୍‌ଫର୍ମରେ ଠିଆ ହୋଇଛି। ଏ ୱାର୍ଡ଼ଟି ଜଣେ ରାଜା ବାହାଦୁର୍‌ଙ୍କ ଦାନରେ ନିର୍ମିତ। ଦାନର ପାତ୍ର, ବିଷୟ ବସ୍ତୁ ଓ ଉଦ୍ଦେଶ୍ୟ ବାଛିବାର ପ୍ରତିଭା, ରାଜା ବାହାଦୁର୍‌ଙ୍କର ନିଶ୍ଚୟ ଅନନ୍ୟ ସାଧାରଣ କହିବାକୁ ହେବ। ଯାହା ହେଉ, ଏଇ ଦାନ ଦ୍ୱାରା ରାଜାବାହାଦୁର୍‌ଙ୍କ କୌଣସି ଗୁପ୍ତ ଆକାଂକ୍ଷା ସିଦ୍ଧ ହୋଇଛି କି ନାଁ ଜାଣେ ନାଁ। ତେବେ ଯେଉଁ ହତଭାଗ୍ୟମାନେ ସାରା ଜୀବନ ଏଇ କାରାଗାରରେ କଟାଇବେ, ସେମାନେ ନିଶ୍ଚୟ ତାଙ୍କୁ ଆନ୍ତରିକ ଧନ୍ୟବାଦ ଦେବେ। ଲାଇଫର୍ ମାନେ, ସାଧାରଣତଃ ଲୋକ ଭଲ। ଦାଗୀ ଚୋରଙ୍କ ଖେଚଡ଼ାମୀ ବା ନୀଚତା ସେମାନଙ୍କ ପାଖରେ ନାହିଁ। ଜେଲ୍‌କୁ ସେମାନେ ଘର ବୋଲି ଧରି ନେଇଛନ୍ତି। କେହି କେହି ୱାର୍ଡ଼୍ ଅଗଣାରେ ସଯତ୍ନରେ ତୁଳସୀ ଗଛ ପୋତି ବସିବା ପାଇଁ ଜାଗା କରି ନେଇଛନ୍ତି। ଅନେକଙ୍କର ନିଜ ନିଜର ଲଙ୍କା ପୋଦିନା ଗଛ ଅଛି। ଏଇ ଗଛ ଗୁଡ଼ିକ ଉପରେ ସେମାନଙ୍କର କି ମାୟା ! ସ୍ନେହ, ଭଲପାଇବା, ସନ୍ତାନ ବାତ୍ସଲ୍ୟର ସ୍ୱାଭାବିକ ଆବେଗ, ସେମାନେ ଏଇ ଗଛ ଗୁଡ଼ିକ ଉପରେ ନିଃଶେଷ କରି ଢ଼ାଳି ଦେଇଛନ୍ତି। . . .

. . . ହଜାରୀବାଗ୍ ଜେଲ୍‌ରୁ ସେଇ ଫିରିଙ୍ଗୀ ଉଇଲିଅମ୍ ସାହେବ ଯେଉଁ ଦିନ ଛାଡ଼ ପାଇଲା, ସେଦିନ ତାର କି କାନ୍ଦ ! ଚଉଦ ବର୍ଷ ସେ ଜେଲ୍‌ରେ କଟାଇଛି। ସେ ଯେଉଁ ପିଜୁଳି ଗଛଟି ଲଗାଇଥିଲା, ସେଇଟି କେତେ ବଡ଼ ହେଲାଣି। ତାରି ହାତରେ ଲଗା,

ଗୋଲାପଜାମ୍ ଗଛଟି ପାଉଡ଼ର୍–ପଫ୍ ପରି ଫୁଲରେ ଭରି ଯାଇଛି । ଓସ୍ତ ଗଛମୂଳେ ବସିବା ପାଇଁ ସେ ବେଦିଟିଏ ତିଆରି କରାଇ ଥିଲା । ଏଥିପାଇଁ ସୁପରିଟେଣ୍ଡେଣ୍ଟ୍ ଓ ପି.ଡବ୍ଲ୍ୟୁ.ଡ଼ି ଇଞ୍ଜିନିୟରଙ୍କ ମଧ୍ୟରେ କେତେ ମନୋମାଳିନ୍ୟ ହୋଇଗଲା ! – ସବୁ ଆଡ଼କୁ ସେ ଚାହିଁ ଦେଖେ, ଆଉ କୋହ ମିଶା କଣ୍ଠରେ କାନ୍ଦି ଉଠେ । ଜଣେ ବୟସ୍କ ଲୋକ ଏପରି କାନ୍ଦିବା ଖୁବ୍ କମ୍ ଦେଖିଛି । ଘରକୁ ଫେରିବା ଓ ଆତ୍ମୀୟ ସ୍ୱଜନଙ୍କୁ ଦେଖିବାର ଆନନ୍ଦ ଅପେକ୍ଷା ଏଇ ସବୁ ଗଛପତ୍ର ଓ ଜେଲ୍‌ର ବନ୍ଧୁ ବାନ୍ଧବଙ୍କୁ ଛାଡ଼ିଯିବାର ଦୁଃଖ ତାକୁ ଅନେକ ବେଶୀ ବାଧୁଥିଲା । ଗୋଟାଏ ଭାବରେ ବହୁବେଳ ବସିବା ପରେ ପାଦଟା ଅବଶ ହୋଇଗଲାଣି । ଘର ଭିତରେ କେତେଥର ପଦଚାରଣା କଲି ପାଦର ଝିମିଝିମି କଟାଇବା ପାଇଁ । ଦରଜା ଗରାଦ ଧରି ବସିବା ବେଳେ, ନିଜ ଅଜ୍ଞାତରେ ଡାହାଣ ପାଖକୁ ଭରା ଦେଇ ବସିଥିଲି । ଡାହାଣ ହାତରେ ଧରିଥିଲି ଗରାଦର ବାଡ଼ାକୁ, କେତେବେଳେ ଭୁଲ୍‌ରେ ବାଁ କାନ୍ଧ ଗରାଦରେ ଢ଼ିରା ଦେଇ ।

...ସେତେବେଳକୁ ଆମେ ସବୁ କେତେ ଛୋଟ ଛୋଟ । ବୋର୍ଡ଼ିଙ୍ଗ ପାଖରେ ହେଡ୍‌ମାଷ୍ଟରଙ୍କ କ୍ୱାର୍ଟର୍ । ବାବା ସ୍କୁଲ୍ ଯାଇଛନ୍ତି । ମା ବସି ଗୁଆ କାଟୁଛନ୍ତି । ମୁଁ ଆଉ ନୀଲୁ ଭିତରେ ଚାଲିଛି କଥା କଟାକାଟି । ନୀଲୁ କହୁଚି ମା'ଙ୍କ ଡାହାଣ କୋଳଟା ତାର, ମୋର ଇଚ୍ଛା ହେଲେ ମୁଁ ବା କୋଳଟା ନେଇପାରେ । କାହିଁକି ଜାଣେ ନା, ବାଁ କୋଳଟା ନେବା ପାଇଁ ମୋତେ ଅପମାନ ଲାଗିଲା । ଦୁଇ ଜଣ ଯାକ ମା'ଙ୍କ ଡାହାଣ କୋଳ ଉପରେ ହାତ ରଖି ତା ଉପରେ ନିଜ ନିଜର ଦାବି ସାବ୍ୟସ୍ତ କରିବାର ଚେଷ୍ଟା କରୁଛୁ । ଏଇ ଝିଙ୍କା ଟଣା ଭିତରେ ହଠାତ୍ ନୀଲୁର ଗୋଡ଼ ବାଜି, କଟା ଗୁଆ ରଖିବାର ଡାଲାଟା ଓଲଟି ପଡ଼ିଲା । ମା' ଢ଼ାଏ ଢ଼ାଏ କରି ମୋ ଗାଲରେ ଦୁଇଟା ଚଟକଣା କଷି କହିଲେ ''ବୁଢ଼ା ହେଲୁଣି, ଲାଜ ମାତ୍ରୁ ନାଇଁ । ଯେତିକି ବୟସ ହେଉଛି, ଗୁଣ ସେତିକି ବଢ଼ୁଚି ।'' ଆହତ କଣ୍ଠରେ ମୁଁ ଜବାବ ଦେଲି, ''ଗୁଆ ମୁଁ ବିଞ୍ଚି ଦେଲି ନାଁ କଣ ?

''ଫେର୍ କଥା ! ଛୋଟ ଭାଇଟା ଡାହାଣ କୋଳ ମାଗୁଚି ; ତେଇଁକି ଆଙ୍କର ବି ଡାହାଣ କୋଳ ଦରକାର । ଡାହାଣ କୋଳଟା ନୀଳୁର । ଆଉ ଟିକିକେ ମୋ ହାତଟା ଗୁଆକାତିରେ କଟି ଯାଇଥାନ୍ତା, ଆଉ କଣ ?''

ରାଗ, ଲଜ୍ଜ୍ୟା, ଅପମାନରେ ଆଖି ଲୁହରେ ଭରିଗଲା । ଟିକିଏ ଦୂରକୁ ଉଠି ଯାଇଁ ଚୁପ୍ ହୋଇ ବସି ରହିଲି । ନୀଲୁ କିଛି ସମୟ ପରେ ଉଠି ଚାଲିଗଲା । – ବୋଧହୁଏ ପ୍ରତିଦ୍ୱନ୍ଦୀ ନଥିବାରୁ ଝଗଡ଼ା ପାଇଁ ତାର ଆଉ ସ୍ପୃହା ନ ଥିଲା । ବହୁବେଳୁ ଅନୁଭବ କରୁଥିଲି, ମୁଁ କଣ କରୁଛି ମା' ମଝିରେ ମଝିରେ ଆଡ଼ ଆଖିରେ, କଣେଇ କଣେଇ ଚାହିଁ ଦେଖୁଚନ୍ତି । ଗୁଆକଟା ଶେଷ ହେବା ପରେ, ଡାଲାଟା ଦେରାଜ ଉପରେ ରଖି ମା' ମୋ ପାଖକୁ ଉଠିଆସି କହିଲେ, ''ତୁ ଟା ଏଡ଼େ ବୋକା କାହିଁକି କିରେ ? ବାଁ କୋଳଟା ତ ଭଲ । ଦେଖିନୁ ଶାମୁକାରେ ଦୁଧ ପିଆଇବା ବେଳେ ବାଁ କୋଳରେ ମୁଣ୍ଡ ରଖି ପିଲା କେମିତି ଶୋଇଥାଏ । ତୁ ବି ତ ଡାହାଣ କୋଳରେ ଶୋଇଚୁ । ଯା, ବାଁ କୋଳଟା ଏଣିକି ତୋର ହେଲା । ଉଠ୍ । ଦେଖିଲୁ ସେ ଦୁଷ୍ଟଟା ପୁଣି କୁଆଡ଼େ ଗଲା !'' ଯୁକ୍ତିଟା ସେତେବେଳେ ଅକାଟ୍ୟ ମନେ ହୋଇଥିଲା ।...''

ଡାହାଣ ପାଦର ଅବଶ ଭାବଟା କଟି ଗଲାଣି । ଘର ଭିତରେ ପଦଚାରଣା କରୁଛି

ଦେଖି ୱାର୍ଡ୍‌ର୍ ଦରଜା ପାଖକୁ ଆସିଲା – ସେ ଯେମିତି ଜାଣିବାକୁ ଚାହେଁ, ମୁଁ କଣ ଭାବୁଚି, ରାତି ଅଧରେ କାହିଁକି ଘର ଭିତରେ ପଦଚାରଣା କରୁଚି। ସେ ବୋଧହୁଏ ଭାବୁଚି, ବାବୁଙ୍କ ମନ ଠିକ୍ ନାହିଁ। ଆଜି ପରି ଦିନରେ ତ ରହିବା କଥା ନୁହେଁ। ଗରାଦ ବାହାରୁ ୱାର୍ଡ୍‌ର୍ ଚାହିଁ ଦେଖୁଚି; ଚିଡ଼ିଆଖାନାର ଦର୍ଶକ ଜନ୍ତା ଭିତରେ କୌଣସି ବନ୍ୟ ପଶୁ ଚାହିଁ ଦେଖିବା ପରି।

ଚିଡ଼ିଆଖାନା କଥାରୁ ମନେ ପଡ଼ିଲା... କାଶୀକୁ ମୋର ବନ୍ଧୁ ନୀରେଶ୍‌ର ଛୋଟ ଆଈମା ତୀର୍ଥ କରିବା ପାଇଁ ଆସିଥିଲେ। ଦୂରସମ୍ପର୍କିତ ଛୋଟ ଆଈମା। ଦ୍ୱିତୀୟ ପକ୍ଷରେ ବିବାହ ହୋଇଥିଲା। ଜଣେ ବୃଦ୍ଧ ଜମିଦାରଙ୍କ ସହିତ। ବିବାହର ଅଳ୍ପ ଦିନ ମଧ୍ୟରେ ବିଧବା ହୋଇଗଲେ। କାଶୀଙ୍କୁ ତାଙ୍କ ସାଙ୍ଗରେ ଆସିଥିଲେ, ଛୋଟ ଆଈମାଙ୍କ ମା ଆଉ ବାପା। ନାଁ କୁ ଛୋଟ ଆଈ ମା; କିନ୍ତୁ ବୟସ ଏତେ କମ୍ ଦେଖି ଅବାକ୍ ହେଇ ଯାଇଥିଲି। ମୁଁ ଆଉ ନୀରେଶ୍ ପ୍ରବଳ ଉତ୍ସାହରେ ତାଙ୍କୁ କାଶୀର ଦ୍ରଷ୍ଟବ୍ୟ ସ୍ଥାନ ସବୁ ବୁଲି ଦେଖାଇ ଦେଇଥିଲୁ। ରାଜାଙ୍କ ଚିଡ଼ିଆଖାନା ଦେଖିବାକୁ ଗଲୁ। ବାଘ ଘର ସାମ୍ନାରେ ଠିଆ ହୋଇଚୁ। ବାଘଟା ଦୁଇ ପାଦ ଆଗକୁ ବଢ଼ାଇ ଗୋଟାଏ ବିକଟ ଶବ୍ଦ କଲା। ତା ମୁହଁଟା ଦେଖା ଯାଉଥିଲା ହାଇ ମାରିବା ଭଳି। ନୀରେଶର ଛୋଟ ଆଈମା "ମାଗୋ" ବୋଲି ଚିତ୍କାର କରି ମୋତେ କୁଣ୍ଡାଇ ଧରିଥିଲେ, ବୋଧହୁଏ ଭୟରେ। ମାତ୍ର କେଇ ସେକେଣ୍ଡର କଥା। ସମ୍ଭବତଃ ଏ ବ୍ୟାପାରଟା, ତାର ମା, ବାବା କିମ୍ବା ନୀରେଶ୍ କାହାରି ଆଖିରେ ପଡ଼ିନଥିଲା। ପଡ଼ିଥିଲେ ବି ବିସଦୃଶ ମନେ ହୋଇ ନ ଥିଲା। ମୁଁ କିନ୍ତୁ ଏଇ ସଂକ୍ଷିପ୍ତ ମୁହୂର୍ତ୍ତଟିକୁ ଉପଜୀବ୍ୟ କରି ମନେ ମନେ କେତେ ସ୍ୱପ୍ନଜାଲ ବୁଣିଥିଲି। ନୀରେଶ୍‌ର ଉପଦେଶ ଅନୁସାରେ ଛୋଟ ଆଈମା'ଙ୍କୁ ମାଉସୀମା' ଡାକିଲି। କାଶୀରେ ତାଙ୍କ ବସାକୁ ନୀରେଶ୍ ସାଙ୍ଗରେ ଗଲେ, ସିଧା ଯାଏ ଏକାଥରେ ରୋଷେଇ ଘର ଭିତରକୁ; ଯେଉଁଠି ସେ ରାନ୍ଧନ୍ତି। ମାଉସୀମା' ଅତି ଭଲ ମଣିଷ। କଥାବାର୍ତ୍ତା ବିଶେଷ କରି ପାରନ୍ତି ନାହିଁ। ଶିକ୍ଷିତ, ସହରୀ ପିଲା ସାଙ୍ଗରେ କଥାବାର୍ତ୍ତା କଲା ବେଳେ କଣ ନାଇଁ କଣ କହି ପକାଇବେ, ସେଇ ଭୟରେ। ମୁଁ ରୋଷେଇ ଘର ଭିତରକୁ ଆସିବା ମାତ୍ରେ ସେ କହିଲେ, "ମୋ ଭଙ୍ଗା କୁଡ଼ିଆରେ ଏ ଚନ୍ଦ୍ରମା କୁଆଡୁ ଉଇଁଲା ମ?" କଣ ଭାବି ଏକଥା କହିଲେ, ଠିକ୍ ବୁଝି ପାରିଲି ନାହିଁ ମୁଁ। ତା'ପରେ ପିଠାଖଡ଼ିକାଟା ହାତରେ ଧରି କିପରି ସଙ୍କୁଚିତ ଭାବରେ ଠିଆ ହୋଇ ରହିଲେ – ମୁହଁରେ ଗୋଟାଏ ଅର୍ଥହୀନ ହସର ଭଙ୍ଗୀ। ଏହାପରର କେତେ ଦିନ ସେମାନଙ୍କୁ ନେଇ ଆମେ ଖୁବ୍ ବ୍ୟସ୍ତ ରହିଲୁ। ଛୋଟ ଆଈମା'ଙ୍କ ବାବାଙ୍କ ପାଇଁ ଚାରି ରକମର ଚାରୋଟି ଟର୍ଚ୍ଚ କେତେ ଦୋକାନରେ ବୁଲି ବୁଲି କିଣିଲି। ବଜାରକୁ ବାହାରିଲେ ତାଙ୍କର ଏଇପରି କୌଣସି ଗୋଟିଏ ଜିନିଷ କିଣିବା କଥା ମନେ ପଡ଼େ। ଭଦ୍ରଲୋକଙ୍କ କଥାବାର୍ତ୍ତା ଗ୍ରାମ୍ୟ, ଅମାର୍ଜିତ। ଝିଅର ମୁରବୀ। ଜୋଇଁଙ୍କ ଅବର୍ତ୍ତମାନରେ ସେ ସମ୍ପତ୍ତିର ଦେଖାଶୁଣା କରନ୍ତି। ତାଙ୍କର ଦାରିଦ୍ର୍ୟ ଜର୍ଜରିତ ପୂର୍ବ ଜୀବନର ଅତୃପ୍ତ ସଉକ ଗୁଡ଼ିକୁ ମେଣ୍ଟାଇବା ପାଇଁ ସୁଯୋଗ ପାଇଥିବାରୁ ଏକମାତ୍ର କନ୍ୟାର ବୈଧବ୍ୟରେ ସେ ବିଶେଷ ଦୁଃଖିତ ବୋଲି ମନେ ହୁଅନ୍ତି ନାହିଁ। ଆତ୍ମାଭିମାନ ଯେପରି ଟିକିଏ ବଢ଼ିଛି। ଭୟ କରନ୍ତି ଏକମାତ୍ର ଝିଅକୁ।

କାଶୀରେ ଛୋଟ ଆଈମା ବେମାର ପଡ଼ିଲେ। ବେମାର ପଡ଼ିଥିବା ବେଳେ ତାଙ୍କର

ଜିଦ୍ ମୋ ଛଡ଼ା ଆଉ କାହା ହାତରୁ ସିଏ ଔଷଦ ଖାଇବେ ନାହିଁ। ପ୍ରତିଦିନ ବିଶ୍ୱନାଥ ମନ୍ଦିରର ପଣ୍ଡାଙ୍କ ଘରୁ ପଇଡ଼ ନେଇଯାଏ ରୋଗୀ ପାଇଁ। ଘରକୁ ଆସିବା ମାତ୍ରେ ଛୋଟ ଆଈମା' କହନ୍ତି "ଏଇ ତ ସନ୍ୟାସୀ ଆସି ଗଲେଣି; ଏଣିକି ମା' ନିଶ୍ଚିନ୍ତ।" ସେତେବେଳେ ମୋ ମନରେ ଜାଗିଥିଲା, କୃଚ୍ଛ୍ର ସାଧନାର ନିଶା। ମୋ ମୁଣ୍ଡରେ ସେତେବେଳେ ବାବୁରୀ ବାଳ। ନିଶଦାଢ଼ୀ ଉଠିଛି; କିନ୍ତୁ କାଟିବାର ଚେଷ୍ଟା କରିନାହିଁ। ସେଥିପାଇଁ ଛୋଟ ଆଈ ମା ମୋତେ ସନ୍ୟାସୀ ଠାକୁର ବୋଲି ଡାକନ୍ତି। ତାଙ୍କ କଥା ମନେ ପଡ଼ିଲେ, ସେ ଯେପରି ଆଖି ଆଗରେ ଭାସି ଉଠନ୍ତି। – ପିନ୍ଧାରେ ନୀଳାମ୍ବରୀ ଶାଢ଼ୀ, ହାତରେ ବୋମ୍ବାଇବେଙ୍ଗୀ ଚୁଡ଼ୀ ବେକରେ ମୋଟା ଚେନ୍ ହାର – ବୋଧହୁଏ ତାଙ୍କ ମା' ବଞ୍ଚି ଥାଉଁ ଥାଉଁ, ତାଙ୍କର ଏକମାତ୍ର ଝିଅକୁ ବୈଧବ୍ୟ ବେଶ ନେବା ପାଇଁ ଛାଡ଼ି ଦେଇ ନାହାନ୍ତି। ଦେହରଙ୍ଗ କଳା, ସେଥିରେ ଚିଡ଼ିଆ ଧଡ଼ି ନୀଳାମ୍ବରୀ ଶାଢ଼ୀ ଆଦୌ ଖାପ୍ ଖାଏ ନାହିଁ। ନିହାତି ସାଧାରଣ ଗ୍ରାମ୍ୟ ଗୃହସ୍ଥ ଘରର ଝିଅ – ଛୋଟ ଆଈମା'। କହିବା ଭଳି ରୂପ ଗୁଣ ତାଙ୍କର ନଥିଲା। କିନ୍ତୁ ମତେ ଆକର୍ଷଣ କରିଥିଲା ତାଙ୍କ ରୂପର ସ୍ନିଗ୍ଧତା, ପରକୁ ସମ୍ପୂର୍ଣ୍ଣ ଆପଣା କରିନେବାର ବ୍ୟବହାର, ଆଉ କଥାବାର୍ତ୍ତାରେ ଆନ୍ତରିକତା। ସେମାନେ ଗାଁକୁ ଫେରିବା ଦିନ, ମୁଁ ଆଉ ନୀରେଶ୍ ଯାଇଥିଲୁ ସେମାନଙ୍କୁ ଟ୍ରେନ୍‌ରେ ବସାଇ ଦେବା ପାଇଁ। ନୀରେଶ୍ ଆଉ ଛୋଟ ଆଈମା'ଙ୍କ ବାପା, ଶେଷ ମୁହୂର୍ତ୍ତରେ ମନେ ପଡ଼ିଯିବାରୁ ପାନବାଲା ଠାରୁ କିଛି ଭଲ କାଶୀଜର୍ଦ୍ଧା କିଣିବା ପାଇଁ ଗଲେ। ଛୋଟ ଆଈମା'ଙ୍କ ଆଡ଼େ ମୁଁ ଅନାଇଁ ପାରୁ ନାଇଁ। ସେ ମୋତେ ଆସ୍ତେ ଆସ୍ତେ କହିଲେ, "ସନ୍ୟାସୀ ଗୋସେଇଁ, ଆମ ଆଡ଼େ ଥରେ ଆସିବ।" ତାଙ୍କୁ କଥା ଦେଇଥିଲି। କଥା ରଖିବା ପାଇଁ ଅନେକ ଦିନ ପର୍ଯ୍ୟନ୍ତ ଇଚ୍ଛାଥିଲା। ଛୋଟ ଆଈମା' ଚାଲିଯିବା ପରେ କିଛିଦିନ ସବୁ ଖାଲି ଖାଲି ମନେ ହୋଇଥିଲା। – କୌଣସି ଥିରେ ମନ ଲାଗେ ନାହିଁ – ବାରମ୍ବାର ଗୋଟିଏ ମୁହଁ ସବୁବେଳେ ଆଖି ଆଗରେର ଭାସି ଉଠେ। ଚିଠି ଆଶାରେ ପୋଷ୍ଟ – ଅଫିସ୍ ପର୍ଯ୍ୟନ୍ତ ଯାଇଁ ହାଜର ହୁଏ।...

ତା'ପରେ ସେଇ ନୀଳାମ୍ବରୀ ଶାଢ଼ୀ, ସେଇ ବୋମ୍ବାଇବେଙ୍ଗୀ ଚୂଡ଼ୀ, କେବେଠାରୁ ସ୍ମୃତିପଟରୁ ପୋଛି ହୋଇ ଗଲାଣି, ଧୀରେ ଧୀରେ ମନର ଅଜ୍ଞାତରେ। ଚାରି ପାଞ୍ଚ ବର୍ଷ ତଳେ, ପୁରୁଣା ଚିଠି ଗୋଛା ପୋଡ଼ିବା ବେଳେ, ଖଣ୍ଡେ ନୀଳରଙ୍ଗର ଚିଠି କାଗଜରେ ଲେଖା, ଦୁଇଧାଡ଼ି ପଢ଼ି, ତାହାର ଅମାର୍ଜିତ ଭାବ ଭାରି ଦୃଷ୍ଟିକଟୂ ଲାଗିଥିଲା। – "ସନ୍ୟାସୀ ଗୋସେଇଁ, ବାହାଘର ଭୋଜି ଫାଙ୍କି ଦେବ ନାଇଁ ମୋତେ। ଭୋଜି ପାଇଁ ମୁଁ ପେଟ ସଫା କରି ବସିଚି।" "ପେଟ ସଫା କରି" ସୁରୁଚିର ଦୈନ୍ୟର ପରିଚାୟକ। ଚିଠିରେ ଏପରି କଥା ଲେଖାଯାଇପାରେ, ଏକଥା ଭାବିଲେ, ମନ ଅବଜ୍ଞା ଓ ତାଚ୍ଛଲ୍ୟରେ ଭରି ଉଠେ।

ଖଟ୍ – ଖଟ୍ – ଖଟ୍। ଭାରି ମିଲିଟାରୀ ବୁଟ୍‌ର ଶବ୍ଦ ଶୁଭୁଛି ସିମେଣ୍ଟବନ୍ଧା ଅଗଣା ଉପରେ। ତିନିଜଣ ନୂଆ ସିପାହୀ ଆସିଲେ। ଆଗ ଓ୍ୱାର୍ଡ଼ର୍ ଠାରୁ ଚାର୍ଜ୍ ବୁଝିନେଇ, ତାଲା ଠିକ୍ ଅଛି କି ନାହିଁ ଦେଖିଲେ। କୌଣସି ସେଲ୍ ସାମ୍ନାରେ ଠିଆ ହୋଇ ସେମାନେ ବେଶୀ ବେଳ ପାଟିଗୋଳ କଲେ ନାହିଁ। ବୁଝିପାରିଲି, ସେଲ୍‌ର କୌଣସି ଆସାମୀ ଏ ପର୍ଯ୍ୟନ୍ତ ଶୋଇ ନାହାନ୍ତି। ଶୋଇ ପଡ଼ିଥିଲେ ଓ୍ୱାର୍ଡ଼ର ନିଶ୍ଚୟ ଡାକି ଉଠାଇଥାନ୍ତା। ଚାର୍ଜ୍ ବଦଳ ବେଳେ, ନୂଆ ଓ୍ୱାର୍ଡ଼ର ପ୍ରତି ସେଲ୍‌ର ଆସାମୀକୁ ଡାକି ଉଠାଇ ଦେଖେ, ସେ

ବଞ୍ଚିଛି କି ନାହିଁ। କେହି ଯଦି ସେଲ୍ ଦରଜା ପାଖରେ ବସିଥାଏ, କାଶି କିମ୍ବା ଅନ୍ୟ କୌଣସି ଉପାୟରେ ଜଣାଇ ଦିଏ ଯେ, ସେ ସୁସ୍ଥ ଭାବରେ ବଞ୍ଚି ରହିଛି, ତାହେଲେ ସେମାନେ ତାକୁ ଆଉ ଡାକନ୍ତି ନାହିଁ। କିନ୍ତୁ ଶୋଇ ପଡ଼ିଥିଲେ ରକ୍ଷା ନାହିଁ। ସେଲ୍‌ର ଆସାମୀ – ତାର ପୁଣି ଲଗାତାର ଦୁଇ ଘଣ୍ଟାରୁ ଅଧିକ ଗଭୀର ନିଦ୍ରାରେ ପ୍ରୟୋଜନ କଣ ? କାରଣ ପଚ଼ାରିଲେ କହନ୍ତି, ''ଏଇ ରୁଲ୍ ହୈ ବାବୁ।'' ଯଦି କେହି ବେହୋସ୍ ହୋଇ ପଡ଼ିଥାଏ, ନୋହିଲେ ବେମାରୀରେ ବାକ୍‌ଶକ୍ତିରହିତ ହୋଇଥାଏ, ତାହେଲେ ତାକୁ ନ ଡାକିଲେ, ଆମେ ଜାଣି ପାରିବୁ କିପରି ? 'ଡାକ୍‌ଦାର୍'କୁ ଖବର ଦେବୁ କିପରି ? ସତ କଥା କହିଲେ ଏଥିରେ ସେଲ୍‌ର କୟଦୀ ମାନଙ୍କର ବିଶେଷ ଅସୁବିଧା ହୁଏ ନାହିଁ। ମଶା, ଛାରପୋକ, ପିମ୍ପୁଡ଼ି, କର୍ମହୀନତା, ଦୁଶ୍ଚିନ୍ତା ପ୍ରଭୃତି ନାନା କାରଣରୁ ସ୍ୱାଭାବିକ ଦିନରାତି କର୍ମଜୀବନର ଗଭୀର ନିଦ୍ରା ସେଲ୍ ବାସିନ୍ଦା ମାନଙ୍କର ନାହିଁ।

ଦଶ ନମ୍ବର ସେଲ୍‌ରୁ ଗୀତର ସୁର ଭାସି ଆସୁଚ଼ି –

''ଶହୀଦୌଁ କେ ଟୋଲୀ ନିକ୍‌ଲୀ''...

ଟୋଲୀ କଥାଟି ଶୁଣିଲେ ପାଟ୍‌ନା କ୍ୟାମ୍ପଜେଲ୍‌ର 1932 ସାଲ୍ ''ସେବାଦଳ'' ଟ୍ରେନିଙ୍ଗ୍ କଥା ମନେ ପଡ଼େ। ମୁଁ ଆଉ ନୀଲୁ ଦୁହେଁ 'ସେବାଦଳ' ଟ୍ରେନିଙ୍ଗ୍ ନେବୁ ବୋଲି ଠିକ୍ କଲୁ। ପ୍ରଥମ ଦିନ 'କବାୟତ୍' (Drill) ଶେଷ ହେବା ମାତ୍ରେ ନୀଲୁ ମୋତେ ପଚ଼ାରିଲା ''ଟୋଲୀ କଣରେ ?'' ମୁଁ ତାକୁ ବୁଝାଇ ଦେଲି ଯେ, କେତେ ଜଣ ସିପାହୀ ଏକାଠି ହେଲେ ଗୋଟାଏ 'ଟୋଲୀ' ହୁଏ। ସିପାହୀମାନେ 'ପ୍ରାଇଭେଟ୍' ଆଉ ଟୋଲୀ–ନାୟକ ହେଉଚ଼ି ଏନ୍.ସି.ଓ.। ନୀଲୁ ଅସହିଷ୍ଣୁ କଣ୍ଠରେ କହିଲା ''ସେ ସବୁ ଟେଣ୍ଡୁଲକର୍ ଆଜି ତ ଭଲ ଭାବରେ ବୁଝାଇ ଦେଇଛି। କିନ୍ତୁ ମୁଁ ପଚ଼ାରୁଚ଼ି ଏମାନେ ଟୋଲି କଥାଟାକୁ ପସନ୍ଦ କଲେ କାହିଁକି ? ଆଉ କିଛି ନାଁ କଣ ପାଇଲେ ନାଇଁ ?'' 'ଟୋଲୀ' କହି କି ହସ ! ସେଇଦିନ ସନ୍ଧ୍ୟାରେ ଟେଣ୍ଡୁଲ୍‌କାର୍ 'କଦମ୍‌ଖୋଲ୍' (Stand at easy) ଆଉ 'ସାବଧାନ'ର ଅର୍ଥ ବୁଝାଉଥିବା ବେଳେ, ନୀଲୁ ଜୋର୍‌ରେ ହସି ଉଠିଲା। ଟେଣ୍ଡୁଲକର୍ ତ ରାଗି ନିଆଁ। ସେ ହୁବ୍‌ଲୀରେ ହାର୍ଦ୍ଦିକାର୍‌ଙ୍କ କ୍ୟାମ୍ପରେ ଟ୍ରେନିଙ୍ଗ୍ ନେଇଛି। ବୋମ୍ବାଇରେ ପୁଣି କ୍ୟାମ୍ପ୍ ଚଳାଇଛି। ପ୍ରାଦେଶିକ କଂଗ୍ରେସ କମିଟୀ ସଭାପତିଙ୍କ ଅନୁରୋଧରେ ସେ ମହାରାଷ୍ଟ୍ର ଛାଡ଼ି ବିହାର ଆସିଚ଼ି ସେବାଦଳ କାର୍ଯ୍ୟ କରିବା ପାଇଁ। ସେବାଦଳ ଟ୍ରେନିଙ୍ଗ ସମ୍ପର୍କରେ ତାର ବହୁ ଅଭିଜ୍ଞତା। କିନ୍ତୁ ଡ୍ରିଲ୍ ସମୟରେ ଡିସିପ୍ଲିନ୍‌ର ଏପରି ଅଭାବ, ସେ ପୂର୍ବେ କେବେ ଦେଖି ନଥିଲା। ସେ ଭଲ ହିନ୍ଦୀ କହିପାରେ ନାହିଁ। ତାର ମୁହଁ, ଆଖି ରାଗରେ ପାଚ଼ି ଲାଲ୍ ହୋଇଗଲା।'' ତୋମ୍ କୋ ଏହି ଲକ୍‌ଡ଼ୀ ମିଲେଗା'' କହି ହାତର ବେଟନ୍‌ରେ ନୀଲୁକୁ ଗୋଟାଏ ଭୂଷା ମାରିଲା। –ନୀଲୁ ତା ହାତରୁ ବେଟନ୍ ଛଡ଼ାଇ ନେଇ ଚିତ୍କାର କଲା – 'ଲକ୍‌ଡ଼ୀ ମିଲେଗା, ଉ ସବ୍ ମହାରାଷ୍ଟ୍ରା ମେ କୀଜିୟେ, ଇହାଁ ଏସବ୍ ନେହିଁ ଚଲେଗା। ରାଷ୍ଟ୍ରଭାଷା ବୋଲ୍‌ନେ ନେହିଁ ଆତା ହାୟ। ପୁଣା ସହରକୁ ପୁଁଡ଼େ ବୋଲ୍‌ତା ହ୍ୟାୟ। ଆଓର୍ ହିନ୍ଦୀ ମେ ବାତ୍ ବୋଲ୍‌ନେବା ସଓଖ୍ ହାୟ।'' ନୀଲୁ ଟେଣ୍ଡୁଲ୍‌କର୍‌ର ହାତ ଧରି ପକାଇଲା। ଚାରିଆଡୁ ସମସ୍ତେ ଆସି ସେ ଦୁହିଙ୍କୁ ଛଡ଼ାଛଡ଼ି କରିଦେଲେ। ସଙ୍ଗେ ସଙ୍ଗେ ଏଇ ଖବର ଜେଲ୍‌ରେ ସର୍ବତ୍ର ଖେଳେଇ ହୋଇ ପଡ଼ିଲା। କ୍ୟାମ୍ପଜେଲ୍‌ରେ ସେତେବେଳେ ପ୍ରାୟ ସାଢ଼େ ଚାରିହଜାର ରାଜବନ୍ଦୀ ଥାନ୍ତି। ଯେଉଁ ୱାର୍ଡ଼କୁ ଯାଅ, ସବୁଠି ଛୋଟ ଛୋଟ ଦଳ ବାନ୍ଧି

ସମସ୍ତେ ଏଇ କଥା ଆଲୋଚନା କରୁଛନ୍ତି । ଜେଲ୍‌ର ପ୍ରତି କୋଣରେ, ଆକାଶରେ, ପବନରେ ସୋଜାର ଗୁଞ୍ଜନ ଧ୍ୱନି। ଜେଲ୍‌ର କେନ୍ଦ୍ର – ଯାହାର ନାଁ ଆମେ ଦେଇଥିଲୁ 'ଚଉକ୍' – ସେଠାରେ ବେଶ୍ କେତୋଟି ବଡ଼ ଦଳ ଏକାଠି ହେଉଛନ୍ତି । ୱାର୍ଡ଼ର୍‌ମାନେ ସୁଦ୍ଧା ରାଜବନ୍ଦୀମାନଙ୍କ ସହିତ ମିଶି ଏକ୍ ହୋଇ ଯାଇଛନ୍ତି । ଜେଲ୍ ପଲିଟିକ୍‌ସ୍‌ରେ ସେମାନଙ୍କର ଉତ୍ସାହ କମ୍ ନୁହେଁ। ଜଣେ ବକ୍ତୃତା ଦେଇ ଅସଲ ପରିସ୍ଥିତି ସମସ୍ତଙ୍କୁ ବୁଝାଇଦେଲେ – ବିହାରର ସୁନାମରେ କଳଙ୍କ ଲାଗିଲା, ବାହାରର ଲୋକ ଟେଷ୍ଟୁଲ୍‌କରା' ପ୍ରତି ଅତିଥିସତ୍କାର କଣ ଏଇପରି କରାଗଲା ? ତା' ଉପରେ ରାଷ୍ଟ୍ରଭାଷା ଘେନି ଉପହାସ ! ତା'ପରେ ପାଖଲୋକଙ୍କୁ ବିଶ୍ୱାସର ପାତ୍ର ବିବେଚ଼ନା କରି, ଗୁପ୍ତକଥା କହିବା ଭଳି ଭାବ ଦେଖାଇ, କଣ୍ଠସ୍ୱର ନୁଆଇଁ କହିଲେ – ''ବଙ୍ଗାଳୀ କି ନା !'' ତା'ପରେ ଓଠରେ ମୁରୁକୀ ହସ ଫୁଟାଇ, ତା ଦ୍ୱାରା ବ୍ୟକ୍ତ କରିବାକୁ ଚାହିଁଲେ ଯେପରି, ''ତୁମେ ମାନେ ତ ସବୁ ଜାଣିଚ଼ । ତୁମ ମାନଙ୍କୁ କଣ ବୁଝାଇ କହିବା ପାଇଁ ପଡ଼ିବ ?'' ଲଜ୍ଜ୍ୟା ଆଉ ଅପମାନରେ ମୋ ମୁଣ୍ଡ ଯେପରି କଟି ଯାଉଥିଲା । ଏମାନେ ନୀଲୁର ମନକୁ ଚିହ୍ନନ୍ତି ନାହିଁ । ତାର ଆଚ଼ରଣର ଗୋଟାଏ ମନଗଢ଼ା ଅର୍ଥ କରି ନେଉଛନ୍ତି । ଏଇ ଅର୍ଥଟି ସେମାନଙ୍କ ନିଜ ମନର ଭାବ ସଙ୍ଗରେ ମିଶି ଯାଉଚ଼ି। ସନ୍ଧ୍ୟା ପରେ ୱାର୍ଡ଼ରେ ନୀଲୁ ସହିତ ଦେଖା, ଖାଇବା ବେଳେ। ସୂର୍ଯ୍ୟାସ୍ତ ପୂର୍ବରୁ ଖାଇବା ଶେଷ ହୁଏ । ସେତେବେଳେ ଭୋକ କରେ ନାଇଁ ବୋଲି ଆମେ ରୁଟୀ ନେଇ ୱାର୍ଡ଼ରେ ରଖୁ। ପରେ ରାତି ଟିକିଏ ବେଶୀ ହେଲେ ଖାଉ। ନୀଲୁ ତା ଆଡୁ ସେଇ କଥାଟା ପକାଇ ଆମର ସଙ୍କୋଚ଼ ଭାଙ୍ଗିଦେଲା । ସନ୍ଧ୍ୟାବେଳର ଘଟଣାରେ ମୁଁ ବେଶ୍ ଲଜ୍ଜିତ ହୋଇଥିଲି। ନୀଲୁ କିନ୍ତୁ ତିଳେ ହେଲେ ଅପ୍ରତିଭ ହୋଇ ନଥିଲା। ...ସେ କହି ଚାଲିଛି... ।

ଡ୍ରିଲ୍‌ର ଏଇ ଅର୍ଡ଼ର୍ ଗୁଡ଼ାକୁ ଇଂରାଜୀରେ କହିଲେ କଣ କ୍ଷତି ହୁଅନ୍ତା ? କୁଇକ୍‌ମାର୍ଚ୍ଚ, ଷ୍ଟାଣ୍ଡ – ଆଟ୍ – ଇଜ୍ କହିଲେ ଭାରତର ସ୍ୱାଧୀନତା ପ୍ରାପ୍ତି ବାଧାପ୍ରାପ୍ତ ହୋଇଯାନ୍ତା ନାଁ କଣ ? ହିନ୍ଦୀ ଆସେ ନାହିଁ, ତଥାପି ହିନ୍ଦୀ କହିବା ଦରକାର। ମାନରସ୍ ଜାଣେ ନାଇଁ। ଛୋଟଲୋକ। ତାକୁ ପୁଣି କି ଖାତିର୍ ?'' କୌଣସି ଦିନ କୌଣସି ବିଷୟରେ ନୀଲୁକୁ ମୁଁ ଅଯାଚ଼ିତ ଉପଦେଶ ଦେଇ ନାହିଁ। କଥାଟା ସେ ନିଜେ ଆରମ୍ଭ କରି ନଥିଲେ, ବର୍ତ୍ତମାନ ମଧ ମୁଁ କିଛି କହି ନଥାନ୍ତି। ଅନ୍ୟ ରାଜବନ୍ଦୀମାନେ ତା ଆଚ଼ରଣର କି କଦର୍ଥ କରିଛନ୍ତି, ତାହା ସଂକ୍ଷେପରେ ନୀଲୁକୁ ବୁଝାଇ ଦେଲି। ନୀଲୁ ରାଗିଗଲା – କହଲା, ''ଏଇମାନେ ପୁଣି ସ୍ୱରାଜ ନେବେ ?'' ତା'ପରେ କେତେ କଣ ଅନର୍ଗଳ କହିଯିବାକୁ ଲାଗିଲା। କିଛି ସମୟ ପରେ ଦେଖିଲି, ସବୁ ରାଗ ଯାଇଁ ପଡ଼ିଲା, କୌଣସି ଅଜ୍ଞାତ ସାଥୀ ଉପରେ, ଯିଏ ତା'ର ଗୁଡ଼ ଚୋରୀ କରି ଖାଇଛି। ରବିବାର ଦିନ ଯେଉଁ ରାଜବନ୍ଦୀମାନେ 'ଏମେୟାର୍' କରନ୍ତି, ସେମାନେ ଭାତ ବଦଳରେ ଗୁଡ଼, ରୁଟୀ ଅଥବା ଛଅ ପଇସାର ଫଳ ଖାଇବାକୁ ପାଇଥାନ୍ତି। ନୀଲୁ ଗୁଡ଼ ନେଇଥାଏ। ରବିବାର ଦିନ ମୋ ଭାତକୁ ଆମେ ଦୁଇଜଣ ଭାଗ କରି ଖାଉ। ଏଇ ଅସୁବିଧା ଟିକକ ସ୍ୱୀକାର କରି, ଆମେ ସାରା ସପ୍ତାହ ଟିକିଏ ଟିକିଏ କରି ଗୁଡ଼ ଖାଉ। ସେଇ ଗୁଡ଼ ଚୋରୀ ଯାଇଛି। ତେଣୁ ନୀଲୁ ମନ ତିକ୍ତ ହୋଇ ଯିବାଟା କିଛି ଆଶ୍ଚର୍ଯ୍ୟ ନୁହେଁ। କିନ୍ତୁ ନୀଲୁ ଶୁଣାଇ ଶୁଣାଇ ଚିତ୍କାର କରି ରାଜବନ୍ଦୀ ମାନଙ୍କ ସମ୍ପର୍କରେ କଟୁ ମନ୍ତବ୍ୟ କରିବା ମୋତେ ଖରାପ ଲାଗିଲା। – ଏହା ସପକ୍ଷରେ ପରିସ୍ଥିତି ମଧ ଅନୁକୂଳ

ନଥିଲା । ସାରା ପୃଥିବୀ ପଛେ ନୀଲୁ ବିରୁଦ୍ଧରେ ଯାଉ — ନୀଲୁ କେତେବେଳେ ହେଲେ ନିଜ ବାଟରୁ ଓହରିଯିବ ନାହିଁ। ସେ ନିଜ ମନ ଥରେ ସ୍ଥିର କରି ନେଲେ, ସେଥିରୁ ତାକୁ ଆଉ କେହି ଟଳାଇ ପାରିବେ ନାହିଁ। ମୋର ସବୁବେଳେ ଭୟ, ନୀଳୁ କଣ ଗୋଟାଏ କାଣ୍ଡ କରିବସିଲା ପରା ! ଜେଲ୍‌ରେ ରାଜବନ୍ଦୀ ମାନଙ୍କର ସମୟ କଟାଇବା ପାଇଁ ଉପାୟ ଆବଶ୍ୟକ। ଯେଉଁ ଅସୀମ କର୍ମପ୍ରେରଣା, ଜେଲ୍ ବାହାରେ ଥିବା ବେଳେ, ସେମାନଙ୍କୁ ସର୍ବଦା ଚାଳିତ କରି ଥାଏ ତାହାର ପରିତୃପ୍ତି ପାଇଁ ଜେଲ୍ ଭିତରେ ନାନା ପ୍ରକାର ଦଳ, ଦଳାଦଳି ଓ ପଲିଟିକ୍‌ସ୍‌ର ଅବତାରଣା କରିବାକୁ ପଡ଼େ। କିନ୍ତୁ ନିତ୍ୟନୂତନ ପ୍ରୋଗ୍ରାମ୍ ନ ପାଇଲେ ମନ ମାନିବ କିପରି ? ଏଥିପାଇଁ ନୀଳୁ—ଘଟଣା ସେଥର ଆଉ ବେଶୀ ଦୂର ଗଲା ନାହିଁ। ତାପର ଦିନ ସକାଳେ ଜଳଖିଆ ବଣ୍ଟା ବେଳେ, କିଏ ଜଣେ ପ୍ରସ୍ତାବ ଉଠାଇଲେ, ସବୁ ଦିନେ ଭିଜାସୋଲା ଜଳଖିଆ ଦେଉଛନ୍ତି। ଏହା ବଦଳରେ ଚୂଡ଼ା ମିଳିଲେ ଭାରି ଭଲ ହୁଅନ୍ତା। ଆଉ ଯିବେ କୁଆଡ଼େ ? ସାଙ୍ଗେ ସାଙ୍ଗେ ସ୍ଲୋଗାନ୍ ବୋଲା ହେଲା "ଚେନା କା ବଦ୍‌ଲେ ଚୂଡ଼ା ଲେଙ୍ଗେ।' ଜେଲ୍‌ସାରା ଲୋକ ଏକା ସାଙ୍ଗରେ ଏଇ ଚିତ୍କାର କରୁଛନ୍ତି। ତା ସାଙ୍ଗରେ ତାଳ ରଖି ବାଜୁଛି ଥାଳୀ ଆଉ ଗିଲାସ। କେହି ହୁଇସିଲ୍ ମାରୁଛି। କେହି ଦରଜାର ଗାରଦ ଗୁଡ଼ାକ ଉପରେ ନିଜର ଥାଳୀ ପଟକ ଧଡ଼ଧାଡ଼ କରି ଘୋଷାଡ଼ି ନେଉଚି। ସେଥିରୁ ଗୋଟାଏ ବିକଟାଳ ଶବ୍ଦ ହେଉଚି। ଅନେକେ ଝରକା ଉପରକୁ ଚଢୁଛନ୍ତି। ଦୁଇଜଣ ଝରକା ଧରି ଟିଣ ଛାତ ଉପରକୁ ଉଠିଲେ। ହଠାତ୍ ଯେପରି କୌଣସି ଯାଦୁକରର ସ୍ପର୍ଶରେ ସମସ୍ତେ ଏକ ସଙ୍ଗରେ ପାଗଳ ହୋଇ ଉଠିଛନ୍ତି। ଯେଉଁମାନଙ୍କୁ ଅତି ଧୀର ଓ ଗମ୍ଭୀର ସ୍ୱଭାବର ବୋଲି ଜାଣିଥିଲି, ସେମାନେ ସୁଦ୍ଧା ନିଜକୁ ସଂଯତ ରଖି ପାରୁ ନାହାନ୍ତି। କେତେଜଣ ପାଗଳ ପରି ୱାର୍ଡ଼ରେ ଏ ପାଖରୁ ସେପାଖ "କମ୍ବଲ୍" "କମ୍ବଲ୍" ଚିତ୍କାର କରି ଦଉଡୁଚନ୍ତି। ସେମାନଙ୍କ ଚିତ୍କାର ଭିତରେ ଅନେକେ ଗୋଟାଏ ନୂଆ ପ୍ରୋଗ୍ରାମ୍ ପାଇଗଲେ। ଚାହୁଁ ଚାହୁଁ କେତେ ଜଣ ଗଦାଗଦା କମ୍ବଳ ଆଣି ବାହାରେ ଜମାଇଲେ। ତା'ପରେ ଚାଲିଲା କମ୍ବଳ ଗୁଡ଼ାକୁ ଚିକି ଚିକି କରି ଛିଣ୍ଡାଇବାର ପ୍ରଚେଷ୍ଟା। ଜଣେ ରୋଷେଇ ଶାଳରୁ (ଜେଲ୍ ପରିଭାଷାରେ ଭାଠ୍‌ହା) ମୁଣ୍ଡା ଜଳନ୍ତା କୋଇଲା ଆଣି କେତେଖଣ୍ଡ କମ୍ବଳ ଉପରେ ପକାଇ ଦେଲା। ସେଥିରୁ ଅଳ୍ପ ଅଳ୍ପ ଧୂଆଁ ଆଉ ଉତ୍କଟ ଗନ୍ଧ ବାହାରୁଚି। ଯେଉଁ ପାତ୍ରଟିରେ ଭିଜା ସୋଲା ରଖା ଯାଇଥିଲା, ଦୁଇଜଣ ଦୌଡ଼ିଯାଇଁ ତାକୁ ଓଲଟାଇ ଦେଲେ। ୱାର୍ଡ଼ର୍‌ମାନେ ସେତେବେଳକୁ ପାଗ୍‌ଲୀ (alarm) ହୁଇସିଲ୍ ବଜାଇଲେଣି। ଫୁଟବଲ୍ ରେଫ୍‌ରୀ ମାନଙ୍କ ସହିତ ଇଂଜିନ୍ ଡ୍ରାଇଭର ମାନଙ୍କର ଯେପରି ହୁଇସିଲ୍‌ର ଐକ୍ୟତାନ ପ୍ରତିଯୋଗିତା ଚାଲିଛି। ଅଗଣିତ ହୁଇସିଲ୍‌ର ତୀକ୍ଷ୍ଣ, ତୀବ୍ର ଝଙ୍କାର ଜେଲ୍‌ର ଆବ୍‌ହାୱାକୁ ଗୋଟାଏ ନୂଆ ରୂପ ଦେଇଛି। ଗୁମ୍‌ଟିରୁ ଏକା ଲହରରେ ଘଣ୍ଟା ବାଜି ଚାଲିଚି — ଢ଼ଂ ଢ଼ଂ ଢ଼ଂ ଢ଼ଂ... ଜେଲ୍ ଗେଟ୍‌ରେ ଆଉ ଗୋଟାଏ ଘଣ୍ଟା ସେଇପରି ବାଜୁଛି। ବହିରେ ପଢ଼ା ଜାହାଜ ବୁଡ଼ିବାର ଦୃଶ୍ୟ। ଆଉ ଏଣେ ତୁମୁଳ କୋଳାହଳ, "କମ୍ବଲ୍ ଜ୍ୱଲ୍‌ତେ ରହେ" "ଥାଳିଆ ବାଜ୍‌ତେ ରହେ" "ନୌକରସାହୀ ନାଶ୍ ହୋ", ଆଉରି କେତେ କଣ, ଯାହା ଠିକ୍ ସ୍ପଷ୍ଟ ବୁଝି ହୁଏ ନାହିଁ। ଜେଲ୍ କର୍ମଚାରୀ ମାନେ, ଯେଉଁଠି, ଯିଏ ଯେଉଁ ଅବସ୍ଥାରେ ଥିଲେ ଲଣ୍ଡଭଣ୍ଡ ହୋଇ ଦଉଡ଼ି ଆସିଲେ। ଗୁମ୍‌ଟିରେ ଗୋଟାଏ ସାଇନ୍‌ବୋର୍ଡ଼ ଝୁଲାଇ ଦିଆ ଯାଇଛି — "ୱାର୍ଡ଼ ନମ୍ବର 17 – 18 – 19!" ଗେଟ୍ ଆଡୁ ଲାଠି ଧରି ୱାର୍ଡ଼ର୍ ମାନେ ଗୁମ୍‌ଟି ଆଡ଼କୁ ଆସୁଚନ୍ତି।

ଅନେକଙ୍କ ବର୍ଦ୍ଦୀ ନାହିଁ, ଖାଲି ଦେହ, ଖାଲି ପାଦ। ହରେନ୍ ବାବୁ ଡାକ୍ତର, ଦେହରେ ଖଣ୍ଡେ ଗେଞ୍ଜି ଗଳାଇ ଆସିଚ୍ଛନ୍ତି। ଗୁମ୍‌ଟିରୁ ଜଣେ ୱାର୍ଡ଼ର୍ ଚିକ୍ରାର କରି ଚାଲିଛି – ''ସତର୍‌ହ, ଆଠର୍‌ହ, ଉଣେଇଶ୍ ନମ୍ବର।'' ଆଉ ସମସ୍ତେ ଏଇ ୱାର୍ଡ଼ ଗୁଡ଼ାକ ଆଡ଼େ ଦଉଡ଼ୁଚ୍ଛନ୍ତି। ଗୁଞ୍ଜରଣ ଧ୍ୱନି ଶୁଭିଲା ''ମିଲିଟାରୀ ଆ ରହୀ ହାୟ''। ବନ୍ଧୁକଧାରୀ ଦଳେ ମିଲିଟାରୀ ଜେଲ ଗେଟ୍ ଦେଇ ଭିତରେ ପଶିଗଲେ। ଏମାନଙ୍କ ହାବଭାବରେ ବ୍ୟସ୍ତତା ନାହିଁ। କୁଇକ୍ ମାର୍ଚ୍ଚ କରି ସେମାନେ ଗୁମ୍‌ଟି ପାଖକୁ ଆସିଲେ, ତା'ପରେ ତିନୋଟି ୱାର୍ଡ଼ର କମନ୍‌ଗେଟ୍ ସାମ୍ନାରେ ଆସି ଠିଆ ହୋଇଗଲେ। ୱାର୍ଡ଼ କୋଣରେ ରଖାଯାଇଥିଲା ଗଦାଏ ବେଲ। ପୂର୍ବଦିନ ୱାର୍ଡ଼ର ବେଲଗଛଟା କଟା ଯାଇଥିଲା। ବନ୍ଦୀମାନେ ଗଛ ଉପରେ ଚଢ଼ି ''ଗାନ୍ଧିଜୀ କା ଜୟ'' କହି ତା ଉପରେ କଂଗ୍ରେସ ପତାକା ଉଡ଼ାଇଥିଲେ। ଜେଲ୍ ବାହାରକୁ ବହୁ ଦୂର ପର୍ଯ୍ୟନ୍ତ ତାହା ଦେଖାଯାଏ। ସେଥିପାଇଁ ଗଛଟା କାଟି ଦେବାକୁ ହୁକୁମ୍ ହୋଇଥିଲା। ପ୍ରଥମେ ଚାରିଜଣ ୱାର୍ଡ଼ର୍ ଆସି ସେଇ ବେଲଗଦାକୁ ଘେରି ଠିଆ ହେଲେ। ତା'ପରେ ଦଳେ ୱାର୍ଡ଼ର ସଙ୍ଗରେ କେତେଜଣ ମେଟ୍ (Convict Overseer) ଓ ଜେଲ୍‌କର୍ମଚାରୀ ୱାର୍ଡ଼ ଭିତରକୁ ପଶିଲେ। ତା'ପରେ ଆରମ୍ଭ ହୋଇଗଲା ଲାଠିଚାର୍ଜ୍। ଏଥିରେ ଦୋଷୀ ନିର୍ଦ୍ଦୋଷର ବିଚାର ନଥିଲା – ଯେଉଁମାନେ ନିର୍ବିରୋଧୀ ଓ ଶାନ୍ତିପ୍ରିୟ, ଅଧିକାଂଶ କ୍ଷେତ୍ରରେ ସେଇମାନେ ଇ ବେଶୀ ପ୍ରହାର ଖାଇଥାନ୍ତି। ପିଟିବା ବେଳେ ସିପାହୀମାନେ ମୁହଁରେ ଗୋଟାଏ ପ୍ରକାର ଶବ୍ଦ କରୁଥିଲେ। ''ଉଧର୍ ଯାଓ'' ''ଉଧର କେଁ ଏକ୍‌ଠୋ ଭାଗା'' ''ଇସ୍ ବଦ୍‌ମାସ୍‌କୋ ମାରେ'' – ୱାର୍ଡ଼ରମାନେ ଚିକ୍ରାର କରୁଚ୍ଛନ୍ତି। ମେଟ୍ ମାନଙ୍କର ଉତ୍ସାହର ଅନ୍ତ ନାହିଁ। ଅଫିସର୍ ମାନେ ଯେଉଁ ପାଖରେ ଠିଆ ହୋଇଛନ୍ତି, ସେ ପାଖରେ କୟଦୀମାନଙ୍କର କୌଣସି ପ୍ରକାର ନିସ୍ତାର ନଥିଲା – କାରଣ ୱାର୍ଡ଼ର୍‌ମାନେ ସେମାନଙ୍କର କର୍ମନୈପୁଣ୍ୟ ଉପରବାଲାମାନଙ୍କ ନିକଟରେ ଦେଖାଇବା ପାଇଁ ବ୍ୟଗ୍ର। ଗୁଡ଼ିଏ ବନ୍ଦୀ ତଳେ ପଡ଼ି ଯାଇଛନ୍ତି। ଆଉ କେତେଜଣ ମୁଣ୍ଡରେ ଆଘାତ ଲାଗିବା ପରେ ତଳେ ବସି ପଡ଼ିଲେ। ଦରଭଙ୍ଗାର ଜଣେ ନିରୀହ ରାଜବନ୍ଦୀ ଜପ କରୁଥିଲେ। ସେ ସୁଦ୍ଧା ନିସ୍ତାର ପାଇଲେ ନାହିଁ। ସେମାନେ ମୋ ଆଡ଼କୁ ମାଡ଼ି ଆସୁଛନ୍ତି। ଭାରି ନର୍ଭସ୍ ଲାଗୁଚି – ମାଡ଼ ଖାଇବି ଜାଣେ, ପ୍ରତିରୋଧ କରି ପାରିବି ନାହିଁ ତା' ମଧ ଜାଣେ। କିପରି ଆଘାତ କପାଳରେ ଅଛି, ସେଇଆ ଭାବୁଚି। ଗୋଟାଏ ଲାଠି ପାହାର୍ ମୋ ମୁଣ୍ଡ ଉପରେ ପଡ଼ିଲା। ନିଜର ଅଜ୍ଞାତସାରରେ କେତେବେଳେ ଦୁଇ ହାତରେ ମୁଣ୍ଡ ଢ଼ାଙ୍କିଥିଲି ଜାଣେନା। ବୁଝିଲି ଯେତେବେଳେ ହାତରେ ଲାଠି ପାହାର ଲାଗିଲା, ଲାଠିର ଉପର ଭାଗରେ ଥିଲା ଗୋଟାଏ ଲୁହା ପାତିଆ। ସେଇଥିରେ ହାତ କଟିଗଲା। ଆଉରି ଦୁଇ ତିନିଟା ଲାଠି ଏଇ ଆଡ଼େ ମାଡ଼ି ଆସୁଚି। ମୁଁ ତଳେ ବସି ପଡ଼ିଲି। ନୀଳୁ ମତେ କୁଣ୍ଢାଇ ଧରିଲା। କହୁଚି ''ମୁଣ୍ଡ ଢ଼ାଙ୍କି ପକାଅ। ମୁଣ୍ଡ ଢ଼ାଙ୍କି ପକାଅ।'' ନୀଳୁ ଉପରେ କେଇ ପାହାର ଲାଠି ପଡ଼ିଲା। – ମୋ ଉପରେ ଆଉ ପାହାରେ। ନୀଳୁ ମୁଣ୍ଡରୁ ରକ୍ତ ବୋହି ପଡୁଚି। ୱାର୍ଡ଼ର୍‌ମାନେ ଅନ୍ୟ ଆଡ଼କୁ ଚାଲିଗଲେ। ଗୋଟାଏ ଜାଗାରେ ବେଶୀ ବେଳ ସେମାନେ ନଷ୍ଟ କରି ପାରିବେ ନାହିଁ। ...ସାରା ୱାର୍ଡ଼ରେ ଗୋଟାଏ କିପରି ସ୍ତବ୍ଧତା। କେଡି କେହି ଶୋଇ ପଡ଼ିଛନ୍ତି। ଯେଉଁ ଭାଗ୍ୟବାନ୍ ମାନେ ଆହତ ହୋଇ ନଥିଲେ, ସେମାନେ କେହି ଆହତ ମାନଙ୍କ ପାଇଁ ପାଣି ଆଣୁଛନ୍ତି, କେହି ଚେତା ହରାଇଥିବା ସାଥୀ ମୁହଁରେ ପାଣି ଛାଟୁଚି, କେହି ଖବରକାଗଜ କିମ୍ବା ଗାମୁଛାରେ ମୂର୍ଚ୍ଛିତ ସାଥୀକୁ ବିଞ୍ଚୁଛି।

ଯେଉଁମାନଙ୍କୁ ଅପେକ୍ଷାକୃତ କମ୍ ଆଘାତ ଲାଗିଥିଲା, ସେମାନେ ନିଜ ନିଜର ପ୍ରାଥମିକ ଚିକିତ୍ସା କରି ନେଉଛନ୍ତି। ଜେଲ୍ ହାସ୍‌ପାତାଳ ଉପରେ ନିର୍ଭର କଲେ ଆଜି ଆଉ ସମ୍ଭବ ହେବ ନାହିଁ। ଯେଉଁମାନଙ୍କୁ କୌଣସି ପ୍ରକାର ଆଘାତ ଲାଗି ନଥିଲା, ସେମାନେ ଆହତ ମାନଙ୍କର ଜେନେରାଲ୍ ଇନସ୍‌ପେକ୍‌ସନ୍‌ରେ ବାହାରିଚ୍ଛନ୍ତି – ପ୍ରଚଣ୍ଡ କାଳବୈଶାଖୀ ପରେ ଲୋକେ ଯେପରି ଗ୍ରାମରେ କ୍ଷତିର ପରିମାଣ ଦେଖିବାକୁ ବାହାରିଥାନ୍ତି। ...ତା'ପରେ ଔଷଧପତ୍ର ଧରି ଆସିଲେ ଜେଲ୍‌ର ଡାକ୍ତର ଆଉ କମ୍ପାଉଣ୍ଡର; ସାଙ୍ଗରେ କୟଦୀମାନେ ଆଣିଚ୍ଛନ୍ତି କେତୋଟି ଷ୍ଟ୍ରେଚ୍ଚର୍ – ଯେଉଁମାନେ ଅଧିକ ଆହତ, ସେମାନଙ୍କୁ ହାସପାତାଳକୁ ବୋହି ନେବା ପାଇଁ।

''ବୋଲୋରେ ଅସ୍ପତାଲ୍'' ହାସପାତାଳ ପହରା କଣ୍ଠସ୍ୱର ଏଠାରୁ ପରିଷ୍କାର ଶୁଣାଯାଏ। ସେ ଲୋକଟା ଘାଗଡ଼ା କଣ୍ଠରେ ବିକଟ ଚିତ୍କାର କରି ଉଠିଲା। – ବୋଧହୁଏ ଘୁମୋଉ ଥିଲା। – ହଠାତ୍ ଚମକି ପଡ଼ି ନିଜ କର୍ତ୍ତବ୍ୟ ସମ୍ବନ୍ଧରେ ସଜାଗ ହୋଇ ଉଠିଚ୍ଛି। ଏପରି ଚିତ୍କାରରେ ବୋଧହୁଏ ହାସପାତାଳରେ କୌଣସି ରୋଗୀର ନିଦ ହେଉ ନାହିଁ। ସେବା ଶୁଶ୍ରୁଷା ପାଇଁ ତ ଲୋକ ନାହାନ୍ତି; ତା ଉପରେ ପୁଣି ରାତି ପରେ ରାତି ଅନିଦ୍ରାରେ ଅତିବାହିତ କରିବା। ଆଙ୍କ ପୂର୍ବ ସୁପରିଟେଣ୍ଡେଣ୍ଟ ନିୟମ କରିଥିଲେ ଯେ, ହାସପାତାଳର 'ପହରା' ରାତିରେ ଗୁମୁଟୀ ଡାକର ଉତ୍ତର ଦେବା ଦରକାର ନାହିଁ। 'ମେଡ଼ିକାଲ୍ ଗ୍ରାଉଣ୍ଡସ୍'ରେ ସୁପରିଟେଣ୍ଡେଣ୍ଟ କୟଦୀମାନଙ୍କୁ ନାନା ପ୍ରକାର ସ୍ୱାଚ୍ଛନ୍ଦ୍ୟସୁବିଧା ଦେଇ ପାରନ୍ତି। ଏଇ ବିରାଟ ପେଷଣ ଯନ୍ତ୍ର ଭିତରେ 'ମେଡ଼ିକାଲ୍ ଗ୍ରାଉଣ୍ଡସ୍'ର ରନ୍ଧ୍ରପଥ ଦେଇ କିଛିଟା ଆଲୁଅ ପବନ ଭିତରକୁ ଆସିପାରେ। ସହାନୁଭୂତିଶୀଳ କର୍ମଚାରୀମାନେ ଏଇ ଆଳରେ କୟଦୀ ମାନଙ୍କୁ କିଛିଟା ସୁବିଧା ଦେଇ ପାରନ୍ତି। ନୂତନ ସୁପରିଟେଣ୍ଡେଣ୍ଟ ଆସି ପହରାଡ଼ାକର ପୁରୁଣା ନିୟମ ପୁଣି ପ୍ରଚଳନ କରି ଅଛନ୍ତି। ସେବା ଓ ସହାନୁଭୂତି ପାଇଁ ବ୍ୟାକୁଳ, ରୁଗ୍ଣ କୟଦୀ ମାନେ ରୋଗଶଯ୍ୟାରେ ପଡ଼ି କଣ ସେମାନଙ୍କ ସ୍ତ୍ରୀ, ପୁତ୍ର, ପରିଜନଙ୍କ କଥା ଭାବୁ ନଥିବେ ? ବେମାରୀ ପଡ଼ିଲେ ତ ଜେଲ୍ ଭିତରେ ଘର କଥା ବେଶୀ ମନେ ପଡ଼ିଥାଏ। ସାଧାରଣ କୟଦୀମାନେ ଜେଲ୍ ବାହାରେ ଥିବା ବେଳେ, ହୁଏତ ଦୁଇ ବେଳା ଦୁଇମୁଠା ଖାଇବାକୁ ପାଆନ୍ତି ନାହିଁ। ଜେଲ୍‌ରେ ଆଉ କିଛି ନ ହେଉ ପଛେ ଦୁଇ ଓଳି ଦୁଇ ମୁଠା ଭାତ ସମ୍ପର୍କରେ ତ କୌଣସି ଅନିଶ୍ଚୟତା ନାହିଁ। କିନ୍ତୁ ହେଲେ କଣ ହେବ ? – ବେମାରୀ ପଡ଼ିଲେ ସେମାନେ ନିଜକୁ ଏକାଥରେ ଅସହାୟ ମନେ କରନ୍ତି। ଏଇ ରୁଗ୍‌ଣ କୟଦୀ ମାନେ କଣ ଶତ ଦୁଶ୍ଚିନ୍ତ ମଧ୍ୟରେ ସୁଦ୍ଧା ଆଜି ମୋ କଥା ନ ଭାବି ରହିପାରିବେ ? ସହାନୁଭୂତିରେ ନହେଉ ପଛେ, ଆତଙ୍କରେ ସେମାନେ ଆଜି ମୋ ଫାଶୀ ନିଶ୍ଚୟ ଭାବୁଥିବେ। – ଠିକ୍ ମୋ କଥା ନୁହେଁ, ଜଣେ ଅପରିଚ୍ଚିତ ଫାଶୀ ଆସାମୀ କଥା, ଯିଏ ଏକ ନମ୍ବର ସେଲ୍‌ରେ ଅଛି।

ହାସ୍‌ପାତାଳର ଦୋତାଲା ଉପରେ ଗୋଟାଏ ଖୋଲା ବାରଣ୍ଡାରେ ଟି.ବି. ରୋଗୀମାନେ ଥାଆନ୍ତି। ସେଠୁ ଫାଶୀମଞ୍ଚ ପରିଷ୍କାର ଦେଖାଯାଏ। ଆଜି ମଞ୍ଚର ଚାରିପାଖ ଉଜ୍ଜ୍ୱଳ ଆଲୋକରେ ଆଲୋକିତ। – ଶାନ୍ତ୍ରୀମାନେ ମଞ୍ଚଟାକୁ ଘେରି ପହରା ଦେଉଛନ୍ତି – କିଏ ଜାଣେ, କେହି ଯଦି ପୁଣି ଟଙ୍କା ପଇସା ଖର୍ଚ୍ଚ କରି, ୱାର୍ଡ଼ର ମାନଙ୍କୁ ଲଗାଇ, ମଞ୍ଚର

କଳକବ୍‌ଜା ଅକାମୀ କରି ରଖିଦିଏ ! ଟି.ବି. ରୋଗୀମାନେ ଏଇ ଦୀପାଳୀ ଉତ୍ସବ ଦେଖୁଚନ୍ତି। ସେମାନଙ୍କ ଜୀବନ ହୁଏତ ଶୁଖିଯାଉଚି। ବଞ୍ଚିବାର ଆକାଂକ୍ଷା ଥିବା ସତ୍ତ୍ୱେ ସେମାନେ ତିଳେତିଳେ ମରୁଛନ୍ତି। ତା ସତ୍ତ୍ୱେ ସେମାନେ ଫାଶୀ କୟଦୀ ଅପେକ୍ଷା ନିଜକୁ ଭାଗ୍ୟବାନ ମନେ କରନ୍ତି। ସେମାନଙ୍କ ଦୀର୍ଘଶ୍ୱାସ ଓ ଅଯାଚିତ କରୁଣା ଶିରୋଧାର୍ଯ୍ୟ କରି ମୋତେ ବିଦାୟ ନେଇ ଯିବା ପାଇଁ ପଡ଼ିବ। ତଥାପି ମୋର ଫାଶୀ ଜେଲ୍ ଭିତରେ ସାମୟିକ ବିଷାଦ ଓ ଚାଞ୍ଚଲ୍ୟ ଆଣିବ! କିନ୍ତୁ ଏମାନଙ୍କ ମୃତ୍ୟୁର ସମ୍ବାଦତ କେହି ଜାଣି ପାରିବେ ନାହିଁ। ନିକଟ ଆତ୍ମୀୟମାନଙ୍କ ପାଖରେ କେବଳ ଖଣ୍ଡିଏ ସର୍ଭିସ ପୋଷ୍ଟକାର୍ଡ଼ ପହଞ୍ଚିବ – ଆଉ ହାସ୍‌ପାତାଳରେ ମୃତ୍ୟୁସଂଖ୍ୟାରେ ଗୋଟିଏ ବୃଦ୍ଧି ପାଇଥିବା ଦେଖାଇ ଦିଆଯିବ। ତାର ମୃତ୍ୟୁର ରାତ୍ରିରେ ନାଇଟ୍–ଡିଉଟୀରେ ଜେଲ୍ ଡାକ୍ତର ରେଜେଇ ଭିତରୁ ହୁଏତ ବାହାରିବେ ସୁଦ୍ଧା ନାହିଁ। ହାସ୍‌ପାତାଳ ୱାର୍ଡ଼ର୍ ପହରା କେବଳ ରାତିରେ ଡାକ ଦେବା ବେଳେ, ''ଜାମା'' ସଂଖ୍ୟାରୁ ଗୋଟିଏ ସଂଖ୍ୟା କମ୍ ଗଣନା କରି କୁହାଟ ଦେଉଥିବ। ଆଉ ରାତିଅଧର ନିସ୍ତବ୍‌ଧତା ଭାଙ୍ଗି, ଗୁମ୍‌ଟୀ ୱାର୍ଡ଼ରକୁ ରସିକତା କରି ଖବର ଦେଉଥିବ, ''ଏକ୍ ଆସାମୀ ଏକଦମ୍ ରିହା।''*

ରେଳଗାଡ଼ୀର ହୁଇସିଲ୍ ଶବ୍ଦ ଶୁଭୁଛି। ବାରଟା କଣ ବାଜି ଗଲାଣି ? ଏଇ ଟ୍ରେନ୍ ଛାଡ଼ିଲା। ଷ୍ଟେସନ୍ ଅନେକ ଦୂରରେ, ତଥାପି ମନେ ହୁଏ ପ୍ଲାଟ୍‌ଫର୍ମର କୋଳାହଳ ଯେମିତି କାନରେ ପଡୁଚି।

ଯାତ୍ରୀମାନଙ୍କର କୋଳହଳ, ''କୁଲୀ ! କୁଲୀ ! ଇଧର୍ !'' ସେଇ ଡେଙ୍ଗା ଷ୍ଟେସନ ମାଷ୍ଟରଙ୍କ କୁହାଟ ''ଘଣ୍ଟା, ଘଣ୍ଟା ସିଗ୍‌ନାଲ୍ ଘଣ୍ଟା ବଜାଅ...।''

ରେଳଗାଡ଼ୀର ହୁଇସିଲ୍‌ର ଶବ୍ଦ ଜେଲ୍‌ର ସୀମିତ ଜଗତ ସହିତ ଉନ୍ମୁକ୍ତ ଉଦାର ପୃଥିବୀର ସଂଯୋଗ ସୂତ୍ର। ରେଳର ହୁଇସିଲ ମନକୁ ଯେପରି ଉଦାସ କରିଦିଏ, ପ୍ରାଣକୁ ଯେପରି ଉତଳା କରିଦିଏ, କୌଣସି ବୈଷ୍ଣବ କବି ସୁଦ୍ଧା କୌଣସି ଦିନ ତାହା କଳ୍ପନା କରି ପାରିନାହାନ୍ତି। ''କାନର ଭିତର ଦିଆ ମରମେ ପଶିଲ ଗୋ।'' ଆଜି ଆଉ ଛନ୍ଦୋବଦ୍ଧ ଶବ୍ଦବିନ୍ୟାସ ମାତ୍ର ନୁହେଁ। କେଉଁ ଅଜ୍ଞାତ ଇଥରର ସ୍ପନ୍ଦନ ମନର ଅବରୁଦ୍ଧ ତନ୍ତ୍ରୀକୁ ଏତେ ତରଙ୍ଗିତ କରେ ? ଚଟକଳର ସକାଳୁଆ ସାଇରେନ୍ ଶ୍ରମିକ ବସ୍ତିରେ ସାମୟିକ ଆଲୋଡ଼ନ ସୃଷ୍ଟି କରେ ସତ୍ୟ, କିନ୍ତୁ ରେଳର ହୁଇସିଲ୍ ପ୍ରତି କୟଦୀର ହୃଦୟରେ ଆଣେ ଦ୍ରୁତତର ସ୍ପନ୍ଦନ; ପ୍ରାଣରେ ଉଦ୍ରିକ୍ତ କରେ, କେତେ ସୁପ୍ତ ମଧୁର ସ୍ମୃତି, ରୂପ ଦିଏ କେତେ କାୟାହୀନ ଆକୃତି ଓ ବାସନା। ...ରେଳଗାଡ଼ି ଚାଲିଯିବାର ଶବ୍ଦ ଶୁଭୁଛି, ଦୂରକୁ, କେତେ ଦୂରକୁ ଚାଲି ଯାଉଛି – ଅନ୍ଧାରରେ ଦୁଇ ପାଖରେ କିଛି ଦେଖାଯାଉ ନାହିଁ– କେବଳ ଅନୁଭବ କରି ହୁଏ ବିଶାଳ ସୀମାହୀନତା – କୌଣସି ପ୍ରାଚୀରର ବାଧାବନ୍ଧନ ନାହିଁ।

ବି.ଏନ୍.ଡବ୍ଲ୍ୟୁ.ଆର୍. ବଦଳାଇ ବୋଧହୁଏ ସବୁ ଗାଡ଼ି ଉପରେ ଲେଖା ହୋଇଛି ଓ.ଟି.ଆର୍। ବି.ଏନ୍.ଡବ୍ଲ୍ୟୁ.ଆର୍. ନାମ ଯେ କୌଣସି ଦିନ ପରିବର୍ତ୍ତିତ ହୋଇପାରେ, ଏହା ଭାବିଲା ବେଳକୁ କିପରି ଲାଗୁଛି। ପୃଥିବୀରେ ଚାରିଆଡ଼େ ଅହରହ କେତେ ପରିବର୍ତ୍ତନ ଘଟୁଛି, କିନ୍ତୁ ତା ଭିତରେ କେତେକଦିନ ଜିନିଷର ଏକ ସ୍ଥିର ଅପରିବର୍ତ୍ତିତ ରୂପ ବ୍ୟତୀତ,

* ଜଣେ ଆସାମୀ ଏକାଥରେ ଛାଡ଼ ପାଇ ଯାଇଛି।

ଆମେ ଅନ୍ୟ କିଛି କଳ୍ପନା କରି ପାରୁନାହିଁ। ବାବାଙ୍କ ଦାଢ଼ୀ ନିଶଖିଅର ମୁହଁ ମୁଁ କେତେବେଳେ ଭାବି ପାରେ ନାହିଁ। ଭାବିଲେ ହସ ମାଡ଼େ। ହୁତ୍। ସେମିତି ହୁଏ ନାଁ କଣ ?

କେବଳ ରେଳଗାଡ଼ିର ଶବ୍ଦ ନୁହେଁ, ବାହାରର ଯେ କୌଣସି ଶବ୍ଦ ଜେଲ୍ କ୍ୱାର୍ଟରସ୍‌ମାନଙ୍କରେ କୁକୁର ଭୁକିବା ପର୍ଯ୍ୟନ୍ତ ଶୁଣିବା ପାଇଁ ଭଲ ଲାଗେ। ....ସେଦିନ ବାହାର ରାସ୍ତାରେ ଦଳେ ପିଲା "ହିପ୍ ହିପ୍ ହୁର୍‌ରେ" ଚିତ୍କାର କରି ଚାଲିଗଲେ। ବୋଧହୁଏ ସେମାନେ କୌଣସି ମ୍ୟାଚ୍ ଖେଳି ଫେରୁଥିଲେ। ଏ ଧ୍ୱନିର ସମ୍ବନ୍ଧ କେତେ ପୁରୁଣା ସ୍ମୃତି ସହିତ। —ସାନ ସାନ ପୁଅ ଝିଅ ଅନେକ ଦିନ ହେଲା ଦେଖିନାହିଁ— ହାଫ୍ ପାଣ୍ଟପିନ୍ଧା ନଅ ଦଶ ବର୍ଷର କାପ୍‌ଟେନ୍ ନୀଲୁ, ଚୀନାମାଟିରେ ତିଆରି ଗୋଟାଏ କପ୍ ସସର୍ ଧରି ଗଳା ଫଟାଇ ଚିତ୍କାର କରୁଚି ହିପ୍, ହିପ୍, ହୁର୍‌ରେ। ଗରମ, ପରିଶ୍ରମ ଓ ଚିତ୍କାରରେ ମୁହଁ ଲାଲ ପଡ଼ିଯାଇଛି।

ଦିନ ତିନିଟା ଆଉ ରାତି ସାଢ଼େ ବାରଟାରେ ବାଜେ ରେଳଗାଡ଼ିର ହୁଇ ସିଲ୍। ସକାଳ ପାଞ୍ଚଟା ଆଉ ସନ୍ଧ୍ୟା ସାଢ଼େ ଛଅଟାରେ ଶୁଭେ ଷ୍ଟିମର୍‌ର ହର୍ଣ୍ଣ— ମୋର ଘଡ଼ି— ସେଲ୍ ସାମନା ଛାଇ ଅପେକ୍ଷା ଅନେକ ନିଶ୍ଚିତ ଆଉ ନିର୍ଭରଯୋଗ୍ୟ— ମୋର କଳ୍ପନାବିଳାସର ସାଥୀ। ଯେତେବେଳେ ନାଇଁ ସେତେବେଳେ ଏରୋପ୍ଲେନ୍‌ର ଶବ୍ଦ ଶୁଣେ। ରାତିରେ ତ ପ୍ରତି ଦୁଇ ଘଣ୍ଟାରେ ଗୋଟାଏ କରି ଏରୋପ୍ଲେନ ଯାଏ— ବୋଧହୁଏ ଡାକ ନେଇଯାଏ ଆସାମ ଫ୍ରଣ୍ଟକୁ, କିନ୍ତୁ ଏରୋପ୍ଲେନର ଶବ୍ଦ ମନରେ ଜାଗ୍ରତ କରେ ନାହିଁ କୌଣସି ସ୍ମୃତିର ସୁବାସ। ହୁଏତ ମୁହୂର୍ତ୍ତକର କୌତୂହଳ— ପ୍ରତିଦିନ ଯାଏ କୁଆଡ଼େ, ରାତିରେ ଠିକଣା କରେ କିପରି କମ୍ପାସ୍, ମାପ୍ ରେଳ ଲାଇନ୍ ଆଉ ଗଙ୍ଗା— ଏହା ଅପେକ୍ଷା ଆଉ ବେଶୀ କିଛି ନୁହେଁ। ପ୍ଲେନ୍ ସବୁ ଏକା ସାଙ୍ଗରେ ଯାନ୍ତି— ମୁଁ ସେଲ୍ ଭିତରେ ଥାଇ ଶୁଣେ, ନଅ ଓ ଦଶ ନମ୍ବର ସେଲ୍‌ର ବୋମାବାବୁ ଦୁଇଜଣ, ମୋତେ ଖବର ଦେବା ପାଇଁ ଚିତ୍କାର କରି ଗଣୁଛନ୍ତି ଏକ, ଦୁଇ, ତିନି, ଚାରି। କିନ୍ତୁ କେଜାଣି କାହିଁକି ଏରୋପ୍ଲେନର ଶବ୍ଦ ମୋ ମନରେ କୌଣସି ସ୍ପନ୍ଦନ ଅଣେ ନାଇଁ। ମୋର ପରିଚିତ ଜଗତ ମଧ୍ୟରେ ଏହାର ସ୍ଥାନ ନାହିଁ, କାରଣ ମାଟି ସହିତ ଏମାନଙ୍କର ସମ୍ବନ୍ଧ ଗୌଣ। ଏଇଥିପାଇଁ ବୋଧହୁଏ କାଉ, ଚିଲ ପ୍ରଭୃତି ଯେଉଁ ପକ୍ଷୀ ଗୁଡ଼ିକୁ ଜେଲ୍ ଭିତରେ ଦେଖିବାକୁ ପାଏ, ସେ ଗୁଡ଼ିକ ଦୃଷ୍ଟି ଆକର୍ଷଣ କରନ୍ତି, ମାତ୍ର ମନକୁ ଉଦ୍‌ବେଳିତ କରି ପାରନ୍ତି ନାହିଁ। ଏସବୁ ଏକ୍‌ଟଣା ଜୀବନରେ ପରିବର୍ତ୍ତନ ଆଣି ପାରନ୍ତି, ମାତ୍ର ସେଥିରୁ ଆଉ ବେଶୀ କିଛି ନୁହେଁ। ବିରହୀ ଯକ୍ଷର ମେଘଦୂତ, ବିରହିଣୀ ସମୟନ୍ତିର ହଂସଦୂତ, କବିର କେବଳ କଳ୍ପନା-ବିଳାସ, ବାସ୍ତବ ମାନବ-ଚରିତ୍ରର ଅଭିଜ୍ଞତାର ଛାପ ସେଥିରେ ନାହିଁ।

ସିପାହୀଜୀ ବସି ବସି ଢୁଳାଉଚି। ଅତି ପରିଚିତ ବିଲେଇଟି ଧୀରେ ଧୀରେ ମୋ ଆଡ଼କୁ ଆସୁଚି। ବିଲେଇଟି ଅଟକି ଠିଆ ହୋଇଗଲା — ବୋଧହୁଏ ମୁଁ ଦରଜା ପାଖରେ ବସିଚି ବୋଲି, ଭିତରକୁ ଆସିବା ପାଇଁ ସାହସ ପାଉ ନାହିଁ। ପ୍ରତ୍ୟହ ଦିନ ଆଉ ରାତିବେଳା ଆସେ ଅଇଁଠା ଥାଳି ଚାଟିବା ପାଇଁ। ସପ୍ତାହରେ ଦିନେ, ତ ଟିକିଏ ଦହି ପାଏ ଆଉ ଅନ୍ୟ ଦିନ ମାନଙ୍କରେ ଆସେ କଣ ଖାଇବା ପାଇଁ ? ଜେଲ୍‌ରେ ରହି ଅଳ୍ପ ଅଳ୍ପ ନିରାମିଷ ଖାଇବା ଅଭ୍ୟାସ କରିଛି। ଆଶ୍ରମରେ ସହଦେଓର ଯେଉଁ କୁକୁରଟି ଥିଲା, ତାକୁ ଦେଖିଛି, ସେ ମଧ୍ୟ ନିରାମିଷ ପସନ୍ଦ କରେ। ଏବେ ସେଇ କୁକୁରଟି ଅଛି କେଉଁଠି ? ସହଦେଓର

ଭାଇ ତାଙ୍କୁ ବୋଧହୁଏ ଘରକୁ ନେଇ ଯାଉଛି। ଲଣ୍ଠନ ଆଲୁଅରେ ଦେହର ରଙ୍ଗ ପରିଷ୍କାର ଦେଖାଯାଉଛି। ଦେହରେ, ବାଘ ପରି ହଳଦିଆ, କଳା ଆଉ ଧୂସର ଡୋରୀ। ବିଲେଇଟି ଦେଖିବାକୁ ବେଶ୍। ସେଦିନ ଜେଲର ସାହେବ ରସିକତା କଲେ – "କଣ ବିଲେଇ ସାଙ୍ଗରେ ଆଳାପ ଜମେଇଛନ୍ତି ନାଁ କଣ ?" ମୁଁ ଜବାବ ଦେଲି, "ନାଁ, ବିଲେଇଟା ଏମିତି ଆସିଛି। ଏହାର ନାଁ ରଖନ୍ତୁ 'ଟୋଜୋ'। ତାପରେ ନିଜ ରସିକତାରେ ହୋ – ହୋ – ହସି ଉଠନ୍ତି। ଜେଲର ସାହେବଙ୍କ ଦାନ୍ତ ଗୁଡ଼ାକ ମୁକ୍ତା ପରି ଧଳା – ଟୁଥପେଷ୍ଟ ବିଜ୍ଞାପନର ଦାନ୍ତ ପରି।

ବିଲେଇଟାକୁ ବାଟ ଛାଡ଼ି ଦେବା ପାଇଁ, ମୁଁ ଗୋଟାଏ ପାଖକୁ ଘୁଞ୍ଚି ଆସିଲି। ବିଲେଇଟା ଥରେ ବୋବେଇଲା – ଏବେ ସୁଦ୍ଧା ସେ ମୋତେ ଯେପରି ବିଶ୍ୱାସ କରି ପାରୁନାହିଁ। ଭାତ ଥାଳିରୁ ଟିକିଏ ତରକାରୀ ଉଠାଇ ନେଲି। ଧୋନ୍ଦଲ୍ ତରକାରୀ। ବିଲେଇମାନେ ଧୋନ୍ଦଲ୍ ଖାନ୍ତି ନାଁ କଣ ? ବିଲେଇ ଆଡ଼କୁ ଟୁକୁରାଏ ମିଠାତରଡ଼ା ପକାଇଦେଲି। ବିଲେଇଟା 'ମେଉଁ' କରି ପଳାଇଲା। ମିଠାତରଡ଼ା ଟୁକୁରାଟା କିନ୍ତୁ ଗରାଦରେ ଲାଖି ରହିଲା, ଦରଜା ବାହାରକୁ ଯାଇ ପାରିଲା ନାହିଁ।....

ଆଶ୍ରମରେ ମା'ଙ୍କ କୋଠରୀରେ ବସି ମୁଁ ଆଉ ନୀଲୁ କମଳାଲେମ୍ବୁ ଖାଉଚୁ। ଦୁଇଜଣଙ୍କ ଭିତରେ ପ୍ରତିଯୋଗିତା ଚାଲିଛି, କମଳାଲେମ୍ବୁର ଚୋପା ଝରକା ରେଲିଙ୍ଗ୍ ଭିତର ଦେଇ ବାହାରକୁ ପକାଇବା ପାଇଁ ପଡ଼ିବ, ରେଲିଙ୍ଗ୍ ଉପରେ ଯେପରି ନଲାଗେ। ଅଧିକାଂଶ ଚୋପା କିନ୍ତୁ ରେଲିଙ୍ଗ୍ ଦେହରେ ଲାଗି ଯାଉଛି। ଝରକାରେ କେଇଟା ବା ରେଲିଙ୍ଗ୍ ? ଆଉ କେତେ ଟିକିଏ ଜାଗା ବା ତାହା ଢାଙ୍କିଛି ? ତଥାପି କମଳାଲେମ୍ବୁ ଚୋପାର ଅଧିକାଂଶ ସେଇଥିରେ ଲାଗି ଯାଉଛି।

....ବାରମ୍ବାର ନୀଲୁ କଥା କାହିଁକି କେଜାଣି ମନେ ପଡୁଚି। ଯେଉଁ କଥା ସବୁ ଭୁଲିବା ପାଇଁ ଚାହୁଁଚି ସେଥିପାଇଁ ନୁହେଁତ ! ଜ୍ଞାତସାରରେ ଯେଉଁ କଥାସବୁ ଆଜିକୁ କେତେ ଦିନ ହେଲା ମନେ ମନେ କହୁଛି, ସେ ସେସବୁକୁ ମୋର ଅଜ୍ଞାତ ମନ କଣ କୌଣସି ମତେ ଗ୍ରହଣ କରି ପାରୁନାହିଁ ? ସତକଥା। ମୁଁ ଜାଣେ, ନୀଲୁ ମୋ ବିରୁଦ୍ଧରେ ସାକ୍ଷ୍ୟ ଦେଇ ନିଜର କର୍ତ୍ତବ୍ୟ କରିଛି। ଯେ କୌଣସି ଆତ୍ମଜ୍ଞାନ ସମ୍ପନ୍ନ, ସତ୍ୟନିଷ୍ଠ ରାଜନୈତିକ କର୍ମୀ ପକ୍ଷରେ ଏହା ବ୍ୟତୀତ ଗତ୍ୟନ୍ତର ନଥିଲା। କିନ୍ତୁ ଇଏ ସବୁ ହେଲା ଯୁକ୍ତିର କଥା। ସୁପ୍ତ ଚେତନା ହୁଏତ ଭାବେ ଯେ, ଏ ଯୁକ୍ତିସବୁ କୋର୍ଟରେ ଚଳିପାରେ, ବହିର ଛପା ପୃଷ୍ଠାରେ ପଢ଼ିବାକୁ ଭଲ ଲାଗିପାରେ, କିନ୍ତୁ ଅନ୍ୟତ୍ର ଏହାର ସ୍ଥାନ ନାହିଁ। ତା' ନହେଲେ ବାରମ୍ବାର ନୀଲୁ କଥା ମନେ ପଡ଼ନ୍ତା କାହିଁକି ? ନିଜ ପାର୍ଟି ପ୍ରତି ଏକନିଷ୍ଠତା ଦେଖାଇବା ପାଇଁ ସହୋଦର ଭାଇର ଫାଶୀ ପାଇଁ ପଥ ସୁଗମ କରିଦେବା ହୃଦୟର ସତ୍ୟତାର ପ୍ରମାଣ ନାଁ ରୁଗ୍ଣମନର ଶୁଚିବିକାରର ପରିଚୟ ? ବୋଧହୁଏ ମୋ ଭିତରର ଅସଲ ମୁଁ, ନୀଲୁ ବ୍ୟବହାରକୁ ଆଦୌ ସମର୍ଥନ କରିପାରୁନାହିଁ। ସେଥିପାଇଁ ବାହାରର ମୁଁ, ପୁରୁଣା ସ୍ମୃତିର ମହୁ ବୋଳି ହୋଇ, ଦହନର ସେଇ ଜ୍ୱାଳାକୁ ସ୍ନିଗ୍ଧ କରୁଛି।

ପୁଣି ଆସି ଦରଜା ପାଖରେ ବସିଲି। ଏଥର ବାଁ ପାଖକୁ ଭରା ଦେଇ – ବାଁ ହାତରେ ଗରାଦକୁ ଧରି। କିନ୍ତୁ ଡାହାଣ ପାଖକୁ ଭାରା ମାଡ଼ି, ଡାହାଣ ହାତରେ ଗରାଦ ଧରି ବସିବା ଯେପରି ସ୍ୱାଭାବିକ ଓ ସ୍ୱସ୍ତିକର ମନେହୁଏ, ବାଁ ପାଖକୁ ଭାରା ମାଡ଼ି ବସିଲେ, ସେପରି ମନେ ହୁଏ ନାହିଁ। ଗୋଟାଏ ବୁଢ଼ା

ହାତୀର କାନ୍ଧ ଉପରେ, ଠିକ୍ ମାହୁନ୍ତ ପଛରେ ବସିବା ଭଳି ମନେ ହେଉଚି। ଏପରି ଉଦ୍ଭଟ କଳ୍ପନା ସବୁ ପୁଣି ମୁଣ୍ଡକୁ ଆସେ ? ଉଦ୍ଭଟ କିନ୍ତୁ କିପରି ହେଲା ?

....ସେଇ କାରହାଗୋଲା ଗାଁର ଧନୀ ଗୃହସ୍ଥ ଧନପତ୍ ଯାଦବର ଗାଁକୁ ଥରେ ଯାଇଥିଲି। ପୁଲିସର ସନ୍ଦେହ ତାର ଗୋଟାଏ ଡକାୟତ ଦଳ ଅଛି। ତା ଉପରେ ବି.ଏଲ୍.କେସ୍ ଚାଲିବା ସିଏ କଂଗ୍ରେସ ମିନିଷ୍ଟ୍ରୀ ବେଳ। ଧନ୍‌ପତ୍ ଆମକୁ ତା' ଗାଁକୁ ନେଇଗଲା ମିଟିଙ୍ଗ୍ କରିବା ପାଇଁ। ଉଦ୍ଦେଶ୍ୟ ଦାରୋଗାକୁ ଭୟ ଦେଖାଇବା। – ଦାରୋଗା ଯେପରି ଭାବିବ ଯେ, ସେ କଂଗ୍ରେସଲୋକ। ଖୁବ୍ ଆଡ଼ମ୍ବରରେ ମିଟିଙ୍ଗ୍ ହେଲା। ଖିଆପିଆ ଶେଷ ହେବା ପରେ, ସିଏ କହିଲା, "ଚାଲନ୍ତୁ ଶିକାର ଆୟୋଜନ କରିଚି"। ବାଦ୍‌ଲା କିଆ ଜଙ୍ଗଲ ଆଡ଼େ ହାତୀ ପିଠି ଉପରେ ବସି ଚାଲିଛି। ମୁଁ ଠିକ୍ ମାହୁନ୍ତ ପଛରେ। ବୁଢ଼ା ହାତୀ। କାନ୍ଧ ପାଖରେ ଗୋଟିଏ ପାଖରେ ଗୋଟିଏ ବେଶ୍ ବଡ଼ ଗାତ ପରି ହୋଇଚି। ତା ଭିତରେ ଆରାମରେ ପଦ୍ମାସନରେ ବସିଚି। ଜଙ୍ଗଲ ଆରମ୍ଭ ହେଲା। ସେଠୁ କିଛି ଦୂର ଆଗକୁ ଯାଇଛୁ, ସାମ୍ନାରେ ଗୋଟାଏ ପ୍ରକାଣ୍ଡ ଓସ୍ତ ଗଛ ପଡ଼ିଲା। ହାତୀର ହଠାତ ଖିଆଲ୍ ହେଲା ଓସ୍ତ ପତ୍ର ଖାଇବା ପାଇଁ। ଶୁଣ୍ଢ ଉଠାଇ ଗୋଟିଏ ଛୋଟ ଡାଳ ଭାଙ୍ଗିବା ପାଇଁ ଚେଷ୍ଟା କଲା। ନିମିଷକ ଭିତରେ କଣ ଯେପରି ଘଟିଗଲା, ବୁଝିପାରିଲା ନାହିଁ। ମନେ ହେଲା ମୋତେ ଯେପରି ଜନ୍ତା ଭିତରେ ପକାଇ, ଦଳି ଦେବାର ଚେଷ୍ଟା ହେଉଚି। ହାତୀ ମୁଣ୍ଡ ଉଠାଇବା ଫଳରେ ଯେଉଁ ଗହ୍ୱର ଭିତରେ ମୁଁ ବସିଥିଲି, ତାହା ସଙ୍କୁଚିତ ହୋଇ ମୋର ନିମ୍ନାଙ୍ଗକୁ ଚାପି ଧରିଛି। ଯନ୍ତ୍ରଣାରେ ମୁଁ ଚିତ୍କାର କରି ଉଠିଲି। ମାହୁନ୍ତ ଅବସ୍ଥା ବୁଝିପାରି ଶୁଣ୍ଢଟାକୁ ନୁଆଇଁ ଦେଲା। ହାତୀ ପିଠିରୁ ମୁଁ ଓହ୍ଲାଇ ପଡ଼ିଲି – ପାଦ ଆଡ଼ଟା ବଧୀରା ହୋଇ ଯାଇଛି।

ମୋ ସେଲ୍‌ରେ ୱାର୍ଡ଼ର୍ କାଛକୁ ଆଉଜି ଶୋଇ ପଡ଼ିଛି। ପଗଡ଼ିଟାକୁ ଖୋଲି ରଖି ଦେଇଛି ପାଖରେ। ତିନି ନମ୍ବର ସେଲ୍‌ର ୱାର୍ଡ଼ର ମଧ ବୋଧହୁଏ ଶୋଇପଡ଼ିଛି। ବାହାରେ ଏହି ୱାର୍ଡର ଅନ୍ୟ ୱାର୍ଡର୍ ମାନଙ୍କର ପାଦଶବ୍ଦ ଶୁଣାଯାଉଚି। ସେଲ୍ ଗୁଡ଼ିକ ସବୁ ନିସ୍ତବ୍ଧ। ସମସ୍ତେ ବୋଧହୁଏ ଶୋଇ ପଡ଼ିଲେଣି। ପାଗଳଟି ବି କ'ଣ ଆଜି ଶୋଇ ପଡ଼ିଲା ? ବୋମା ବାବୁ ମାନେ ବୋଧହୁଏ ଆଲୁଅ ଜାଳି ପଢୁଛନ୍ତି। ଝିଙ୍କାରୀ ଡାକ ଶୁଭୁଛି। କିନ୍ତୁ ଆଶ୍ରମରେ ଝିଙ୍କାରୀ ଡାକ ଯେପରି ଶୁଭେ ଏହା ସେପରି ଲାଗୁ ନାହିଁ। ଐକ୍ୟଶନରେ ସେ ସଜୀବତା ନାହିଁ। ଶୀତରାତିରେ ପିଲାଦିନେ ନିଦ ଭାଙ୍ଗିଲେ, ଝିଙ୍କାରୀ ଡାକ ରହସ୍ୟର ରଙ୍ଗମହଲ ଖୋଲିଦିଏ, ଏ ଡାକ କିନ୍ତୁ ସେପରି ପ୍ରାଣବନ୍ତ ନୁହେଁ। ନୀଳୁ ଝିଙ୍କାରୀ ବୋବେଇବାକୁ କହେ, ତାହା ଗୋଟିଏ ରକମ ପିମ୍ପୁଡ଼ିର ଡାକ। ତା ସହିତ କିଏ ବିତଣ୍ଡା କରିବ ? ଜେଲ୍ ଆବ୍‌ହାୱା ସହିତ ଝିଙ୍କାରୀ ଡାକ ଯେପରି ଖାପ୍ ଖାଏ ନାହିଁ। ରୁଟିନ୍, ସଂଖ୍ୟାଗଣନା, ଶୃଙ୍ଖଳା ପାଚେରୀ ନିୟମାନୁବର୍ତ୍ତିତା ଭିତରେ ଏ ବିଳାସର ସ୍ଥାନ କେଉଁଠି ? କିନ୍ତୁ କାଛ ଆଉ ଗରାଦରେ କଣ ସବୁ ଜିନିଷ ଅଟକି ଯାଇପାରେ ?

ଧଡ଼୍‌ଧାଡ଼୍ କରି ନୂଆ ୱାର୍ଡର ଦଳ ଆସିଲେ। ତାହେଲେ ଗୋଟାଏ ବାଜିଲା। ସେମାନେ ନିଶ୍ଚୟ ତିନିଜଣ – ଜଣେ ମୋ ସେଲ୍‌ର, ଆଉ ଜଣେ ତିନି ନମ୍ବର ସେଲ୍‌ର, ଅନ୍ୟ ଜଣକ ଏଇ ୱାର୍ଡର। ଜଣେ ୱାର୍ଡର ମୋ ସେଲ୍‌ର ଅଗଣା ଭିତରକୁ ପଶିଲା।

ଶୋଇ ପଡ଼ିଥିବା ୱାର୍ଡରର ପଗଡ଼ିଟାକୁ ନେଇ ସେ ଆସ୍ତେ ଆସ୍ତେ ବାହାରେ ରଖି ଆସିଲା । ତାପରେ ୱାର୍ଡରକୁ ଡାକି ଉଠାଇଲା – "ଏ ହାଇଦାର୍, ଆଜି ଏଇଠି ଶୋଇବ ନାଁ କଣ ?" ସେ ଧଡ଼୍‌ପଡ଼୍ ହୋଇ ଉଠି ପଡ଼ିଲା – ଜେଲର୍ ସାହେବ ଆସି ନାହାନ୍ତିତ ? ନାଁ; କିଏ କିଶନ୍‌ଚାନ୍ଦ୍ ? ନୂଆ ଦଫା ଆସିଗଲେଣି ? ଭାଇ ଦିଲ୍‌ଲଗୀ କର ନାହିଁ। ପଗଡ଼ିଟା କୋଉଠି ରଖିଚ୍ କହ । ନୂଆ ସିପାହି କହିଲା, ମୁଁ କି ଜାଣେ ? ବାଃ ରେ ବାଃ ! ମୁଁ ତ ଏଇ ଆସୁଚି। ହାଇଦର ପ୍ରଥମେ ବିଶ୍ୱାସ କରି ପାରିଲା ନାହିଁ – ପରେ ତା' ମୁହଁ ଭୟରେ ଶେତା ପଡ଼ିଗଲା । ଚାକିରୀ ତାର ଏଇ ଅଳ୍ପ ଦିନ ହେବ ପକ୍କା ହୋଇଚି। ଚକିରୀରେ ପଶି ସେ ଶୁଣିଚି, ଜେଲର୍ ସାହେବ ରାଉଣ୍ଡରେ ଆସି ନିଦ୍ରିତ ସିପାହି ଦେଖିଲେ – ସେତେବେଳେ ତାକୁ କିଛି କହନ୍ତି ନାହିଁ। – ତାର ପଗଡ଼ିଟିକୁ କେବଳ ନେଇଯାନ୍ତି। ପରେ ତାକୁ ଜୋରିମାନା ହୁଏ । ଏଇ ତ ଗଲା ସପ୍ତାହରେ ହରକିଷନ୍ ୱାର୍ଡରର 'ତକ୍‌ଦୀର'* ଏଇ ପରି ଘଟିଲା । ସେ 'କପଡ଼ାଗୋଦାମ୍'ର ଇନ୍-ଚାର୍ଜ୍ କୟଦୀ ବିରଜାବିଳାସକୁ ଦେଢ଼ଟଙ୍କା ଘୁସ୍ ଦେଇ ପଗଡ଼ିଟିଏ ଯୋଗାଡ଼ କରିଥିଲା । ଜେଲ୍‌ର୍ ସାହେବ ପଅରଦିନ ପ୍ୟାରେଡ୍ ବେଳେ, ତାର ପଗଡ଼ି ଦେଖି, ଏ ପଗଡ଼ି ସେ କେଉଁଠୁ ପାଇଲା ବୋଲି ପଚାରିଲେ । ପ୍ରଥମେ ହରକିଷନ୍ ** 'ସାଫ୍ ଇନ୍‌କାର୍ କିୟା'। ତା'ପରେ ଜେଲର୍ ସାହେବଙ୍କ ଜେରାରେ ସବୁ ମାନିଗଲା । ଫଳରେ କେବଳ ସେ ଏକା ଗଲା ନାହିଁ; ବିରଜାବିଳାସ ବି ସଙ୍ଗେ ସଙ୍ଗେ 'ଲିୟେ ଦିୟେ ସାଫ୍' । କିଶନ୍‌ଚାନ୍ଦ ତାର ଗପ ଶେଷକଲା । ହାଇଦର୍ ବୁଝି ପାରିଲା । ଖୋଷାମୋଦ କରି ପଗଡ଼ିଟି ଫେରି ପାଇବା ତାର ଉଦ୍ଦେଶ୍ୟ। ଅନ୍ୟ ଦୁଇଜଣ ଘର ମୁହାଁ ୱାର୍ଡର ମୋ ସେଲ୍ ସାମ୍‌ନାରେ ଆସି ଜୁଟିଲେ । ହାଇଦର ପଗଡ଼ି ଫେରସ୍ତ ପାଇଲା – ସମସ୍ତ ମିଶି ନିଷ୍ପତ୍ତି କରିଦେଲେ – କାଲି ଖରା ବେଳେ ହାଇଦର୍ ଅପରଡ଼ିଭିଜନ୍ ରାଜବନ୍ଦୀ ମାନଙ୍କର ୱାର୍ଡ ଡ଼ିଉଟିରେ ଥିବ, ସେଠୁ ଗିଲାସେ ଦୁଧ ସେ କିଶନଚାନ୍ଦକୁ ପିଆଇବ। ହସି ହସି ସମସ୍ତେ ବାହାରକୁ ଚାଲି ଆସିଲେ ।

ଏମାନଙ୍କର ଏଇ କର୍ମକ୍ଳାନ୍ତ ଜୀବନରେ ବି ସୁଖ ଅଛି। – ନିଶ୍ଚିତ ବେତନ ସ୍ତ୍ରୀ, ପୁତ୍ର, ପରିବାର....

ଟୁରରୁ ଫେରିଛି। ସରସ୍ୱତୀର ସୁନ୍ଥାରେ ସିନ୍ଦୁର, ହାତରେ ଶଙ୍ଖା, ଦୁଆରବନ୍ଧରେ ଠିଆ ହୋଇଚି, ହସ ହସ ମୁହଁ– ସଲଜ୍ଜ ଉତ୍କଣ୍ଠା ସହି କହିଲା, "ବସ, ଟିକିଏ ଦମ୍ ନେଇ ଥଣ୍ଡା ହୋଇ ପଡ଼ । ମୁଁ ଚା କରି ନେଇ ଆସୁଚି।" ମୁଁ ଉତ୍ତର ଦେଲି ନାହିଁ। ହସି ହସି ତା ପଛେ ପଛେ ଯାଇଁ ରୋଷେଇଘରେ ପିଢ଼ା ପକାଇ ବସିଲି। ଓଦା କାଠରେ ଫୁଙ୍କ ଦେଇ ଚୁଲୀ ଲଗାଇବା ଚେଷ୍ଟାରେ ଆରକ୍ତିମ, ଘର୍ମାକ୍ତ ମୁଖମଣ୍ଡଳ, ଅସମ୍ଭୃତ କେଶରାଶିରେ ତାଙ୍କି ହୋଇ ପଡ଼ିଛି। –ହୋଇ ପାରିଥାନ୍ତା ....

କିନ୍ତୁ ମୋ ଜୀବନ କୃଚ୍ଛ୍ରସାଧନର ଆଦର୍ଶରେ ଗଢ଼ା। ଆଉ ମୋ ମନର ବାସନା ଅନ୍ୟ ପ୍ରକାରର ହୋଇଥିଲେ ବି, କି ଉପାୟଥିଲା ? ସବୁଦିନେ ପଢ଼ା – ପ୍ରତିବେଶୀ ସମସ୍ତଙ୍କ ମୁହଁରୁ ବରାବର ଶୁଣି ଆସିଛି "ବିଲୁ ପରି ପିଲା, ଦେଖାଯାନ୍ତି ନାହିଁ।" ଏଇ ପ୍ରଶଂସା ବଜାୟ ରଖିବାର ଅକାଂକ୍ଷା ମୋତେ କେତେବେଳେ ସୁଦ୍ଧା ନିବୃତ୍ତିର ପଥରୁ ବିଚ୍ୟୁତ ହେବାକୁ ଦେଇନାହିଁ। ମନର କେତେ ଦୁର୍ନିବାର ବାସନାକୁ କଷାଘାତରେ ସଂଯତ କରିଛି।

---

* ଭାଗ୍ୟ।   ** ସଂପୂର୍ଣ୍ଣ ଅସ୍ୱୀକାର କଲା।

କିନ୍ତୁ ମୋ କାମନାର ଉତ୍ତରଣ ହୋଇ ମୁଁ କଣ କୌଣସି ଉଚ୍ଚତର ସ୍ତରରେ ପହଞ୍ଚି ପାରିଚି ? ନାଁ, ତା ହୋଇଥିଲେ ମନରେ ଆଜି ଏ ସଂଶୟ ଉଠନ୍ତା କାହିଁକି ? କେତେ ପ୍ରକାର ଭୋଗର ଆକାଂକ୍ଷା ମନ ଭିତରେ କାହିଁକି ଉଙ୍କି ମାରନ୍ତା ? ....କିଛି କରିଯାଇ ପାରିଲି ନାହିଁ। ଇତିହାସରେ ନାମ ଲିପିବଦ୍ଧ କରିଯାଇ ପାରିଲି ନାହିଁ। ଫୁଟବଲ୍ ମ୍ୟାଚ୍‌ର ଟିକଟକିଣାଳୀ ମାନଙ୍କ ପରି କେବଳ, ଦେଶସେବକର ଅନ୍ତହୀନ ବିସର୍ପିଳ ଲାଇନ୍‌ରେ ନିଜ ପାଇଁ ସ୍ଥାନ କରି ନେବାର ସୁଯୋଗ ପାଇଥିଲି। ମୋ କଥା, ମୋ ପ୍ରତିବେଶୀ ମାନେ ଆସନ୍ତା ସପ୍ତାହରେ ବୋଧହୁଏ ଭୁଲିଯିବେ– ବର୍ତ୍ତମାନ ମନେ ଅଛି କି ନାହିଁ କିଏ ଜାଣେ ? – ତାହେଲେ ଏତେ ଦିନ ମୁଁ କଲି ବା କଣ ? ମୁଁ ତ ଅତିମାନବ ନୁହେଁ, ଅତି ସାଧାରଣ ରକ୍ତମାଂସର ମଣିଷ। – ମଣିଷର ସବୁ ଦୋଷ, ଭ୍ରାନ୍ତି, ଦୁର୍ବଳତା ଅଛି ମୋ ଭିତରେ। କୀଟ୍‌ସ୍ ବଞ୍ଚିଥିଲେ ପଚିଶି ବର୍ଷ – ଶେଲୀ ତିରିଶ ବର୍ଷ। ପିଟ୍‌ସ୍ ତେଇଶି ବର୍ଷ ବୟସରେ ଇଂଲଣ୍ଡରେ ପ୍ରଧାନମନ୍ତ୍ରୀ ହୋଇଥିଲେ। ଆଉ ମୁଁ ତେଇଶି ବର୍ଷ ବୟସରେ ମରିବି କୁକୁର ବିଲେଇ ପରି। କେହି ଜାଣିବେ ନାହିଁ, କେହି ଶୁଣିବେ ନାହିଁ, କେହି ଆଖିରୁ ଦୁଇ ବୁନ୍ଦା ଲୁହ ଝରାଇବ ନାହିଁ। ଯାହା କିଛି କରିବାର ଚେଷ୍ଟା କରିଛି, ସେ ସବୁ ଏକାଥରେ ବ୍ୟର୍ଥ ହୋଇ ଯାଇଛି। ଏ ନିଷ୍ଫଳ ପ୍ରୟାସର କୌଣସି ମୂଲ୍ୟ ସୁଦ୍ଧା ନାହିଁ। କବି ଯେତେ ପଦ ଗୁନ୍ଥନ୍ତୁ ଯେ ପୃଥିବୀରେ କିଛି ବ୍ୟର୍ଥ ହୁଏ ନାହିଁ– ଯେଉଁ ନଦୀ ମରୁପଥରେ ହଜିଯାଏ, ସେ ମଧ୍ୟ ସାର୍ଥକ, ଏସବୁ କଥା ଅର୍ଥହୀନ। ଯେଉଁ କବିଙ୍କର ବ୍ୟର୍ଥତାର ଅନୁଭବ ନାହିଁ, ଏହା ତାଙ୍କର ଭାବ ବିଳାସ ମାତ୍ର।

ନାଁ, ଏହା ହୁଏତ ସମ୍ପୂର୍ଣ୍ଣ ନିରର୍ଥକ ନୁହେଁ। ମୋ ପରି ଦୁଇ ଚାରିଟା ଜୀବନର ମୂଲ୍ୟ ବା କଣ ? ଯାହା ଦେଖିଚି– ଜନଶକ୍ତିର ପ୍ରକୃତ ସ୍ୱରୂପ – ଗତ ଅଗଷ୍ଟ ମାସରେ – ଯୁଗ ଯୁଗ ସଞ୍ଚିତ ଜଗଦ୍ଦଳ ପଥର ତଳେ, ଯେଉଁ ସୁପ୍ତ ଶକ୍ତିର ସନ୍ଧାନ ପାଇଛି– ଥରେ ତାହା ସଚେତନ ହେଲେ କଣ କରିପାରେ, ଲୋକଙ୍କୁ ତାହା ବୁଝାଇବାରେ ମୋର ଦାନ ନଗଣ୍ୟ ନୁହେଁ। ରାଜନୈତିକ କର୍ମୀର ପଥ ବଡ଼ କଠିନ, ବଡ଼ ବନ୍ଧୁର। 'ତଖତ୍ ୟା ତଖ୍ତା' (ସିଂହାସନ ନୋହିଲେ ଫାଶୀମଞ୍ଚ) – ଆଶା ରଖିବି ଫାଶୀ ଦଉଡ଼ି ପାଇଁ, ହୁଏତ ଗୌରବର ରାଜମୁକୁଟ ମିଳିଲେ ମିଳିଯାଇପାରେ। ଅପାର କ୍ଲେଶକ୍ଲିଷ୍ଟ ଜୀବନ। ଦିନୁ ଦିନ ତିଳେ ତିଳେ ନିଜର ଜୀବନୀଶକ୍ତି, ଉତ୍ସାହ କ୍ଷୟ ହୋଇଯିବାର ଦେଖିବ। ନିଜ ମନର ତୃପ୍ତି ଛଡ଼ା ଆଉ କିଛି ପାଇଁ ଆଶା ରଖିଲେ ନିରାଶ ହେବା ପାଇଁ ପଡ଼ିବ। ପୁଞ୍ଜିଭୂତ ତାଚ୍ଛଲ୍ୟ ଓ ଉଦାସୀନତା ଭାରରେ ଜୀବନ ଦୁର୍ବହ ହୋଇ ପଡ଼ିବ। ଗୋଟିଏ ପାଦ ଆଗେଇଯାଅ– କେତେ ଶହ ଲୋକଙ୍କ ସ୍ୱାର୍ଥରେ ଆଘାତ ଲାଗିବ– ପ୍ରତ୍ୟେକ ତମର ଶତ୍ରୁ ହୋଇ ଠିଆହେବେ। ଜଣେ ଲୋକର ସମ୍ମାନ ପାଇପାର, କିନ୍ତୁ ପଦେ ପଦେ ଅନୁଭବ କରିବ ଯେ, ତୁମେ ଦଶଜଣଙ୍କର ଉପେକ୍ଷା ଓ ଉପହାସର ପାତ୍ର। ଏ ଜୀବନରୁ ଜେଲକୁ ଆସି ପାରିଲେ ସ୍ୱସ୍ତିର ନିଃଶ୍ୱାସ ପକାଇ ବଞ୍ଚି ହୁଏ। – ମୃତ୍ୟୁଦଣ୍ଡ ଅଭିଶାପ ନୁହେଁ ବରଂ ଆର୍ଶୀବାଦ। କେତେ ଲୋକ ତ ଯୁଦ୍ଧରେ ମରୁଛନ୍ତି, ବିନା ଅପରାଧରେ। କାହିଁକି, ତାହା ସୁଦ୍ଧା ସେମାନେ ଜାଣନ୍ତି ନାହିଁ। କେତେ ଲୋକ ଅନାହାରରେ ମରୁଛନ୍ତି, ମରୁଛନ୍ତି ବିନା ଚିକିତ୍ସାରେ। ଅପରାଧ– ଯେଉଁ ଜନ୍ମ ଉପରେ ତାର ହାତ ନଥିଲା, ତାରି ଅମୋଘ ନିର୍ଦ୍ଦେଶ। ରାସ୍ତାରେ ଗାଡ଼ିଚାପା ପଡ଼ି ମରିବା ପରି, ଅପନ୍ତରା ପଡ଼ିଆରେ ସାପକାମୁଡ଼ାରେ ମରିବା ପରି, ରାଜନୀତି କ୍ଷେତ୍ରରେ

ମୃତ୍ୟୁଦଣ୍ଡ ଗୋଟିଏ ସାମାନ୍ୟ ଆକସ୍ମିକ ଦୁର୍ଘଟଣା ମାତ୍ର। ତା ଅପେକ୍ଷା ଆଉ ବେଶୀ କିଛି ନୁହେଁ। ଦଳ ବାହାରେ ଦୁନିଆଁ ସହ ସଂଘର୍ଷ, କେତେ ପ୍ରତିକ୍ରିୟାଶୀଳ ଶକ୍ତି ସହିତ ସଂଘାତ, ସେଥିପାଇଁ ତ ସବୁ ରାଜନୈତିକ କର୍ମୀ ପ୍ରସ୍ତୁତ ହୋଇ ରହିଥାନ୍ତି। କିନ୍ତୁ ଦଳ ଭିତରେ ? ଭିତରର ସଂଘର୍ଷ ଆଉରି ଭୟାନକ। ଉପଦଳ ଉପଦଳ ମଧ୍ୟରେ ସଂଘର୍ଷ, ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସଂଘର୍ଷ, ସ୍ୱାର୍ଥ ସ୍ୱାର୍ଥ ମଧ୍ୟରେ ସଂଘର୍ଷ, ଜାତି ଜାତି ମଧ୍ୟରେ ସଂଘର୍ଷ, ପ୍ରଦେଶ ପ୍ରଦେଶ ମଧ୍ୟରେ ସଂଘର୍ଷ— ଜୀବନ ଏକାଥରେ ଅତିଷ୍ଠ ହୋଇ ପଡ଼େ। ଏଇ ସବୁ ରାଜନୈତିକ ଖେଳର ନିୟମ ଭିତରେ, ନିଷ୍ଠୁର ନିଷ୍କରୁଣ ନିୟମ, ଏଠି ଦୁର୍ବଳର ସ୍ଥାନ ନାହିଁ। ସମସ୍ତେ ଆଗେଇ ଚାଲିଛନ୍ତି ପଛରେ ପଡ଼ିଥିବା ଲୋକ ମଲା କି ଗଲା, ଫେରି ଚାହିଁ ଦେଖିବା ଦରକାର ନାହିଁ।

''ବାବୁ! ମଶା ଖୁବ୍ କାମୁଡୁଛନ୍ତି ନା କଣ ?'' — ୱାର୍ଡର୍ ପଚ଼ାରିଲା।

''ହଁ, କାହିଁକି ?''

''ଟିକିଏ ମିଟ୍ଟିକା ତେଲ(କିରୋସିନ୍) ବଦନ୍‌ମେ (ଦେହରେ) ବୋଳି ହୋଇ ପଡୁ ନାହାନ୍ତି କାହିଁକି ? ସୋରିଷ ତେଲ ତ ଏବେ ମିଳିବ ନାହିଁ। ନ ହେଲେ ଚେଷ୍ଟା କରି ଦେଖନ୍ତି।''

''ଆଚ୍ଛା ଦିଅ।''

ପୁଣି ଭାବିଲି, ସୋରିଷ ତେଲ ନ ମିଳିବା ଭଲ। ସେ ଦିନ ସୋରିଷ ତେଲ ଲଗାଇ ଶୋଇଥିଲି। ନିଦରୁ ଉଠି ଦେଖେ, ଦେହସାରା ଅସଂଖ୍ୟ ପିମ୍ପୁଡ଼ି। ଛୋଟ ନାଲି ପିମ୍ପୁଡ଼ି ଗୁଡ଼ାକ ବୋଧହୁଏ ତେଲ ଖାଇବାକୁ ଭଲ ପା'ନ୍ତି। ୱାର୍ଡର ଲଣ୍ଠନର କାଗଜ ଠିପିଟି ଖୋଲି, ସେଥିରୁ ଟିକିଏ ଛିଣ୍ଡାଇ, ତାକୁ ବଳି ଲମ୍ବା କରିଦେଲା। ସେଇଥାକୁ ବୁଡ଼ାଇ ବୁଡ଼ାଇ ମୋ ହାତରେ ବୁନ୍ଦାଏ ଦୁଇବୁନ୍ଦା କରି କିରାସିନୀ ତେଲ ଦେଲା। ମୁଁ ତାକୁ ଦେହସାରା ବୋଳି ହୋଇ ପଡ଼ିଲି। କେମିତି ଥଣ୍ଡା ଥଣ୍ଡା ଲାଗିଲା — ଇଉ—ଡ଼ି—କୋଲନ୍ ପରି। ....ଦିଗ୍‌ବଳୟରେ କଣ ମଶା ନାହାନ୍ତି ?

ପାଟନା କ୍ୟାମ୍ପ ଜେଲ୍‌ର୍ ମେଜର ଗୋମେଶ୍ ଗୋଟାଏ କାମ ଦେଖାଇଥିଲା ସତରେ ! କିରାସିନୀ ତେଲ ଦେଇ ଗୋଟାଏ କି ଇମଲ୍—ସନ୍ ତିଆରି କରିଥିଲା ସେ। ଏତେ ବଡ଼ ଜେଲ୍‌ଟାରେ ଗୋଟିଏ ସୁଦ୍ଧା ମଶା ନଥିଲା। ସାହେବ ଖାମ୍‌ଖିଆଲୀ ହେଲେ କଣ ହେବ— ଭାରି କାମିକା ଲୋକ ଥିଲା। ଆଡ଼ପାଗଳା ପରି। କଳା, ଡ଼େଙ୍ଗା — କହେ ''ମୁଁ ଇଣ୍ଡିଆନ୍''। ଦିନେ ଗୟାର ଜଣେ ରାଜବନ୍ଦୀକୁ କହିଥିଲା— ''ଜୋୟାନ୍ ତୁମ୍ ଭି ଶାଲା, ହାମ୍ ଭି ଶାଲା, ମୈ ସବ୍ ଶାଲା ସେ ମାଫି ମାଙ୍ଗତା ହୁଁ।[1] ସମସ୍ତଙ୍କୁ ସେ ଡାକେ ଜୋୟାନ୍....

....''ହେଁଇୟୋ ଜୋୟାନ୍ ହେଁଇୟୋ'' ....ବଡ଼ ବଡ଼ ଗଛର ଗଣ୍ଡି ସବୁ ଗଡ଼ାଇ ଗଡ଼ାଇ ଆଣି ରାସ୍ତାରେ ସେମାନେ ଗଦା କରୁଛନ୍ତି, କବୈୟା ଗାଁର ଶତାଧିକ ଲୋକ ହସ କୌତୁକ ଭିତରେ ଧାମ୍ ଦାହା— ପୂର୍ଣିଆ ରୋଡ୍ ଉପରେ ଗୋଟାଏ ବାରିକେଡ୍ ଗଛ ଗଣ୍ଡିରେ ଚାହୁଁ ଚାହୁଁ ତିଆର ହୋଇଗଲା। ଅଦମ୍ୟ ଉତ୍ସାହରେ ସେମାନେ ଅସମ୍ଭବକୁ ସମ୍ଭବ କରି ପାରିଛନ୍ତି। ଯେଉଁ ଦରିଦ୍ର କୃଷକମାନେ ଜୀବନରେ କେବେ ପ୍ରାଣଖୋଲି ହସିବାର ଅବକାଶ ପାଇ ନଥିଲେ, ସେମାନଙ୍କର ଆଜିହେଲା କଣ ? ପ୍ରତ୍ୟେକେ ଯେପରି କିଛି

1. 'ଜୁଆନ୍ ତୁ ଶଳା, ମୁଁ ବି ଶଳା; ସବୁ ଶଳାଙ୍କୁ ମୁଁ କ୍ଷମା ମାଗୁଚି'।

ନା କିଛି କହିବା ପାଇଁ ବ୍ୟାକୁଳ। ଏଇ କେତେ ଦିନ ଭିତରେ ସେମାନଙ୍କ ପାଖରେ କିଛି କିଛି ଗପର ଖୋରାକ୍ ଜମିଛି। ଅଭାବ କେବଳ ଶ୍ରୋତା ମାନଙ୍କର। ବୀର୍‌ଗାଓଁ ଥାନାରେ ଗୁଳି ହୋଇଚି– ସତଚାଳିଶ ଜଣ ମରିଛନ୍ତି, 'ଘାୟେଲ୍'[1] ର ତ ସୀମା ନାହିଁ, ଦାରୋଗା ସାହେବଙ୍କ ସ୍ତ୍ରୀ କହିଛନ୍ତି ଯେ, ସାହେବ ଯଦି ଚାକିରୀରୁ ଇସ୍ତଫା ନ ଦିଅନ୍ତି ତାହେଲେ ତାଙ୍କୁ ସିଏ ଆଉ ରାନ୍ଧି ଦେବେ ନାହିଁ। ଗ୍ରାମପଞ୍ଚାୟତ୍ ହରଖୁ ହାଜାମ୍‌କୁ ଜୋରିମାନା କରିଛନ୍ତି। ସେ ନାଏବ ବାବୁଙ୍କର 'ହଜାମତ୍'[2] କରିଥିଲା। ହରଖୁ ସମସ୍ତଙ୍କ ଆଗରେ 'କସୁର'[3] ମାନିଚି। – ସେ କହିଚି ''ନାଏବ୍ ବାବୁ ଗାନ୍ଧୀ ଟୋପି ପିନ୍ଧିବା ଦେଖି ମୁଁ ଭାବିଲି, ସେ 'ମହାତ୍ମାଜୀ'[4] ମେ ନାଁ ଲେଖାଇଲେଣି– ମତେ ଯାହା ଇଚ୍ଛା ସଜା ଦିଅନ୍ତୁ। ଖାଲି ଆଙ୍ଗୁଠିଟା କାଟି ପକାଇବେ ନାହିଁ।'' ଟମି ଆଉ ପଲ୍‌ଟନ୍ ମାନେ ଷ୍ଟିମର୍‌ରେ କୋଶୀ ନଈ ମଝିରେ ଷ୍ଟିମର୍‌ରେ ରହିଚ୍‌ନ୍ତି। – ଡଙ୍ଗାରେ ରାତି ବିତେଇବା ପାଇଁ ସାହସ ନାହିଁ। ଆଉରି କେତେ ପ୍ରକାର ଗପ।

କାଠଗଣ୍ଡିର ସ୍ତୂପ ବେଶ୍ ଉଞ୍ଚା ହୋଇ ଗଲାଣି। – ମିଲିଟାରୀ ଲରୀ ଆଉ ଆସି ପାରିବ ନାହିଁ। ଏ ପର୍ଯ୍ୟନ୍ତ ମନେ ପଡ଼ିନଥିଲା, ରହୁଆ ପାଖରେ ରାସ୍ତା କଡ଼ରେ ବଡ଼ ବଡ଼ ବରଗଛ। 'ଚଲୋ–ଓ, ଚଲୋ–ଓ'। କୋଡ଼ୀ, କୋଦାଳ, ଦାଆ, କଟୁରୀ ଯିଏ ଯାହା ପାଇଚି, ହାତରେ ଧରିଚି। କୁଇକ୍‌ମାର୍ଚ୍ଚ ନୁହେଁ, ବେଶ୍ ଦ୍ରୁତପାଦରେ ଦଉଡ଼ା। କ୍ଳାନ୍ତ ହୋଇ ପଡ଼ିଲେ ବି ଅଟକି ଯିବାର ଉପାୟ ନାହିଁ। – ହରେଶ୍ୱର ହାତରେ ଗୋଟିଏ ଛୋଟ କଂଗ୍ରେସ–ପତାକା। ସିଏ ଅଳ୍ପ କେତେମାସ ହେଲା କଂଗ୍ରେସର ସେବାଦଳ ଟ୍ରେନିଙ୍ଗ୍ ପାଇଚି। – ଜିଲ୍ଲା କଂଗ୍ରେସ–କମିଟୀ ଗ୍ରାମରକ୍ଷୀ ମାନଙ୍କ ପାଇଁ ଗୋଟିଏ ଟ୍ରେନିଙ୍ଗ୍–କ୍ୟାମ୍ପ୍ ଖୋଲିଥିଲା, ସେଇଥିରେ। ଗାଁରେ ଏବେ ତା'ର ଭାରି ଖାତିର। କିଛି ଦିନ ତଳେ, ଗାଁରେ ସେ ଲୋକଙ୍କୁ ଦେଖାଇଥିଲା, ସେ ନୂଆ ଶିଖିଥିବା ଯୁଯୁତ୍ସୁ, ପଇନ୍ତରା ଆଉ ସାଇକଲ୍‌ଚଢ଼ା। ସେ ଗୀତ ବୋଲିବା ଆରମ୍ଭ କରିଛି 'ନୌଜୋଆନ୍ ନିକ୍‌ଲେ'। ବାଳବୃଦ୍ଧ ସମସ୍ତେ ଡେଇଁ ଡେଇଁ ସେଇ ପଦ ବୋଲିବା ପାଇଁ ଚେଷ୍ଟା କରୁଛନ୍ତି।

ରହୁଆ। ରହୁଆ ଗାଁର ଲୋକମାନେ ବି ଆସି ଯୁଟି ଗଲେ। ଦୁଇ ଘଣ୍ଟା ଭିତରେ ରହୁଆ ପର୍ବ ଶେଷ ହୋଇଗଲା। ପୁଣି ''ଚଲୋ–ଓ! ଚଲୋ–ଓ!'' କୃତ୍ୟାନନ୍ଦ–ନଗର ରେଳଷ୍ଟେସନ୍ ଆଡ଼କୁ ରାସ୍ତା ଅବରୁଦ୍ଧ କରିବାରେ ଆଉ କୌଣସି ଉତ୍ତେଜନା ନାହିଁ। ଥାନା ପୋଡ଼ି ପରେ ଏ କାମ ସବୁ ନିହାତି ପାଣିଚିଆ ଲାଗୁଚି। ଏଣିକି କବଯୋ ରହୁଆର ସମବେତ ଦଳ– ମାତିଚ୍‌ନ୍ତି ଭୂତାବିଷ୍ଟ, ନିଶାଗ୍ରସ୍ତଙ୍କ ପରି। ମୋତେ ସେମାନେ ସାଇକେଲ୍‌ରୁ ଓହ୍ଲାଇ ଦେଲେ ନାହିଁ। ଠେଲି ଠେଲି ମୋ ସାଇକଲ୍ ଚଳାଇ ନେଲେ। ଏତେ ଲୋକଙ୍କ ଭିଡ଼ରେ କଣ ସାଇକେଲ୍ ପରେ ବସି ଯାଇ ହୁଏ? କିଏ କାହା କଥା ଶୁଣୁଚି? 'ଗାନ୍ଧିଜୀ କି ଜୟ'। ଆଗରେ କାହୁଅ। 'କୁଛ୍ ପରୱା ନେହିଁ ହେ', 'ଭାରତ୍ ମାତା କି ଜୟ'.... ଏଇ ପହଲି ଭିତରେ ସାଇକେଲ୍ ଚାଲିଲା। 'ବମ୍ବେଇ ସେ ଆୟା ତାଜା ଖବର'। କେତେ ନୂଆ ଖବର। ରହୁଆର ଜଣେ ଛାତ୍ର ପକେଟ୍‌ରୁ ଖଣ୍ଡେ ଲିଥୋ ହୋଇଥିବା କାଗଜ କାଢ଼ି ଆବୃତ୍ତି କରିବାର ଭଙ୍ଗିରେ ପଢ଼ିଲା। କାଗଜ ଖଣ୍ଡିକ ଉପରେ ବଡ଼ ବଡ଼ ଅକ୍ଷରରେ ଲେଖା 'ଦେଶ୍ କା ପୁକାର୍' (ଦେଶର ଆହ୍ୱାନ୍)। 'ଜୀନା ସାହେବ୍

---

1. ଆହତ। 2. କ୍ଷୁଅର। 3. ଦୋଷ।

4. ସ୍ଥାନୀୟ ଅଶିକ୍ଷିତ ଲୋକେ କଂଗ୍ରେସ କାର୍ଯ୍ୟ କରିବାକୁ କହନ୍ତି, ମହାତ୍ମାଜୀ ମେ ନାମ୍ ଲିଖାନା।

ଗିରଫ୍‌ଦାର୍ ହୋ ଗୟେ।' 'ବିଜୟଲକ୍‌ସମୀ ପଣ୍ଡିତ୍ ପର୍ ଗୋଲୀ ଚଲାଇ ଗଇ'', ''ମୁଙ୍ଗେର୍ ଜିଲ୍ଲା ମେ ସ୍ୱରାଜ୍ ହୋ ଗୟା।'' ଆଉରି ସବୁ ଅନେକ ଚାଞ୍ଚଲ୍ୟକର ଘଟଣା। ଆଜି, ସମ୍ଭବ ଅସମ୍ଭବ ବିଚାର କରିବାର କ୍ଷମତା ସେମାନଙ୍କର ଆଉ ନାହିଁ। ରହିପାରିବ ବା କିପରି ? ଗତ କେତେଦିନ ଭିତରେ ସେମାନେ କେତେ ଅସମ୍ଭବ କଥା ସମ୍ଭବ ହେବା ଦେଖିଲେଣି। କୌଣସି କଥାକୁ ସେମାନେ ଆଉ ମିଛ ବୋଲି ଭାବୁ ନାହାନ୍ତି। ....ସଦର କଲେକ୍ଟରୀ ଯେଉଁଦିନ ଦଖଲ କରାଯିବ, ସେଦିନ ରହୁଆ କବେୟାର ସମ୍ମିଳିତ 'ଯଥା'ର କିଏ ନେତୃତ୍ୱ ନେବ, ସେଇ କଥା ନେଇ ଝଗଡ଼ାଟା ବେଶ୍ ଜମି ଉଠିଥିଲା। – କବେୟାର ହରେଶ୍ୱର ନାଁ ରହୁଆର ତିଳକ୍‌ଧାରୀ ସିଂହ ? ହରେଶ୍ୱର ସେବାଦଳ ଟ୍ରେନିଙ୍ଗ୍ ପାଇଲେ କଣ ହେବ ଏପର୍ଯ୍ୟନ୍ତ ତାର ନିଶ ଭଲ କରି ଉଠିନାଇଁ। କବେୟାର ଲୋକମାନେ କହିଲେ ସିଏ ତ ''ବୁତ୍‌ରୁ'' ଶିଶୁ ସମ୍ମାନ ଦେଖାଇବା ପାଇଁ ଆୟୋଜନ ଆଉ ତିଳକଧାରୀ– ସିଏ ତ'' ବଡିଶ୍ ମେ ହୋ ଆୟା ହାୟ'' – ଅର୍ଥାତ 1932 ସାଲରେ ଜେଲ୍ ଯାଇଥିଲା। ଅବଶେଷରେ ମତେ ସେମାନେ ସାଲିସ୍ ମାନିଲେ।

ରହୁଆ ଗାଁ ଦାଣ୍ଡରେ ଠିଆ ହୋଇଚି ଗୋଟିଏ ବୁଢ଼ୀ; ଆଉ କେତେ ଗୁଡ଼ିଏ ଅଧାଲଙ୍ଗଳା ପୁଅଝିଅ। ଶୁଣିଲି ବାଦର୍ ବାହାର୍‌ଗମିୟାର ମା। ଜାତିରେ ମୋଚି। ଗାଁ ଭିତରେ ରହିବାର ଚଳଣି ନାହିଁ। – ସେଥିପାଇଁ ସେମାନଙ୍କୁ କହନ୍ତି 'ବାହାର୍ ଗମିୟା'। ଗୋଟିଏ ସାନପିଲା ହାତରେ ଗେଣ୍ଡୁ ଫୁଲମାଳା। ବାଦର୍‌ର ମା ଆଉ ପିଲାମାନେ ଏକାସାଙ୍ଗରେ କହି ଉଠିଲେ 'ପରଣାମ୍'। ବୋଧହୁଏ ଆଗରୁ ସେମାନଙ୍କୁ ତାଲିମ୍ ଦିଆଯାଇଥିଲା। ବୁଢ଼ୀ ସଙ୍କୁଚିତ କଣ୍ଠରେ ମୋତେ କହିଲା, ''ଆପଣଙ୍କୁ ତ 'ଖାତିରଦାରୀ' କିଛି କରି ପାରିଲି ନାହିଁ। ଆଉ କରନ୍ତି ବା କଣ ? ଆପଣଙ୍କ 'ମଞ୍ଜୁରୀ ରଇଟ୍'(ମଞ୍ଜୁରୀ କରିଥିବା କୂଅ) ଅଛି ବୋଲି ଦିନ ସୁଖରେ କଟି ଯାଉଛି। ଦୁଇ ବର୍ଷ ହେଲା କିଛି ବାଲି ଜମୁଛି।'' ଦେଖିଲି ବୁଢ଼ୀ ଗପିବା ପାଇଁ ଭଲପାଏ। ମନେ ପଡ଼ିଲା 'ଆର୍ଥକ୍ୱେକ୍ ରିଲିଫ୍' କୂଅଟିର କଥା। କଂଗ୍ରେସ ଭଲେଣ୍ଟିଅର ବିରଞ୍ଚି, ମଧୁସୂଦନ ସିଂହ ଠାରୁ ପାଞ୍ଚଟଙ୍କା ଘୁସ୍ ଖାଇ ତାଂର 'କାମତେ'ଗୃହସ୍ଥ ବା ଜମିଦାରର ହାତଚାଷ ଜମିରେ କୂଅଟା ଖୋଳାଇ ଦେବା ପାଇଁ କଥା ଦେଇଥିଲା। ମୁଁ ଇନିସ୍‌ପେକ୍‌ସନ୍‌ରେ ଆସି କୂଅଟାକୁ ବାଦର୍ ବାହାରଗାମିଆଁର କୁଡ଼ିଆ ପାଖରେ ଧାମ୍‌ଦାହ– ପୂର୍ଣ୍ଣିଆ ରୋଡ୍ କଡ଼ରେ ଖୋଳାଇ ଦେଇଥିଲି।

କହିଲି– ''ଏକ୍ ଲୋଟା ପାନି ପିଲାଓ ମାଇ– ଏକ୍ ଦମ୍ ଠଣ୍ଡା'' ଦେଖିବା ତୁମ କୂଅପାଣି କିପରି !

ଏଇ ଅପ୍ରତ୍ୟାଶିତ ଅନୁରୋଧରେ ବୁଢ଼ୀ କଣ କରିବ, ଯେପରି ଭାବି ସ୍ଥିର କରି ପାରିଲା ନାହିଁ। ମୁହଁରେ ଖାତିର୍ ଦେଖାଇବାର ଇଙ୍ଗିତ ଅପେକ୍ଷା ଭୀତିର ଚିହ୍ନ ଅଧିକ ପରିସ୍ଫୁଟ। ଜନତା ଭିତରେ ତା' ଗାଁର ଯେଉଁ ଲୋକମାନେ ଅଛନ୍ତି, ସେମାନଙ୍କ ଆଡ଼େ ସେ କିଂକର୍ତ୍ତବ୍ୟମୂଢ଼ ଦୃଷ୍ଟିରେ ଚାହିଁଲା। ମାଷ୍ଟରବାବୁଙ୍କ ବେଟା ଏଇ କୂଅପାଣି ପିଇବ ନାଁ କଣ ? ଗାଁଲୋକ କେହି ତ ଏ କୂଅ ପାଣି ଛୁଅନ୍ତି ନାହିଁ। କଣ କହୁଚି ଶୁଣ। ସିଏ ପୁଣି ପାଣି ଆଣି ଦେବ ! ତା ମୁଣ୍ଡ ପରେ ଆକାଶ ଯେପରି ଭାଙ୍ଗି ପଡ଼ିଲା। ତିଳକଧାରୀ ସିଂ ତାକୁ ସାହସ ଦେଇ କହିଲା ''ଲୋଟା ମାଜି ପାଣି ନେଇଆ। ବିଲୁବାବୁ ମାଗୁଛନ୍ତି''। ଲୋଟାରେ ପାଣି ଆସିଲା। ବାଦ୍‌ରର ମା ଲମ୍ବା ଓଢ଼ଣା ଟାଣିଚି। ପାଣି ସାଙ୍ଗରେ ଦେଇଚି,

ଶାଳପତ୍ର ଠୁଙ୍ଗାରେ ବହୁଦିନରେ ସଞ୍ଚିତ ଧୂଳିମିଶା ଟିକିଏ ଗୁଡ଼। ଲାଜକୁଳା ପୁଅ ଝିଅମାନଙ୍କର ବାଚନିକ ଆପତ୍ତି ଏଡ଼ାଇ, ସେମାନଙ୍କ ହାତରେ ଗୁଡ଼ ଟିକିଏ ଟିକିଏ ଦେଲି। ବାଦରର ମା' ମୋ ଆଡ଼କୁ ଏକ ଦୃଷ୍ଟିରେ ଅନାଇଁ ରହିଛି। ଖାଇବାକୁ ବସିବା ବେଳେ, ମା' ପାଖରେ ବିଞ୍ଚଣା ଧରି ବସିଲେ, ଯେପରି ଲାଗେ ବାଦର୍ ମା' ଆଖିର ଚାହାଣି ସେସଇପରି ଲାଗୁଚି। ମୋତେ ଖୁଆଇବା ବେଳେ, ସମସ୍ତଙ୍କ ଆଞ୍ଚରେ ସେଇ ଗୋଟିଏ ଭାବ ଫୁଟି ଉଠେ ମା', ଜେଠାମା ନ' ଦିଦି, ସହଦେଓର ମା', ଦୁବେଜୀଙ୍କ ସ୍ତ୍ରୀ, ସରସ୍ୱତୀ! ପହଲି ଉଠୁଛି ''ବୋଲୋ ଗାନ୍ଧିଜୀ କା ଜୟ।'' ହରେଶ୍ୱର କହିଲା ''ବାଦର୍ ମା' ମୋତେ ବି ମୁନ୍ଦେ ପାଣି ପିଇବାକୁ ଦେ।'' ବାଲ୍ଟିରେ ପାଣି ଆସିଲା। ସମସ୍ତେ ଛଡ଼ାଛଡ଼ି ହୋଇ ବାହାର ଗାମିୟାଁର ଛୁଆଁପାଣି ପିଇଲେ। ଗାଁରେ, ସମାଜର ଆଖି ଉପରେ, ଏପରି ସୃଷ୍ଟିଛଡ଼ା କାଣ୍ଡ କରିବାର ସାହସ ଆଜି ଏମାନେ ହଠାତ୍ ପାଇଲେ କୋଉଠୁ? ସମସ୍ତଙ୍କ ଆଖିରେ ମୁହଁରେ ବାହାଦୁରୀର ଚିହ୍ନ 'ଗାନ୍ଧିଜୀ କି ଜୟ'। 'ଜୟ ମହାତ୍ମାଜୀ କି ଜୟ'। ଅବିଚ୍ଛିନ୍ନ ଜୟଧ୍ୱନି ମଧ୍ୟରେ ସୁଦ୍ଧା ସମସ୍ତେ ସେମାନଙ୍କ ମନର ଉଦାରତା ମୋତେ ଦେଖାଇବା ପାଇଁ ବ୍ୟାକୁଳ। ଆଉ ଏଠି ଠିଆହେବା ପାଇଁ କଣ ବେଳ ଅଛି? ''ନୌକୋଆନ୍ ନିକ୍‌ଲେ....।'' ବୁଢ଼ୀର ଆଖି ଚିକ୍ ଚିକ୍ କରି ଉଠିଲା– କୃତଜ୍ଞତାର ଆତିଶଯ୍ୟରେ। ଏହାହିଁ ହେଉଚି, ତା ପ୍ରତି ଗ୍ରାମବାସୀ ମାନଙ୍କର ଉଦାରତାର ମୂଲ୍ୟ। ମହାତ୍ମାଜୀ ତାର 'ଗୋସାଇଁ' (ଗୃହଦେବତା) ଅପେକ୍ଷା ଜାଗ୍ରତ ଦେବତା। ତାଙ୍କରି କଥା ସେ ଭାବୁଚି। ଏଇ ରାସ୍ତାରେ ମହାତ୍ମାଜୀ ହାଉଆ ଗାଡ଼ିରେ ଧାମ୍‌ଦା ଆଡ଼େ ଯାଇଥିଲେ। ହାଉଆଗାଡ଼ି ଭିତରେ ଏତେ ଲୋକଙ୍କ ମଝିରେ ସେ ମହାତ୍ମାଜୀଙ୍କୁ ଚିହ୍ନି ସୁଦ୍ଧା ପାରି ନଥିଲା। ଚିହ୍ନି ପାରିଥିଲା କେବଳ ମାଷ୍ଟର ସାହେବଙ୍କୁ। ବାଦର୍ କହୁଥିଲା, ମହାତ୍ମାଜୀଙ୍କ 'ବଦନ୍ ସେ ଜିଓୟୀତି' ଶରୀରରୁ ଜ୍ୟୋତି ବାହାରୁଥିଲା। ଗାନ୍ଧୀଜୀଙ୍କ ଉଦ୍ଦେଶ୍ୟରେ ସେ ପ୍ରଣାମ କଲା।....

ଜନତା ଚାଲିଛି। ଆଗକୁ ଚାଲିଛନ୍ତି ସେମାନେ, ପଛକୁ ଫେରିଚ୍ଛାହିଁବେ କାହିଁକି? କେତେ ବାଦର୍‌ମା' କେତେ ସ୍ଥାନରେ ଏଇପରି ପ୍ରଣାମ କରୁଛନ୍ତି। ସେମାନଙ୍କ ଆଡ଼େ ଅନାଇବା ପାଇଁ ସମୟ କାହିଁ? ମୁଣ୍ଡ ଉପରେ କେତେ ଦାୟିତ୍ୱ ''ଜୟ ବିଲୁବାବୁ କି ଜୟ!'' ଦଳେ ଚିତ୍କାର କରୁଛନ୍ତି ''ବୋମ୍ବାଇସେ ଆଇ ଆୱାଜ୍''। ଆଉ ଦଳେ ବୁଝାଇ ଦେଉଛନ୍ତି ସେ ''ଆୱାଜ୍'' ଟି କଣ। ତା ସହିତ କଣ୍ଠ ମିଶାଇ ଧ୍ୱନି ଦେଉଛନ୍ତି ''ଇନ୍‌କିଲାବ୍ ଜିନ୍ଦାବାଦ୍''। କବୈୟା ଗାଁର ଉଚ୍ଚ ପ୍ରାଇମେରୀ ସ୍କୁଲର ''ଗୁରୁ''ଟି ଜୟଧ୍ୱନି ଦେବା ବେଳେ ନାଚୁଛି। –ଯେପରି ନଗରକୀର୍ତ୍ତନ ଚାଲିଛି। ତାର ଗଳା ବସିଗଲାଣି। ଧଇଁରୋଗୀ କାଶିବାକୁ ଚେଷ୍ଟାକଲା ବେଳେ, ଜୟଧ୍ୱନି ଦେବା ବେଳେ ସେଇପରି ଗୋଟିଏ ଶବ୍ଦ ହେଉଚି ମାତ୍ର! କିନ୍ତୁ ତାଙ୍କର ନାଁ ଅଛି ଉତ୍ସାହର ଅନ୍ତ, ନାଁ ଅଛି, ନିଜ ଛାତ୍ର ମାନଙ୍କ ଆଗରେ ଆତ୍ମସମ୍ମାନ ବଜାୟ ରଖିବାର ଚେଷ୍ଟା। ....ଜଣେ ଲୋକ ଘୋଡ଼ା ଚଢ଼ି କୃତ୍ୟାନନ୍ଦନଗର ଆଡୁ ଆସୁଚି। ଆମକୁ ଦେଖି ଓହ୍ଲାଇ ପଡ଼ିଲା। ''ପ୍ରଣାମ''। ମତେ ଖବର ଦେଲା 'ଆପଣଙ୍କ ଭାଇ କୃତ୍ୟାନନ୍ଦ ନଗର ଆସିଛନ୍ତି ହରକ୍‌ଚାନ୍ଦ୍ ମାରୱାଡ଼ୀ ଗୋଦାମକୁ। କିରୋସିନୀ ତେଲର ଦର ତଦାରଖ କରିବା ପାଇଁ।'' ଲୋକଟା ମୋତେ ଆଉ କିଛି କହିଲା ନାହିଁ। କିନ୍ତୁ ପାଖରେ ଜଣେ ଦୁଇଜଣ ଲୋକଙ୍କ କାନରେ ଫିସ୍ ଫିସ୍ କରି କଣ କହିଲା। ଜନତା ଯେପରି ସେକଥା ଫିଟାଇବାକୁ ଚାହେଁ ନାହିଁ। ବୁଝିଲି ନୀଲୁ 'ପିଠାଳସ୍ ପ୍ରାଇସ୍ କଣ୍ଟ୍ରୋଲ୍ କମିଟୀର

ସେକ୍ରେଟାରୀ— ଆସିଚ଼ି କିରାସିନୀ ତେଲର ଷ୍ଟକ କିମ୍ବା ଅନ୍ୟ କିଛି ତଦାରଖ କରିବା ପାଇଁ। ସେ ବୋଧହୁଏ କୃତ୍ୟାନନ୍ଦପୁର ଲୋକମାନଙ୍କୁ ରେଲଲାଇନ୍ ପଡ଼ିବା ରାସ୍ତା ଅବରୋଧ କରିବା ଆଉ ଟେଲିଗ୍ରାଫ୍ ତାର କାଟିବା ବିରୁଦ୍ଧରେ କିଛି କହିଛି। ଜନପ୍ରବାହ ଚାଲିଛି, ଆମର ଆଦିମ ପୁରୁଷ ପେଟବିକଳରେ ହତାଶ ହୃଦୟରେ, ଅନିଶ୍ଚିତ ଲକ୍ଷ୍ୟ ଧରି, ଯେପରି ବାହାରି ପଡ଼ିଥିଲେ, ଇଏ ସେପରି ନୁହେଁ। ନୂଆ ଦୁନିଆଁର ସ୍ୱପ୍ନ ଧରି, ଅବଧାରିତ ଲକ୍ଷ୍ୟ ଦିଗରେ ଉଦ୍‌ଭ୍ରାନ୍ତ ଜନତାର ଗତି। କେବଳ "Homo Sapen" କହିଲେ କବୈୟାର ସେଇ ମାଷ୍ଟରଙ୍କର ସମ୍ପୂର୍ଣ୍ଣ ପରିଚ଼ୟ ମିଳିବ ନାହିଁ। ପୁଣି କେବଳ Biological necessity (ଜୈବ ଆବଶ୍ୟକତା) କହିଲେ ତାଙ୍କ ଅଫୁରନ୍ତ ଉତ୍ସାହର ପୂର୍ଣ୍ଣ ବ୍ୟାଖ୍ୟା ହୁଏ ନାହିଁ....। ରେଳଲାଇନ୍। ଦୂରରୁ କୃତ୍ୟାନନ୍ଦପୁର ଗାଁଟି ଦେଖାଯାଉଛି.... ଅଧଘଣ୍ଟାକ ଭିତରେ ପ୍ରାୟ ପାଏ ଲମ୍ବର ରେଳଲାଇନ୍ ଏକାଥରେ ନିଶ୍ଚିହ୍ନ ହୋଇଗଲା। ରେଳଧାରଣା ଓ କାଠ ସ୍ଲିପର ଗୁଡ଼ାକୁ ସମସ୍ତେ କାନ୍ଧରେ ବୋହି ମକା—କିଆରୀ ନୋହିଲେ ରେଳଲାଇନ୍ କଡ଼େ କଡ଼େ ପାଣି ଭିତରେ ପକାଇ ଦେଇଛନ୍ତି। କୃତ୍ୟାନନ୍ଦ ନଗରର ଦୁଇଜଣ ବୃଦ୍ଧ ଭଦ୍ରଲୋକ ଆସିଥିଲେ— ଏଇ ଦଳକୁ ଏପରି ସବୁ ମାରତ୍ମକ କାର୍ଯ୍ୟରୁ ନିବର୍ତ୍ତାଇବା ପାଇଁ। ଜନତା ଥଟ୍ଟା ପରିହାସ କରି ସେମାନଙ୍କୁ ସେଠୁ ତଡ଼ିଦେଲା। ଜଣେ କାଶଫୁଲରେ ତିଆରି କରି ଥିଲା ଦୁଇପଟ କଳା। କେତେଜଣ ଦଉଡ଼ି ଯାଇଁ ସେ ଦୁଇଜଣ ଭଦ୍ରଲୋକଙ୍କୁ ଧରିଲେ। ହରିଶ୍ଚନ୍ଦ୍ର ସେମାନଙ୍କ ହାତରେ ସେଇକଳା ଦୁଇପଟ ପିନ୍ଧାଇ ଦେଇ କହିଲା— "ଚୂଡ଼ୀ ପହନ୍ କର୍ ଭାନ୍‌ସା ଘର୍‌ମେ ଯାକର୍ ବୈଠୋ।" ଚୂଡ଼ୀ ପିନ୍ଧି ରୋଷେଇଶାଳରେ ଯାଇଁ ବସ ଆଉ ଜଣେ କହିଲା— "ଆୟ! ହାୟ! କ୍ୟା ନାଜୁକ୍ କଲଇ"; ଅର୍ଥାତ୍ କି ନରମ ହାତ ଖଣ୍ଡିକ ଏଇ ଆଉ ଦି'ପଟ ଚୁଡ଼ି ଦଉଚ଼ି, ତୁମ ନୀଲୁବାବୁଙ୍କୁ ପିନ୍ଧାଇ ଦେବ। ଆଉ କହିଦେବ, କଲେକ୍ଟର ସାହେବ ପଇସାରେ ଏଇ ଇଲାକାକୁ ସେ ଯେମିତି ଆଉ ଫୁଟାଣି ଦେଖାଇବାକୁ ନଆସେ। କବୈୟା ରହୁଆ ଜାଣନ୍ତି 'ଖୁପୀୟା' (ଗୋଏନ୍ଦା) ସହିତ କିପରି 'ବର୍ତ୍ତାର' (ବ୍ୟବହାର) କରିବାକୁ ହୁଏ। ମନେ ନଥିଲେ ଉଇଲ୍‌ସନ୍ ନୀଳକର ସାହେବର କଣ ହୋଇଥିଲା, ସେ କଥା ମନେ ପକାଇଦେବା। ଜନତାର ସଂଯମର ବନ୍ଧ ଭାଙ୍ଗି ଯାଇଛି। ସେମାନେ ମୋ ସାମ୍‌ନାରେ ନୀଲୁ ସମ୍ପର୍କରେ କୌଣସି ମତାମତ ଦେବାକୁ ଆଉ କୁଣ୍ଠିତ ନୁହନ୍ତି। — ରେଳଲାଇନ୍ କାଠପୋଲରେ ନିଆଁ ଲାଗିଗଲାଣି। କିପରି ଏତେ ଶୀଘ୍ର ଏତେ ମୋଟା କାଠଗଣ୍ଡିରେ ସେମାନେ ନିଆଁ ଲଗାଇଲେ? ମା'ଙ୍କୁ ତ ଦେଖିଚ଼ି ଚୂଲି ଲଗାଉ ଲଗାଉ ଝାଳନାଳ ହୋଇଯାନ୍ତି। ରହୁୟାର ସେଇ ନାଲିଗେଞ୍ଜିପିନ୍ଧା ପିଲାଟି ପାଦ୍ରୀ ସାହେବର ନକଲ କରୁଛି। କାଲି ସେମାନେ ସାହେବର ଘର 'ଘେରାଓ' କରିଥିଲେ। ପାଦ୍ରୀ ସାହେବ କିପରି ସ୍ୱରରେ 'ଗାନ୍ଧୀଜୀ କି ଜୟ' ତାହା ଶୁଣି ସମସ୍ତେ ହସରେ ଉଚ୍ଛନ୍ନ। ହଠାତ ରେଳଗାଡ଼ିର ଶବ୍ଦ ଶୁଭିଲା। ସତରେ ତ, ଇଞ୍ଜିନ୍ ଦେଖା ଯାଉଛି। ଏଇ ସେମାନେ ଆସିଗଲେ। ମିଲିଟାରୀ ବୋଝେଇ ଗାଡ଼ି, ସଙ୍ଗରେ ଅଛନ୍ତି ରେଳ—ଇଞ୍ଜିନିଅର୍। ପଳା, ପଳା, ଯିଏ ଯୁଆଡ଼େ ପାରୁଚ଼ — ଚୂଆ ପୋଖରୀ ଭିତରେ ହିଡ଼ ଉପରେ .... ନିମିଷକ ମଧ୍ୟରେ ଜନତା ଛତ୍ରଭଙ୍ଗ ଦେଲା। ଟମିଗନ୍‌ର କର୍କଶ ଶବ୍ଦ କାନରେ ପଡୁଚ଼ି। କୃତ୍ୟାନନ୍ଦ ନଗର ଆଡ଼କୁ, ଗୋଟିଏ ମକା କିଆରୀ ଭିତରେ ମୁଁ ଆତ୍ମଗୋପନ କଲି। କୃତ୍ୟାନନ୍ଦ ନଗର ଭିତରକୁ ଇଚ୍ଛା କରିଯାଇ ନାହିଁ। ଗ୍ରାମବାସୀ ମାନଙ୍କର ଯେଉଁଠି ସହାନୁଭୂତି ନାହିଁ,

ସେଠାକୁ ଯିବି କାହିଁକି ? ତରବରରେ ସାଇକେଲ୍‌ଟିକୁ ଲାଇନ୍ ପରେ ପକାଇ ପଳାଇ ଆସିଛି। ମକା କିଆରୀ। ପାଦ୍ରୀସାହେବଙ୍କ ଦାଢ଼ୀ ଠିକ୍ ମକାଗଛର ଥୁଣ୍ଟା ପରି। ଗଛମାନଙ୍କରେ ମକା ଭର୍ତ୍ତି ହୋଇଯାଇଛି। ମକା କିଆରୀରେ ସନ୍ତସନ୍ତିଆ ମିଠା ବାସ୍‌ନା ଭିତରେ ବାରୁଦଗନ୍ଧ ବୁଡ଼ିଯାଉଚ଼ି।

....ସେଇ ମୋକଦ୍ଦମା ଚାଲିବା ସମୟରେ ସରକାରୀ ଓକିଲ ଥଟ୍ଟାକରି ମକାକ୍ଷେତର ବିବରଣୀ ପ୍ରସଙ୍ଗରେ କହିଥିଲେ – ଗୋରାଦଳ ସେଇ ମକାକ୍ଷେତ ଦେଖି ମନ୍ତବ୍ୟ କରିଥିଲେ ଯେ, ''ମକ୍କାଇ'' ''ଇଣ୍ଡିଆନ୍ କର୍ନ୍'' (Indian Corn) ନୁହେଁ, ନାଜୀ–କର୍ନ୍ (Nazi Corn)। ଜଜ୍ ସାହେବ ଗାମ୍ଭୀର୍ଯ୍ୟ ରଖି ପାରିଲେ ନାହିଁ, ହସିଲେ। ପେଷ୍କାର ସାହେବ ହସିଲେ। ମୋର ଓକିଲ ହରେନ୍ ବାବୁ ମଧ୍ୟ ଏଇ ରସିକତାରେ ନହସି ରହି ପାରିଲେ ନାହିଁ.... ପେରୁ ଆଉ ଚିଲ୍ଲିର ସୂର୍ଯ୍ୟମନ୍ଦିରରେ ଥାଏ ମକା ଗଛର ଚିତ୍ର। ଗଛର ଡାଳ ଓ ପତ୍ର ଗୁଡ଼ିକ ରୂପାର ଆଉ ଦାନା ଗୁଡ଼ିକ ସୁନାର।....

ଆଖିପତା ନିଦରେ ଭାରି ହୋଇ ଉଠୁଚି। ହାତ ଗୋଡ଼ ଟିକିଏ ଲମ୍ବା ଯାଉ। ଆଃ ! ଦେହ ହାତ ଗୋଡ଼ ବସି ବସି ଘୋଳେଇ ପଡୁଥିଲା। ହାଇ ଉଠୁଚି, ଆଜି ଆଉ ନିଦ ହେବ ନାଁ କଣ ? କେତେ ଲୋକଙ୍କ ଗପ ଶୁଣି ଆସିଛି– ଫାଶୀ ଆଗଦିନ ସେମାନଙ୍କ ମୁଣ୍ଡ ବାଳ ସବୁ ପାଚି ଯାଇଥିଲା। ମୋ ମୁଣ୍ଡବାଳ ପାଚି ଯାଇ ନାହିଁତ ? ଗୋଟାଏ ଅଇନା ଥିଲେ ହୋଇଥାନ୍ତା। କମ୍ରେଡ ଚନ୍ଦ୍ରବଲ୍ଲୀ ଫାଶୀ ଆଗଦିନ ପାଗଳ ହୋଇ ଯାଇଥିଲା। ଆଉ ମତେ ନିଦ ମାଡୁଚି। ଆଶ୍ଚର୍ଯ୍ୟ....

....ମୋର ଯଦି ଅନେକ ଟଙ୍କା ଥାନ୍ତା, ତା ହେଲେ ଆଜି ଉଇଲ୍ କରି ଯାଇଥାନ୍ତି, ଅନେକ କୋଟି ଟଙ୍କା। ସେଇ ଟଙ୍କାରେ ମାର୍କସବାଦର ପ୍ରଚ଼ାରକାର୍ଯ୍ୟ ଚାଲନ୍ତା। ଭାରତର ଗ୍ରାମେ ଗ୍ରାମେ ଋଷିଆ ଦେଶର କିଶୋର ଓ ବାଳକ ମାନଙ୍କର ସଂଘ ପରି ଦଳର ସଂଗଠନ କଡ଼ି ଉଠି ପାରନ୍ତା। କିନ୍ତୁ ଟଙ୍କା ଆସିବ କୁଆଡୁ ? ଯଦି ଲଟେରୀ ଟିକେଟ୍ ନକିଣି ଲଟେରୀରେ ଟଙ୍କା ପାଇବାର ସୁବିଧା ଥାନ୍ତା, ତା ହୋଇଥିଲେ ଟଙ୍କା ପାଇବାର ଆଶା ଥିଲା। ଆଉ ରାଷ୍ଟ୍ରଶକ୍ତି ଯଦି ମୋ ହାତକୁ ଆସନ୍ତା, ତାହେଲେ କାମରେ ଦେଖାଇ ଦିଅନ୍ତି, ଦଶବର୍ଷ ଭିତରେ ଦେଶର କଣ କରାଯାଇପାରେ।.... କଂଗ୍ରେସ କର୍ମୀମାନେ ଜେଲରୁ ମୁକୁଳିଲେ ନିଶ୍ଚୟ ମୋ ନାଁରେ କୌଣସି ଅନୁଷ୍ଠାନ ଗଢ଼ିବେ। 'ବିଲୁବାବୁ ସଡ଼କ୍', 'ବିଲୁ ଆଶ୍ରମ', ନାଁ ସେମାନେ ବୋଧହୁଏ ମୋର ଭଲ ନାଁଟି ବ୍ୟବହାର କରିବେ। 'ପୂର୍ଣ୍ଣ–ଆଶ୍ରମ'। କିନ୍ତୁ ମୋର ଭଲ ନାଁ ଯେ ପୂର୍ଣ୍ଣ, ସେ କଥା ତ କେହି ଜାଣନ୍ତି ନାହିଁ। ସମସ୍ତେ ଜାଣନ୍ତି ବିଲୁବାବୁ। ଆଉରି କେତେ କଣ ମଧ୍ୟ ତାପରେ ହୋଇପାରେ। ହୁଏତ ପୂର୍ଣ୍ଣିଆର ନାଁ ହୋଇଯିବ ପୂର୍ଣ୍ଣ–ନଗର। –ଷ୍ଟାଲିନ୍‌ଗ୍ରାଡ୍ ବା ଗର୍କୀ ସହର ପରି। ବଜାରରେ ବାଲମୁକୁନ୍ଦ ସାହୁଙ୍କ ଧର୍ମଶାଳା ମୋଡ଼ ଉପରେ ରହିବ ମୋର ମର୍ମର ମୂର୍ତ୍ତି– ବକ୍ତୃତା ଦେବା ଭଙ୍ଗୀରେ। ପ୍ରତିବର୍ଷ ଏଇ ଦିନ, ଦଳ ଦଳ ଲୋକ ଜୁଟିବେ ଏହାର ବେଦୀ ତଳେ– ମୋର ସ୍ମୃତି ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ନିବେଦନ କରିବା ପାଇଁ। ....ନିବୁଜ ଆଖିପତା ଉପରେ ଦେଖୁଚ଼ି ଗୋଟିଏ ସବୁଜ ଶିଖା। – ମୟୂରପଖାର ଚନ୍ଦ୍ରିକା ପରି, କିନ୍ତୁ ଚଞ୍ଚଳ ଓ କମ୍ପମାନ। ଶିଖାଟି ଲାଲ୍ ହେଲା.... ହଳଦିଆ.... ସବୁଜ ସ–ବୁ–ଜ.... ନୀଳ.... କଳା.... ଶିଖାଟି.... ଅଛି କି ନାହିଁ.... ଅନ୍ଧାର।

ଜେଠେଇମା' ରୋଷେଇ ଘର ପିଣ୍ଡାରେ ପନିକୀ ଧରି ବସିଚନ୍ତି ଆମ୍ବ କାଟିବା ପାଇଁ। ଝୁଡ଼ିଏ ଗୋଲାପ ଖାସ୍ ଆମ୍ବ ପାଖରେ ଗୋଟିଏ ଜଳପୂର୍ଣ୍ଣ ପାତ୍ର। ଆମ୍ବ ଗୁଡ଼ିକର ଭୁଣ୍ଡି କାଟି ଜଳପାତ୍ରରେ ରଖୁଚନ୍ତି। ମୁଁ ଆଉ ସରସ୍ୱତୀ ତାଙ୍କ ସାମ୍ନାରେ ପିଢ଼ା ପକାଇ ବସିଚୁ। ଜେଠେଇମା' କହିଲେ, ''ଗୋଟାଏ ଥାଳିରେ ଦେଉଚି, ତୁମେ ଦୁହେଁ ଖାଅ।'' ଜେଠେଇମା' ଥାଳିରେ ଆମ୍ବ କାଟି ଦେଲେ। ସରସ୍ୱତୀ ଜେଠେଇମା'ଙ୍କୁ କହିଲା ''କଟା ଆମ୍ବ କ'ଣ ଆଙ୍କୁ ରୁଚିବ? –ତାଙ୍କୁ ଗୋଟା ଆମ୍ବ ଦିଅନ୍ତୁ।'' ଜେଠେଇମା' ସରସ୍ୱତୀକୁ ଥଟ୍ଟା କରି କହିଲେ ''ଇଲୋ ମାଲୋ! ଯାରି ଭିତରେ ଏତେ!'' ଜେଠେଇମା' ମୋ ହାତରେ ଦେଲେ ଗୋଟା ଆମ୍ବ–ସୁନା ପରି ହଳଦିଆ ରଙ୍ଗ, ଭୁଣ୍ଡି ପାଖଟା ସିନ୍ଦୁରିଆ ଲାଲ୍। ଆମ୍ବ ତଳେ ମୁଁ ଗୋଟିଏ ଛୋଟ ଛିଦ୍ର କରିଦେଲି। ତା'ପରେ ଚିପି ଚିପି ଆମ୍ବଟିକୁ ନରମ କରି ଖାଇଲି। ମା' ଅଛନ୍ତି ଶୋଇବା ଘର ବାରଣ୍ଡାରେ; ହବିଷ ଘରକୁ ଆସିବା ପାଇଁ ଇଚ୍ଛା କିନ୍ତୁ ଆସି ପାରୁ ନାହାନ୍ତି। ଦୁଆର ମଝିରେ ଗୋଟାଏ ପ୍ରକାଣ୍ଡ ସାପ। ଚିକ୍କଣ, କଳା ରଙ୍ଗ। ଫଣା ଉଠାଇ ସ୍ଥିର ହୋଇ ଯାଇଛି। ମା' ଚିତ୍କାର କରୁଚନ୍ତି, ''ନୀଲୁ, ଏଇଟାକୁ ଜଲ୍ଦି ମାରି ପକା, ଜଲ୍ଦି ମାରିପକା।'' ବାବା କହିଲେ ''ନାଁ ମାର ନାଁ। ହାତ ତାଳି ମାର। ପଳେଇବ।'' ନୀଲୁ କଣ ବାବାଙ୍କ କଥା ଶୁଣୁଚି? ଖଣ୍ଡେ ଲାଠି ଧରି ସେ ଆସୁଚି ସାପଟାକୁ ମାରିବା ପାଇଁ। ସାପଟା ପଳାଇ, ଅନ୍ଧାର କୂଅ ଭିତରେ ପଶିଗଲା ଆଉ ସାପ ନାହିଁ। ସାପଟା ବାଲ୍‌ଟିର ଦଉଡ଼ି ପାଲଟି ଯାଇଚି। ନୀଲୁ ରାଗରେ ବାଲଟି ଉପରେ ଗୋଟାଏ ଗୋଇଠା ପକାଇଲା। ଝଣ୍ କରି ଶବ୍ଦ ହେଲା।...

କି ଗୋଟାଏ ଶବ୍ଦରେ ତୁଳ ଭାଙ୍ଗିଗଲା। ମୁଣ୍ଡ ପାଖରେ ବୁଟ୍ ଶବ୍ଦ। ଏଁ! ତେବେ ମୋତେ ନେବା ପାଇଁ କଣ ସେମାନେ ଆସିଚନ୍ତି? ଦରଜା ଖୋଲି ସେମାନେ ଭିତରକୁ ଆସିଲେ ବୋଧହୁଏ। ଦେହରୁ ଗୋଟି ପଣେ ଝାଳ ବୋହି ଯାଉଚି। ନିଶ୍ଚଳ ଓ ସ୍ପନ୍ଦନହୀନ ହୋଇ ପଡ଼ିଚି। ନାଁ, ଦରଜା ଖୋଲିଲା ନାହିଁ। ତାହେଲେ ନୂଆ ୱାର୍ଡ଼ର୍ ଆସିଲା। – ସ୍ୱସ୍ତିର ନିଶ୍ୱାସ ବାହାରି ଆସିଲା। ହଁ, ସେଇଆ। କେତେବେଳେ ଶୋଇଲି? ରାତିପାହାନ୍ତାର ୱାର୍ଡ଼ର୍ ଦଳ ଆସିଲେ ନାଁ କଣ? ଏ ପର୍ଯ୍ୟନ୍ତ ତ ଚଢ଼େଇମାନଙ୍କର କାକଳି ଶୁଣାଯାଉ ନାହିଁ। ୱାର୍ଡ଼ର୍‌କୁ ପଚାରିବି ନାଁ କଣ, କେତେଟା ବାଜିଲା! ନାଁ, ଦରକାର କଣ? ବେଳ ହେଲେ ମୁଁ ଠିକ୍ ଜାଣି ପାରିବି। ପଚାରିଲେ ସେମାନେ ମୋତେ ଦୁର୍ବଳମନା ମନେ କରିବେ। ଜଣେ ସାମାନ୍ୟ ୱାର୍ଡ଼ର୍ ପାଖରେ, ଜୀବନର ଏଇ ଶେଷ ମୁହୂର୍ତ୍ତରେ ମୁଁ ଛୋଟ ହୋଇ ପାରିବି ନାହିଁ। ପାଗଳଟି ତ ବଡ଼ିଭୋର୍‌ରୁ ଚିତ୍କାର ଆରମ୍ଭ କରେ। ତାହେଲେ ବର୍ତ୍ତମାନ କଣ ସକାଳ ହେବା ପାଇଁ ତଥାପି ଡ଼େରି ଅଛି? ଏ ଜଗତ ସହିତ ଆଉ ମୋଟେ ଦୁଇ ଘଣ୍ଟାର ସମ୍ବନ୍ଧ। ସୁଯୋଗ ଥିବା ବେଳେ ବାହାରେ ଜୀବନକୁ ଉପଭୋଗ କରିନାହିଁ। ଦୀର୍ଘ ତେତ୍ରିଶ ବର୍ଷ କିପରି କଟାଇଲି? ମନେ ପଡ଼େ ନାହିଁ। ନିରର୍ଥକ ଜୀବନର ଅନ୍ତହୀନ ବିସ୍ମୃତିର ସ୍ତରେ ସ୍ତରେ ଜମି ରହିଛି ଗୋଟାଏ ଅଧା ସ୍ମୃତିର କଙ୍କାଳ। ତାହାର ପରିଚୟ ମୋ ଛଡ଼ା ଆଉ କେହି ଜାଣନ୍ତି ନାହିଁ। ଇଚ୍ଛା ହୁଏ ବଞ୍ଚିବା ପାଇଁ–ଇଚ୍ଛା ହୁଏ ଅବଶିଷ୍ଟ ଦୁଇ ଘଣ୍ଟା ମଧ୍ୟରେ ସ୍ୱପ୍ନବିଳାସ ଦେଇ ଜଗତ ସଂସାରକୁ ଚିପୁଡ଼ି ଯାହା କିଛି ଭୋଗସାମଗ୍ରୀ ଅଛି, ତାକୁ ସବୁ ଠୁଳ କରି ନେବା ପାଇଁ। କେଜାଣି ଯଦି, ଏଇ ଶେଷ ମୁହୂର୍ତ୍ତରେ ସୁଦ୍ଧା ମୋର ଫାଶୀ ହୁକୁମ ରଦ୍ଦ ହୋଇଯିବାର ହୁକୁମ ଆସେ। ଏମିତି ତ ପୁଣି ହୋଇଥାଏ। କେତେ

ଲୋକଙ୍କର ପୁଣି ଏମିତିତ ହୋଇଚି। ଜହ୍ଲାଦ ଖଣ୍ଡା ଉଞ୍ଚେଇଛି। ଅଶ୍ୱାରୋହୀ ହଠାତ୍ ଦୂରରୁ କ୍ଷେତ୍ର ବେଗରେ ଧାଇଁ ଆସିଲା। ଘାତକ ହତ୍ୟା କର ନାହିଁ, ହତ୍ୟା କର ନାହିଁ। କେତେ ଏମିତି କାହାଣୀ ପଢ଼ିଛି। ପିଥିୟାସ୍ ଓ ଡ୍ୟାମନ୍...

1934 ସାଲ ଭୂମିକମ୍ପ ପରି ବର୍ତ୍ତମାନ ଯଦି ଭୂମିକମ୍ପ ହୁଏ। ଜେଲ୍‌ର ପାଚେ଼ରୀ ଯଦି ଭାଙ୍ଗି ପଡ଼ିଯାଏ, ତା ହେଲେ ବି ମୋର ବଞ୍ଚିବାର ଉପାୟ ନାହିଁ। ଯିଏ ଫାଶୀ ଦେବ, ସିଏ ଯଦି ହଠାତ୍ ବେମାର ପଡ଼େ? ତାହେଲେ ଅନ୍ୟ ଲୋକ ପାଇବା ପାଇଁ ମଧ ଡ଼େରି ହେବ ନାହିଁ। କିନ୍ତୁ ଯଦି ହାଇକୋର୍ଟ୍ ଅଥବା ପ୍ରଭିନ୍‌ସିଆଲ୍ ଆଡ଼ଭାଇଜର୍‌ଙ୍କ ଠାରୁ ମୋ ଫାଶୀ ରଦ୍ଦ କରିଦେବା ପାଇଁ ଚିଠି ଆସିଥାଏ, ଆଉ ଦୈବାତ୍ ଭୁଲ୍ କ୍ରମେ ତାହା ଯଦି ଖୋଲା ନହୋଇ ପଡ଼ିଥାଏ। ଆଶ୍ଚର୍ଯ୍ୟ କଣ? ପଞ୍ଜାବରେ କେତେ ବର୍ଷ ପୂର୍ବେ ଏଇପରି ତ ପୁଣି ଘଟିଥିଲା! ବଡ଼ ସାହେବଙ୍କ ପକେଟ୍‌ରେ ଚିଠିଟା ରହିଯାଇଥିଲା– ଲୋକଟାର ଫାଶୀ ହୋଇ ଗଲା ପରେ ଯାଇଁ ସମସ୍ତଙ୍କର ଖିଆଲ୍ ପଶିଲା। ...ବଞ୍ଚିବାର ଆକାଂକ୍ଷା ମୋତେ କୁଆଡ଼େ ନେଇ ଯାଉଛି? କୌଣସି ଅନିର୍ଦ୍ଦିଷ୍ଟ ଶକ୍ତିର ଅମୋଘ ନିର୍ଦ୍ଦେଶ ତ ମୁଁ କୌଣସି ଦିନ ବିଶ୍ୱାସ କରି ନାହିଁ। ତା'ହେଲେ ପ୍ରକୃତରେ ଏହା କଣ ମୃତ୍ୟୁ ଭୟ? ଭୟ ତ ନିଶ୍ଚୟ। ଏଇ ତ ଅଳ୍ପ ସମୟ ପୂର୍ବେ ଓ୍ୱାର୍ଡ଼ର୍ ମାନଙ୍କର ପାଦଶବ୍ଦ ଶୁଣି ମନର ଯାହା ଅବସ୍ଥା ହୋଇଥିଲା; ତାକୁ ଭୟ ଛଡ଼ା ଆଉ କଣ କୁହାଯାଇ ପାରେ? ଉତ୍କଣ୍ଠାର ଚରମ ଅନୁଭୂତି ମଧରେ ଆସେ ନିରାଶା। ମୋ ମନ ଉପରେ ଚାଲିଚି ସେଇ ନିରାଶାର ପ୍ରତିକ୍ରିୟା। ...

ମୋଟା ଶଣ ଦଉଡ଼ି। ପିଲା ଦିନେ ଆମେ ଏ ଦଉଡ଼ିକୁ ଲକ୍‌ଲାଇନ୍ କହୁଥିଲୁ। ସେଥିରେ ଗୋଟାଏ ଫାଶ। ଫାଶ ମୁହଁରେ ପିତ୍ତଳର ଗୋଟାଏ ଗୋଲକ (Knob)। ଦଉଡ଼ିରେ ଏ ମୁଣ୍ଡରୁ ସେ ମୁଣ୍ଡ ଚର୍ବି ବୋଳାଯାଇଛି। ତଳେ ଅନ୍ଧକାର ଗର୍ତ୍ତ– ଦେଖିବାକୁ ଠିକ୍ କୂଅ ପରି। ଗାତଟା କେତେ ଖାଲ– ବୋଧହୁଏ ବେଶୀ ନୁହେଁ। କାଠ ତକ୍ତାଟା ଟାଣି ଦେଲେ, ଯେତେବେଳେ ସାରା ଦେହଟା ଝୁଲି ପଡ଼ିବ, ସେତେବେଳେ ପାଦ ଦୁଇଟା ତଳେ ଠାକି ଯେପରି ଅଟକି ନଯାଏ– ସେଥିପାଇଁ ଗର୍ତ୍ତଟି ଦରକାର। ତେଣୁ କାର୍ଯ୍ୟତଃ କୂଅଟି ନିଶ୍ଚୟ ଅଗଭୀର। ବେଶୀ ଖୋଳିଲେ ତ ପାଣି ପଡ଼ିଯିବ। ଚାରି ପାଞ୍ଚ ହାତରୁ ବେଶୀ ଗହୀଡ଼ା ହେବ ନାହିଁ। କିନ୍ତୁ ଗାତଟା ଯେତେ ଗହୀଡ଼ା ହେବ, ଆଉ ଦଉଡ଼ି ଯେତେ ଲମ୍ବା ହେବ, ଦେହଟା ତଳେ ପଡ଼ିବା ବେଳେ, ଝିଙ୍କାଣିଟା ହେବ ସେତେ ବେଶୀ। ଆଉ ଅସଲ କଥା ତ ହେଲା ଏଇ ଝିଙ୍କାଣି। ନହେଲେ ବେକ ପାଖ ହାଡ଼ଟା ଭାଙ୍ଗିବ କିପରି? ଫାଶୀ ମାନେ ତ କେବଳ ଦମ୍ ବନ୍ଦ କରି ମାରିଦେବା ନୁହେଁ। ତା'ହେଲେ ତ ବେକ ଚିପି ମାରି ଦେଲେ ଚଳନ୍ତା। ଏତେ ଯନ୍ତ୍ରପାତି ସାଜସରଞ୍ଜାମର କି ଦରକାର? କମ୍ ସମୟରେ, କମ୍ ପରିଶ୍ରମରେ ମୃତ୍ୟୁଦଣ୍ଡ ଦେବା ପାଇଁ ଫାଶୀର ସୃଷ୍ଟି। ପିତଳ ଖୋଲକଟା ବେକ ହାଡ଼ ଉପରେ ବେଶୀ ଚାପି କରି ଜୋର୍‌ରେ ଆଘାତ କଲା, କୂଟ୍ କରି ଶବ୍ଦ ଟିକିଏ ହେଲା। ତା'ପରେ? ତା'ପରେ ସବୁ ଶାନ୍ତ, ସବୁ ଚୁପ୍‌ଚାପ୍। ନାଁ ଏକାଥରେ ଶାନ୍ତ, ନିଶ୍ଚଳ ହୋଇଯିବ କିପରି? ମଣିଷର ବଞ୍ଚିବା ପାଇଁ ପୁଣି ଏତେ ଆକାଂକ୍ଷା। ସେଇ ଜୀବନ– ବିଳାସୀ ଇଚ୍ଛା ଶକ୍ତିର ତାଡ଼ନାରେ, ଅସହାୟ ଶିଥିଳ ଦେହରେ ସୁଦ୍ଧା କଣ ଟିକିଏ ହେଲେ ପ୍ରତିକ୍ରିୟା ହେବ ନାହିଁ? ଆଉ ଇଚ୍ଛାଶକ୍ତି ଯଦି ନଥାଏ, ତାହେଲେ ବି ତ

reflex-action ଜନିତ ଆକ୍ଷେପ ଅଛି। ବଳିଦାନ ପରେ ପଶୁର ଗଣ୍ଡିଟା ଛଟପଟ ହେବା ଦେଖିଚି। – ତା'ପରେ ଫାଶୀ ଆସାମୀର ଲାସ୍‌ଟା ଶୂନ୍ୟରେ ଝୁଲୁଛି – ଅନ୍ଧାରରେ ଏପାଖରୁ ସେପାଖ। ଦଉଡ଼ିଟାକୁ ଢିଲା କରି ଦିଆଗଲା। ମୃତଦେହଟାର ପାଦ ଗାତ ଭିତରେ ମାଟିରେ ଲାଗି ଗଲାଣି। ଡାକ୍ତର ପାଦଶିରା କାଟିବେ ନାଁ କଣ? ଗପ ଶୁଣିଥିଲୁ, ଫାଶୀ ପରେ କିଏ କୁଆଡ଼େ ଥରେ ପୁଣି ବଞ୍ଚି ଉଠିଥିଲା। ସେଇଥିପାଇଁ ତ ଏତେ ସତର୍କତା। ସବୁ ବାଜେ ଗପ। ଡାକ୍ତରର ସେପରି କୌଣସି କାମ ନାହିଁ। କେବଳ ସରକାରୀ ନିୟମରକ୍ଷା ପାଇଁ, ଫାଶୀବେଳେ ଡାକ୍ତରର ଉପସ୍ଥିତି ପ୍ରୟୋଜନ। ତାଙ୍କୁ କେବଳ କହିବା ପାଇଁ ପଡ଼ିବ, ହିଁ, ଆସାମୀ ପ୍ରକୃତରେ ମଲାଣି। ଆଇନର ଭାଷାରେ ନ ମରିବା ପର୍ଯ୍ୟନ୍ତ ଫାଶୀ ଦେବା, ଝୁଲାଇବାର ସଜା କିନା! ସେଇଥିପାଇଁ। ତା'ପରେ ଦିଲ୍ଲୀର ଶାଙ୍କ ବାମ୍ପୀର ଛୋଟ ସଂସ୍କରଣ ପରି, ଗାତ ଭିତରେ ଧାପେ ଧାପେ ଯେଉଁ ଶିଡ଼ି ଯାଇଛି, ସେଇଥିରେ ଓହ୍ଲାଇବେ ସେଇ ଲୋକଟା। ନିହାତି ଆଜେ ବାଜେ ଲୋକ ନୁହେଁ ସେ। ମୁହୂର୍ତ୍ତକର ଶାରୀରିକ ପରିଶ୍ରମ ପାଇଁ କେଇଜଣ ଲୋକ, ପାଞ୍ଚଟଙ୍କା ରୋଜଗାର କରି ପାରନ୍ତି? ତା ଉପରେ 'ରେମିସନ୍'ତ ରହିଛି। ଦସ୍ତୁର–ମାଫିକ୍ ପିସ୍–ୱାର୍କ (ଠିକା) ମଜୁରୀ। ଶବପିଣ୍ଡଟା – ନାଁ ଆଉ ଶବପିଣ୍ଡ ନୁହେଁ – ଲାସ୍‌ଟାକୁ ଉପରେ ଆଣି ପକାଇ ଦିଆଗଲା। ବୀଭତ୍ସ ମୁହଁ। ଆଖି ଦୁଇଟା ଡ଼ିମା ଡ଼ିମା ହୋଇ ବାହାରି ପଡ଼ିଛି। କମ୍ବଳରେ ଢାଙ୍କି ଦିଆଗଲା। ତଣ୍ଟିଟା ଘୁଞ୍ଚାଇବା ବେଳେ, କି ଭୀଷଣ ଯନ୍ତ୍ରଣା ହେବ! ଅସମ୍ଭବ ତୀବ୍ର ଯନ୍ତ୍ରଣା। ଆଖିରେ ପାଣି ଆସୁଛି। ଛି, କେତେ ଟିକିଏ ସମୟ ପାଇଁ ବା ଯନ୍ତ୍ରଣା? ସେତେବେଳେ ତାହା ଅନୁଭବ କରିବାର ଶକ୍ତି ହୁଏତ ନଥିବ! ହଏତ ଅନ୍ୟ ସବୁ ଚିନ୍ତାରେ ମନ ଏତେ ଅଭିଭୂତ ହୋଇ ପଡ଼ିଥିବ ଯେ, ଯନ୍ତ୍ରଣା ଲାଗିବ ନାହିଁ। ସାଂଘାତିକ ଭାବରେ ଆହତ ଲୋକ ସୁଦ୍ଧା ଯୁଦ୍ଧକ୍ଷେତ୍ରରେ ନିଶାଗ୍ରସ୍ତ ପରି ନିଜ କାମ କରିଯାଏ। ନିଜ ଯନ୍ତ୍ରଣା କଥା ଭାବିବା ପାଇଁ ସେତେବେଳେ ତା'ର କଣ ସମୟ ଥାଏ? ଆଉ ଯଦି ବା ଯନ୍ତ୍ରଣା ଅସମ୍ଭବ ଭାବରେ ତୀବ୍ର ହୁଏ, ତାହେଲେ ସେଥିରେ ଯାଏ ଆସେ କଣ? ଜୀବନର ଆଶା ଯେଉଁଠି ନାହିଁ, ସେଠି ମୁହୂର୍ତ୍ତକର ଯନ୍ତ୍ରଣା କଥା ଭାବିବା ନିରର୍ଥକ। ଶୁଣିଛି, ମରିବାର ପୂର୍ବ ମୁହୂର୍ତ୍ତରେ କୁଆଡ଼େ ସାରା ଜୀବନ, ଚଳଚ୍ଚିତ୍ର ଛବି ପରି ଆଖି ସାମ୍ନାରେ ଭାସି ଉଠେ। ମୋର କିନ୍ତୁ ସେଥିରେ ବିଶ୍ୱାସ ହୁଏ ନାହିଁ। ...ଯେଉଁ ଦେଶରେ ମୃତ୍ୟୁଦଣ୍ଡ ନାହିଁ, ସେ ଦେଶରେ ମୋର ସଜା ହୋଇଥିଲେ? ତାହେଲେ ଆଜୀବନ କାରାଦଣ୍ଡ ହୁଏତ ମୋତେ ବୈଚିତ୍ର୍ୟମୟୀ ଧରଣୀ ଠାରୁ ବିଚ୍ଛିନ୍ନ କରିନଥାନ୍ତା। ଜେଲ୍ ଭିତରେ ତ ଗୋଟାଏ ଖଣ୍ଡଜଗତ ରହିଛି। ଜେଲ ଭିତରେ ବି, ଶୀତ, ଗ୍ରୀଷ୍ମ, ବର୍ଷାର ପରିବର୍ତ୍ତନ ଅନୁଭବ କରିହୁଏ। ଆକାଶ, ପବନ, ଚନ୍ଦ୍ର, ସୂର୍ଯ୍ୟ, ତାରା ସେଠାରେ ମାଧୁର୍ଯ୍ୟ ବିତରଣ ପାଇଁ କାର୍ପଣ୍ୟ କରନ୍ତି ନାହିଁ। କାଳବୈଶାଖୀର ମାତ୍‌ଲାମି, ପହିଲି ବର୍ଷା ପରେ ଓଦା ମାଟିର ଗନ୍ଧ, ନିଶୀଥରେ ବର୍ଷା ଧାରା ମାଦକତାଭରା ରୁଣୁଝୁଣୁ, କେତେ ସ୍ମୃତିଭରା ଶରତର ସୁନେଲି ଜରିମୋଡ଼ା ରୌଦ୍ର, ରହସ୍ୟଭରା ଶୀତର କୁହୁଡ଼ି – ଜେଲ୍ ପାଚେରୀ ଭିତରେ ସୁଦ୍ଧା ଏମାନଙ୍କ ଗତି ନିରଙ୍କୁଶ। ମଣିଷ ମାନଙ୍କର ମୁହଁ ଦେଖିବାର ଅବକାଶ ମଧ୍ୟ ଅଛି। – ହୁଅନ୍ତୁ ପଛେ ସେମାନେ ଚୋର, ଡକାୟତ – ତଥାପି ମଣିଷ ତ! ଖଣ୍ଡେ ଦଉଡ଼ିରେ ଝୁଲି ମରିବା ଅପେକ୍ଷା, ସେମାନଙ୍କ ମଧ୍ୟରେ ବଞ୍ଚିରହିବା କଣ

ଶ୍ରେୟସ୍କର ନୁହେଁ ? ଆମେରିକାରେ ବ୍ୟବସ୍ଥା କିନ୍ତୁ ଅଲଗା । ଇଲେକ୍ଟ୍ରିକ୍ ଚେଆର୍ ଉପରେ ବସିବା ମାତ୍ରେ ସବୁ ଶେଷ । ଯନ୍ତ୍ରଣାର ଲେଶ ମାତ୍ର ନାହିଁ । କିନ୍ତୁ ମୃତ୍ୟୁ ପୂର୍ବର ମାନସିକ ଯନ୍ତ୍ରଣା ଏଠାରେ ଯେପରି, ସେଠାରେ ମଧ୍ୟ ତ ସେଇପରି – ସେମାନଙ୍କର ମାରଣଯନ୍ତ୍ରଟି କେବଳ ଟିକିଏ ମାର୍ଜିତ । ଏତିକି ଯାହା ତଫାତ୍ । କିନ୍ତୁ ଯେଉଁ ଦେଶରେ ବନ୍ଧୁକ ଗୁଳିରେ ମରାଯାଏ, ଖଣ୍ଡାରେ ହଣାଯାଏ, ଗିଲୋଟିନ୍ କରାହୁଏ ତା ଅପେକ୍ଷା ଆମ ମାନଙ୍କ ବ୍ୟବସ୍ଥା ତ ଭଲ । ଖଣ୍ଡାରେ ମୁଣ୍ଡ କାଟିବା କଥା, ଚିନ୍ତା କରିବା ମାତ୍ରେ ମନଟା ଚମକି ଉଠେ । ଆଚ୍ଛା ଫାଶୀ ଆସାମୀକୁ ଯଦି ମର୍ଫିୟା ଇଞ୍ଜେକ୍‌ସନ୍ କିମ୍ବା କ୍ଲୋରୋଫର୍ମରେ ଅଚେତ କରି, ତା'ପରେ ମୃତ୍ୟୁଦଣ୍ଡ ଦିଆଯାଏ, ସେଥିରେ ଗଭର୍ଣ୍ଣମେଣ୍ଟଙ୍କର କି କ୍ଷତି ହୁଅନ୍ତା ? ସେଥିରେ ଶାରୀରିକ ଯନ୍ତ୍ରଣା ଆଉ ମାନସିକ ଦୁଶ୍ଚିନ୍ତାରୁ ଲୋକଟା ତ ବଞ୍ଚିଥାନ୍ତା ! ରାଷ୍ଟ୍ରର ଲକ୍ଷ୍ୟ ହୁଏ ଯଦି, ଲୋକଟିକୁ ସମାଜରୁ ଅପସାରିକ କରିନେବା, ତା ହେଲେ ଅଚେତ କରାଇବା ପରେ ଫାଶୀ ଦେବା ବ୍ୟବସ୍ଥା ତ ଭଲ ହୁଅନ୍ତା । ସବୁଠୁ ଭଲ ଅବଶ୍ୟ ପୋଟାସିୟମ୍ ସାଇନାଇଡ୍ – ମୂହୂର୍ତ୍ତକ ଭିତରେ ସବୁ ଶେଷ ! ...

ନୀଲୁ ଥରେ କଲେଜ ଲାବେରେଟରୀରୁ ଅଳ୍ପ ଟିକିଏ ଆଣିଥିଲା । ଏ ଜିନିଷ ନେଇ କେତେ ରକମର ଆଲୋଚନା, କେତେ କଳ୍ପନା ଜଳ୍ପନା ! ଛୋଟ ରବର୍ କ୍ୟାପ୍‌ସୁଲ୍‌ରେ ଭର୍ତ୍ତିକରି, ମୁହଁ ଭିତରେ ରଖିବା କୁଆଡ଼େ ସବୁଠୁ ଭଲ, ସେଇଆହିଁ ଠିକ୍ ହେଲା । ଗିରଫ୍ ହେଲେ ବି ଭୟ ନାହିଁ । ଯେତେବେଳେ ଇଚ୍ଛା, ମୁହଁ ଭିତରେ ଥିବା କ୍ୟାପ୍‌ସୁଲ୍‌ଟିକୁ ଦାନ୍ତରେ କାମୁଡ଼ି, ସେଥିରେ ଟିକିଏ ଛିଦ୍ର କରି ଦିଅ । ସେତେବେଳେ ଯାହା ଭାବିଥିଲି, ଯାହା ନିଷ୍ପତ୍ତି କରିଥିଲି, ସେଇଆ ଯଦି କରି ରଖିଥାନ୍ତି, ତାହେଲେ ଆଜି ମାନସିକ ଦୁଶ୍ଚିନ୍ତାର କୌଣସି କାରଣ ନଥାନ୍ତା । ଯଦି ଥାନ୍ତା, ତା ହେଲେ ରାତି ଭୋର ବେଳକୁ ବୁଟ୍ ଜୋତାର ଶବ୍ଦ ଶୁଣିବା ମାତ୍ରେ କାପ୍‌ସୁଲ୍‌ଟିକୁ କାମୁଡ଼ି ଦିଅନ୍ତି । ଦରଜା ଖୋଲିବା ପରେ ସେମାନେ ଆଶ୍ଚର୍ଯ୍ୟ ହୋଇଯାନ୍ତେ । ଘାତକ କୟଦୀଟି ମଧ୍ୟ ହତାଶ ହୁଅନ୍ତା । ସୁପରିଟେଣ୍ଡେଣ୍ଟ ଭାବନ୍ତେ – ଇଏ କି ଝଂଝଟ କୁଆଡୁ ଆସି ପୁଣି ଜୁଟିଲା ? – ମଣିଷ ଏବେ, ପୁଣି ହଜାର ରକମର ଡ଼ିପାର୍ଟମେଣ୍ଟାଲ୍ ଲେଖାପଢ଼ି ଭିତରେ ପଡ଼ିଲା । ନାଁ, ପୋଷ୍ଟମର୍ଟେମ୍ ତ ନିଶ୍ଚୟ ହେବ । ତାହେଲେ ପଟାସିଅମ୍ ସାଇନାଇଡ୍ କଥାଟା ଜଣାପଡ଼ିଯିବ । . . .

କିନ୍ତୁ ପଟାସିଅମ୍ ସାଇନାଇଡ୍ ଖାଇବା ତ ଏତେ ସହଜ ନୁହେଁ । ସେଥର ତ ପାରି ନଥିଲି । ସେଥର ଡ଼ିସ୍‌ପେପ୍‌ସିଆ ବେମାରିରେ ପଡ଼ି ଭୋଗୁଥିବା ବେଳେ, ପ୍ରତ୍ୟହ ଫୁଟ୍‌ବଲ୍ ମ୍ୟାଚ୍ ଦେଖି ଯାଉଥିଲି । ଦିନେ ଦେଖିଲି ଜିତେନ୍ ଦା' ଏସ୍.ଡ଼ି.ଓ. ସାହେବଙ୍କୁ ଡାକୁଚନ୍ତି, "come up ଇସମାଇଲ୍ ।" ଦୁହେଁ ମୋଟର ଗାଡ଼ି ଭିତରେ ଠିଆ ହୋଇ ଖେଳ ଦେଖିଲେ । ଜଣେ ଅନ୍ୟର କାନ୍ଧ ଉପରେ ହାତ ରଖି ଠିଆ ହୋଇଚି । ...ମନଟା ହଠାତ୍ ନୈରାଶ୍ୟରେ ଭରିଗଲା – ନିଜର ଦୁର୍ବଳତା, ନିଜର ନଗଣ୍ୟତା ନିଜର ସପ୍ରନ୍ତଉତାର ଅଭାବ, ମନ ଭିତରେ ଗୋଳି ଘାଣ୍ଟି ହୋଇ ଖୁଞ୍ଚା ଦେବାକୁ ଲାଗିଲା । ମନ ଭିତରଟା ଗୋଳେଇ ହେଲା – ଜିତେନ୍‌ଦା'ର ଏଇଭାବ ମୋ ପରେ କାହିଁକି ଅଭାବ ପଡ଼ିଲା ? ଜିତେନ୍‌ଦା' ଉପରେ ଅବଶ୍ୟ ଇର୍ଷା କରି ନାହିଁ । ଏସ୍.ଡ଼ି.ଓ. ସାହେବଙ୍କ ସହିତ ବନ୍ଧୁତ୍ୱ ପାଇଁ ମୁଁ ଅବଶ୍ୟ ଲାଳାୟିତ ନଥିଲି । ତଥାପି ମନଟା କାହିଁକି ଯେପରି ଅବସାଦରେ ଭରିଗଲା ।

କ୍ଷଣକ ପାଇଁ ଜୀବନରେ ଆସିଗଲା ବୀତସ୍ପୃହତା । କେବଳ ମନେ ହେଲା, ଖାଲି ଏମିତି ବଞ୍ଚି ରହିବାରେ କି ଲାଭ ? ଯେଉଁ ହୀନ ଅବସ୍ଥାରେ ମୋତେ ବଞ୍ଚି ରହିବାକୁ ପଡ଼ିବ, ତା ଅପେକ୍ଷା ମୃତ୍ୟୁ ଅନେକ ଭଲ । ସବୁ ଠିକ୍ ସେଇ ଦିନ ରାତିରେ ପଟାସିଅମ୍ ସାଇନାଇଡ୍ ଖାଇବି । ଚେଇଁ ଚେଇଁ ଅନେକ ରାତି ପର୍ଯ୍ୟନ୍ତ ଜିଲ୍ଲା – କଂଗ୍ରେସ – ଅଫିସ ଘରର ବଡ଼ ଘଣ୍ଟାରେ ଘଣ୍ଟା ବାଜିବା ଶୁଣିଚି । ପରେ କିନ୍ତୁ ଠିକ୍ ଚରମ ମୁହୂର୍ତ୍ତରେ ମନେ ହୋଇଥିଲା, ନାଁ ଆଜି ଥାଉ ।'' ଲେଡ଼ୀଜ୍ ଆଫଟରନୁନ୍ ଟୀ ବିସ୍କୁଟ୍'' ଖାଇବା ପାଇଁ ଇଚ୍ଛା ହେଉଚି । କାଲି ଏଇ ଇଚ୍ଛା ପୂର୍ଣ କରି, ତାପରେ ବରଂ ଆତ୍ମହତ୍ୟା କଥା ଚିନ୍ତା କରିବି । ତା'ପର ଦିନ ମନର ଅବସ୍ଥା ମଧ ଅନୁରୂପ ହୋଇ ଯାଇଥିଲା । ଏହା ପରେ ଯେତେଥର ସେକଥା ଭାବିଚି, ସମସ୍ତ ଘଟଣାଟି ଗୋଟାଏ ହସ – କୌତୁକ – ଗପ ପରି ମୋତେ ଲାଗିଛି । ଆଜି କିନ୍ତୁ ସାଇନ୍‌ଇଡ୍ ଥିଲେ ନିଶ୍ଚୟ ଖାଇଥାନ୍ତି । ଇଏ ତ ସ୍ୱେଚ୍ଛାରେ ଆତ୍ମହତ୍ୟା ନୁହେଁ; ଆସନ୍ନ ବିପଦରୁ ରକ୍ଷା ପାଇବାର ଇଏ ଏକ ଉପାୟ ମାତ୍ର । ସାଇନାଇଡ୍ ବୋତଲଟା ଲେମ୍ବୁଗଛ ମୂଳେ ପୋତି ରଖିଥିଲି । କଣ ସେତେବେଳେ ମନେ ହୋଇଥିଲା, ଜାଣେ ନାଇଁ; – ଶିଶିଟାକୁ କିନ୍ତୁ ମାଟିରେ ପୋତିବା ପୂର୍ବରୁ ବାଦାମି ରଙ୍ଗର ଗୋଟାଏ ପୁରୁଣା ମୋଜା ଭିତରେ ପୁରାଇ, ପୋତି ଦେଇଥିଲି । ବର୍ତ୍ତମାନ ସୁଦ୍ଧା ନିଶ୍ଚୟ ସେଇଠାରେ ପୋତା ହୋଇ ରହିଥିବ ।

ଲେମ୍ବୁଗଛଟିର କେତେଟା ଡାଳ ସବୁବେଳେ ମାଟି ତଳେ ଢାଙ୍କି ହୋଇ ରହିଥାଏ, କଲମି କରିବା ପାଇଁ । ଜିଲ୍ଲାର ଯେତେକ କଂଗ୍ରେସକର୍ମୀ କୌଣସି ନାଁ କୌଣସି କାର୍ଯ୍ୟ ଉପଲକ୍ଷେ ଜିଲ୍ଲା ଅଫିସରକୁ ଆସନ୍ତି, ସେମାନଙ୍କ ମଧ୍ୟରୁ ଅନେକେ ନେଇଯାନ୍ତି ଏଇ ଗଛର କଲମି ଚାରା । ...ପ୍ରତିଦିନ ଖାଇବା ବେଳେ ନୀଲୁର ଲେମ୍ବୁ ଦରକାର । ଡାଲିରେ ଦୁଇ ଚାରି ବୁନ୍ଦା କାଗେଜିଲେମ୍ବୁ ରସ ନପକାଇଲେ, ତାକୁ ଭଲ ଲାଗେ ନାଇଁ । ଆଶ୍ରମରେ ମାଛ ରନ୍ଧା ଯାଏ ନାହିଁ । ସେଥିପାଇଁ ବଡ଼ମାଛ ମିଳିଲେ, ଜେଠେଇମା'ଙ୍କ ଘରେ ଖାଇବା ପାଇଁ ଆମକୁ ନିମନ୍ତ୍ରଣ ଆସେ । ତାଙ୍କ ଘରକୁ ଖାଇବା ପାଇଁ ଯିବା ବେଳେ, ନୀଲୁର ଗୋଟିଏ ଲେମ୍ବୁ ପକେଟ୍‌ରେ ନେଇଯିବା ଦରକାର – କିଏ ଜାଣେ ସେ ଘରେ ଲେମ୍ବୁ ଥିବ କି ନାଇଁ ! ତାଙ୍କ ଘରର ଛୋଟ ପିଲାଟି ପର୍ଯ୍ୟନ୍ତ ଏକଥା ଜାଣନ୍ତି । କିଏ ନୀଲୁକାକାଙ୍କ ପକେଟ ଅଣ୍ଡାଳୁଚି ତ କିଏ ଦଉଡ଼ିଯାଇଁ ଦାଦିମା'ଙ୍କୁ ଖବର ଦେଲାଣି, ନୀଲୁ ମାମୁଁ ପକେଟରେ ଲେମ୍ବୁ ଆଣିଚନ୍ତି । ଜେଠେଇମା' ରୋଷେଇଘର ଭିତରୁ ବାହାରି ଆସିଲେ । ''କିରେ 'ମାଛପାନ୍‌ରୀ' ତୁମେ ସବୁ ଆସିଗଲ ?'' – ଅନେକ ଦିନ ତଳର ଘଟଣା । ଜେଠେଇମା'ଙ୍କ ଘର ବାରଣ୍ଡାରେ ଧାଡ଼ି ଧାଡ଼ି ହୋଇ ପିଢ଼ା ପଡ଼ିଲା । ସାମ୍ନାରେ ଭାତଥାଳି । ମୁଁ ନୀଲୁ, ଜିତେନ୍‌ଦା' ଆଉ ଘଣ୍ଟା ସମସ୍ତେ ଖାଇବା ପାଇଁ ବସିଚୁ । ''ଆରେ ମାଛ ପାନ୍‌ରୀ ଯେ'' କହି ନୀଲୁ ଦୌଡ଼ି ଯାଇଁ ଯେମିତି ପିଢ଼ାରେ ବସିବାକୁ ଯାଇଚି, ପୀଢ଼ାଟା ଖସି ଓଲଟି ପଡ଼ିଲା । ଭାତଥାଳୀ ଦୂରକୁ ଝିଟିକି ପଡ଼ିଛି, ସବୁ ଓଲଟା ପାଲଟା ! ସେଇଦିନୁ ଜେଠେଇମା' ନୀଲୁକୁ ''ମାଛପାନରୀ'' କହନ୍ତି । ଏଇ ସମ୍ବୋଧନ ଭିତରେ ସେଦିନ ପରିହାସର ଇଙ୍ଗିତ ଯାହା ଥିଲା, ତାହା ଆଉ ବର୍ତ୍ତମାନ ନାହିଁ, କିନ୍ତୁ କଥାଟା କେବଳ ରହିଯାଇଛି । ତା'ପରେ ଜେଠେଇମା' କହନ୍ତି, ''ବାରିନ୍ଦିର ପୁଅ, ଏଣିକି ଆଇଲୁ, ପକେଟ୍‌ରେ ଲେମ୍ବୁ ଆଣିଚୁ ତ ? ଦେ, କାଟି ରଖେ ।''

ସେଇ ନୀଲୁ, ସେଇ ଛୋଟ ହାଫ୍‌ପାଣ୍ଟ ପିନ୍ଧା କ୍ୟାପ୍‌ଟେନ୍ ନୀଲୁ, ସେଇ "ମାଛପାନ୍‌ରୀ" ନୀଲୁ, 'ଦାଦା' 'ଦାଦା' ଡାକି ଅଜ୍ଞାନ ସେଇ ନୀଲୁ, – ସେ ପୁଣି ମୋ ସାଙ୍ଗରେ ଏଇ ବ୍ୟବହାର କଲା ! ତା'ଠାରୁ କୌଣସି ଦିନ ତ ମୁଁ ଏପରି ବ୍ୟବହାର ଆଶା କରି ନଥିଲି। ତା ମନରେ ଏତେ ଘୃଣ୍ୟ ପରିବର୍ତ୍ତନ ହେଇଚି ? ଛି ! – ଇଏ କଣ ? ଇଏ କଣ ସବୁ ମୁଁ ଭାବି ଯାଉଚି ? ପାଦର ଯେଉଁ କ୍ଷତଟି ଉପରେ ଆଘାତ ଲାଗିବ ବୋଲି, ହାତ ଦିଏ ନାହିଁ, ହାଟରେ ଘାଟରେ, ବାଟରେ, ଭିଡ଼ ଭିତରେ ଯେଉଁ କ୍ଷତଟିକୁ ଅତି ସର୍ନ୍ତପଣରେ ଆଘାତରୁ ବଞ୍ଚାଇ ରଖି ଆସିଚି, ଘରକୁ ଫେରି ଟେବୁଲ୍ ଉପରେ ପାଦ ଟେକି ବସିବା ବେଳକୁ, ତା'ରି ଉପରେ ଶେଷରେ ଆଘାତ ଲାଗିଲା ? ମନର ଗଭୀର କ୍ଷତଟିକୁ ବିସ୍ମୃତିର ମଲମ ପୁଣି ଯୁକ୍ତିର ମଲମରେ ଢାଙ୍କି ରଖିବା ଆଉ ସମ୍ଭବ ନୁହେଁ। ନାଁ, ମୁଁ ଯଦି ନୀଲୁକୁ ଠିକ୍ ନ ବୁଝେ, ତା'ହେଲେ ବାହାର ଲୋକେ ବୁଝିପାରିବେ କିପରି ? ସେଦିନେ କେତେ ଗାଁରେ ଚଳଣି ଥିଲା, ବିଲୁଆ ମାତିଲେ ତାକୁ ଧରି ଗାଁର ଚଉମୁହାଣୀରେ ଫାଶୀ ଦିଆଯାଉଥିଲା। ଲୋକେ କେବଳ ନିଜ କ୍ଷତି ଦୃଷ୍ଟିରୁ ସବୁ କଥା ଭାବନ୍ତି ଓ ସେଇ ଦୃଷ୍ଟିକୋଣରୁ ସେମାନେ ଅନିଷ୍ଟକାରୀ ଉପରେ ପ୍ରତିଶୋଧ ନିଅନ୍ତି। କିନ୍ତୁ ନୀଲୁର ଦୃଷ୍ଟିକୋଣରୁ ମୋତେ ସବୁ କଥା ଦେଖିବା ପାଇଁ ପଡ଼ିବ। ସେଦିନ ନୀଲୁ ମୋତେ ଦେଖା କରିବା ପାଇଁ ଆସିବା ବେଳେ ଏଇ କମ୍ବଳ ଉପରେ ତ ବସିଥିଲା। ମୋ ମୁହଁକୁ କିନ୍ତୁ ସେ ସିଧା ଚାହିଁ ପାରୁ ନଥିଲା। ତାର ଆଖିରେ ମୁହଁରେ ଥିଲା ଅପରାଧୀର ସଙ୍କୁଚିତ ଭାବ। କାହିଁକି ? କୋଉଠି କିଛି ଗୋଟାଏ ଭୁଲ୍ ରହି ଯାଇଛି ନିଶ୍ଚୟ। ନହେଲେ ତାର ସଙ୍କୋଚର କାରଣ କଣ ? ବିବେକ ଦଂଶନ ନାଁ କେବଳ ଅନୁତାପ ? ନୀଲୁ ମୋତେ କଣ କହିବା ପାଇଁ ଚାହୁଁଥିଲା। କ'ଣ କହିବା ପାଇଁ ଚାହୁଁଥିଲା, ତା ବି ଜାଣେ ! ମୁଁ କିନ୍ତୁ ସେ କଥା ଉଠାଇବାକୁ ତାକୁ ସୁବିଧା ଦେଲି ନାହିଁ। ଦେଇଥିଲେ ହୁଏତ ମୋ ସଂଯମର ବନ୍ଧ ଭାଙ୍ଗି ଯାଇଥାନ୍ତା। ନୀଲୁ ଆସିଚି ତାର ଭାଇ ସହିତ ସାକ୍ଷାତ ପାଇଁ, ତାର ପ୍ରତିଦ୍ୱନ୍ଦୀ ରାଜନୈତିକ ପାର୍ଟିର ସ୍ଥାନୀୟ ନେତା ବିଲୁବାବୁଙ୍କ ସହିତ ନୁହେଁ। କି ଭାଗ୍ୟ ଯେ, ସେଦିନ ତା ଆଗରେ ମୋର ମାନସିକ ଦ୍ୱନ୍ଦର ଆଭାସ ଫୁଟି ନଥିଲା। ମୋର ପୁଣି କଥା ଟିକିକରେ ଆଖିକୁ ଲୁହ ଆସେ। ସେଇଆ ଥିଲା ମୋର ଭୟ। କିନ୍ତୁ ଯାହା ହେଉ ଭଲରେ ଭଲରେ ଇଣ୍ଟରଭ୍ୟୁଟା କଟି ଯାଇଥିଲା। ସେ ଚାଲିଯିବା ପୂର୍ବରୁ ମୁଁ ଭାଙ୍ଗି ପଡ଼ି ନାହିଁ। ତା ଆଡୁ କିନ୍ତୁ ଲକ୍ଷ୍ୟ କରିଥିଲି ଆବେଗର ଆତିଶଯ୍ୟ। ସେ ଚାଲିଯିବା ବେଳେ, ମୋର ଡାହାଣ ହାତଟାକୁ ଚାପି ଧରିଥିଲା – ମୂହୂର୍ତ୍ତକ ପାଇଁ। ମୃଦୁ– କମ୍ପମାନ ହାତର ସେଇ ହିମଶୀତଳ ସ୍ପର୍ଶ ଏବେ ସୁଦ୍ଧା ଅନୁଭବ କରି ପାରୁଛି। କହିଥିଲି ମା'ଙ୍କୁ ଦେଖା କରିବୁ। ଦେଖା କଲା କି ନାହିଁ, କିଏ ଜାଣେ ? ମା'ଙ୍କ ପାଇଁ ମୋର ଭୟ। ତଥାପି ମା'ଙ୍କର ଗୋଟିଏ ପୁଅ ତ ବଞ୍ଚିଲା। ଆଖି ବୁଜି, ମା'ଙ୍କ ମୁହଁ ମନେ ପକାଇବାକୁ ଚେଷ୍ଟା କଲି।

ମା' ଭାତ ସାଙ୍ଗରେ ଜଲପାଇ ଆଚାର ଖାଉଚନ୍ତି। ସାମ୍‌ନା ବାଳ, କଳା ଧଳା, କଞ୍ଚା ପାଚିଲା, ମିଶାମିଶି – କଳା ଅଂଶଟା ବେଶୀ। ସୁଛାରୁ ବାଳ ସବୁ ଉପୁଡ଼ି, ସୁଛା ଚଉଡ଼ା ହୋଇ ଗଲାଣି। ତା ଉପରେ ଚଉଡ଼ା କରି ଟଣା ହୋଇଛି ସିନ୍ଦୁର ଗାର। ସିନ୍ଦୁର ଗାର ପଛକୁ ଦେଖା ଯାଉଛି ଖଦଡ଼ ଶାଢ଼ୀର ନାଲିଧଡ଼ୀ। କାନ ବେକ ନିଭାଉରଣ।

ଅର୍ଦ୍ଧନିମିଳିତ ଆଖିକୋଣରେ କେତେଗୁଡ଼ିଏ ବଳିରେଖା, ଗୋଟିଏ ମୋଟା, ବାକି ସବୁ ବାଳ ପରି ସରୁ। ନାକ ତଳ ଆଡ଼କୁ ଲମ୍ବି ଯାଇଛି ଦୁଇଟି ଚର୍ମରେଖା। ଓଠର ଦୁଇ କୋଣ ପର୍ଯ୍ୟନ୍ତ ଲମ୍ବିଯାଇଛି। ଗୋରା ତକ୍ ତକ୍ ରଙ୍ଗ ଉପରେ ରେଖା ଦୁଇଟା ବେଶ୍ ଗଭୀର ଦିଶୁଛି। ମା' ଓଠ ଦୁଇଟାକୁ ଗୋଜିଆ କରି, ଜିଭଟାକୁ ଚୁଚୁମିଲେ – କଣ୍ଠ – ନୀଳର ମୃଦୁ ସ୍ପନ୍ଦନରୁ ସ୍ପଷ୍ଟ ବୁଝାଯାଉଚି। ଜିଭଟାକୁ ତାଳୁରେ ଲଗାଇ, ଟକ୍ କରି ଗୋଟାଏ ଶବ୍ଦ କଲେ। ଓଠ ଦୁଇଟା ମେଲିବା ବେଳକୁ ଦେଖାଗଲା, ତଳ ଦାନ୍ତପାଟିରେ ଗୋଟିଏ ହେଲେ ଦାନ୍ତ ନାହିଁ। ତା ଭିତର ଦେଖାଯାଉଛି ଲାଲ ଜିହ୍ୱା। ''ତୁମେ ସବୁ ଏଠୁ ଉଠିଲ। ଉଠ ଏଠୁ।'' ଆମେ କିନ୍ତୁ ବସି ରହୁ।

ଜେଠେଇମା'ଙ୍କ ତଳପାଟିରେ ମଧ୍ୟ କେତୋଟି ଦାନ୍ତ ନାହିଁ। ରହିବ କିପରି ? ଚବିଶ ଘଣ୍ଟା ପାଟିରେ ଚୂନମିଶା ଜର୍ଦ୍ଦା ମେଞ୍ଚାଏ ଗୁଞ୍ଜା ଥାଏ। ଲୋକେ ପାନରେ ଅବଶ୍ୟ ଜର୍ଦ୍ଦା ଖାନ୍ତି। କିନ୍ତୁ କେହି ଏତେ ଗୁଡ଼ାଏ ଖାଲି ଜର୍ଦ୍ଦା ଏକା ସାଙ୍ଗରେ ନିୟମିତ ଭାବରେ ଖାଇବା, ମୁଁ କେବେ ଦେଖି ନାହିଁ। ଜେଠେଇମା' ଅବିକା କଣ କରୁଥିବେ ? ଆଜି ରାତିରେ ଜେଠେଇମା'ଙ୍କୁ କଣ ନିଦ ହୋଇଥିବ ? କି ଶୀତ, କି ଗ୍ରୀଷ୍ମ, ସବୁଦିନେ ରାତି ତିନିଟା ବେଳେ ଉଠି ବିଛଣା ଉପରେ ବସି ସେ ମାଳା ଗଡ଼ାନ୍ତି। ନିଦ ଭାଙ୍ଗିବା ମାତ୍ରେ, ଲଣ୍ଠନ୍ ଶିଖାଟି ତେଜି ଦେଇ, ପାଖ ଝରକା ଉପରେ ରଖନ୍ତି। ଲଣ୍ଠନ ଆଲୁଅ ଯାଇଁ ପଡ଼େ, କାନ୍ଥରେ ଟଙ୍ଗା ଥିବା ରାଧାକୃଷ୍ଣଙ୍କ ଛବି ଉପରେ। ତା'ପରେ ଆଖିରେ ଚଷମା ଲଗାଇ, ସେଇ ଆଡ଼କୁ ଚାହିଁ ସ୍ଥିର ହୋଇ ବସନ୍ତି। ଗୁରୁଦେବଙ୍କ ନିର୍ଦ୍ଦେଶ କୁଆଡ଼େ ଏଇପରି। ମୁହଁଟି ଗୋଲ – ମା' ଦିନେ କହିଥିଲେ ଡବା ବାଟୀ ପରି। ମୁହଁରେ କେତେଟା ବସନ୍ତଦାଗ। କପାଳରେ ନେଳୀ କୁଟାଚିତାର ଚିହ୍ନ। ବେକରେ କଣ୍ଠି। ଜପ୍ କଲାବେଳେ, ମଝିରେ ମଝିରେ ପାଖ ଝରକା ଭିତର ଦେଇ, ଜର୍ଦ୍ଦାମିଶା ପିଙ୍କ ବାହାରକୁ ପକାଉଛନ୍ତି। ଆଉ ସେଇ ଅବକାଶରେ ଆକାଶ ଆଡ଼କୁ ଚାହିଁ ଦେଖୁଛନ୍ତି; ସକାଳ ହେବା ପାଇଁ ଆଉ ଡେରି ନାହିଁ। ସାଇର ଦେକାନୀ ରାମଚନ୍ଦ୍ର ସାଓ ପ୍ରତିଦିନ ସକାଳ ନ ହେଉଣୁ କୂଅରୁ ପାଣି ନେବା ପାଇଁ ଆସେ। ସେଇ ହେଲା ଜେଠେଇମା'ଙ୍କ ଘଡ଼ି।'' ବେଲୀ, ବେଲୀ, ଆଜି କଣ ଉଠିବୁ ନାଇଁ ?'' ନ' ଦିଦି ଧଡ଼୍‌ପଡ଼୍ ହୋଇ ବିଛଣାରୁ ଉଠିପଡ଼େ।...

ପିଲା ଦିନେ ନୀଳୁକୁ ସକାଳେ ହଲାହଲି କରି ଉଠାଇଲେ, ସେ ପ୍ରଥମେ କହେ, ''ଭଲ ହେବ ନାଇଁ, କହି ଦେଉଛି ଦାଦା।'' ପୁଣି ଶୁଏ କଡ଼ ମୋଡ଼ି। ପୁଣି ହଲାଇଲେ କହେ, ''ଫେର୍!'' ତା'ପରେ କହେ, ''ପୁଣି ?'' ଆଉ ଥରେ ହଲାଇ ଦେଲେ କହିବ, ''ତେବେ ବି!'' ଏଥର କଣ୍ଠସ୍ୱରଟା ଉଚ୍ଚ। ତା'ପରେ ମନକୁ ମନ ବିଡ଼ିବିଡ଼ ହୋଇ ଉଠି ବସେ। ମା କହନ୍ତି, ''ଏଇ ଭୋରରୁ ଉଠି ସାପମନ୍ତର ଝଡ଼ା ଆରମ୍ଭ ହୋଇଗଲା।'' ନୀଳୁ ଚେହେରାଟା ମନେ ପକାଇବାକୁ ଚେଷ୍ଟା କରୁଛି, କିନ୍ତୁ ମନେ ପଡୁ ନାଇଁ। ଯେତେବେଳେ ନାଇଁ ସେତେବେଳେ ନୀଳୁ ମୁହଁଟା ଆଖି ଆଗରେ ଭାସି ଉଠେ; କିନ୍ତୁ ବର୍ତ୍ତମାନ ମନେ ପକାଇବାକୁ ଚାହୁଁଛି, ଶେଷ ମୁହୂର୍ତ୍ତରେ ଟିକିଏ ପରିତୃପ୍ତି ପାଇଁ। କିନ୍ତୁ ଏବେ କଣ ଆଉ ମନେ ପଡୁଚି ? ମନେ ପକାଇବାକୁ ଚାହୁଁଚି ନୀଳୁର ଚେହେରା – ଆଉ ଆଖି ଆଗରେ ଭାସି ଉଠୁଚି ଗଣୌରୀ ମାହାନ୍ତୋର ମୁହଁ – ନଣ୍ଡା ମୁଣ୍ଡ, ଚେପ୍ଟା ନାକ,

ବୁଲ୍‌ଡ଼ଗ୍ ପରି ମୁହଁ ଗୋଟାଏ କାନରେ ଫୋଡ଼ କରି ପିନ୍ଧିଚି ପତଳା ସୁନାନୋଳି !

ଦେହଟା ଶିରଶରେଇ ଉଠୁଚି। ପାହାନ୍ତି ପହରର ପବନ ବେଶ୍ ଥଣ୍ଡା। ବର୍ତ୍ତମାନ ଦୁଇ ଘଣ୍ଟା ପାଇଁ ସେଲ୍‌ଟା ଥଣ୍ଡା ଲାଗିବ। ପାଗଳଟି ଚିତ୍କାର ଆରମ୍ଭ କରି ଦେଲାଣି। ତିନି ନମ୍ବର କେତେବେଳୁ ଭଜନ ଆରମ୍ଭ କରିଚି, ମୁଁ ଖିଆଲ୍ କରି ନାହିଁ।

ଓସ୍ତ ଗଛରେ କାଉ ଗୁଡ଼ାକ ଥରେ କା – କା ଡାକି ଚୁପ୍ ହୋଇଗଲେ। ବୋଧହୁଏ ବୁଝି ପାରିଲେ, ଏ ପର୍ଯ୍ୟନ୍ତ ସକାଳ ହୋଇ ନାହିଁ। ସମୟ କଳନାରେ ଭୁଲ୍ ହୋଇଯିବାରୁ ଟିକିଏ ଆଗରୁ ବୋବାଇ ଦେଇଚନ୍ତି। କେତେ ସ୍ୱଳ୍ପ ଆଉ ମୋର ମିଆଦ। ବର୍ତ୍ତମାନ ଏଇ ମୁହୂର୍ତ୍ତଟିର ମୂଲ୍ୟ ମୋ ପାଖରେ କେତେ ବେଶୀ। ସିନେମା ହୋଇଥିଲେ ହୁଏତ ଦେଖାଇଥାନ୍ତା – ଡ଼ମ୍ବରୁ ଆକାରର ଗୋଟିଏ ବାଲି ଘଡ଼ି। ଉପର ବାଟିର ବାଲି ପ୍ରାୟ ଶେଷ ହୋଇ ଆସିଛି, ଟିପ୍ ଟିପ୍ କରି ଅନବରତ ବାଲିକଣା ତଳେ ଝରି ପଡ଼ୁଚି। ମୁହୂର୍ତ୍ତକର ବିରାମ ସୁଦ୍ଧା ନାହିଁ। ...କିମ୍ୱା ହୁଏତ ଦେଖାନ୍ତା ଦୀପରେ ତେଲ ଶେଷ ହୋଇ ଆସିଲାଣି। ...ନୋହିଲେ ହୁଏତ ଘଡ଼ିକଣ୍ଟା ଚାଲିଛି। ମୋ ଘଡ଼ିଟି ତାର ନିଜସ୍ୱ ରୀତିରେ, ସେଇ ବନ୍ଧା ନିୟମରେ ଚାଲିଛି। – ଥଣ୍ଡା ପବନ, ପାଗଳର ଚିତ୍କାର, ତିନି ନମ୍ବରର ଭଜନ – ବାକି କେବଳ ଆକାଶ ଟିକିଏ ପରିଷ୍କାର ହେବ। ଶୁକ୍ରତାରାଟିକୁ ଚିହ୍ନି ପାରୁଛି। ଆଉ ସବୁଠାରୁ ରୂଢ଼ ବାସ୍ତବ, ମୋର ୱାର୍ଡ଼ର୍ ସାହେବ, ପାଣିକୁଣ୍ଡ ପାଖରେ ବସି ଢୁଳାଉଚି।

ଏଇ ମୁହୂର୍ତ୍ତରେ ବିଲୁ ଅଛି। ଆଉ କିଛିକ୍ଷଣ ପରେ ସେ ନଥିବ। ରକ୍ତମାଂସ, ସୁଖଦୁଃଖରେ ଗଢ଼ା ବିଲୁ ବୋଲି ଆଉ କିଛି ନାହିଁ; ମୁଁ ସରକାରୀ ଷ୍ଟାଟିସ୍‌ଟିକ୍‌ସ୍‌ର ଗୋଟିଏ ସଂଖ୍ୟା ମାତ୍ର! ଅଜସ୍ର ସଂଖ୍ୟା ଭିତରେ ଗୋଟିଏ ହ୍ରାସ ବୃଦ୍ଧିରେ କଣ ବା ଯାଏ ଆସେ ? ବୈଜ୍ଞାନିକମାନେ "ପାରଲାକ୍‌ସ୍ ବା ଇନ୍‌ଷ୍ଟ୍ରୁମେଣ୍ଟାଲ୍ ଏରର୍"ର (ଦୃଷ୍ଟିବିଭ୍ରମ ବା ଯନ୍ତ୍ରଜନିତ ପ୍ରମାଦ) ପାଇଁ କିଛି ସଂଖ୍ୟା ତ ଛାଡ଼ି ଦେଇଥାନ୍ତି। ବ୍ୟବସାୟରେ ମଧ୍ୟ ଝଡ଼ାପଡ଼ା ବୋଲି ଗୋଟିଏ କଥା ଅଛି। ମୁଁ ହୁଏତ ସେଇ ମାନଙ୍କ ଭିତରେ ପଡ଼ିବି। ହୁଏତ ବା ଭାରତ ସରକାରଙ୍କ ହିସାବନିକାଶ ବେଳେ, ମୁଁ – ପୂର୍ଣ୍ଣିଆ ଜେଲ୍‌ର 1109 ନମ୍ବର ଫାଶୀ ଆସାମୀ – ଫାଶୀର ଶତକଡ଼ା ହାର ଗୋଟିଏ ଦଶମିକ ଭଗ୍ନାଂଶର ପରିମାଣ ବଢ଼ାଇ ଦେବି। ସରକାରୀ ରିପୋର୍ଟ୍‌ର ଏତେ ଟିକିଏ ଛପାକାଳିର ଖର୍ଚ୍ଚ। ଏତିକି ମୋର ଜୀବନର ମୂଲ୍ୟ – ଜାତୀୟ ଇତିହାସରେ ବିଲୁ ବାବୁଙ୍କ ଅବଦାନ୍ !

ଶଗଡ଼ ଚକ ଯେପରି କେଁ କେଁ ଶବ୍ଦ କରେ, ସେଇପରି ଗୋଟିଏ ଶବ୍ଦ ହେଲା। ବୋଧହୁଏ ୱାର୍ଡ଼ର ଦରଜା ଖୋଲିବାର ଶବ୍ଦ। ତା'ହେଲେ କଣ ? ...ଠିକ୍ ସେଇଆ। ଯାହା ଭାବିଛି ସେଇଆ। ସେଲ୍‌ର ସିମେଣ୍ଟବନ୍ଧା ଅଗଣା ଉପରେ ଏକ ସଙ୍ଗରେ ଅସଂଖ୍ୟ ଜୋତା ଶବ୍ଦ ହେଉଛି। କେତେ ଲୋକ ଆସୁଛନ୍ତି। ଶୁଣିଥିଲି ଦଳେ ସୈନ୍ୟଙ୍କ ପାଦଶବ୍ଦରେ ଗୋଟାଏ ପୋଲ ଭାଙ୍ଗି ଯାଇପାରେ। ସତରେ କେତେ ଜୋର୍‌ରେ ଶବ୍ଦ ହୁଏ ! ଏଇ ପାଦଶବ୍ଦ ସଙ୍ଗେ ସଙ୍ଗେ ଛାତି ଭିତର ଦପ୍ ଦପ୍ କରୁଛି। ଛାତିର ସ୍ପନ୍ଦନ ଶବ୍ଦ ସ୍ପଷ୍ଟ ଶୁଣି ପାରୁଛି। ରସମୋହନ ବାଜାଦାର୍ କୌଣସି ନବମୀ ପୂଜା ରାତିରେ ବୋଧହୁଏ ଏପରି ଶବ୍ଦର ସ୍ପନ୍ଦନ ତରଙ୍ଗାୟିତ କରି ପାରି ନାହିଁ, ସାରା ଦେହ ଥରୁଛି। ନିଃଶ୍ୱାସ ଜୋର୍‌ରେ ଜୋର୍‌ରେ ପଡ଼ୁଛି। ଆଖି ଆଗରେ ଯେପରି ଗୋଟାଏ ପର୍ଦ୍ଦା ପଡ଼ିଯାଇଛି। ମୁଣ୍ଡ ଭିତରଟା କିପରି ଥଣ୍ଡା ଆଉ ଖାଲି

ଖାଲି ଲାଗୁଚି। ଥରେ ମୋର ଡାହାଣ ହାତରେ ଗୋଟାଏ ଆଙ୍ଗୁଠି ସାଇକେଲ୍ ସ୍ପୋକ୍ ଭିତରେ ପଶି କଟି ଯାଇଥିଲା। ରକ୍ତ ଆଉ ବନ୍ଦ ହୁଏ ନାଇଁ। ସେତେବେଳେ ରକ୍ତ ଦେଖି ମୁଣ୍ଡ ଭିତରଟା ଏଇପରି ଝିମ୍‌ଝିମ୍ ହୋଇ ଉଠିଥିଲା। –କପାଳ ଆଉ ନାକ ତଳେ ବୁନ୍ଦା ବୁନ୍ଦା ଝାଳ ଫୁଟି ଉଠିଲାଣି। ଜାଣେ ନାଁ କାହିଁକି, ଠିଆ ହେବା ପାଇଁ ଇଚ୍ଛା ହେଲା। ଗରାଦ ବାଡ଼ା ଧରି ଠିଆ ହେବା ପାଇଁ ଚେଷ୍ଟା କଲି। ପାଦ ଆଡ଼ଟା ଯେପରି ପକ୍ଷାଘାତଗ୍ରସ୍ତ। ସେଥର ଟାଇଫାଏଡ୍ ପରେ ଖଟରୁ ଓହ୍ଲାଇବା ବେଳେ ଏଇପରି ଲାଗୁଥିଲା। ୱାର୍ଡ଼ର୍ ଠିଆ ହୋଇ ନିଜ ପଗଡ଼ି ସଜାଡ଼ିଲା। ପାଗଳଟି ଚିତ୍କାର କରୁଚି। ତିନି ନମ୍ବର ଭଜନ ଶେଷ କରିନାହିଁ। ଜୋତା ଶବ୍ଦ କ୍ରମେ ନିକଟରୁ ନିକଟତର ହେଉଚି–ଆଉରି, ଆଉରି,। ତଳପେଟ ଭିତରଟା ଯେପରି ଖାଲି ହୋଇ ଯାଇଛି, ମନେ ହେଉଛି ପେଟ ଭିତରଟା ବରଫ ପରି ଥଣ୍ଡା। ଥରେ କାର୍‌ନିଭାଲ୍‌ରେ ନାଗରଦୋଳାରେ ଦୋଳି ଖେଳିବା ବେଳେ, ଚକଟା ଯେତେବେଳେ ଉପରୁ ତଳକୁ ଖସୁଥିଲା, ତଳିପେଟଟା ସେତେବେଳେ ଏଇପରି ଲାଗୁଥିଲା। ଜିଭଟା ଶୁଖି ଖସ୍ ଖସ୍ ହେଉଛି, ଯେପରି ତଣ୍ଟି ଭିତରେ ପଶି ଯାଇଛି।

ସରସ୍ୱତୀ! ମା! ଜେଠେଇମା! ନୀଲୁ! ନୀଲୁ, ତୁ ଇଏ କଣ କଲୁ? ଲୁହାର ଗୋଟାଏ horizontal bar ରେ ମୋର ନିଷ୍ପନ୍ଦ ମୃତ ଦେହଟା ଝୁଲୁଛି। ପାଦ ଦୁଇଟା ଶୂନ୍ୟରେ ଝୁଲୁଛି, ଉତ୍ତର, ଉତ୍ତର–ପୂର୍ବ, ପୂର୍ବ, ପୂର୍ବ–ଦକ୍ଷିଣ, ଦକ୍ଷିଣ!

ଇଏ କଣ? ବୁଟ୍ ଶବ୍ଦ ମୋ ଆଡ଼େ ଆଉ ଆଗେଇ ଆସୁ ନାଇଁ। ମୋର ୱାର୍ଡ଼ର୍‌ଟି ଉଙ୍କି ମାରି ୱାର୍ଡ଼ର୍ ଅଗଣା ଆଡ଼କୁ ଚାହିଁ ଦେଖୁଚି। ହଠାତ୍ ତିନି ନମ୍ବରର ଭଜନ ବନ୍ଦ ହୋଇଗଲା। ମୋର ଶ୍ରବଣ ଶକ୍ତି, ମାନସିକ ଉଦ୍‌ବେଗ ମଧ୍ୟରେ ହଠାତ୍ ଲୁପ୍ତ ହୋଇଗଲା, ନାଁ କଣ? ନାଁ! ଘୁଙ୍ଗା କଥା କହିବା ପାଇଁ ଚେଷ୍ଟା କରିବା ପରି ଗୋଟାଏ ଶବ୍ଦ କାନରେ ପଡ଼ିଲା। ଅତି କରୁଣ, କାତର, ଅସହାସ ଆର୍ତ୍ତନାଦ!

କିଏ? କାହିଁକି?

ଏଇଥର! ଏଇଥର–କେବଳ ଅଗଣିତ ଜୋତାର ଶବ୍ଦ ମାତ୍ର ନୁହେଁ–ଗୌରୀଶଙ୍କର ଚୂଡ଼ା ଭାଙ୍ଗି ପଡୁଚି–କାଳବୈଶାଖୀର ଉଗ୍ର ପ୍ରମତ୍ତମା–ପୁଣି ଆର୍ତ୍ତନାଦ–ଘନଘଟା– ଛନ୍ନ ଆକାଶର ଛାତିଫଟା ଆର୍ତ୍ତନାଦ–''ହୁସିଆର୍ ସେ''–ପାଦତଳେ ମାଟି ଫାଟି ଚୌଚିର୍ ହୋଇଗଲା। ତଳକୁ–ତଳକୁ–ଅତଳ ଅନ୍ଧକାର ଭିତରକୁ।

''ସାମ୍‌ନେ ବାର୍ତ୍ତ (ଆଲୁଅ) ଦେଖାଓ''–ଗୁଡ଼ିଏ ବିକୃତାଙ୍ଗ ପ୍ରେତଚ୍ଛାୟା କ୍ରମେ ଛୋଟ ହୋଇ ଲଣ୍ଠନ ଆଲୁଅରେ ମିଳାଇ ଗଲେ। ଲଣ୍ଠନ୍ ଗୁଡ଼ା ଏଇ ଆଡ଼କୁ ଆଗେଇ ଆସୁଛି। –ସହସ୍ର ଗ୍ରହ ଉପଗ୍ରହ କକ୍ଷଚ୍ୟୁତ ହୋଇ ମୋ ଆଡ଼େ ଛୁଟି ଆସୁଛି। ପ୍ରତି ଲୋମକୂପରେ ପ୍ରତ୍ୟାଶିତ ଆତଙ୍କର ସ୍ପନ୍ଦନ–ପ୍ରତି ସ୍ନାୟୁରେ ଟାଇଫୁନ୍‌ର ବିକ୍ଷୋଭ–ଆଖିଡ଼ୋଳା ଭିତର ଦେଇ ଏଇ ଆଲୋଡ଼ନ ଫୁଟି ବାହାରି ପଡ଼ିବାକୁ ଚାହେଁ। –ତୁମୁଳ ବାତ୍ୟାବିକ୍ଷୋଭ ଭିତରେ ଆଉ ବୋଧହୁଏ ଠିଆ ହୋଇ ହେବ ନାହିଁ। ...ଦୃଢ଼ ମୁଷ୍ଟିରେ ଗରାଦର ବାଡ଼ା ଚାପି ଧରିଲି।

# ଅପର ଡ଼ିଭିଜନ୍ ୱାର୍ଡ୍

## (ବାବା)

''ରାଷ୍ଟ୍ର ଗଗନ କୀ ଦିବ୍ୟ ଜିୟୋତୀ ରାଷ୍ଟ୍ରୀୟ ପତାକା ନମୋ ନମୋ'' ...ସଞ୍ଜ ପହରର କୀର୍ତ୍ତନ ଓ ଗାନ ଶେଷ ହେଲା। ୱାର୍ଡ଼ର ଦରଜା ବନ୍ଦ କରୁ କରୁ ମନକୁ ମନ ବିଡ଼ିବିଡ଼ି ହୋଇ ବକି ଚାଲିଛି। ଶ୍ରୋତା ଆଉ ଜଣେ ୱାର୍ଡ଼ର୍ – ପାଖରେ ଠିଆ ହୋଇଚି।

ଜଣେ ବାବୁ ଏଠି ତ, ଆଉ ଜଣେ ବାବୁ ସେଠି। ଜଣକୁ ଡାକି ଭିତରେ ପୁରାଇଲା ବେଳକୁ ଆଉ ଜଣେ ଚାଲି ଯାଉଛନ୍ତି ପଦାକୁ। କିଏ ପାଇଖାନରେ ତ କିଏ ବସିଛନ୍ତି ପୂଜାରେ, କେହି କହିଲେଣି, ଏକ ମିନିଟ୍ ସିପାହିଜୀ, କେହି କହୁଛନ୍ତି ତାସର ଏଇ ବାଜିଟା ଶେଷ ହୋଇଯାଉ ସିପାହି ସାହେବ। ଫୁଦନ୍‌ବାବୁଙ୍କ ପଦଚାରଣ ତ ଶେଷ ହୁଏ ନାହିଁ; ଦେଖୁଚନ୍ତି ଦରଜା ବନ୍ଦ କରିବା ପାଇଁ ଠିଆ ହୋଇଚି; ତଥାପି ଭିତରକୁ ଯିବାର ନାଁ ନାହିଁ। ହଜମ୍ କରିବା ପାଇଁ ଯଦି ଏତେ ପଦଚାରଣ ଦରକାର; ତା'ହେଲେ ଆଉ ଟିକିଏ କମ୍ ଖାଇଲେ ତ ହୁଅନ୍ତା। ଘରେ କଣ ଖା'ନ୍ତି ଜାଣିଚି। ଏଠି 'ଅପର୍ ଡିଭିଜନ୍' ପାଇଚନ୍ତି ବୋଲି, ପେଟରେ କଣ ''ହାଓ୍ୱା ପାଣି'' ପାଇଁ ବି ଟିକିଏ ଜାଗା ରଖିବେ ନାଇଁ ?

ମେହେର୍ ଚାନ୍ଦଜୀ କେବଳ ''ରାଷ୍ଟ୍ରଗଗନ୍‌କି'' ଗୀତଟିର ସୁର ଜାଣନ୍ତି। ଆମେ ତାଙ୍କ ସହିତ ସୁର ମିଳାଉ ମାତ୍ର। ଏଠାରେ ଏଇ ଗୀତର ନାମ 'ପ୍ରାର୍‌ଥାନା' (ପ୍ରାର୍ଥନା)। ପ୍ରାର୍ଥନା ପୂର୍ବରୁ ଲଣ୍ଠନ ଗୁଡ଼ାକୁ ମିଞ୍ଜି ମିଞ୍ଜି କରି ଦିଆଯାଏ। ପ୍ରତ୍ୟହ ମେହେରଚାନ୍ଦଜୀ ଗୀତଟିର ଗୋଟିଏ ଲାଇନ୍ ଭୁଲିଯାନ୍ତି। ସେଇ ସମୟରେ ଲଣ୍ଠନର ବତୀ ତେଜି ଦେଇ ପକେଟ୍‌ରୁ ବାହାର କରନ୍ତି ''ଆଶ୍ରମ ଭଜନାବଳୀ।'' ଏତେ ଦିନ ହେଲା ସେଇ ଗୀତଟି ଗାଇ ଆସୁଛନ୍ତି। ଖଲାସ୍ ପାଇବାର ବେଳ ହୋଇ ଆସିଲା; କିନ୍ତୁ ଏବେ ସୁଦ୍ଧା ଏ ଲାଇନ୍‌ଟି ମୁଖସ୍ଥ ହେଲା ନାହିଁ। ଅନ୍ୟ କେତେବଙ୍କର ମୁଖସ୍ଥ ହୋଇଗଲାଣି; କିନ୍ତୁ ସମସ୍ତେ ଚାହାନ୍ତି ମଜା ଦେଖିବା ପାଇଁ। ମେହେର ଚାନ୍ଦଜୀ ବୁଝନ୍ତି ନାଇଁ ଯେ, ଗୀତ ଭିତରେ ଯେତେବେଳେ ଏଇ ଲାଇନ୍‌ଟି ପଡ଼େ, ଆଉ ସେ ଲଣ୍ଠନ ଆଡ଼କୁ ହାତ ବଢ଼ାନ୍ତି, ସେତେବେଳେ ଘର ଭିତରେ ଚାରିଆଡୁ ଉଠେ ଗୋଟାଏ ଚାପାହସର ଆଓ୍ୱାଜ। ମୁଁ ସେଦିନ ଲାଇନ୍‌ଟା ମନେ ପକାଇଦେବା ପାଇଁ ଚେଷ୍ଟା କରିଥିଲି। କିନ୍ତୁ ଦେଖିଲି, ସିଏ ତାହା ପସନ୍ଦ କରନ୍ତି ନାହିଁ। ସେଥିପାଇଁ ମୁଁ ନୀରବ ରହେ। ...

ଏ ବ୍ୟବସ୍ଥା ବେଶ୍ ହୋଇଛି। ଲକ୍ – ଅପ୍ ସଙ୍ଗେ ସଙ୍ଗେ ପ୍ରାର୍ଥନା ଓ ଭଜନ ଶେଷ ହୋଇଯାଏ। ଆଗେ ଦରଜା ବନ୍ଦ ହେବା ପରେ 'ପ୍ରାର୍ଥନା' ଆରମ୍ଭ ହେଉଥିଲା। କିନ୍ତୁ ଦେଖିଲି ସୋସିଆଲିଷ୍ଟ୍ ପାର୍ଟିର ଅନେକଙ୍କୁ ଏହା ଭଲ ଲାଗୁ ନାହିଁ। ଏଇ ଦଳର ବରହମ୍ ଦେଓ ଓ ଶିଉପୂଜନ୍ ଦିନେ ପ୍ରାର୍ଥନା ବେଳେ, ବେସୁରା କଣ୍ଠରେ ଅନ୍ୟ ଗୋଟାଏ ଗୀତ ଆରମ୍ଭ କରିଦେଲେ। ଆମ ପ୍ରାର୍ଥନା ଗୀତରେ ସେମାନେ ଯେ ଏତେ ଦୂର ବିରକ୍ତ ହୁଅନ୍ତି, ସେ କଥା ଆଗରୁ ବୁଝି ପାରି ନଥିଲି। ସେଇ ଦିନ ଠାରୁ କୁହାବୋଲା କରି ପ୍ରାର୍ଥନା ସମୟ ଆଗେଇ ଦେଇଚି; ଯେପରି ଲକ୍ – ପୂର୍ବରୁ ପ୍ରାର୍ଥନା ଶେଷ ହୋଇଯାଏ। ମେହେରଚାନ୍ଦ୍, ସଦାଶିଉ, ଏମାନେ କେହି କିନ୍ତୁ ସେଥିରେ ରାଜି ନୁହନ୍ତି। ସେମାନଙ୍କ ଜିଦ୍ "ଆମେ ନିଉନ ହେବାକୁ ଯିବୁ କାହିଁକି? ସେମାନେ ଯେ ରାତି ବାରଟା ପର୍ଯ୍ୟନ୍ତ ଆମ ମୁହଁରେ ବିଡ଼ି ଧୂଆଁ ଛାଡ଼ନ୍ତି, ଲଛମୀକାନ୍ତର ମାର୍କସ୍‌ବାଦ ଲେକ୍‌ଚର୍ ଜ୍ୱାଳାରେ ଆମମାନଙ୍କର ଯେ ଶୋଇବାର ଉପାୟ ନଥାଏ – ଆମେ କ'ଣ କିଛି କହୁ? ମାଷ୍ଟର ସାହେବ, ଆପଣ ଆମକୁ ଆଉ ଅନୁରୋଧ କରିବେ ନାହିଁ। ସେମାନଙ୍କୁ ଥଣ୍ଡା କରିବା ପାଇଁ ବେଶୀ "ତକ୍‌ଲିଫ୍ ଉଠାଇବା ଦରକାର ପଡ଼ିବ ନାହିଁ।" କେତେ ସେମାନଙ୍କୁ ବୁଝାଏ। "ଯାହା କଲେ ପ୍ରକୃତରେ ସେମାନଙ୍କର ଅସୁବିଧା ହେଉଚି, ଆମେ ସେ କାମ କରିବୁ କାହିଁକି?" ସେମାନେ ପିଲାଲୋକ। ତୁମମାନଙ୍କ ଆଦର୍ଶ, ମହାତ୍ମାଜୀଙ୍କ ପ୍ରଦର୍ଶିତ ପଥ। ତାହା କେତେ ଉଚ୍ଚରେ। ସେଥିରୁ ବିଚ୍ୟୁତ ହେବ କାହିଁକି? ଏଇପରି, କେତେ ବୁଝାଇବା ପରେ, ମନେ ମନେ ସନ୍ତୁଷ୍ଟ ନ ହେଲେ ବି, ମୋ କଥା ସେମାନେ ମାନି ନେଇଛନ୍ତି। ସେଇଦିନୁ ଦରଜା ବନ୍ଦ ହେବା ଆଗରୁ ଆମେ ସନ୍ଧ୍ୟାବେଳର ପ୍ରାର୍ଥନା ଶେଷ କରିଦେଉ। ଏବେ ବି ସେମାନେ ନିହାତି ପିଲା। ସ୍କୁଲ କଲେଜର ଛାତ୍ର। ଭଲିବଲ୍ ଖେଳ ବେଳେ, ସେଦିନ ଦେଖିଲି, କମ୍‌ରେଡ୍ ମାଧୋରାମ୍, କମ୍‌ରେଡ୍ ମୁରଲୀ ମିଶିରର ଛାତି ଉପରେ ମାଡ଼ି ବସି, ତାର ତଣ୍ଟି ଚିପି ଧରିଛି। ଖାଇବା ପିଇବା କଥାରେ ସେମାନେ ଏବେ ବି କିଚେନ୍ ମାନେଜର୍ ସାଙ୍ଗରେ ଝଗଡ଼ା କରନ୍ତି। ଆଜି ଆ ସାଙ୍ଗରେ ତ କଥା ବନ୍ଦ; କାଲି ତା ସାଙ୍ଗରେ ଝଗଡ଼ା, ଏ ସବୁ ନିତିପ୍ରତି ଲାଗି ରହିଚି। ଏଇସବୁ ସାନସାନ ପିଲା! ସେମାନଙ୍କ ଦୋଷଗୁଣର ବିଚାର କରିବାକୁ ଯିବୁ ପୁଣି ଆମେ? ତିନି କାଳ ଯାଇଁ ଶେଷ କାଳରେ ପହଞ୍ଚିଲୁଣି – ଏବେ ସୁଦ୍ଧା ଆମେ ଆମମାନଙ୍କର ମନର ବୃତ୍ତି ଗୁଡ଼ିକୁ ସଂଯତ କରି ପାରି ନାହୁଁ। ଆଉ ଏମାନେ ତ ପିଲା! ସେମାନଙ୍କ ତ୍ରୁଟି, ବିଚ୍ୟୁତି ଯଦି ଧରିବୁ; ତାହେଲେ ଆମର ଏ ପଥରେ ଆସିବା ବୃଥା। ବିଲୁ ବି ତ ଏଇ ଦଳର ମେମ୍ବର ସେମାନେ ପ୍ରତ୍ୟେକେ ମୋ ପାଖରେ ଯେ ବିଲୁ ପରି।...

ଆଜି ରାତିଟା ଅନ୍ତତଃ ଯଦି ବିଲୁ ପାଖରେ ରହି ପାରିଥାନ୍ତି! ନା, ତା' ସାଙ୍ଗରେ ନ ରହିବା ଭଲ ହୋଇଚି। ରହିଥିଲେ, ଦୁଇଜଣ ଯାକ ହୁଏତ ଭାଙ୍ଗି ପଡ଼ନ୍ତୁ। – ତେବେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କଥାବାର୍ତ୍ତା ତ ହୋଇ ପାରିଥାନ୍ତା। ...ହୁଏତ କହିବା ପାଇଁ କଥା ଖୋଜି ପାଇ ନଥାନ୍ତି। ପିଲାଏ ତ କୌଣସି ଦିନ ମୋ ସାଙ୍ଗରେ ନିହାତି କାମର କଥା ଛଡ଼ା ଅନ୍ୟ କଥାବାର୍ତ୍ତା ହୁଅନ୍ତି ନାହିଁ, ମୋ ଆଗକୁ ଆସିଲେ ଇ ବିଲୁ ସଙ୍କୁଚିତ ହୋଇଯାଏ – କିପରି ଗୋଟାଏ ଅସ୍ୱଚ୍ଛନ୍ଦ ଭାବ। ତାର ସପ୍ରତିଭତା ଚିରକାଳ ଟିକିଏ କମ୍। ସବୁଦିନେ ସେ ଲାଜକୁଳା ପ୍ରକୃତିର। କିନ୍ତୁ ସେ ଦୋଷ ତ ମୋର ଶିକ୍ଷା ଦେବାର। ସେମାନଙ୍କୁ

ଯେମିତି ଭାବରେ ଗଢ଼ିଛି, ସେମାନେ ସେଇପରି ହୋଇଛନ୍ତି। ଯଦି ଶିକ୍ଷାରେ ତ୍ରୁଟିଟୀ ପାଇଁ ତାର ସ୍ୱଭାବ ଏପରି ହେବ; ତାହେଲେ ନୀଳୁର ସ୍ୱଭାବ ସେପରି ହେଲାନାହିଁ କାହିଁକି ? ହୋଇପାରେ ନୀଳୁକୁ ଇଂରାଜୀ କଲେଜରେ ପଢ଼ାଇ ନାହିଁ ବୋଲି, ତା ଭିତରେ ଗୋଟାଏ inferiority complex (ଗୌଣ ମନୋବୃତ୍ତି) ରହିଯାଇଛି। ବିଲୁ କଲେଜରେ ପଢ଼ିଛି, ସେଥିପାଇଁ ବୋଧହୁଏ ତା ମନରେ ସେପରି ଭାବ ନାହିଁ। ବାହାରେ ପିଲାମାନଙ୍କର ବ୍ୟବହାରର କଥା କହି ପାରିବି ନାହିଁ। ତେବେ ମୁଁ ଆଉ ସେମାନଙ୍କ ଭିତରେ ଯେଉଁ ବ୍ୟବଧାନ ଗଢ଼ି ଉଠିଚି, ସେଥିପାଇଁ ଦାୟୀ ମୁଁ। କୌଣସି ଦିନ ସେମାନଙ୍କ ସହିତ ପ୍ରାଣଖୋଲା ଭାବରେ ମିଶି ପାରି ନାହିଁ। କୋଳରେ କାଖରେ ଧରି ଆଦର କରିନାହିଁ। ମୋର ଧାରଣା ଥିଲା, ପିଲାମାନଙ୍କ ସହିତ ବନ୍ଧୁତ୍ୱ ରଖିଲେ ସେମାନଙ୍କୁ ଶାସନ କରିବା କଠିନ ହେବ। ସେମାନଙ୍କ ସହିତ କମ୍ କଥାବାର୍ତ୍ତା କରେ, ତା'ହେଲେ ସେମାନେ ଭୟ ଓ ସଂଭ୍ରମରେ ଚଳିବେ; ସେମାନଙ୍କୁ ଟିକିଏ ମୁହଁଦିଅ ମୁଣ୍ଡ ଉପରକୁ ଚଢ଼ିବେ। ଏ ବିଷୟରେ ମୁଁ କୌଣସି ଦିନ କାହାକଥା ମାନିନାହିଁ। ଥିଲି ସ୍କୁଲ ମାଷ୍ଟର। ଅଭ୍ୟାସ ଦୋଷରେ ହେଉ ବା ଅନ୍ୟ କୌଣସି କାରଣରୁ ହେଉ, ପୃଥିବୀର ସବୁ କ୍ଷେତ୍ରରେ ଏହି ଶିକ୍ଷକ ଛାତ୍ରର ସମ୍ବନ୍ଧ ଲକ୍ଷ୍ୟ କରିଛି। ସେଥିପାଇଁ ରାଜନୀତି କ୍ଷେତ୍ରରେ ବଡ଼ମାନଙ୍କୁ ଗୁରୁ ବୋଲି ଜ୍ଞାନ କରେ, ଛୋଟ ମାନଙ୍କୁ ଦେଖେ ଶିଷ୍ୟ ଦୃଷ୍ଟିରେ, କୌଣସି ଦିନ କମ୍‌ରେଡ୍ ହୋଇ ପାରିଲି ନାହିଁ। ... ଜିତେନ୍ ଛୋଟ ଥିବା ବେଳେ ଚବିଶ ଘଣ୍ଟା ଯଦୁଦା'ଙ୍କ ସଙ୍ଗେ ସଙ୍ଗେ ଥାଏ। ବାପାଙ୍କ ମୋଟା ଠେଙ୍ଗାଟା ହାତରେ ଧରି, ମୋଟା ସୋଟା ଗୋଲ୍‌ଗାଲ୍ ପିଲାଟି ତାଙ୍କ ଆଗେ ଆଗେ ଚାଲେ – ହାଟ, ବଜାର, ଭୋଜି, ସର୍ବତ୍ର। ସେତେବେଳେ ବାପା ସାଙ୍ଗରେ, ପ୍ରତ୍ୟହ ସେ ଆମର ସାନ୍ଧ୍ୟ ଆଡ୍‌ଡ଼ାକୁ ଆସି ମୋ ସହିତ ବେଶ୍ ବନ୍ଧୁତ୍ୱ ଜମେଇ ପାରିଥିଲା। ପର ପିଲାକୁ ଆଦର କରିବା, ତା' ପାଇଁ ଲଜେନ୍‌ସ୍ ଆଣି ପକେଟ୍‌ରେ ରଖିବା, ଅଥଚ୍ ନିଜ ପିଲାଙ୍କ ପ୍ରତି ଉଦାସୀନତା – ବିଲୁବୋଉ ଆଖିକୁ ସୁଦ୍ଧା ଅସଙ୍ଗତ ଲାଗିଥିଲା। ବିଲୁବୋଉ କମ୍ କଥାବାର୍ତ୍ତା କରନ୍ତି। ତାଙ୍କୁ ଦିନେ ମୁହଁ ଫିଟାଇ କହିବା ଶୁଣିଥିଲି, ''ନିଜ ପିଲାଙ୍କ ଆଡ଼େ ଟିକିଏ ବି ଚାହିଁ ଦେଖ।'' ଟିକିଏ ହସି ଦେଇ, ସେଦିନ ମନର ଅସ୍ୱସ୍ତି ଦୂର କରି ପାରିଥିଲି। କିନ୍ତୁ ସେଇଦିନୁ ଯଦି ପିଲାମାନଙ୍କ ସହିତ ଟିକିଏ ମିଳାମିଶା କରି ପାରିଥାନ୍ତି, ତା'ହେଲେ ଆଜି ସେମାନଙ୍କ ସହିତ ସମ୍ବନ୍ଧ ହୋଇଥାନ୍ତା। ସ୍ନେହ ଓ ଭଲ ପାଇବାର, ଭୟ ଓ ସଙ୍କୋଚ୍‌ର ନୁହେଁ। ନୀଳୁ ବିଲୁଙ୍କର ଅଳି ଅର୍ଦ୍ଦୋଳି, ଯାହା କିଛି, ସବୁ ମା' ପାଖରେ। ଏକା ସାଙ୍ଗରେ ବସି ଖାଇବା, ମନକଥା ଫିଟାଇ କହିବା, ଏବେ ବି ସବୁ ସେଇ ଏକା ରକମର ରହିଛି ... ପିଲା ମାନଙ୍କ ନାଁ ମନେ ପକାଇବାକୁ ଗଲେ, ମନକୁ ଆସନ୍ତି ନୀଳୁ, ବିଲୁ। ଆଗେ ନୀଳୁ, ତାପରେ ବିଲୁ। ବିଲୁ ବୟସରେ ବଡ଼; କିନ୍ତୁ ପ୍ରଥମେ ତା ନାଁଟା ମନେ ପଡ଼େ ନାଇଁ। କାର୍ତ୍ତିକ, ଗଣେଶ ପରି। ସବୁ କାର୍ଯ୍ୟାରମ୍ଭରେ ଗଣେଶଙ୍କ ନାମ। କିନ୍ତୁ ପ୍ରଥମେ ଗଣେଶ କହି; ତା'ପରେ କାର୍ତ୍ତିକ କୁହତ – ଗଣେଶ କାର୍ତ୍ତିକ ନାଁ ଦୁଇଟିକୁ ଏକ ନିଃଶ୍ୱାସରେ ଉଚ୍ଚାରଣ କରି ହେବ ନାଇଁ।

ସଦାଶିବ ଆସିଛି ମୋର ମଶାରୀ ପକାଇ ଦେବା ପାଇଁ। ହୁଏତ ଭାବୁଚି, ମୁଁ ଜପ୍‌ରେ ବସିବି। ମଶା ଦାଉରେ ମଶାରୀ ବାହାରେ କଣ ପୂଜାରେ ବସିବାର ଜୁ' ଅଛି ? ମଶା କାମୁଡ଼ାରେ ମନର ଏକାଗ୍ରତା ନଷ୍ଟ ହୋଇଯାଏ। ରାତିରେ ଶୋଇବା ବେଳେ ମଶାରୀ

ବ୍ୟବହାର କରେ ନାହିଁ। ଶରୀରକୁ ଯେତେ ପୀଡ଼ା ଦିଅ, ସେତେ ସହିବ। ମଶାକାମୁଡ଼ା ସହ୍ୟ କରିବା ଭଳି ସହିଷ୍ଣୁତା ଯଦି ନଥାଏ, ଏତେ ଟିକିଏ କୃଚ୍ଛ୍ରସାଧନ କରିବାର କ୍ଷମତା ଯଦି ନରହେ, ତାହେଲେ ଆମ ହାତରେ ବଡ଼ କାମ ସବୁ ହେବ କିପରି ? ମଶାରୀ ନଥିଲେ, ବିଲୁର ତ କେତେ ଅସୁବିଧା ହୁଏ। ହାତ ଠାରି ତାକୁ ମଶାରୀ ପକାଇବା ପାଇଁ ମନା କରେ। ଆଜି ସୋମବାର। ମୋର ମୌନବ୍ରତ। ମହାତ୍ମାଜୀ କରନ୍ତି ଆତ୍ମଶୁଦ୍ଧି ପାଇଁ। ସେ ଯେଉଁ କାର୍ଯ୍ୟକୁ ଭଲ ଭାବି କରନ୍ତି, ଆମେ କଣ ତା' କରିପାରିବୁ ନାଇଁ ? ଅନ୍ୟ ସୋମବାର ମାନଙ୍କରେ ସନ୍ଧ୍ୟା ପୂର୍ବରୁ ପୂଜା ଶେଷ କରି ଉପାସ ଭାଙ୍ଗେ। ଖାଇସାରିବା ପରେ ଯାଇଁ କଥା କହେ। ତାହା ଲକ୍ଷ୍ୟ କରି ସଦାଶିବ ମୋ ପାଇଁ ପୂଜାର ଆୟୋଜନ କରିବାକୁ ଆସିଛି। ଭାରି ଭଲ ପିଲା ସଦାଶିବ–ପ୍ରକୃତରେ ସଦାଶିବ। କେତେ ବର୍ଷ ପୂର୍ବେ ସେ 'ବସ୍ତ୍ର–ସ୍ୱାବଲମ୍ବୀ' ପ୍ରତିଜ୍ଞା–ପତ୍ରରେ ନାଁ ଲେଖାଇବା ଦିନଠୁ ପ୍ରତିଦିନ ଅନ୍ତତଃ ହଜାରେ ଗଜ ସୂତା କାଟେ।

ଅପର୍ ଡ଼ିଭିଜନ୍ ୱାର୍ଡ଼। ପ୍ରକାଣ୍ଡ ବଡ ହଲ୍। ଏବେ ଚଉତ୍ରିଶ ଜଣ ବନ୍ଦୀ ଏଇ ଘରେ ରହନ୍ତି। ଉଣେଇଶ ଜଣ ନିରାପତ୍ତା ବନ୍ଦୀ ଓ ପନ୍ଦର ଜଣ ରାଜବନ୍ଦୀ–ଯେଉଁ ମାନଙ୍କ ବିରୁଦ୍ଧରେ ସଜା ହୋଇଛି, କିମ୍ବା ଯେଉଁ ମାନଙ୍କ ବିରୁଦ୍ଧରେ ମୋକଦ୍ଦମା ଚାଲିଛି। ମଝି ଦରଜା ପାଖରେ ମୋ ସିଟ୍। ଘର ମଝିରେ ଯାତାୟତ ପାଇଁ ବାଟ, ଆଉ ତ ଦୁଇ ପାଖରେ କାନ୍ଥକୁ ଲଗାଇ ଧାଡ଼ି ଧାଡ଼ି ତକ୍ତପୋଷ। ସେଥିରେ ନେଟ୍ ମଶାରୀ ଟଙ୍ଗା ହୋଇଛି। ପ୍ରତି ତକ୍ତପୋଷ ପାଖରେ ଗୋଟିଏ ଟେବୁଲ୍, ଖଣ୍ଡେ ଚେଆର୍ ଓ ଗୋଟିଏ କରି ବହି–ସେଲ୍ଫ୍। ଅଧିକାଂଶ ତକ୍ତପୋଷ ପାଖରେ, ଚଟାଣ ଉପରେ କମ୍ବଳ ବିଛାଯାଇଛି। ଟେବୁଲ୍ ଉପରେ ଖଣ୍ଡେ ଖଣ୍ଡେ ଟେବୁଲ୍–କ୍ଲଥ୍। ତା ଉପରେ ଅଛି ଅଇନା, ଚିରୁଣୀ, ଆଉରି କେତେ କଣ। ଲୁହା ଗରାଦ, ତାଲା ଚାବି ଆଉ ୱାର୍ଡ଼ର୍‌ର ଚେହେରା ଆଖିରେ ପଡୁ ନଥିଲେ, ଏହାକୁ ଜେଲ୍ ବୋଲି ବୁଝିବାର ଉପାୟ ନାହିଁ। ଠିକ୍ ଯେପରି କଲେଜ ପିଲା ମାନଙ୍କର ହଷ୍ଟେଲ୍। ଗଲା ଅଗଷ୍ଟ ମାସରେ ହରିହର୍‌ଜୀ ଆଉ ତାର ଥୁର୍‌ଥୁରିଆ ବୁଢ଼ା ବାପକୁ ଅଣ୍ଡର୍‌ଟ୍ରାଏଲ୍ ରୂପେ ଧରି ଆଣିଥିଲେ। ଏଠାକୁ ଆସି ହରିହରର ବାପାଙ୍କ ମନେ ହେଲା, ପୁଲିସ୍ ତାଙ୍କୁ ଗୋଟାଏ ଧର୍ମଶାଳାକୁ ଧରି ଆଣିଚି। ପରେ ବୋଧହୁଏ ଜେଲ୍‌କୁ ନେବେ। ବୃଦ୍ଧ ପୁଣି ତାଙ୍କ ପୁଅକୁ ପଚାରିଲେ, ତାଙ୍କୁ ଜେଲ୍‌କୁ ନିଆଯିବ, କେତେବେଳେ ? ଦିନ କେତେଟା ପରେ ପୁଲିସ୍ ତାଙ୍କୁ ଛାଡ଼ି ଦେଇଥିଲା। 1921–22 ସାଲ୍‌ରେ ଜେଲ୍‌କୁ ଆସିବା ବେଳେ, ସେତେବେଳକାର ଜେଲ୍ ଆଉ ଏବର ଜେଲ୍ ଭିତରେ ଆକାଶ ପାତାଳ ତଫାତ୍ ! ସେଥର ଥିଲି ସାଧାରଣ କୟଦୀ ଶ୍ରେଣୀରେ। ପ୍ରତ୍ୟେକ କୟଦୀକୁ ଶାରୀରିକ ଶ୍ରମ କରିବା ପାଇଁ ପଡ଼େ। 'ସରକାର ସଲାମ୍'ନେଇ କେତେ ଗୋଳମାଳ ! କୁଆଡ଼େ ହୁଏତ ଯାଉଚ୍, ମେଟ୍‌ର କର୍କଶସ୍ୱର ଗର୍ଜି ଉଠିଲା ''ଜୋଡ଼ା। ଫାଇଲ୍ ବାନ୍ହକର୍ ଚଲୋ।'' ପାଇଖାନା ଯିବା ବେଳେ ସୁଦ୍ଧା ଏଇପରି ଲାଇନ୍ ବାନ୍ଧି ଯିବା ପାଇଁ ପଡ଼ିବ। ସମସ୍ତଙ୍କ ହାତରେ ଗୋଟିଏ ଗୋଟିଏ ଲୁହାପାତ୍ର। ଖାଇବା ପିଇବା ଠାରୁ ଆରମ୍ଭ କରି ସବୁ କାର୍ଯ୍ୟ ଏଇଥିରେ ଚଳାଇବା ପାଇଁ ପଡ଼ିବ। କଥା କଥାକେ ''ଦଣ୍ଡା ବେଡ଼ୀ'' (Bar fetters) ''ଖାଡ଼ା ହାତକଡ଼ା'' ''ଚଟି ପେନ୍‌ହାଓ'' ପ୍ରଭୃତି ସଜା। ସେ ବେଳ ସହିତ ଆଜିର ଅବସ୍ଥାର କଣ ତୁଳନା ହୋଇପାରେ ? ଖାଇବା, ପିଇବା, ଚାଲିବା, ବୁଲିବା,

ରହିବା ସମ୍ବନ୍ଧରେ ପ୍ରତ୍ୟେକଟି ଅଧିକାର ପାଇବାର ନେପଥ୍ୟରେ ଅଛି କେତେ ତ୍ୟାଗ, କେତେ ବିସ୍ମୃତ ଶହୀଦ୍ଙ୍କ ଆତ୍ମ – ବିଲୋପନ ! କିନ୍ତୁ ଆଶ୍ଚର୍ଯ୍ୟ ଏମାନଙ୍କର ବିଚାର । ମୋତେ ଦେଲେ ଅପର ଡିଭିଜନ୍, ମୋ ସ୍ତ୍ରୀକୁ ଦେଲେ ଅପର ଡ଼ିଭିଜନ୍ । ଆଉ ଆମ ପୁଅ ବିଲୁକୁ ଡ଼ିଭିଜନ୍ ଥ୍ରୀ ।...

ଚରଖାଟି ନେଇ ବସାଯାଉ । ମନର ଉଦ୍‌ବେଗ ଶାନ୍ତ କରିବା ପାଇଁ ଏପରି ପଦାର୍ଥ ଆଉ ନାଇଁ । କିଛି ବେଳ ଏକାଗ୍ର ମନରେ ଚରଖା କାଟିଲେ ଦେଖିଛି, ସ୍ନାୟୁର ଉତ୍ତେଜନା ଧୀରେ ଧୀରେ ଶାନ୍ତ ହୋଇ ଆସେ । ଡାକ୍ତରମାନେ ହସନ୍ତୁ, ସୋସିଆଲିଷ୍ଟ୍ ମାନେ ଅବିଶ୍ୱାସ କରନ୍ତୁ, ମୋର କିନ୍ତୁ ଏଥିରେ ପ୍ରତ୍ୟକ୍ଷ ଅଭିଜ୍ଞତା ଅଛି । ଚରଖାଟି ନେଇ ବସିଲି । ସଦାଶିବ କଣ ଯେପରି କହିବାକୁ ଚାହୁଁଛି । ନହେଲେ ମୋ ପାଖରେ ଠିଆ ହୋଇ ରହନ୍ତା କାହିଁକି ? ଆଖି ଠାରି ପଚାରିଲି – "କଣ ?" ସେ ସଙ୍କୁଚିତ କଣ୍ଠରେ କହିଲା, "ଆମେ କେତେଜଣ ବର୍ତ୍ତମାନ ସୂତ୍ରଯଜ୍ଞରେ ବସିବା ପାଇଁ ଚାହୁଁ । ଆପଣଙ୍କର ସେଥିରେ କିଛି ଅସୁବିଧା ହେବ ନାହିଁତ ?" ଇଙ୍ଗିତରେ ତାକୁ କହିଲି, "ବସ" । ଆଜିକାଲିକା ପିଲାଏ ଏତେ ଫର୍ମାଲିଟି ମାନି ଚଳନ୍ତି । ଆଶ୍ଚର୍ଯ୍ୟ । ଏକାସାଙ୍ଗରେ ବସି ଚରଖା କାଟିବ । ଇଏ ତ ଆନନ୍ଦର କଥା । ତୁମ ମାନଙ୍କର ଏପରି ସୁମତି ହେଲେ ତ ବଞ୍ଚିଯାନ୍ତି । ଏଥିରେ ମୋର ମତାମତ ପଚାରିବାର କଣ ଅଛି ? ମୁଁ ତ ଏହାଇ ଚାହେଁ । ଭୟ କେବଳ ତୁମ ମାନଙ୍କୁ ନେଇ । ସୋସିଆଲିଷ୍ଟ୍ ମାନେ ତୁମମାନଙ୍କୁ ସେମାନଙ୍କ ଦଳର ସଭ୍ୟ କରିବା ପାଇଁ, ଓର ଉଣ୍ଡି ବସିଛନ୍ତି । ତୁମ ମାନଙ୍କ ଉପରେ ଭରସା ଆଉ ପାଉଛି କୋଉଠୁ ? ... ସନ୍ଧ୍ୟାବେଳ ପରି ସକାଳେ ମଧ ପ୍ରାର୍ଥନା କରିବାର ପ୍ରସ୍ତାବ ଏମାନଙ୍କ ପାଖରେ ଉଠାଇ, ସେଦିନ କି ଅପ୍ରସ୍ତୁତ ହେବାକୁ ନହେଲା ! ମେହେର୍‌ଚନ୍ଦ୍ ସୁଦ୍ଧା ମୋ ପଛରେ ଥଟ୍ଟା କରି କହିବା ଶୁଣିଲି, ଦଶଅଣା ଖୋରାକିରେ, ଦୁଇଓଳି ପ୍ରାର୍ଥନା କରିବା ଆଉ ପୋଷାଏ ନାହିଁ । ରେସନ୍ ପାଞ୍ଚସୁକା କରି ଦିଅନ୍ତୁ, ତା'ପରେ ଦୁଇଓଳି 'ସାମୂହିକ' ପ୍ରାର୍ଥନା କରିବୁ । ଜିନିଷ ପତ୍ରର ଦରଦାମ ବଢ଼ିବା ହେତୁ ଶୁଣୁଛି, ଖୋରାକି ଶୀଘ୍ର ବାରଅଣା କରି ହେବ ! ବଢ଼ିବାର ପର ସପ୍ତାହରେ, ଦିନେ କରି ସକାଳେ ପ୍ରାର୍ଥନା କରିପାରୁ । ଏଇଆ କହି ହୋ ହୋ ହୋଇ ହସି ଉଠେ । ପ୍ରାର୍ଥନା କରିବାକୁ ଇଚ୍ଛା ନାହିଁ ତ ନକର ; କିନ୍ତୁ ପ୍ରାର୍ଥନା କଥାରେ ଥଟ୍ଟା ତାମ୍‌ସା କରିବାକୁ ଲଜ୍ୟା ଲଗେ ନାହିଁ ? ତୁମେ ସବୁଯଦି ଏପରି କଥାରେ ଥଟ୍ଟା ତାମ୍‌ସା କରିବ, ତାହେଲେ ସୋସିଆଲିଷ୍ଟ୍ ମାନେ ମନକୁ ଯାହା ଆସେ ତା କହିଲେ ଦୋଷ ଦେବି କିପରି ?

ସଦାଶିବ ଓ ମେହେରଚ୍ନ୍ଦ୍ କମ୍ବଳ ଧାଡ଼ି କରି ବିଛାଇ ଦେଲେ । ଠିକ୍ ୱାର୍ଡ଼୍ ମଝିରେ ମୋ ସିଟ୍ । ବାଁ ପାଖରେ ଥାନ୍ତି ମହାତ୍ମାଜୀଙ୍କ ଭକ୍ତଗୋଷ୍ଠୀ ଅର୍ଥାତ୍ କଂଗ୍ରେସର ମେଜରିଟୀ ପନ୍ଥୀମାନେ । ଏମାନଙ୍କ ଛଡ଼ା ସେପାଖରେ ଅଛନ୍ତି ଜଣେ କମ୍ୟୁନିଷ୍ଟ, ଜଣେ କିସାନ୍‌ସଭା ସଦସ୍ୟ । ଏ ଦୁଇ ଜଣଙ୍କୁ ଗଭର୍ଣ୍ଣମେଣ୍ଟ୍ କାହିଁକି ଅଟକ ରଖିଛନ୍ତି, ତା ଏମାନେ ସୁଦ୍ଧା ଜାଣନ୍ତି ନାଇଁ । ଏମାନେ ତ ଆନ୍ତରିକ ଭାବରେ, ବର୍ତ୍ତମାନ ଯୁଦ୍ଧରେ ଗଭର୍ଣ୍ଣମେଣ୍ଟ୍ ସହିତ ସହଯୋଗିତା କରିବାକୁ ଚାହାନ୍ତି । ଡାହାଣ ପଟେ ଥାନ୍ତି ସୋସିଆଲିଷ୍ଟ୍ ଆଉ ଫର୍‌ୱାର୍ଡ଼ ବ୍ଲକ୍‌ର ସଦସ୍ୟ ମାନେ । ମଝିରେ

ମୁଁ, ବଫର୍ (buffer)। ଜେଲ୍ ପକ୍ଷରୁ ଅବଶ୍ୟ ସିଟ୍‌ର ଏପରି ବନ୍ଦୋବସ୍ତ ହୋଇନାହିଁ। ନିଜ ସୁବିଧା ଅନୁସାରେ, ଅନେକ ଦିନ ଧରି ସିଟ୍ ଅଦଳବଦଳ ଫଳରେ, ଏଇ ପ୍ରକାର ସ୍ଥିତି ହୋଇଛି। ମୋ ସିଟ୍ ପାଖରେ ୱାର୍ଡ଼ ଭିତରକୁ ପଶିବା ପାଇଁ ଦରଜା। ସାମ୍ନାରେ ଅନେକ ଗୁଡ଼ାଏ ଖାଲି ଜାଗା। ଏ ସ୍ଥାନଟି ଏକେ ତ ରାସ୍ତା ଉପରେ ପଡ଼େ; ସେଥିରେ ପୁଣି ଠିକ୍ ଏହାର ମୁଣ୍ଡ ଉପରକୁ ପାରା ମାନଙ୍କର ବସା। ସେଥିପାଇଁ ଏଠାରେ କୌଣସି ସିଟ୍ ନାହିଁ। ଏଇଠି କମ୍ବଳ ବିଛାଇ, ସମସ୍ତେ ଚରଖା ଧରି ବସିଲେ, ରାମଚନ୍ଦ୍ର, କିଷଣଦେଓ, ହରିହର, ରାମ୍‌ଦେନୀ, ସଦାଶିବ, ରାମଶରଣ, ଭୂଷଣପ୍ରସାଦ, ରାମଲୋଚନ୍, ମେହେର୍‌ଚନ୍ଦ। ଅଧିକାଂଶଙ୍କ ନାଁ ଆରମ୍ଭରେ 'ରାମ'। ରାମ୍‌ଦେନୀ ଛଡ଼ା ଆଉ ସମସ୍ତଙ୍କ ଆଗରେ ଯାର୍‌ବେଡ଼ା 'ଚକ୍ର'। ରାମ୍‌ଦେନୀ ଜେଲ୍‌କୁ ଆସି ଚରଖା କାଟିବା ଶିଖିଛି, ରେମିସନ୍ ଲୋଭରେ। ଥାନା ରେଡ୍ ଆଉ ଖାସ୍‌ମାହାଲ୍ କଚେରୀ ପୋଡ଼ି ଏ ଦୁଇ ଅପରାଧରେ ବିଚାରାକୁ ବାରବର୍ଷ ସଜା ହୋଇଛି। ଜେଲ୍ କର୍ତ୍ତୃପକ୍ଷ ତାକୁ ଦେଇଛନ୍ତି ଚରଖା କାଟିବା କାମ। ସେଥିପାଇଁ ତା ସାମ୍ନାରେ ଚରଖାଟି, ଜେଲ୍‌ରୁ ଯୋଗାଇ ଦିଆ ଯାଇଥିବା ପ୍ରକାଣ୍ଡ "ବିହାର – ଚରଖା"। ଦି'ଜଣ ଲୋକଙ୍କ ଜାଗା ମାଡ଼ି ବସିଛି। ରାମ୍‌ଦେନୀ ଯେଉଁଦିନ ପ୍ରଥମେ ସୁପରିଟେଣ୍ଡେଣ୍ଟଙ୍କୁ କହିଲା, ସେ ଜେଲ୍ କାମ କରିବା ପାଇଁ ରାଜି, ତାକୁ କାମ ଦିଆଯାଉ, ସେ ଦିନ ସମସ୍ତେ ତାକୁ ଏକଘରିଆ କରିବା କଥା ଉଠାଇଥିଲେ। ରାଜବନ୍ଦୀ ପୁଣି କାମ କରିବ କଣ ? କିଛି ଦିନ ହେଲା ଦେଖୁଛି, ସମସ୍ତେ ପୁଣି ତା ସହିତ କଥାବାର୍ତ୍ତା ଆରମ୍ଭ କଲେଣି। ସେମାନେ ଚରଖା ଆଣି ବସିବା ମାତ୍ରେ, ଡାହାଣ ପଟର ଗୋଟାଏ ସିଟ୍‌ରୁ ଚରଖା ଶବ୍ଦର ନକଲ କରି, ଜଣେ ମୁହଁରେ ଶବ୍ଦ କରିବା ଆରମ୍ଭ କରିଦେଲା – ଆଉ ଦୁଇ, ତିନି ଜଣ ହସି ଉଠିଲେ। ସୁଖଲାଲ୍ ନ ହେଲେ ଆଉ କିଏ ଏମିତି କରିବ ? ନାଁ, ସୁଖଲାଲ୍ ନୁହେଁ, କମ୍‌ରେଡ୍ ସୁଖ୍‌ଲାଲ୍। ଆଃ – ମନେ ସୁଦ୍ଧା ରହେ ନାଇଁ। ବେଶ୍ କ୍ୟାରିକେଚର୍ କରିପାରେ ପିଲାଟି।

ଏତେ ଗୁଡ଼ାଏ ଲୋକ ସୂତା କାଟିବା ପାଇଁ ଦୁଇଟା ଲଣ୍ଠନ୍‌ରେ କଣ ଆଲୁଅ ହେଉଛି ? କିନ୍ତୁ ଆଉ ଲଣ୍ଠନ୍ ମିଳିବ କେଉଁଠୁ ? ଯୁଦ୍ଧ ପାଇଁ କିରୋସିନ୍ ତେଲର ପରିମାଣ କମାଇ ଦିଆ ଯାଇଛି। ମୁଣ୍ଡପିଛା ତେଲ ମିଳେ ବୋଧହୁଏ ପା' ଛଟାକି। ସେଥିପାଇଁ କେତେଜଣ ଏକାଠି ମିଶି ଗୋଟିଏ ଲଣ୍ଠନ୍ ଜଳାନ୍ତି। ୱାର୍ଡ଼ ବାହାରେ ଇଲେକ୍‌ଟ୍ରିକ୍ ଆଲୁଅ ଜଳୁଛି। ୱାର୍ଡ଼ ଭିତରେ ବି କେତୋଟି ଆଲୁଅର ବ୍ୟବସ୍ଥା କରିଦେଲେ କି କ୍ଷତିଟା ହୁଅନ୍ତା ? ଗଭର୍ଣ୍ଣମେଣ୍ଟ କଣ ଭାବେ, ବୁଝିପାରୁ ନାହିଁ। ସେମାନଙ୍କର ଭୟ, ଇଲେକ୍‌ଟ୍ରିକ୍ ଆଲୁଅ ଦେଲେ, କୟଦୀ ମାନଙ୍କର ଆତ୍ମହତ୍ୟା କରିବା ପାଇଁ ସୁବିଧା ହେବ। ସମସ୍ତେ ଯେମିତି ଆତ୍ମହତ୍ୟା କରିବା ପାଇଁ ଉଦ୍‌ଗ୍ରୀବ ହୋଇ ରହିଚ୍ଛନ୍ତି। ସେଥିପାଇଁ ଜେଲ୍ ହତାରେ ଯେତେ ପୁରୁଣା କୂଅ ଥିଲା, ସବୁଗୁଡ଼ି ଉପରେ ବେଶ୍ ମଜବୁତ୍ କରି କାଠତକ୍ତା ପକାଇ ଦିଆ ଯାଇଛି। ନଜୀର୍‌ର ଅଭାବ ନାହିଁ। କେବେ କେଉଁ ଆସାମୀ କୂଅ ଭିତରକୁ ଡେଇଁ ପଡ଼ିଥିଲା। ଏଇ ତ ସେଦିନ କେତେ ଜଣଙ୍କର ବାସିଲାରୀ ଡିସେଣ୍ଟ୍ରୀ ହେବା ପରେ, ମୁଁ ଡାକ୍ତରଙ୍କୁ କହିଲି, ଆମ ୱାର୍ଡ଼କୁ ଗୋଟାଏ ବୋତଲ ଇଲେକ୍‌ଟ୍ରୋଲିକ୍ କ୍ଲୋରିନ୍ ଦେଲେ, ପିଇବା ପାଣିରେ ସମସ୍ତେ ଯେପରି ତାର୍ ନିୟମିତ ବ୍ୟବହାର କରି ପାରନ୍ତି, ସେ ବ୍ୟବସ୍ଥା ମୁଁ କରନ୍ତି। ଡାକ୍ତରବାବୁ ହାତଯୋଡ଼ି

ମୋତେ କହିଲେ, ''ମାଫ୍ କରିବେ ଆଜ୍ଞା, ଏପରି ଅନୁରୋଧ କରିବେ ନାହିଁ। ପେନ୍‌ସନ୍ ନେବା ପାଇଁ ଆଉ ମାତ୍ର ତିନିବର୍ଷ ବାକି ଅଛି।ଇ ଆରି ଭିତରେ ଦୁଇଥର ଡିପାର୍ଟ୍‌ମେଣ୍ଟାଲ୍ ଆକସନ୍ ହୋଇଗଲାଣି। ଥରେ ଜଣେ ଗୋଟାଏ ଶିଶି ମାଲିସ୍ ଔଷଧ ଖାଇଥିଲା, ଆଉ ଜଣେ ଫିନାଇଲ୍। ମୋତେ ଏକସ୍‌ପ୍ଲାନେସନ୍ ମଗାଗଲା, ଏତେ ଫିନାଇଲ୍ ଜଣେ କୟଦୀ ପାଇଲା କିପରି ? 'ସାଫାଇୟା' (ମେହେନ୍ତର) କୟଦୀ ପାଖରୁ ଯେମିତି, କେହି ଚେଷ୍ଟା କଲେ ଫିନାଇଲ୍ ପାଇବ ନାହିଁ! ଏ ଡିପାର୍ଟ୍‌ମେଣ୍ଟ୍‌ର ଆଉ କଣ କିଛି ମା'ବାପ ଅଛି ଆଜ୍ଞା ?''

ଏକ ସଙ୍ଗରେ ଅନେକ ଗୁଡ଼ିଏ ଚରଖାର ନାନା ପ୍ରକାର ଶବ୍ଦ ଶୁଣିବା ପାଇଁ ଭଲ ଲାଗେ। ଅନେକ ଉଚ୍ଚରେ ଯେପରି ଏରୋପ୍ଲେନ୍ ଉଡ଼ିଯାଉଛି। ମନେ ପକାଇ ଦିଏ, ସୁନାର ଭାରତ ଗଢ଼ିବା ପଥରେ ମୁଁ ଏକଲା ପଥୁକୀ ନୁହେଁ। ଇଏତ କେବଳ ଏତେ ଗଜ, ଏତେ ହାତ ସୁତା କାଟିବା ମାତ୍ର ନୁହେଁ। ଏହା ରାମରାଜ୍ୟ ଫେରାଇ ଆଣିବାର ଏକମାତ୍ର ଅସ୍ତ୍ର। ରାମରାଜ୍ୟ ହେବ, ପ୍ରେମର ରାଜ୍ୟ, ଲୋକମାନେ ହିଂସାଦ୍ୱେଷ ଭୁଲିଯିବେ। ସୁଖରେ ଖାଅ, ପିଅ, ରୁହ, କାହାର କୌଣସି ଅଭାବ ନାହିଁ। ପ୍ରତ୍ୟେକର ଗୁହାଳରେ ଗୋରୁ, ଖଳାରେ ଧାନ! ଯେତେ ଗଜ ସୁତା କାଟିବ, ସେତେ ଲକ୍ଷ୍ୟ ନିକଟରେ ପହଞ୍ଚିବ। ଜଣେ ଆଉ ଜଣକୁ ସାହାଯ୍ୟ କରୁଛି, ଧନୀ ଦରିଦ୍ରକୁ ନିଜର ବିତ୍ତ ବିତରଣ କରି ଦେଉଛି। ଗାଁ ଗୁଡ଼ିକ ନିଜ ପ୍ରୟୋଜନ ମେଣ୍ଟାଇବା ପାଇଁ ଆଉ ବାହାରକୁ ଚାହିଁବସି ନାହାନ୍ତି। ଦରିଦ୍ରର ଶୋଷଣର ପଥ ବନ୍ଦ। କେହି ତ କାହାରି ମୁଖାପେକ୍ଷୀ ନୁହନ୍ତି, ଶୋଷଣ ଚାଲିବ କିପରି ? ...''ସୂତ୍ରଯଜ୍ଞ'' ମନେ ପକାଇ ଦିଏ ଯେ, ମୋରି ପରି ତାହେଲେ ଅନେକେ ମଧ ଚିନ୍ତା କରୁଛନ୍ତି। ଦଳ ଦଳ ହୋଇ ରାଜନୈତିକ କର୍ମୀ ଆମ ଠାରୁ ଭିନ୍ନ ମତ ପୋଷଣ କରି, ଦଳ ଛାଡ଼ି ଚାଲି ଯାଉଛନ୍ତି। ବୁଝ ନ ବୁଝ, ମାନ ନ ମାନ, ସୋସିଆଲିଷ୍ଟ୍ ହେବା ତ ଗୋଟାଏ ଫେସନ୍ ହୋଇ ଗଲାଣି। ନୀଳୁ ବିଲୁଙ୍କ କଥା ଧର ନାଁ! ଏଇତ 1930–32ରେ କେତେ ଚରଖା କଟା, କେତେ ରକମର କଥା! ଏପରି ଭାବରେ ସେମାନେ ଗଢ଼ା ହୋଇଥିଲେ ଯେ, କୌଣସି ଦିନ ଏଇ ଉଚ୍ଚ ଆଦର୍ଶରୁ ସେମାନେ ବିଚ୍ୟୁତ ହେବେ ବୋଲି ମୁଁ ଆଶଙ୍କା କରି ନଥିଲି। ଯେଉଁମାନେ ବର୍ତ୍ତମାନ ସୁଦ୍ଧା ମୋର ମତାବଲମ୍ବୀ ସେମାନେ ଚାଲିଗଲେ ହୁଏତ ମୋ ମନରେ ସନ୍ଦେହ ହୁଅନ୍ତା। ମୁଁ ଠିକ୍ ରାସ୍ତାରେ ଚାଲିଛି ତ ? ନିଜ ଦେଶର, ବେଦ, ପୁରାଣ, ମୁନି, ଋଷି, ଇତିହାସ, ସବୁ ଗଲା – ସମସ୍ତଙ୍କ ନଜର ଇଷ୍ଟ ଉପରେ। ଆରେ ଇଷ୍ଟ୍ କଣ ନିଜ ଦେଶ ଠାରୁ ସୁଦ୍ଧା ଉଚ୍ଚରେ ? ଦେଶ ବିଦେଶର ଇତିହାସ କଥା ଆମେ ବି ପଢ଼ିଥିଲୁ। ମାର୍ଜନୀ, ଗାରିବାଲ୍‌ଡ଼ୀ, ୱାସିଂଟନ୍, କୋସୁଥ୍‌ଙ୍କ ଅମର କାହାଣୀ, ଆମର ବି ରୋମାଞ୍ଚ ଆଣୁଥିଲା। ସେମାନଙ୍କ କୀର୍ତ୍ତିର ପ୍ରେରଣା ତ ଆମକୁ ଛାତ୍ରାବସ୍ଥାରେ ଅନୁପ୍ରାଣିତ କରିଥିଲା। କିନ୍ତୁ ତା ବୋଲି ଶିବାଜୀଙ୍କ ଗୌରବଗାଥା ଆମେ ଭୁଲିଯାଇନାହୁଁ। ବିବେକାନନ୍ଦଙ୍କ ବାଣୀ ଛାଡ଼ି, ମାର୍କସ୍‌ଙ୍କ ବୁଲିର ଫାନ୍ଦରେ ଆମେ ପଡ଼ିନାହୁଁ। ମହାତ୍ମାଜୀଙ୍କ ଅପେକ୍ଷା ଷ୍ଟାଲିନ୍‌ଙ୍କୁ ବଡ଼ ବୋଲି ମନେ କରି ପାରିନାହୁଁ। ବିଦେଶୀ ମନିଷୀ ମାନଙ୍କର ଲେଖା ପଢ଼ିବ ନାହିଁ କାହିଁକି ? ପଢ଼। ଆମେ କଣ ବେନ୍‌ଥାମ୍, ସ୍ପେନ୍‌ସର୍, ମିଲ୍ ପଢ଼ି ନାହୁଁ ? ତା' ବୋଲି କ'ଣ ନିଜ କଥା ପୁରାପୁରି ଭୁଲିଯିବା ପାଇଁ ପଢ଼ିବ ? ବିଲୁ ପ୍ରଥମେ କଂଗ୍ରେସ ସୋସିଆଲିଷ୍ଟ୍ ଦଳରେ ଯୋଗ ଦେବା ବେଳେ, ତାକୁ ଯଦି ବୁଝାଇବା

ପାଇଁ ଚେଷ୍ଟା କରିଥାନ୍ତି, ତା'ହେଲେ ଆଜି ହୁଏତ ତା'ର ଏପରି ଅବସ୍ଥା ହୋଇ ନଥାନ୍ତା। ଆଉ ବିଲୁକୁ ଶାସନ କରି ପାରିଥିଲେ, ନୀଲୁ ମଧ୍ୟ ହାତଛଡ଼ା ହୋଇ ନଥାନ୍ତା। କାନ ଟାଣିଲେ ମୁଣ୍ଡ ଆସେ। ଭାଇ ଯାହା କରିବ, ତା'ର ସବୁ କଥା ନକଲ କରିବା ତ ଦରକାର ! ଭଲ ହେଉ ବା ମନ୍ଦ ହେଉ। ସେ ବୁଝୁ ବା ନ ବୁଝୁ। କିନ୍ତୁ ଦେହବଳରେ କ'ଣ କାହା ଉପରେ କୌଣସି ମତ ଚପାଇ ଦିଆ ଯାଇ ପାରେ ? ବିଶେଷତଃ ଯେଉଁମାନେ ନିର୍ବୋଧ ନୁହନ୍ତି ? ବିଲୁ ବୟସ୍କ ପିଲା – ତାକୁ ଯିବି ଶାସନ କରିବା ପାଇଁ ? ମୋର ମତ ସହିତ ତାର ମତ ମିଳୁ ନାହିଁ ବୋଲି ? ତାର ବ୍ୟକ୍ତିତ୍ୱକୁ ଯଦି ଏତିକି ସମ୍ମାନ ପ୍ରଦର୍ଶନ କରି ନପାରେ; ତା'ହେଲେ ଆମ ମାନଙ୍କ ସଂଯମ ଆଉ ସହନଶୀଳତା ରହିଲା କେଉଁଠି ? ସେମାନେ ତ ନିର୍ବୋଧ ନୁହନ୍ତି। ମୁଁ ଯେଉଁ ସବୁ କଥା ସେମାନଙ୍କୁ ବୁଝାଇ କହନ୍ତି, ସେମାନେ ନିଜେ କଣ ସେସବୁ ବିଚାର କରି ନାହାନ୍ତି ? ସେମାନେ ତ ମୋରି ମତାମତର ପ୍ରଭାବରେ, ରାଜନୈତିକ ଆଶ୍ରମରେ ମଣିଷ ହୋଇଚନ୍ତି। ସେମାନେ ଏ ବିଷୟରେ ସୂକ୍ଷ୍ମାତିସୂକ୍ଷ୍ମ ଭେଦାଭେଦ ବୁଝନ୍ତି। ଏ ସବୁ ବିଷୟରେ, କେତେ ଆଲୋଚନା, କେତେ ସ୍ଥାନରେ, କେତେ ସମୟରେ ଶୁଣିଛନ୍ତି। ବିଲୁ ବି ତ ତିନି ମାସ ସାବରମତୀ ଆଶ୍ରମରେ ରହିଥିଲା। ମହାତ୍ମାଜୀଙ୍କ ପାଦଧୂଳି ନେବାର ସୌଭାଗ୍ୟ ନୀଲୁ ବିଲୁ ଦୁଇଜଣଙ୍କର ହୋଇଛି। ସେମାନେ ମହାତ୍ମାଜୀଙ୍କ ସହିତ ପୂର୍ଣ୍ଣିଆ ଆଶ୍ରମରେ ଫଟୋ ମଧ୍ୟ ଉଠାଇଥିଲେ। ମହାତ୍ମାଙ୍କ ସଂସ୍ପର୍ଶରେ ଆସି ସୁଦ୍ଧା, ତାଙ୍କର ପ୍ରଭାବ ଯେଉଁମାନଙ୍କ ଉପରେ ପଡ଼ିଲା ନାହିଁ– ସେଠି ମୋର କିଛି କରିବାକୁ ଯିବା ଧୃଷ୍ଟତା। ମୁଁ ବି ଯେତେବେଳେ ସରକାରୀ ସ୍କୁଲର ହେଡ଼ମାଷ୍ଟର ଚାକିରୀ ଛାଡ଼ି ରାଜନୀତି କ୍ଷେତ୍ରକୁ ଆସିଥିଲି; ସେତେବେଳେ କଣ କାହା କଥା ଶୁଣିଥିଲି ? ସମସ୍ତେ ସେତେବେଳେ ମୋତେ ବାରଣ କରିଥିଲେ। ଡି.ପି.ଆଇ ମୋର ପଦତ୍ୟାଗ ପତ୍ର ଚାପିରଖି, ମୋତେ ଡକାଇ ପଠାଇଥିଲେ, ବୁଝାଇବା ପାଇଁ। ପାଟ୍ନାରେ ସେଇ ସାହେବଙ୍କ କୋଠିକୁ ଦେଖା କରିବା ପାଇଁ ଯାଇଛି, ଦେଖିଲି ସାହେବଙ୍କ ବେହେରା ପର୍ଯ୍ୟନ୍ତ ମୋ ଚାକିରୀ ଛାଡ଼ିବା କଥା ଶୁଣିଛି। ଅନ୍ୟ ବେଳେ, ସାକ୍ଷାତ୍ ପାଇଁ କାର୍ଡ୍ ଦେବା ବେଳେ, ବେହେରାକୁ କେତେ ଖୋସାମତ୍ କରିବାକୁ ପଡ଼େ। ବକ୍‌ସିସ୍ ଦେବାକୁ ହୁଏ। ଅର୍‌ଦଲିଟି ଦେଖାଏ କିପରି ଗୋଟାଏ ନିର୍ଲିପ୍ତ ଭାବ। ଆଉ ବର୍ତ୍ତମାନ ଦେଖିଲି, ପାଦ ତଳେ ମୁଣ୍ଡଲଗାଇ ସେ ପାଦଧୂଳି ନେଲା। ''ମାଷ୍ଟର୍ ସାହାବ୍ ଶୁନ୍‌ତେ ହେଁ ସ୍ୱରାଜ୍ ମେ ଶରୀକ୍ ହୁଏ ହୈ।'' (କଂଗ୍ରେସରେ ଯୋଗ ଦେବାକୁ 'ସ୍ୱରାଜ ମେ ଶରୀକ୍' ହେବା କହନ୍ତି।) ମୋତେ ପ୍ରଣାମ କରିବାକୁ ଯାଇଁ ମୋର କୌଣସି କାମରେ ଆସି ପାରୁଛି ବୋଲି କୃତଜ୍ଞତାରେ ସେ ଗଦ୍‌ଗଦ ହୋଇ ଉଠିଲା। ସେ କହିଲା, ''ମୋର ବି ଇଚ୍ଛା, 'ସ୍ୱରାଜ୍ୟ'–ମେ ଯାଇଁ ଆପଣ ମାନଙ୍କର କିଛି ସେବା କରେ। ପିଲାଟା ଆସନ୍ତା ବର୍ଷ 'ମିଡ଼ିଲ୍ ଇମ୍‌ତିହାନ୍' ଦେବ, ତା'ପରେ ସାହାବଙ୍କୁ କହି ତାକୁ ଗୋଟାଏ ଚାକିରୀ କରାଇ ଦେବି। ତା'ପରେ ମୁଁ ବି ମିଶିବି, 'ସ୍ୱରାଜ୍ୟ'ରେ।'' ଡି.ପି.ଆଇଙ୍କ ସୁଦୃଷ୍ଟି ଥିଲା ମୋ ପ୍ରତି। ବି.ଟି ପଢ଼ିବା ବେଳେ, ସେ ଥିଲେ ଆମ କଲେଜ ପ୍ରିନ୍‌ସିପାଲ୍। ସାହେବ ହାତ ଧରି ବସାଇଲେ, ଗୁରୁ ଶିଷ୍ୟଙ୍କ ପରି କଥାବାର୍ତ୍ତା ହେଲା – ଉପରବାଲା ଆଉ ଅଧସ୍ତନ କର୍ମଚାରୀଙ୍କ ଭିତରେ ଯେପରି ହୁଏ, ସେପରି ନୁହେଁ। ବିଦାୟ ନେଇ ଆସିବା ବେଳେ ବି ସାହେବ କହିଲେ, ''ସାନ୍ୟାଲ୍ ଭୁଲ୍ କରୁଚ, ପୁଣି ଥରେ ଭାବି ଦେଖ।'' ସେତେବେଳେ ଉତ୍ତର ଦେଇଥିଲି, ''ଏତେ କାଳ ଭୁଲ୍ କରି ଆସିଲି,

ଆଉ କରିବି ନାହିଁ।'' ...ଆମ ପଡ଼ାର ବୃଦ୍ଧ ମିଉଲ୍ ମହାଶୟ, କାଳୀବାଡ଼ୀ ପଛରେ ଇଟାଭାଟି ପାଖକୁ ଡାକି ନେଇ ଖୁବ୍ ସହାନୁଭୂତିର ସହିତ ବୁଝାଇଲେ, ''କାହିଁକି ଏ ସବୁ କଥାରେ ମାତିଚ? ବାହା ସାହା ହେଇଚ। ସ୍ତ୍ରୀ, ପୁତ୍ର, ପରିବାର ଅଛନ୍ତି। ଆଗପଛ ନ ଭାବି, ଏଇପାରି ଏକାଥରେ ଡେଇଁ ପଡ଼ିବା କଣ ଭଲ? ଭାରତବର୍ଷର ଅନ୍ୟ ସବୁ ଜାଗାରେ ଯଦି ସ୍ୱରାଜ ହୁଏ, ତା'ହେଲେ ପୂର୍ଣ୍ଣିଆ କଣ ସେଥିରୁ ବାଦ୍ ଯିବ? ଏ ଜାଗାଟାକୁ ବାଦ୍ ଦେଇ ତ ଆଉ ସ୍ୱରାଜ ହେବ ନାହିଁ।'' କେତେ ଲୋକ, କେତେ ରକମର ମନ୍ତବ୍ୟ ପ୍ରକାଶ କରିଥିଲେ। ସେତେବେଳେ କାହା କଥାରେ ମୁଁ କଣ କାନ ଦେଇଥିଲି? ଏ ବାଟରେ ଆସିବା ପୂର୍ବରୁ କାହା ସହିତ କଣ ପରାମର୍ଶ କରିଥିଲି? ପଚାରିବା ଭିତରେ ପଚାରିଥିଲି କେବଳ ବିଲୁବୋଉକୁ। ସିଏ ବି ଠିକ୍ ପଚାରିବା ନୁହେଁ। ନିଜ ସଂକଳ୍ପ ସ୍ଥିର କରିବା ପରେ ଏକପ୍ରକାର ଜଣାଇଦେବା। ସେ କଣ ଭାବିଥିଲା, ଜାଣେ ନାହିଁ, କେବଳ ଉତ୍ତର ଦେଇଥିଲା, ''ତୁମେ ଯାହା ଭଲ ବୁଝୁଚ, ସେଇଆ କର। ସ୍ତ୍ରୀ ଲୋକଙ୍କର ପୁଣି ମତାମତ!'' କାହାର ମତାମତ ନେଇ ମୁଁ କେବେ ଚଳି ନାହିଁ। ଯାହା ଭଲ ବୁଝିଚି, ସେଇଆ କରିଚି। ଆଉ ବିଲୁ ମୋ ମତାମତ ନେଇ ଚଳନ୍ତା କାହିଁକି?...

ଗୋଟାଏ ଚରଖାରୁ ଶଗଡ଼ ଅଖ ପରି କେଁ କେଁ ଶବ୍ଦ ହେଉଚି। ଏଇ ଶବ୍ଦର ଅନ୍ତହୀନ ପୁନରାବୃତ୍ତି କାନକୁ ଭାରି କର୍କଶ ଲାଗୁଚି। ସିମେଣ୍ଟ ଚଟାଣ ଉପରେ ଗୋଟାଏ ଧାତୁ ନିର୍ମିତ ବାସନ ଟାଣି ନେଲେ, ସେ ଶବ୍ଦ, ଏଇପରି ଅସହ୍ୟ ମନେ ହୋଇଥାଏ। କଣ୍ଟାଘା ଉପରେ କିଏ ଯେପରି ଶିରୀଷ କାଗଜ ଘଷି ଦେଉଛି। ଜେଲ୍ ଆସିବା ଆଗରୁ ମୋର ଏହି ସ୍ନାୟବିକ ଦୌର୍ବଲ୍ୟ ଲକ୍ଷ୍ୟ କରି ନଥିଲି। ମୋର ସୁସ୍ଥ ସ୍ନାୟୁମଣ୍ଡଳୀ ଅଳ୍ପକର ବିଚଳିତ ହୁଏ ନାହିଁ। ଏହାଇ ଥିଲା ମୋର ଗର୍ବ। ଏଥର ଜେଲ୍‌କୁ ଆସିଲି କଣ ହେଲା? ରାମ୍‌ଦେନୀ ଚରଖାରୁ ନିଶ୍ଚୟ ଏ ଶବ୍ଦ ବାହାରୁଚି। ମୋ ହାତରେ ସୁତାରୁ ଆଖି ଫେରାଇ ରାମ୍‌ଦେନୀ ଚରଖା ଆଡ଼କୁ ଚାହିଁଲି। ରାମ୍‌ଦେନୀ ସାଙ୍ଗରେ ଚାରିଚକ୍ଷୁ ହୋଇଗଲା। ରାମ୍‌ଦେନୀ ଚରଖା ଛାଡ଼ି ଉଠି ପଡ଼ିଲା। ନିଜ ସିଟ୍ ଆଡ଼କୁ ଦୌଡ଼ି ଯାଉଛି। ସମସ୍ତେ ତା' ଆଡ଼କୁ ଚାହୁଁଛନ୍ତି, ବୋଧହୁଏ ଭାବୁଛନ୍ତି ଶିଷ୍ଟାଚାରର ଏ କି ଅଭାବ! ''ସାମୂହିକ ଚରଖା'' ଭିତରୁ ଉଠି ଯିବା! ରାମ୍‌ଦେନୀ ଫେରିଲା, ହାତରେ ତାର ଗୋଟାଏ ତେଲ ଶିଶି। ଚରଖାରେ ବୁନ୍ଦା ବୁନ୍ଦା କରି ତେଲ ପକାଇଲା। ତା'ପରେ ପୁଣି ସୁତାକଟା ଆରମ୍ଭ କଲା। ଲକ୍ଷ୍ୟ କରୁଚି, ସମସ୍ତେ ସୁତା କାଟୁଛନ୍ତି ଆଉ ମଝିରେ ମଝିରେ ମୋ ଆଡ଼େ ଚାହିଁ କଣ ଦେଖୁଚନ୍ତି। ସେମାନେ କଣ ମୋ ଚେହେରାରେ କିଛି ପରିବର୍ତ୍ତନ ଲକ୍ଷ୍ୟ କରୁଛନ୍ତି? ଆଜିକୁ କିଛି ଦିନ ହେଲା ମୋ ମନ ଭିତରେ ଯେଉଁ ଦ୍ୱନ୍ଦ - ଯେଉଁ ସଂଶୟ ଚାଲିଛି, ତାହାର ଚିହ୍ନ ଏମାନେ ମୋ ଆଖିରେ ମୁହଁରେ କଣ ଲକ୍ଷ୍ୟ କରି ପାରିଛନ୍ତି? ମନର ଭାବ କଣ ଚାପି ରଖି ହୁଏ? ଗରମରେ ଉପାସ କରି ମୁଁ ହୁଏତ ଶୁଖିଲା ଶୁଖିଲା ଦିଶୁଛି। ନାଁ, କେତେ ଦିନ ହେଲା ପ୍ରତି ସୋମବାର ତ ଉପାସ କରି ଆସୁଚି। ଉପାସରେ କିଛି ହୋଇନାହିଁ। ଏମାନଙ୍କ ସମବେଦନାର ମୂଲ୍ୟ କଣ ଦେଇ ପାରିବି? ମୁଁ ଯେଉଁଥିରେ ଅନ୍ତତଃ କିଛି ସମୟ ପାଇଁ ମନର ଅଶାନ୍ତି ଭୁଲିପାରେ ସେଥିପାଇଁ ଏମାନେ ଏକ ସଙ୍ଗରେ ଚରଖା କାଟି ବସିଛନ୍ତି। ସମସ୍ତେ ଚାହାନ୍ତି, ମୋ ବୋଝ ମୁଣ୍ଡାଇ ମୋ ମନକୁ ହାଲୁକା କରିବା ପାଇଁ।

...ମୁଣ୍ଡରେ ବାବୁରୀବାଳ, ଫରସା ରଙ୍ଗ, ଲମ୍ବୁଆଳି ମୁହଁ, ଦେଖିଲେ ଝିଅ ଝିଅ

ପରି ଲଗେ । ଚିବୁକଟି ସରୁ, ଆଖିର ଗଭୀର ଦୃଷ୍ଟି ଭାବପ୍ରବଣ । ମୁଁ ବିଲୁ ଆଡ଼କୁ ଚାହିଁଲେ, ସେ ଆଖି ନୁଆଁଇ ଦିଏ । ... କିନ୍ତୁ ଏଇ ଆଖିରୁ ବଜ୍ରର ବହ୍ନିଶିଖା ବାହାରିବା ମଧ ଦେଖିଚି !

...ମୋ ଚାକିରୀ ଛାଡ଼ିବା କିଛି ଦିନ ଆଗର କଥା । ହାଇସ୍କୁଲ ପାଖରେ "ପ୍ଲାଣ୍ଟରସ୍ – କ୍ଲବ୍" । ଦୁଇ କମ୍ପାଉଣ୍ଡ ଭିତରେ ଗୋଟାଏ ତାର ବାଡ଼ । କ୍ଲବ୍‌ରେ ଗୋଟାଏ ଚାରିଟୀ ମେଳା ନାଁ କଣ ହେଉଚି! ମେମ୍‌ମାନେ ନାନା ପ୍ରକାରର ସୌଖୀନ୍ ଜିନିଷର ଦୋକାନ ଖୋଲିଛନ୍ତି । ନୀଲୁ ଆଉ ବିଲୁ ସେଇ ତାର ବାଡ଼ ଉପରେ ଚଢ଼ି ସାହେବ ମେମ୍‌ଘର ଉତ୍ସବ ଦେଖୁଚନ୍ତି । ନୀଲୁ ସେତେବେଳକୁ ଖୁବ୍ ଛୋଟ, ବିଲୁ ମଝି ତାର ଉପରେ ନୀଲୁକୁ ଠିଆ କରାଇ ଦେଇଚି । ହଠାତ୍ ଦେଖିଲି କାଝା କୋଠୀର ପେରୀନ୍ ସାହେବ ମୋ କ୍ୱାର୍ଟର୍‌ର ଗେଟ୍ ଭିତରେ ଆସି ପଶିଲା । ହାତରେ ଛଡ଼ୀ, ଉଦ୍ଧତ ଦୃଷ୍ଟି । ମୋତେ କହିଲା – 'ଲେଡ଼ୀଜ୍' ଷ୍ଟଲ୍ ଖୋଲିଚନ୍ତି । କମ୍ପାଉଣ୍ଡର ତାର ଉପରେ ଚଢ଼ି ପିଲାମାନେ ଚବିଶ ଘଣ୍ଟା ଆଁ କରି କଣ ଦେଖୁଚନ୍ତି ? 'ଇଉ ସି ହେଡ଼ମାଷ୍ଟର୍' ତୁମେ ଯଦି ଏହାକୁ ବନ୍ଦ କରି ନପାର, ତା'ହେଲେ ଏ ଅସଭ୍ୟତାକୁ କିପରି ବନ୍ଦ କରିବାକୁ ପଡ଼ିବ, ତା ଆମେ ନିଜେ ଦେଖିବୁ । ତାରବାଡ଼ ଉପରେ ନୀଲୁ ଆଡ଼େ ଛଡ଼ି ଦେଖାଇ, – ଯେପରି ଅବଶିଷ୍ଟ ବଳଦୃପ୍ତ ଭଙ୍ଗୀରେ ଆସିଥିଲେ, ସେଇପରି ଭାବରେ ଚାଲିଗଲେ । ମୁଁ ବିଲୁକୁ ଡାକି କହିଲି – ଖବରଦାର ସେ ଆଡ଼େ ଯିବୁ ନାହିଁ । ଯେଉଁ ବିଲୁ ମୋ ଆଡ଼େ ସିଧା ଚାହିଁ ପାରେ ନାଁ, ତା, ଆଖିରେ ସେଦିନ ଦେଖିଥିଲି ସୁପ୍ତ ପୌରୁଷର ବ୍ୟଞ୍ଜନା । ବିଲୁ ମୋ ଆଡ଼େ ଚାହିଁଲା, ଆଖି ଦୁଇଟାକୁ ଝରି ପଡୁଥିଲା ଯେପରି ନିଆଁର ଫୁଲ୍‌କି! "କାହିଁକି, ସେଆଡେ ଗଲେ କଣ ହୋଇଗଲା ?" ମୋ କଥା ଉପରେ ପୁଣି କଥା ? କାନ ଧରି ଟାଣି ଟାଣି ତାକୁ ଘର ଭିତରକୁ ନେଇଗଲି । ତା, ମା, ସେତେବେଳେ ରୋଷେଇଘରେ । "ଦେଖ, ତୁମ ଗୁଣଧର ପୁଅଙ୍କ କିର୍ତ୍ତି ! ସାହେବ ସୁବାଙ୍କ ସାଙ୍ଗରେ ଝଗଡ଼ା କଲେ କଣ ଚାକିରୀ ରହିବ ?" ପରେ ମୋ ଘର ବାରନ୍ଦାରୁ ଶୁଣିଲି, ମା ସହିତ ବିଲୁ ତର୍କ କରୁଚି । "କାହିଁକି ? ଆମ ଜାଗାରୁ ସାହେବ ମେମ୍‌ଙ୍କର ଖେଳ ଦେଖୁଥିଲି, ସେଥିରେ କଣ ହୋଇଗଲା ?" ... ସେ ରାତିରେ ବିଲୁ ଖାଇଲା ନାହିଁ, ରାଗରେ କି ଅଭିମାନରେ ଜାଣେ ନାଁ । ରାତି ଅଧରେ ବିଲୁବୋଉ ମୋତେ ଡାକି ଉଠାଇଲେ । ବିଲୁ ବିଛଣାରେ ନାହିଁ । ଗଲା କୁଆଡ଼େ ? ଖୋଜ୍ ଖୋଜ୍ । ଚାକର ବାକର, ସ୍କୁଲ ଦରୱାନ୍, ମୁଁ ସମସ୍ତେ ଲାଠି ଲଣ୍ଠନ୍ ଧରି ବାହାରି ପଡ଼ିଲୁ । ବିଲୁ ବୋଉ ଭୋ ଭୋ ହୋଇ କାନ୍ଦୁଚି, ଆଉ ମୋତେ ଦୋଷ ଦେଉଚି, ଏଇ ଏତିକି ଟିକିଏ ପିଲା, ମେମ୍‌ମାନଙ୍କର ଖେଳ ଦେଖିଲେ, ମେମ୍‌ମାନଙ୍କର ଅପମାନ ହୋଇଗଲା କୋଉଠି । ଖୋଜି ଖୋଜି ବିଲୁ କୋଉଠି ମିଳିଲା ନାହିଁ । ଶେଷକୁ ବୋର୍ଡ଼ିଙ୍ଗ୍‌ର ଜଣେ ପିଲା ବିଲୁକୁ ଖୋଜି ବାହାର କଲା । – ଦିନ ବେଳା ଯେଉଁଠି ନୀଲୁ ଆଉ ବିଲୁ ମେମ୍ ମାନଙ୍କର ଖେଳ ଦେଖିଥିଲେ, ଠିକ୍ ସେଇଠି ତାରବାଡ଼ ଉପରେ ବିଲୁ ବସିଥିଲା । ମେଳାର ଆଲୁଅ କେତେବେଳୁ ନିଭିଗଲାଣି । ବିଲୁ କିନ୍ତୁ ମୋ ଭର୍ତ୍ସନାର ଅସଂଗତା ପ୍ରମାଣ କରିବା ପାଇଁ, ତା ନିଜର ଅକାଟ୍ୟ ଯୁକ୍ତି ସହିତ, କାର୍ଯ୍ୟର ସଙ୍ଗତି ରଖିବା ପାଇଁ ଏଇ ଅନ୍ଧାର ଶୀତ ରାତିରେ ଏକୁଟିଆ ସେଠି ବସିଥିଲା । ଦେହରେ କଅଁଳ କଦଳୀପତ୍ର ରଙ୍ଗର ଖଣ୍ଡେ ଆଲୁଆନ୍ ଛଡ଼ା ଆଉ କିଛି ନାହିଁ । ଖାଲି ପାଦ । ହାତ ଗୋଡ଼ ବରଫ ପରି ଥଣ୍ଡା ହୋଇ ଗଲାଣି ।

ଜୋର୍ କରି ବିଲୁ ହାତରେ କେହି କିଛି କରାଇନେବା ଅସମ୍ଭବ। ତାକୁ ଠକାଇ, ଖୋସାମଦ୍ କରିବା ତା'ର କୋମଳ ହୃଦୟର ସୁଯୋଗ ନେଇ, ଲୋକେ ତା, ଠାରୁ ଯେ କୌଣସି କାମ ଆଦାୟ କରି ପାରନ୍ତି। କିନ୍ତୁ ଦେହବଳ ଦେଖାଇଲେ, ବିଲୁତାର ପ୍ରତିରୋଧ କରି ଠିଆ ହେବ। ତା'ର ସ୍ୱାଭାବିକ ନମନୀୟତା, ମୁହୂର୍ତ୍ତକ ଭିତରେ କୁଆଡ଼େ ଚାଲିଯିବ। ପିଲାଦିନୁ ତା'ଠି ଏହା ଲକ୍ଷ୍ୟ କରି ଆସୁଚି। ବର୍ଷ କୋଡ଼ିଏ ଆଗର କଥା। ବିଲୁ ବୋଉର ଚିତ୍କାର ଶୁଣି, ଜିଲ୍ଲା କଂଗ୍ରେସ ଅଫିସରୁ ବାହାରି ମୋ ଘର ଆଡ଼େ ଚାଲିଲି। ଶୁଣିଲି ବିଲୁବୋଉ ପାଟି କରି କହୁଚନ୍ତି, ''କହ ଜଲ୍‌ଦି—ଏବେ ବି କହ। ତୁ ନିଶ୍ଚୟ ମୁସଲମାନ୍‌ର ଅଇଁଠା ଖାଇଚୁ। ପୁଣି କହୁଚୁ ନାଁ ?'' ଘର ଭିତରକୁ ଆସି ଦେଖିଲି ବିଲୁବୋଉ ନୀଲୁକୁ ମାରିବା ପାଇଁ ଖଡ଼ିକା ଉଞ୍ଚାଇଛନ୍ତି। ଆରହାତରେ ନଳଭଙ୍ଗା ଚୂନାଗୁର ଗୋଟାଏ ଟିପଟ୍। —ତା ଭିତରେ ସୁଜି ରଖାଯାଏ। ରାଗରେ ଟି'ପଟ୍‌ଟା ତଳେ ରଖିବା ପାଇଁ ଭୁଲି ଯାଇଛନ୍ତି। ପୁରା କଥାଟା ଶୁଣିଲି। ନୀଲୁ ବିଲୁ ମେହମୁଦ୍ ମୁକ୍ତିଆର୍‌ଙ୍କ ବଗିଚାକୁ ଯାଇଥିଲେ କୋଳି ଖାଇବା ପାଇଁ। ମେହମୁଦ୍ ମୁକ୍ତିଆର୍‌ଙ୍କ ଜୋଇଁ ସେଠି ସେମାନଙ୍କୁ ଧରିଲା। ଖଣ୍ଡେ ଖଣ୍ଡେ ପତ୍ରରେ ଛେପ ପକାଇବା ପାଇଁ କହି, ହୁକୁମ୍ ଦେଲା, ତାକୁ ଚାଟି କହିବା ପାଇଁ ଆଉ ଦିନେ ସେମାନେ କୋଳି ଖାଇବାକୁ ଆସିବେ ନାହିଁ। ନୀଲୁ ଭୟରେ ଡରି ଡରି ଛେପ ଚାଟିଲା—ବିଲୁ କିନ୍ତୁ ରାଜି ହେଲା ନାହିଁ। କଣ ସବୁ ଜବାବ ଦେଇଥିଲା। ତା'ପରେ ମେହମୁଦ୍ ମୁକ୍ତିଆର୍‌ଙ୍କ ଜୋଇଁ ସେମାନଙ୍କୁ ଛାଡ଼ି ଦେଇଥିଲା। ଏବେ ମେହମୁଦ୍ ମୁକ୍ତିଆର୍‌ଙ୍କ ଝିଅ ଆସି ବିଲୁବୋଉ ପାଖରେ ନାଲିଶ୍ କରିଛି ଯେ, ବିଲୁ ଆଉ ନୀଲୁ ତାର ସ୍ୱାମୀକୁ ଅପମାନ କରିଛନ୍ତି। ସେଇଥିରୁ ସବୁ କଥା ପଦାରେ ଫିଟିଲା। ବିଲୁବୋଉ ବର୍ତ୍ତମାନ ସୁଦ୍ଧା, ଅସଲ ପ୍ରଶ୍ନ, ଅର୍ଥାତ୍ କୋଳି ଚୋରୀ ଆଉ ଅପମାନ ଦେବା ଉପରକୁ ଆସି ନାହାନ୍ତି। ବର୍ତ୍ତମାନ ତାଙ୍କ ନିକଟରେ ଯେଉଁଟି ମୁଖ୍ୟ ବିଷୟ, ତା'ରି ଉପରେ ଜେରା ଚାଲିଛି—ନୀଲୁ ଯେଉଁ ଛେପ ଢୋକିଚି, ତା ନୀଲୁର ନାଁ ମେହମୁଦ୍ ମୁକ୍ତିଆର୍ ଜୋଇଁର।...

ଚମକି ପଡ଼ିଲି। ହୋ ! ହୋ ! ହୋ ! ସାରା ୱାର୍ଡ଼ଟାକୁ କମ୍ପିତ କରି, ଏତେ ଗୁଡ଼ାଏ ଚରଖାର ଘର୍ଘର ଶବ୍ଦକୁ ବୁଡ଼ାଇ ଦେଇ ହସରୋଳ ଉଠିଲା। ମୋ ଡାହାଣ ପଟକୁ, ଦୁଇଟା ସିଟ୍ ପରେ, ଝରକା ପର୍ଦ୍ଦା ଆଉ ବିଛଣା ଚାଦର ଘେରାଇ ଘର ପରି ଗୋଟାଏ ଜାଗା ତିଆରି କରାଯାଇଛି। ଇଆରି ଭିତରେ ହୁଏ ସୋସିଆଲିଷ୍ଟ ପାର୍ଟିର ''କ୍ୟାପିଟାଲ୍'' କ୍ଲାସ୍। ଫରୱାର୍ଡ଼ବ୍ଲକ୍‌ର ଚାରିଜଣ ସେ କ୍ଲାସ୍‌ରେ ଯୋଗ ଦିଅନ୍ତି ନାହିଁ। ସେମାନେ ଦିନବେଳା ଏକାଠି ବସି, କେତେଗୁଡ଼ିଏ କି ମାର୍କସିଷ୍ଟ ବହି ପଢ଼ନ୍ତି। 'କ୍ୟାପିଟାଲ୍' ପଢୁଚନ୍ତି, ତା ଭିତରେ ଏତେ ହାସ୍ୟରସ ଆସିଲା କୁଆଡୁ ? ଏଇ ଗରମରେ ପୁଣି ଚାରିପଟେ ପର୍ଦ୍ଦା ଝୁଲାଇ ବସିବାର ଦରକାର କଣ ? ଆଜିକାଲିକା ପିଲାଏ, ସମସ୍ତେ ଅଦ୍‌ଭୁତ। ପର୍ଦ୍ଦା ଗୁଡ଼ିକ ଭିତରୁ ରାଶି ରାଶି କୁଣ୍ଡଳୀ ମୋଡ଼ା ଧୂଆଁ ବାହାରୁଛି। ସିଗାରେଟ ଖାଇବାରେ ସୁବିଧା ପାଇଁ, ସେମାନେ ଏପରି ପର୍ଦ୍ଦା ଝୁଲାଇ ନାହାନ୍ତି ତ ? ନା—ସେ ଦିନକାଳ କଣ ଆଉ ଅଛି ? ସିଗାରେଟ୍ ଚୁରୁଟ ଖାଇବା ପାଇଁ, ଏମାନଙ୍କର ଆଉ କୌଣସି ଆଢୁଆଳର ପ୍ରୟୋଜନ ନାହିଁ। ସେମାନଙ୍କ ଦଳର କମ୍‌ରେଡ୍ ବାଣାରସୀ—ବିଲୁ ଅପେକ୍ଷା କେତେ ଛୋଟ, ବିଲୁର ଛାତ୍ର—ମୋ ସହିତ ବିଲୁ ସମ୍ବନ୍ଧରେ ଗପ କରେ—ଓଠର ଗୋଟାଏ କୋଣରେ ଖଣ୍ଡେ

ସିଗାରେଟ୍। ସମସ୍ତେ ପୁଣି ଜେଲ୍–ଅଫିସ୍‌ର ପର୍ସନାଲ୍ ଆକାଉଣ୍ଟରୁ ଟଙ୍କା ଧାର କରନ୍ତି।...

''କିତ୍‌ନେ ଆଦ୍‌ମୀ ହାୟ ଆପ୍‌ଲୋକ୍ ?''

ତା'ହେଲେ ରାତି ଏଗାରଟା ବାଜି ଗଲାଣି। ନୂଆ ୱାର୍ଡ଼ର୍ ଆସି ଗଲାଣି। ପର୍ଦ୍ଦା ଘେର ଭିତରୁ ଜଣେ ୱାର୍ଡ଼ର୍‌କୁ ଲକ୍ଷ୍ୟ କରି କହିଲା, ''ଯାଓ, ଚିଲ୍ଲାଓ ମତ୍।'' ଆଉ ଜଣେ କହିଲା, ''ଏ ୱାର୍ଡ଼ରେ ଆସାମୀ ସାଢ଼େ ସାତଜଣ।'' ୱାର୍ଡ଼ର ରାଗରେ ଗଣଗଣ ହୋଇ ଚାଲିଗଲା। ୱାର୍ଡ଼ର୍‌ର ଆକ୍ଷେପ, ''ପାଉଁରୁଟୀ ଆଉ ମୁର୍ଗୀ ଅଣ୍ଡା ଖାଉଚନ୍ତି–ଏମାନେ ପୁଣି ମହାତ୍ମାଜୀଙ୍କ କାମ କରିବା ପାଇଁ ଆସିଚନ୍ତି ଜେଲ୍‌କୁ ?'' ପର୍ଦ୍ଦା ଭିତରେ ଜଣେ କହି ଉଠିଲା, ''ବୈଦ୍ୟନାଥ, ଶୀଘ୍ର ଉଠ୍। ଦୋତ ରାସ୍କେଲ୍‌ଟା ଉପରେ ମାଠିଆଏ ପାଣି ଢାଳି।''

ସମସ୍ତେ ହୋ–ହୋ ହୋଇ ହସି ଉଠିଲେ। କମ୍‌ରେଡ୍ ବୈଜନାଥ ଗୋଟିଏ ଗ୍ଲାସ୍ ନେଇ ପର୍ଦ୍ଦା ବାହାରକୁ ଆସିଲେ। ରୋଗା, ଶୁଖିଲା, ମିତ୍‌ମିଡ଼ିଆ ଚେହେରା। ପିନ୍ଧିଚି ପାୟଜାମା। ଦେହରେ ପଞ୍ଜାବୀ, ପଞ୍ଜାବୀ କଲାର୍‌ଟା ଉଞ୍ଚା। ସୋଆଲିଷ୍ଟମାନଙ୍କୁ ଦେଖେ ''କପଡ଼ା ଗୋଦାମ୍''ର କୟଦୀ–ଦରଜିକୁ ବିଡ଼ି ଲାଞ୍ଚଦେଇ, ଏଇପରି ଜାମା ତିଆରି କରାଇଛନ୍ତି। ଏତେ ଗରମରେ ବି, ଏମାନେ ଦେହ ପୁଙ୍ଗୁଳା କରିବେ ନାହିଁ। ଏମାନେ ପୁଣି ପୃଥିବୀରେ କୁଆଡ଼େ ସର୍ବହରା ରାଜ୍ୟ ଆଣିବେ !

ଏଗାରଟା ବାଜିଛି। ସମସ୍ତଙ୍କର ଚରଖାକଟା ଶେଷ ହେଲା। ଚରଖା, ତାକୁଡ଼ୀ ସବୁ ଠିକ୍ ଠାକ୍ କରି ସେମାନେ ଉଠିବା ପାଇଁ ପ୍ରସ୍ତୁତ ହେଲେ। ଏକାସାଙ୍ଗରେ ଲଗାତାର୍ ଦୁଇ ଘଣ୍ଟାରୁ ବେଶୀ ଚରଖା କାଟିବା କଣ ସମସ୍ତେ ପାରନ୍ତି ? ବ୍ୟକ୍ତିଗତ ସତ୍ୟାଗ୍ରହ ବେଳେ ହଜାରୀବାଗ୍ ଜେଲ୍‌ରେ ଏକ ସଙ୍ଗରେ ଆଠଘଣ୍ଟା ସୂତା କାଟିବା ପରେ, ମୋର କିଡ୍‌ନୀ ଗୋଳମାଳ ହୋଇଥିଲା। ସେଇଦିନୁ ଏକାରାହାରେ ଆଉ ବେଶୀ ସୂତା କାଟି ପାରେ ନାହିଁ। ହୁଏତ ବେମାରି ହୋଇଥିଲା ଅନ୍ୟ କାରଣରୁ, କିନ୍ତୁ ଜେଲ୍–ଡାକ୍ତର କହିଲେ, ଏତେ ସମୟ ଏକ ଅବସ୍ଥାରେ ବସିବାରୁ କିଡ଼୍‌ନୀ ଗୋଳମାଳ ହେଲା। ଡାକ୍ତରଙ୍କ କଥା ଉପରେ ତ ଆଉ କଥା କହିବା ଚଳେ ନାହିଁ। ସମସ୍ତେ ନିଜ ନିଜ ସିଟ୍‌କୁ ଫେରିଗଲେ। ସଦାଶିବ୍ ଓ ମେହେର୍‌ଚନ୍ଦ୍ ତଥାପି ଠିଆ ହୋଇ ରହିଛନ୍ତି।

ମେହେର୍‌ଚନ୍ଦ୍ କହିଲେ, ''ମାଷ୍ଟର୍ ସାହେବ ଟିକିଏ କିଛି ଖା'ନ୍ତୁ। ଦିନସାରା ଉପାସ କରି ପିତ୍ତ ପଡ଼ିବଣି। ଆପଣଙ୍କ ଖାଇବା ଏଇ ଟେବୁଲ୍ ଉପରେ ରଖି ଦେଇଚି। ରୁଟୀ ଦି'ଖଣ୍ଡ ଖାଇ ନିଅନ୍ତୁ।''

ଖଣ୍ଡେ କାଗଜରେ ଲେଖିଦେଲି, ଏଇ ଗରମରେ ଖାଇବାକୁ ଆଉ ଇଚ୍ଛା ହେଉନାହିଁ।

ମେହେରଚ଼ନ୍ଦ୍ କହିଲେ, ''ଟିକିଏ ଦହି ଆଣି ଦେଉଚି। ମୋ ଘରୁ ଆଜି ଦହି ଆସିଥିଲା। ନିଜ ଘର ଗାଈ ଦୁଧର ଦହି। ତା, ନହେଲେ ଆପଣଙ୍କୁ କହି ନଥାନ୍ତି। ଆପଣ ଗାନ୍ଧି–ସେବା–ସଂଘର ମେମ୍ବର ଥିଲେ। ମଇଁଷୀ ଦୁଧ ଘିଅ ଖା'ନ୍ତି ନାହିଁ; ସେ କଥା କିଏ ନଜାଣେ ? ଦେଖିବି ମେ ଯେତେବେଳେ ମୋ ଘରୁ ଦହି ଆସିଛି, ଆପଣ ଯଦି ତାକୁ ନ'ଖାନ୍ତି, ତାହେଲେ ଭାରି ଦୁଃଖିତ ହେବି।''

ମେହେରଚ଼ନ୍ଦ୍ ଠିଆ ହୋଇଛନ୍ତି ନାଟକୀୟ ଭାଙ୍ଗିରେ–''ମୋର ଏ ଅନୁରୋଧଟା

ଆପଣଙ୍କୁ ରଖିବା ପାଇଁ ପଡ଼ିବ ମାଷ୍ଟର୍ ସାହେବ। ମୋର "ଫାଦର୍" ସାଙ୍ଗରେ ଆଣିଥିଲେ ଏଇ ଦହି ମୁନ୍ନାକ।"... ପୁଣି 'ଫାଦର୍' କହୁଚି। ବିହାରରେ ଯିଏ ବି ଅଛି ଇଂରାଜୀ ଶିଖିଛି; ସେ ମା, ବାପା, ଭଉଣୀ ଏ ଶବ୍ଦ ଗୁଡ଼ାକୁ ନିଜ ଭାଷାରେ କହିବ ନାହିଁ। କାହାଠୁ ଶୁଣିବେ ସିଷ୍ଟର୍‌ର ସାଦି ହେବ। କିଏ ମୁଣ୍ଡ ଲଣ୍ଡା ହୋଇଚି କାରଣ ପଚାରିଲେ କହିବ, ମଦର୍ କି ଡ଼େଥ୍ ହୋଇଗଲା। କଥାବାର୍ତ୍ତାରେ ଏମାନେ ଯେ ବେଶୀ ଇଂରାଜୀ ଶବ୍ଦ ବ୍ୟବହାର କରନ୍ତି ତା' ନୁହେଁ। ତେବେ ବାବୁଜୀ, ମା, ବହନ୍ ଏଇ ଶବ୍ଦ ଗୁଡ଼ିକ ନିଜ ଭାଷାରେ କହିବା ପାଇଁ କିପରି ସଙ୍କୋଚ୍ ବୋଧ କରନ୍ତି।...

"ଫାଦର୍ ବାରବାର କହି ଯାଇଛନ୍ତି ମାଷ୍ଟର୍ ସାହେବ ଯେପରି ଦହି ଖା'ନ୍ତି। ଘଷି ନିଆଁରେ ବସା ଦୁଧର ଫାଷ୍ଟ୍‌କିଲାସ ଦହି।" ଏମିତି ଅନୁରୋଧ କରୁଛନ୍ତ, ନା କହିବାର ଉପାୟ ନାହିଁ। ଟିକିଏ ନ ଖାଇଲେ ଏମାନେ ଦୁଃଖିତ ହେବେ। ଇଙ୍ଗିତରେ ସ୍ୱୀକୃତି ଜଣାଇଲି, ଏପରି ନଛୋଡ଼ବନ୍ଧା ଏମାନେ। ରାଜି ନହେଲେ, ଘଣ୍ଟାଏ ଧରି ଏମାନେ ମୋ କାନ ଝାଇଁ ଝାଇଁ କରିଦେବେ। ସେମାନଙ୍କୁ ମୁଁ ଜାଣିଚିତ ! ମେହେରଚନ୍ଦ୍ ଓ ସଦାଶିବ ଆଖିରେ କଣ ଠରାଠରି ହେଲେ। ଓ ! ସଦାଶିବ ତା' ହେଲେ ମେହେରଚନ୍ଦକୁ ମୋ ପିଛା ଲଗାଇଥିଲା ! ନିଜର ସାହସ ପାଇ ନାହିଁ। ବୋଧହୁଏ ଶିଖେଇ ଦେଇଥିଲା ଯେ, ମୁଁ ରାଜି ନ ହେବା ପର୍ଯ୍ୟନ୍ତ, ସେ ମୋତେ ଛାଡ଼ିବ ନାଇଁ। ମେହେରଚନ୍ଦ୍ ଚରଖା ବାକ୍‌ସଟା ସଜାଡ଼ି ଉଠାଇ ରଖିଲା। ତା'ପରେ କମ୍ବଳ ଗୁଡ଼ାକୁ ଭାଙ୍ଗିଭୁଙ୍ଗି ସେ ଗୋଟାଏ ପାଖରେ ରଖିଲା। ୱାର୍ଡ଼ ଭିତରେ ଯେଉଁଠି ପାଣି ଡ୍ରମ୍ ଥାଏ, ସେଠି ମୋ ଗାମୁଛା ଆଉ ମଗ୍ ରଖି ଆସିଲା। ତା'ପରେ ଖଟ ତଳୁ ଖଡ଼ମ ଯୋଡ଼ାକ କାଢ଼ି ମୋ ଆଗରେ ଥୋଇଲା। ମୋ ନିଜ ପିଲା ମାନଙ୍କଠାରୁ କୌଣସି ଦିନ ଏତେ ସେବା ଆଉ ଯତ୍ନ ପାଇ ନାହିଁ। ଚାକିରୀ ଛାଡ଼ିବା ଆଗରୁ, ଛୁଟି ଦିନମାନଙ୍କରେ, ନୀଲୁ ବିଲୁଙ୍କୁ ଖରାରେ ଖେଳିବା ପାଇଁ ଛାଡ଼ି ନଦେବା ମତଲବ୍‌ରେ, ହୁଏତ ମୁଣ୍ଡରୁ ପାଚିଲା ବାଳ ବାଛିବା ପାଇଁ କହିଥିବି।

ଆଉ 1921 ପର ଠାରୁ କାହାରିଠାରୁ ଇଚ୍ଛା କରି, କୌଣସି ସେବା ଗ୍ରହଣ କରିନାହିଁ। ଏଥିପାଇଁ ବିଲୁବୋଉର କେତେ କାନ୍ଦଣା, କେତେ ଅଭିଯୋଗ। ନୂଆ ଖଡ଼ମ ହଳକ ରାମ୍‌ଚରିତ୍ତରଜୀ ଚାରି ପାଞ୍ଚ ମାସ ପୂର୍ବେ ମୋତେ ପ୍ରେଜେଣ୍ଟ କରିଥିଲେ। ତାଙ୍କୁ "ନା" କହି ପାରି ନଥିଲି। ବେଶ୍ ପସନ୍ଦ ମଧ୍ୟ ହୋଇଥିଲା। ପରେ ଶୁଣିଲି ବିଷ୍ଣୁଦେଓଜୀ ରାମ୍‌ଚରିତ୍ତରଜୀଙ୍କୁ ପଚାରୁଛନ୍ତି "ବେଲ୍‌ଟିଙ୍ଗ୍ କା ଚମ୍‌ଡ଼ା କିତ୍‌ନା ମେ ଜୋଗାଡ଼୍ କିୟା ?" ରାମଚରିତ୍ତରଜୀ ଉତ୍ତର ଦେଲେ, "ଚମ୍‌ଡ଼ା ଚାର୍ ବିଡ଼ି ମେ, ଔର୍ ଲକ୍‌ଡ଼ୀ ଛ ବିଡ଼ିମେ।" ବିଷ୍ଣୁଦେଓଜୀ ବିସ୍ମିତ ହୋଇ କହିଲେ, "ଏତେ ମହର୍ଗ ! ଦଶଖଣ୍ଡ ବିଡ଼ିରେ ତ ଜେଲ୍‌ରେ 'ବିଟି' କମ୍ବଳ ମିଳେ। ଆପଣମାନେ ବଜାର ନଷ୍ଟ କରି ଦେଉଚନ୍ତି।" – ସେଇଆତ ଭାବୁଚି। ଏପରି ଚଉଡ଼ା, ସୁନ୍ଦର, ନୂଆ ଧରଣର ବ୍ୟାଣ୍ଡ – ଜେଲ୍ ଫାକ୍ଟରୀ କମ୍ବଳକଳର ବେଲ୍‌ଟିଙ୍ଗ୍। ଅଭଦ୍ରତା ହେବ ବୋଲି ଖଡ଼ମଯୋଡ଼ ଫେରାଇ ଦେଇ ନଥିଲି। କିନ୍ତୁ ଆଜି ପର୍ଯ୍ୟନ୍ତ ଖଡ଼ମ ହଳକ ବ୍ୟବହାର ମଧ୍ୟ କରି ନାହିଁ। ରଖି ଦେଇଥିଲି ଖଟତଳେ। ସଦାଶିବ ତାକୁ କାଢ଼ି ବାହାର କଲା। ଏପରି ସଂସର୍ଗରେ ପଡ଼ିଛି ଯେ, ନିଜର ନୀତି ଓ ସିଦ୍ଧାନ୍ତ ବଜାୟ ରଖି ଚଳିବା କଠିନ। ଖଡ଼ମ ହଳକ ପୁଣି ଖଟତଳେ ରଖିଦେଲି। ଡ୍ରମ୍ ପାଖକୁ ଉଠିଯାଇଁ ହାତ

ମୁହଁ ଧୋଇଲି। ସଦାଶିବ ହାତକୁ ଗାମୁଛା ଦେଲା। ଡ୍ରମ୍ ପାଖ ସିଟ୍‌ଟା ଦାସ୍‌ଜୀଙ୍କର। ସେ ଘୁଙ୍ଘୁଡ଼ି ମାରୁଛନ୍ତି। ନିଃଶ୍ୱାସ ଯିବା ବେଳେ ମୁହଁ ଭିତର ଦେଇ ପବନ ବାହାରି ଯାଉଛି। ଓଠ ଦୁଇଟା କମ୍ପି ଗୋଟାଏ ଶବ୍ଦ ହେଉଚି ଫର୍—ର—ର୍—ର୍—ର୍—ର୍—। ଘୋଡ଼ା ଘାସ ଖାଇବା ବେଳେ ମଝିରେ ମଝିରେ ଏମିତି ଶବ୍ଦ କରିଥାଏ। ଭଦ୍ରଲୋକ ସନ୍ଧ୍ୟା ହେଲେ ବିଛଣାଧରନ୍ତି—ଆଉ ବିଛଣାକୁ ଯିବା ମାତ୍ରେ ସଙ୍ଗେ ସଙ୍ଗେ ଶୋଇ ପଡ଼ନ୍ତି। ଉଠନ୍ତି ରାତି ଦୁଇଟା ବେଳକୁ। ଏଇ ଗରମରେ ବି ସନ୍ଧ୍ୟା ଆଠଟାରେ ସେ ଶୁଅନ୍ତି କିପରି ? ରାମାୟଣ, ମହାଭାରତର ଇଚ୍ଛାମୃତ୍ୟୁ କଥା ଅଛି। କିନ୍ତୁ ଇଚ୍ଛାନିଦ୍ରା—ଏହା ମଧ୍ୟ କମ୍ ସାଧନାର କଥା ନୁହେଁ! ସନ୍ଧ୍ୟା ପରେ ପ୍ରାର୍ଥନା ହୁଏ, କେତେ ହଇହଲ୍ଲା ହଟ୍ଟଗୋଳ—ସେଥିରେ ତାଙ୍କ ନିଦରେ ତିଳେ ମାତ୍ର ବ୍ୟାଘାତ ହୁଏ ନାହିଁ।

ମୋ ଖଟ ପାଖରେ ମେହେରଚ଼ନ୍ଦ୍ ଦହି ସରବତ୍ ତିଆରି କରୁଥିଲେ। ମୋତେ ପଚାରିଲେ "ଗୁଡ଼ ଦେବି ନାଁ କନ୍ଦ ? ମୋ ପାଖରେ କନ୍ଦ ଟିକିଏ ଅଛି।" ଠାରରେ ତାକୁ ଗୁଡ଼ ଦେବାକୁ କହିଲି। ତାଳେ ସରବତ୍ ତିଆରି ହେଲା। ସଦାଶିବ କମ୍ବଳ ବିଛାଇ ଦେଲା। ଚଟାଣ ଉପରେ ପାଣି ଛିଞ୍ଚି, ତାଳ ଗ୍ଲାସ୍ ରଖିଦେଲା। ମୁଁ ଆଲୁମିନିୟମ୍ ଗ୍ଲାସ୍‌ରେ ଗିଲାସେ ସରବତ୍ ଢାଳି ନେଲି। ଦହିର ପରିମାଣଟା ବେଶୀ। ସରବତ୍ ତ ନୁହେଁ—ପତଳା ଦହି। ଜେଲ୍‌ର ଗ୍ଲାସ୍ ଗୁଡ଼ା କି ଅଦ୍ଭୁତ! ପିଇବା ବେଳେ ଦେହ ଆଉ ଲୁଗାରେ ନିଶ୍ଚୟ ପାଣି ପଡ଼ିବ। ମିଠା ଗୁଡ଼ାଏ ଦେଇଚି ସରବତ୍‌ରେ।

ମେହେର୍‌ଚନ୍ଦ୍ ଗପି ଚାଲିଛି।—"ସକାଳେ ଇଣ୍ଟରଭ୍ୟୁ ଥିଲା। ଦୁଇ ହାଣ୍ଡି ଦହି ଆସିଥିଲା ଆଉ ହାଣ୍ଡିଏ 'ଗଁଦ୍‌କା ଲଡ୍‌ଡୁ'। ମାରି ଖାଇବା ପାଇଁ ଅଫିସଲୋକଙ୍କ ମତଲବ୍, କିଏ ନ ଜାଣେ ? ଜେଲର୍ ପ୍ରଥମେ ଜମାଦାର୍‌କୁ କହିଲେ, କାଠି ଗୁଞ୍ଜି ହାଣ୍ଡି ତଳ ପର୍ଯ୍ୟନ୍ତ ଦେଖ,. ଦହି ଛଡ଼ା ଆଉ କିଛି ଅଛି କି ନାହିଁ। ତା'ପରେ ରଖି ଦିଅ, ଡାକ୍ତର ସାହେବ ଆସିଲେ ପାଶ୍ ହେବ। ଜେଲର୍ ସାହେବ ମୋ ଉପରେ ଏମିତି ରାଗିଲେ କାହିଁକି, କିଏ ଜାଣେ ? ଅନ୍ୟ କାହା ବେଳେ ତ ଏପରି ହୁଏ ନାହିଁ। ଜମାଦାର ସାହେବଙ୍କୁ ଚାରୋଟି ଗଁଦ୍—ଲଡ୍‌ଡୁ ଦେଇ, ଚୁପ୍‌ଚାପ୍ ହାଣ୍ଡିଟି ନେଇ ଚାଲି ଆସିଲି।"

ତା'ପରେ କଣ ମନକୁ ଆସିଲା; ମୋତେ କହିଲା, "ଚିନି ତିଆରି ଲଡ୍‌ଡୁ, ସେଥିପାଇଁ ଆପଣଙ୍କୁ ଦେଲି ନାହିଁ।" "ଆଉ ଗିଲାସେ ଦେବି ମାଷ୍ଟର୍ ସାହେବ ?" ତାଙ୍କୁ ମନା କଲି। ଗିଲାସେ ପିଇବା କାଠିକର ପାଠ। ତା' ଉପରେ ଆଉ ଗିଲାସେ! ହାତ ମୁହଁ ଧୋଇ ପୁଣି କମ୍ବଳ ଉପରେ ଆସି ବସିଲି। ମେହେରଚନ୍ଦ୍ ତାଳରେ ଗିଲାସ ପିଟି ଡାକୁଛନ୍ତି, "ଚଲୋ ଚଲୋ ସରବତ୍ ପିନେବାଲୋଁ।" ବିଷ୍ଣୁଦେଓଜୀ ଛଡ଼ା ଆଉ କେହି ସରବତ୍ ନେଲେ ନାହିଁ—ଚିନି ସରବତ୍ ହୋଇଥିଲେ କେହି କେହି କେଜାଣି ନେଇଥାନ୍ତେ। ବିଷ୍ଣୁଦେଓଜୀ ଅଧସେର ଅଟାର ରୁଟି ଖାଏ। ବୟସ କମ୍, ସ୍ୱାସ୍ଥ୍ୟ ବେଶ୍ ଭଲ। କିନ୍ତୁ ତା ବୋଲି ରାତି ଅଧରେ ଖାଇ ପିଇ ସାରି ତାଳେ ଦହି ପିଇବ ନାଁ କଣ ? ଏ ୱାର୍ଡ଼ରେ ଗୁଡ଼ ସରବତ୍ କେହି ଛୁଅନ୍ତି ନାହିଁ। ଆଉ ବିଲୁ ? ତୃତୀୟ ଶ୍ରେଣୀ କୟଦୀମାନେ ଟିକିଏ ଗୁଡ଼, ଗୋଟାଏ ଲଙ୍କା ବା ଗୋଟାଏ ପିଆଜ ପାଇଲେ କୃତାର୍ଥ ହୋଇଯାନ୍ତି। ସ୍କାର୍ଭିର ପ୍ରତିଷେଧକ ରୂପେ ସପ୍ତାହରେ ଦୁଇଦିନ ସେମାନେ ଟିକିଏ ଟିକିଏ ଆଚାର ପାଇ ପାରନ୍ତି। ଏ ଜିନିଷଟି ଯେଉଁ ଦିନ ଜୁଟେ, ସେଦିନ ଯେତେ ଖାଇଲେ ବି ସେମାନଙ୍କ ପେଟ ପୂରେ

ନାହିଁ। ଖାଲି ଆଚାରରେ ସବୁ ଭାତ ଖାଇ ହୋଇଯାଏ। ଡାଲି ଗୋଳେଇ ଖାଇବା ପାଇଁ ଆଉ ଭାତ କାହିଁ? ବହୁ କଷ୍ଟାର୍ଜିତ ଡାଲିର ଲଙ୍କାଟି ନଷ୍ଟ ହୋଇଗଲା ବୋଲି ମନେହୁଏ। ବିଲୁର ଦୁଇ ଓଳି ଭାତ ଖାଇବା ଅଭ୍ୟାସ। —ଏଠାରେ ତା' ବି ମିଳୁଚି କି ନାହିଁ, କିଏ ଜାଣେ? ଜେଲ୍‌କୋଡ୍ ଅନୁସାରେ ଦୁଇ ଓଳି ଭାତର ନାଁ 'ବେଙ୍ଗଲ୍—ଡାୟେଟ୍'। ଯାହାକୁ ଏହା ନମିଳେ, ତାକୁ ସନ୍ଧ୍ୟାବେଳେ ଦିଅନ୍ତି ଦୁଇ ହାତ ପରିଧିର—ରୁଟି ନାମକ ପଦାର୍ଥ — ଦୁଇ ଖଣ୍ଡ କରି। ଏଇ ଅସିଦ୍ଧ, ଦୁଷ୍ପାଚ୍ୟ ଖାଦ୍ୟଦ୍ରବ୍ୟଟିକୁ ଆୟତ୍ତାଧୀନ କରିବା, ଭୀମଭବାନୀ ବା ଗୋବର ମାନଙ୍କ ପକ୍ଷରେ ସମ୍ଭବ ହୋଇପାରେ — କିନ୍ତୁ ସାଧାରଣ ବଙ୍ଗାଳୀ ପକ୍ଷରେ ଅସମ୍ଭବ। . . . ଇଚ୍ଛା ହେଉଚି, ବିଲୁ ଜାଣୁ, ତା'ରି କଥା ମନେ ପକାଇ ଏଥର ଜେଲ୍‌ରେ ଫଳମୂଳ, ଦୁଧ, ଏସବୁ ଜିନିଷ କିଛି ଖାଉ ନାହିଁ। ମଶାରୀ ପକାଇ ଶୋଉ ନାହିଁ। ଏ ଖବର ଜାଣି ପାରିଲେ, ବିଲୁ ମନରେ ହୁଏତ ଟିକିଏ ତୃପ୍ତି ଆସନ୍ତା। ତା' ବାପା ତା' କଥା ଯେ ଟିକିଏ ମନେ ପକାନ୍ତି, ଏକଥା ସେ ବୁଝି ପାରନ୍ତା। ବିଲୁକୁ ଯଦି ଫାଶୀଦଣ୍ଡ ହୋଇ ନଥାନ୍ତା, ତାହେଲେ ସେ ମଧ୍ୟ ଗୋଟାଏ ପର୍ଦ୍ଦା ଝୁଲାଇ ଦଳର ଲୋକଙ୍କୁ 'କ୍ୟାପିଟାଲ୍' ପଢ଼ାଉଥାନ୍ତା। ବିଲୁ ଏଠି ଥିଲେ କମ୍ରେଡ୍ ଲଛମୀ ଚର୍ତୁବେଦୀଙ୍କୁ ଆଉ ଗୁରୁଗିରୀ କରିବାକୁ ପଡୁ ନଥାନ୍ତା। ମନିହାରୀ ଘାଟରେ ସେଥର ସେମାନଙ୍କର ଯେଉଁ ସମର୍—ଟ୍ରେନିଙ୍ଗ୍—କ୍ୟାମ୍ପ୍ ଖୋଲିଥିଲା, ବିଲୁ ତ ଥିଲା ତାର ଅଧକ୍ଷ। କମ୍‌ରେଡ୍ ବାରଣାସୀ ସୁଦ୍ଧା ସେଦିନ ଚୁରୁଟ୍ ଟାଣି ଟାଣି ମୋତେ କହିଥିଲା, ''ବିଲୁ ବାବୁଙ୍କ ପରି ଆମ ଦଳରେ ଆଉ କେହି ପଢ଼ାଇ ପାରନ୍ତି ନାହିଁ। ସେଥିପାଇଁ ସେଥର ସୋନପୁରରେ ଆମର ଯେଉଁ ପ୍ରାଦେଶିକ ସମର୍—ଟ୍ରେନିଙ୍ଗ୍—କ୍ୟାମ୍ପ୍ ଖୋଲିଲା, ସେଠାରେ ବିଲୁବାବୁଙ୍କ ଉପରେ 'ଡାୟାଲେକ୍‌ଟିକାଲ୍ ମାଟେରିଆଲିଜମ୍'' ପଢ଼ାଇବାର ଭାର ପଡ଼ିଲା। ବିଲୁବାବୁ ଅବଶ୍ୟ ଟିକିଏ କମ୍ ମିଲିଟାଣ୍ଟ। ସେଥିପାଇଁ ପାର୍ଟିର ସର୍ବୋଚ୍ଚ ପାହିଆକୁ ଉଠି ପାରି ନାହାନ୍ତି।'' କମ୍‌ରେଡ୍ ବାରଣାସୀ ଆଉରି କେତେ କଣ ଗପିଥିଲା — ସବୁକଥା ମନେ ରଖିବା କଠିନ। କଥା କହିବା ବେଳେ, ଏପରି ସବୁ ଶବ୍ଦ କହିବା, ସେମାନଙ୍କର ଅଭ୍ୟାସ ହୋଇ ଯାଇଛି, ଯାହାର ଅସଲ ଅର୍ଥ ଆମ୍ଭମାନଙ୍କ ପାଖରେ ଏକ ପ୍ରକାର ଅଜ୍ଞାତ। ସେମାନଙ୍କ ସହିତ କଥାବାର୍ତ୍ତା ହେଲା ବେଳେ, କଥାର ଖିଅ ଠିକ୍ ଧରି ହୁଏ ନାହିଁ। ସାଧାରଣ ଚଳ୍‌ତି ଭାଷାରେ କଣ କଥାବାର୍ତ୍ତା କରି ହେବନାହିଁ? ସେମାନେ ଘରେ କଣ ଏଇ ଭାଷାରେ କଥାବାର୍ତ୍ତା ହୁଅନ୍ତି? ଆମେ ସେମାନଙ୍କ କଥାରୁ ଅଧେ ବୁଝି ପାରୁ ନାହିଁ— ସେମାନଙ୍କ ମା' ଭଉଣୀମାନେ ଏସବୁ କଥାରୁ କଣ ବୁଝିବେ? ଗୋଟାଏ ଗପ ଅଛି ନାଁ — ଜଣେ ଇଂରାଜୀ ପଢ଼ିବା ଆରମ୍ଭ କରି ସ୍ଥିର କରିଥିଲା ଯେ, ମା' ଙ୍କ ସହିତ ଇଂରାଜୀ ଛଡ଼ା ଆଉ କେଉଁ ଭାଷାରେ ସେ କଥାବାର୍ତ୍ତା ହେବ ନାହିଁ। ବିଚାରା ଥରେ ବେମାରୀ ପଡ଼ିଲା। ଶୋଷରେ ପ୍ରାଣ କଣ୍ଠାଗ୍ରତ — 'ୱାଟର୍' କଥାଟି ତା' ମା ବୁଝି ପାରୁ ନାହାନ୍ତି। ସେଇପରି କଥା, ହେବ ଆଉ କଣ? ବିଲୁବି ତ ସେମାନଙ୍କ ଦଳର ଜଣେ ନେତା। କିନ୍ତୁ ତା'ର ଏପରି ଧରଣର କଥାବାର୍ତ୍ତା କୌଣସି ଦିନ ତ ମୋ କାନରେ ପଡ଼ିନାହିଁ। ଦଳ ଭିତରେ କଣ ସବୁ ସେ କହେ, ତା ଅବଶ୍ୟ ଜାଣେ ନାଁ, କିନ୍ତୁ ତାକୁ ତ ଥରେ ସୁଦ୍ଧା ଅସ୍ୱାଭାବିକ ସାମ୍ୟବାଦୀ ଅଭିଧାନର କୌଣସି ଶବ୍ଦ କେବେ ବ୍ୟବହାର କରିବା ଶୁଣି ନାହିଁ। ତା ଦେହରୁ ମଧ୍ୟ କେବେ ସିଗାରେଟ୍, ଚୁରୁଟ୍‌ର ବାସ୍ନା ପାଇ ନାହିଁ। ତୁମମାନଙ୍କ ଭାଷାରେ 'ମିଲିଟାଣ୍ଟ' କଥାର ମାନେ ହୁଏତ ମୁଁ ଠିକ୍ ବୁଝେ ନାଇଁ। — ଯିଏ

ଦେଶ ପାଇଁ ଆଜି ରାତିରେ ଫାଶୀଖୁଣ୍ଟରେ ଝୁଲିବ, ତାକୁ ତୁମେ କହୁଚ଼ ମିଲିଟାଣ୍ଟ୍ ନୁହେଁ। ସେ କାହିଁକି ମିଲିଟାଣ୍ଟ୍ ହେବ ? ମିଲିଟାଣ୍ଟ୍ ଏଇ ରୋଶିଣା ବୈଜନାଥ୍ – ଯିଏ ଅଳ୍ପ – କ୍ଷଣ ପୂର୍ବେ ବାହାରିଥିଲା, ୱାର୍ଡ଼ର ଉପରକୁ ପାଣି ପକାଇବା ପାଇଁ। ଛି, ମୁଁ ଇଏ କଣ ସବୁ ଭାବି ଯାଉଚ଼ି। ବିଲୁ ମିଲିଟାଣ୍ଟ ହେବ, ଯେପରି ମୋର ଗର୍ବର ବିଷୟ ! ମହାତ୍ମାଜୀ, ମୋର ପ୍ରଣାମ ଗ୍ରହଣ କର। ବାରଣାସୀ, ହୁଏତ ଠିକ୍ କଥା କହିଚି। ବିଲୁ ମୋର ପକ୍ଷଛାୟା ତଳେ ଆଶ୍ରମ ପରିବେଶରେ ବର୍ଦ୍ଧିତ ମଣିଷ। ତା' ପକ୍ଷରେ ମିଲିଟାଣ୍ଟ୍ ନ ହେବା ସ୍ୱାଭାବିକ। ...ସଦାଶିବ ମୋ ଟେବୁଲ୍ ଉପରେ ଗୋଡ଼ ଝୁଲାଇ ବସିଚି। ସେ ଚାହିଁଚି ମୋ ମୁହଁ ଆଡ଼କୁ। ନିଶ୍ଚୟ ଭାବୁଥିବ ହଠାତ୍ ମୁଁ ପ୍ରଣାମ କଲି କାହିଁକି ? ଏହାର ଗୋଟାଏ ମନଗଢ଼ା ଅର୍ଥ ନିଶ୍ଚୟ କରିଥିବ ସିଏ।

''ବିଷ୍ଣୁଣ ଦେଓ ବାବୁ ! ବିଷ୍ଣୁଣଦେଓ ବାବୁ !''

ବାଁ ପାଖରେ ଦୁଇ ତିନିଟି ସିଟ୍ ଛଡ଼ାରେ ବିଷ୍ଣୁଣଦେଓଜୀଙ୍କ ସିଟ୍। ଜଣେ ୱାର୍ଡ଼ର୍ ଝରକା ବାହାରୁ ତାଙ୍କୁ ଡାକୁଚି। ବିଷ୍ଣୁଣ୍ଦେଓଜୀଙ୍କର ବାହାରେ ବେଶ୍ ବଡ଼ କାରବାର ଅଛି। ବ୍ୟବସାୟୀ ଲୋକ। ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ। ବିଷ୍ଣୁଣଦେଓଜୀ ଜେଲ୍ ଭିତରେ ବି ବେଶ୍ ବଡ଼ କାରବାର ଫାନ୍ଦି ଦେଇଚନ୍ତି। ସିଏ ଆଉ କିଚେନ୍‌ମ୍ୟାନେଜର୍। ଜେଲ୍‌ର କଣ୍ଟ୍ରାକ୍ଟର୍‌ଙ୍କ ସହିତ ତାଙ୍କର ବେଶ୍ ଘନିଷ୍ଠତା ଅଛି। ଏଇ ୱାର୍ଡ଼ର୍‌ଟି ଜେଲ୍ କଣ୍ଟ୍ରାକ୍ଟର୍ ଆଉ ଆଙ୍କ ଭିତରେ ଖବରଅନ୍ତର ଓ ଜିନିଷପତ୍ର ଆଦାନପ୍ରଦାନ କରେ। ପ୍ରତ୍ୟହ 'ରେସନ୍'ର ଯେଉଁ ରିକ୍ୟୁଜିସନ୍ ଥାଏ ଜେଲ୍ କଣ୍ଟ୍ରାକ୍ଟର୍ ତା' ଅପେକ୍ଷା କମ୍‌ଜିନିଷ ଦିଏ, କିନ୍ତୁ କାଗଜ ଉପରେ ମ୍ୟାନେଜର୍‌ଠାରୁ ଲେଖେଇ ନିଏ ଯେ, ସବୁ ଜିନିଷ ବରାଦ ମୁତାବକ୍ ମିଳିଛି। ତା ପର ରାତିରେ ଏଇ ୱାର୍ଡ଼ର୍ ଆସି ଅନ୍ୟାନ୍ୟ ଜିନିଷ ଦେଇଯାଏ – ଯେଉଁ ସବୁ ଜିନିଷ 'ରେସନ୍' ଭିତରେ ପଡ଼େ ନାହିଁ। ଜେଲ୍ କର୍ତ୍ତୃପକ୍ଷ ଏ କଥା ଜାଣନ୍ତି। ଏହା ବନ୍ଦ କରିବା ପାଇଁ ଜେଲ୍ ରସଦ୍ ଗୋଦାମରୁ ଶିଡ଼ିଉଲ୍ ଅନୁଯାୟୀ ଜିନିଷ ଦେବାର ଚେଷ୍ଟା ମଧ୍ୟ କେତେଥର କରିଛନ୍ତି। କିନ୍ତୁ ଏଇ ଯୁଦ୍ଧ ବଜାରରେ ଶିଡ଼ିଉଲ୍ ଅନୁଯାୟୀ ସବୁ ଜିନିଷ ପ୍ରତ୍ୟେକ ଦିନ ଦେବା କଠିନ। ଆଉ ନ ଦେଲେ ଗୋଳମାଳ। ହୁଏତ ଅପର୍ ଡିଭିଜନ୍ ରାଜବନ୍ଦୀମାନେ ଅନଶନ ଆରମ୍ଭ କରିଦେବେ। ହୁଏତ ଲକ୍–ଅପ୍ ହେବା ପାଇଁ ମନା କରିଦେବେ। ଶାରୀରିକ ବଳ ପ୍ରୟୋଗ କରି, ଲାଠିଚାର୍ଜ୍ କରି ଏମାନଙ୍କୁ ଅବଶ୍ୟ ସାମୟିକ ଭାବରେ ଜବତ୍ କରାଯାଇପାରେ। କିନ୍ତୁ ଦୁଇ ଚାରିଥର ଏଇପରି ଝଗଡ଼ା ଲାଗିଲେ ଟାକ୍‌ଟ୍‌ଫୁଲ ନୁହେଁ ବୋଲି ଡିପାର୍ଟମେଣ୍ଟ୍‌ରେ ଜେଲର୍, ସୁପରିଟେଣ୍ଡେଣ୍ଟଙ୍କ ବଦ୍‌ନାମ ହୋଇଯାଏ। କିଛି ଦିନ ପରେ ଆସେ ବଦଳି ହୁକୁମ୍। ତା ଛଡ଼ା ନିରାପତ୍ତା ବନ୍ଦୀମାନେ ଥିବା ବେଳେ ମାରଧର କରି, କଥାଟା ଚପାଇ ଦେବାର ମଧ୍ୟ ଉପାୟ ନାହିଁ। ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ହୁକୁମ୍ ନଥିଲେ, ସେମାନଙ୍କ ଉପରେ ଲାଠିଚାର୍ଜ୍ କରାଯାଏ ନାହିଁ। କିନ୍ତୁ ବର୍ତ୍ତମାନ ଜେଲ୍‌ରେ ସ୍ଥାନାଭାବ ଏତେ ବେଶୀ ଯେ, ନିରାପତ୍ତା ବନ୍ଦୀମାନଙ୍କୁ ଅଲଗା ରଖିବାର ବ୍ୟବସ୍ଥା କରିବା ମଧ୍ୟ କଠିନ। ଏଇପରି ନାନା ଦୃଷ୍ଟିରୁ ଜେଲ୍ କର୍ତ୍ତୃପକ୍ଷ ଚାହାନ୍ତି, ଯେପରି ରାଜବନ୍ଦୀମାନେ ଗୋଳମାଳ ନ କରନ୍ତି। ସବୁ ଦେଖି ସୁଦ୍ଧା ଦେଖିନାହୁଁ, ଏଇପରି ଭାବରେ ଯଦି କାମ ଚାଲେ, ତାହେଲେ ଏମାନଙ୍କୁ ନେଇ ଏତେ ଘାଣ୍ଟଚ଼କଟ କରିବାର ଦରକାର କଣ ? କଣ୍ଟ୍ରାକ୍ଟର୍ ଠାରୁ ସେମାନଙ୍କ ପାଉଣାରେ ତ ଏଥିରେ ହ୍ରାସବୃଦ୍ଧି ନାହିଁ। ଫଳରେ ସୁବିଧା ହୋଇଛି

ବିଷ୍ଣୁଣଦେଓଜୀଙ୍କର। ବିଷ୍ଣୁଣଦେଓଜୀ ଓ ୱାର୍ଡ଼ର୍ କଣ ସବୁ ଚୁପ୍‌ଚାପ କଥାବାର୍ତ୍ତା ହେଉଛନ୍ତି; ଠିକ୍ ବୁଝାଯାଉନାହିଁ। ବିଷ୍ଣୁଣଦେଓଜୀ ହଠାତ୍ ଚଢ଼ା ଗଳାରେ ପଚାରିଲେ, ''ସିପାହିଜୀ ଦହି ସରବତ୍ ଟିକିଏ ପିଇବେ ?'' ସିପାହିଜୀ ଉତ୍ତର ଦେଲା ''ଲାଇୟେ।'' ଗରାଦ୍ ଭିତରେ ଗ୍ଲାସ୍‌ଟା ଗଳିଲା ନାହିଁ। ''ଠଇରିୟେ, ମେ ପିଆଲା ଲାତା ହୁଁ।'' ବିଷ୍ଣୁଣଦେଓ ତା' କପ୍‌ରେ ୱାର୍ଡ଼ର୍‌କୁ ଘୋଳ ସରବତ୍ ପିଆଇଲେ। ଓ–ଏଇଥିପାଇଁ ସେ ସରବତ୍ ନେଇଥିଲେ ପରା ! ସେଇଆତ ଗୁଡ଼–ସରବତ୍ ପିଇବା ପାଇଁ ହଠାତ୍ ସେ ମନ ବଳାଇଥିଲା କାହିଁକି ? ସିପାହିଜୀ ଚାଲିଗଲା। ତା'ର ଡିଉଟି ବୋଧହୁଏ ଅନ୍ୟ ୱାର୍ଡ଼ରେ। ଭୁଷଣଜୀ ତା ବିଛଣାରେ ମଶାରୀ ପକାଇ ଶୋଇ ପଡ଼ିଲା। ଠିକ୍ ବିଷ୍ଣୁଣଦେଓଜୀ ପାଖକୁ ତା ସୀଟ୍। ସେ ମଶାରୀ ଭିତରୁ ପଚାରିଲା, ''କିୟା ତିକ୍ରମ୍ କର୍ ରହେଥେ ୟାର୍ ?'' ନିୟମବିରୁଦ୍ଧ ଭାବରେ ଯୋଗାଡ଼ାଯୋଗଡ଼ି କରିବାକୁ ଏମାନେ କହନ୍ତି ''ତିକ୍ରମ୍''। ପ୍ରକୃତରେ ଏ ଶବ୍ଦର କୌଣସି ଅର୍ଥ ନାହିଁ। ଜେଲ୍ ଭିତରେ ଏଇ ଶବ୍ଦଟିର ସୃଷ୍ଟି। ବିଷ୍ଣୁଣଦେଓ ପ୍ରତ୍ୟେକ ଦିନ ବିଡ଼ି ମଗାଏ, ଆଉ ଦିନବେଳା ମେଟ୍ ହାତରେ ବିଡ଼ି ଗୁଡ଼ାକୁ ବିକ୍ରୀ ପାଇଁ ପଠାଇଦିଏ ଜେଲ୍ ଫାକ୍ଟରୀକୁ। ସେଠାରେ ସାଧାରଣ କୟଦୀମାନେ ଏଇ ବିଡ଼ି କିଣନ୍ତି। ଦଶ ପଇସା ପ୍ୟାକେଟ୍। ଏଥିରେ ବିଷ୍ଣୁଣଦେଓର ବେଶ୍ କିଛି ଲାଭ ହୋଇଥାଏ। ମେସ୍ ମେମ୍ବର ମାନଙ୍କ ଭିତରେ ଯେଉଁମାନେ ହୁଏତ ଟିକିଏ ଗୋଳମାଳ କରି ପାରନ୍ତି, ସେମାନଙ୍କ ମୁହଁ ବନ୍ଦ କରିବା ପାଇଁ, ମଝିରେ ମଝିରେ ବାସନା ତେଲ ଓ ଛୋଟ ଛୋଟ ଅନ୍ୟାନ୍ୟ ଦରକାରୀ ଜିନିଷ ମଗାଇ ଦିଏ। ତା' ଛଡ଼ା ଜେଲ୍‌ଗୋଦାମର କୟଦୀମାନଙ୍କ ସହିତ ସେ ବନ୍ଦୋବସ୍ତ କରି ନେଇଚି – ଦୁଇ ବଣ୍ଡଲ୍ ବିଡ଼ିରେ ଗିଲାସେ ଘିଅ, ଏକ୍ ପ୍ୟାକେଟ୍ ଚିନିରେ ଅଧସେର ଚିନି। ବିଡ଼ି ହେଉଚି, ଜେଲ୍‌ର ଲିଗାଲ୍ ଟେଣ୍ଡର ମୁଦ୍ରା। ଭୁଷଣଦେଓଜୀ ବିଷ୍ଣୁଣଦେଓଜୀକୁ କହିଲେ, ''ମୋତେ ବଣ୍ଡଲେ ବିଡ଼ି ଦିଅତ; – ଗରମ ଜାମାଟା ଶୀତ ପରଠାରୁ ଆଉ କଚା ହୋଇ ନାହିଁ। କାଲି ସେଇଟାକୁ ଧୋବି – କମାଣ୍ଡକୁ ପଠାଇବା ପାଇଁ ପଡ଼ିବ ଇସ୍ତ୍ରୀ ପାଇଁ। ଆଉ କାଲି କଣ୍ଟ୍ରାକ୍ଟର୍‌କୁ କହି ଦେବ ତ, ମୋ ପାଇଁ ଗୋଟାଏ ଫାଉଣ୍ଟେନ୍ କାଳି ବୋତଲ୍ ଆଣିବ।'' ତା'ପରେ ଫିକ୍ କରି ହସି ଦେଇ କହିଲେ, ''ମୁଁ ହେଉଚି ଭାଇ ଝପଟାନନ୍ଦ ଦଳର।'' ଝପଟାନନ୍ଦ କଥାଟାର ଗୋଟାଏ ଇତିହାସ ଅଛି। ବିଷ୍ଣୁଣଦେଓଜୀ ଗୋଟାଏ ଢଗ ତିଆରି କରିଥିଲେ। ଢଗଟା ଠିକ୍ ମନେ ପଡୁ ନାହିଁ। ତେବେ ତାର ଭାବାର୍ଥ ହେଲା – ଜେଲ୍‌ରେ ରାଜବନ୍ଦୀମାନେ ସମସ୍ତେ ସିଦ୍ଧ ପୁରୁଷ। ସେମାନଙ୍କୁ ତିନିଶ୍ରେଣୀରେ ବିଭକ୍ତ କରାଯାଇପାରେ – ପ୍ରଥମ ଶ୍ରେଣୀର ନାମ 'ଯୋଗାଡ଼ାନନ୍ଦ'। ଏମାନେ ବିଡ଼ି ଆଉ ପଇସା ଘୁଷ୍ ଦେଇ, ମିଠା କଥା କହି, ଜେଲ୍ ଡାକ୍ତରଙ୍କୁ ଖୋସାମତ୍ କରି, ମଝିରେ ମଝିରେ ଜେଲ୍ କର୍ମଚାରୀମାନଙ୍କ ସହିତ ଝଗଡ଼ା କରି ନାନା ପ୍ରକାର ଜିନିଷ ଯୋଗାଡ଼ କରିଥାନ୍ତି। ଅମଳ ନିଶା ଦ୍ରବ୍ୟଠାରୁ କୌଣସି ପଦାର୍ଥର ଅଭାବ ହୁଏ ନାହିଁ ଏମାନଙ୍କର। ଯୋଗାଡ଼ର ଫନ୍ଦି ଫିକର୍‌ରେ ଥାନ୍ତି। ଦ୍ୱିତୀୟ ଶ୍ରେଣୀରେ ପଡ଼ନ୍ତି, ''ଝପଟାନନ୍ଦ'' ଦଳ। ''ଝପଟ୍ଟାମାର୍‌ନା'' କଥାଟାର ମାନେ ଝାମ୍ପ ମାରିବା। ଏଇ ଧରଣର ବନ୍ଦୀମାନେ ସାଧାରଣତଃ ନିଷ୍କ୍ରିୟ ଭାବରେ ଚୁପ୍ ଚାପ୍ ଥାନ୍ତି। ଆଖିରେ ମୁହଁରେ ନିସ୍ପୃହତାର ଭାବ ଫୁଟାଇବାକୁ ଚେଷ୍ଟା କରନ୍ତି। କିନ୍ତୁ ଚିଲ ଯେପରି ସମାଧିସ୍ଥ ପରି ଉଞ୍ଚା ଗଛ ଡାଳରେ ବସିଥିଲେ ସୁଦ୍ଧା, ଶିକାର୍ ଉପରେ ଠିକ୍ ନଜର ରଖିଥାଏ, ଏମାନେ ସେମିତି ସବୁବେଳେ ନଜର ରଖିଥାନ୍ତି – ଯୋଗାଡ଼ାନନ୍ଦମାନେ କିଏ କଣ କରୁଚନ୍ତି,

ତା'ରି ଉପରେ। ଠିକ୍ ଯେତେବେଳେ କୌଣସି ଜିନିଷ ଯୋଗାଡ଼ାନନ୍ଦଙ୍କର ହାତପଇଠ ହୁଏ, ସେତିକିବେଳେ ଝପଟାନନ୍ଦମାନେ ପହଞ୍ଚିଯାନ୍ତି ସାମ୍ନାରେ – ତାର ଗୋଟାଏ ଅଂଶ ଦାବି କରିବା ପାଇଁ। ''ତିକ୍ରମ୍'' କରିବାକୁ ଯାଇଁ ଧରା ପଡ଼ିଲେ ବିପଦ ଅଛି। କିନ୍ତୁ ଝପଟାନନ୍ଦମାନଙ୍କର କୌଣସି ବିପଦକୁ ଭୟ ନାହିଁ। ତେବେ ଯୋଗାଡ଼ାନନ୍ଦମାନଙ୍କ ତୁଳନାରେ ଏମାନେ ଜିନିଷପତ୍ର ପାଆନ୍ତି କମ୍ ପରିମାଣରେ। ଯୋଗାଡ଼ାନନ୍ଦମାନେ ଅଳ୍ପ ଅଳ୍ପ ଜିନିଷ ଅନିଚ୍ଛା ସତ୍ୱେ ଏମାନଙ୍କୁ ଦେବା ପାଇଁ ବାଧ ହୁଅନ୍ତି। ଗୋଳମାଳିଆ ଲୋକମାନଙ୍କୁ ଥଣ୍ଡା ରଖିବାକୁ ତ ପଡ଼ିବ। ତା'ପରେ ବାକି ରହିଲେ ଆଉ ଏକ ଶ୍ରେଣୀର ରାଜବନ୍ଦୀ – 'ବେକୁଫାନନ୍ଦ'। ଏଇମାନଙ୍କ ସଂଖ୍ୟା ବେଶୀ। ଯୋଗାଡ଼୍ କରିବା ବା ଯୋଗାଡ଼୍ ହୋଇଥିବା ଜିନିଷରୁ ଭାଗ ନେବା ପାଇଁ ଏମାନଙ୍କର ଷୋଳପଣ ଇଚ୍ଛା ଥାଏ। କିନ୍ତୁ ଇଚ୍ଛା ଥିଲେ କଣ ହେବ – ସାମର୍ଥ୍ୟ ପାଏ ନାହିଁ। ଏମାନଙ୍କର ଭୟ, ଧରା ନ ପଡ଼ିଲେ ବି ଅନ୍ୟମାନେ ଏମାନଙ୍କ ନାଁରେ ଚୁଗୁଲି କରିବାକୁ ଛାଡ଼ିବେ ନାଇଁ। ଆଉ ଧରାପଡ଼ିଗଲେ ତ ବଦ୍‌ନାମ୍‌ର ଚୂଡ଼ାନ୍ତ। କାର୍ଯ୍ୟତଃ ଏଇ ସବୁ ଗୋଳମାଳିଆ କାରବାରରୁ ଅଲଗା ରହି, ସମାଲୋଚନାର ଅଧିକାର ରଖିବା ବୁଦ୍ଧିମାନର କାର୍ଯ୍ୟ।...

ହଇହଲ୍ଲା କରି ସମସ୍ତେ ଡାହାଣ ପାଖର ପର୍ଦ୍ଦାଘେରା ସ୍ଥାନଟିରୁ ବାହାରିଲେ। ଏମାନଙ୍କ କ୍ଲାସ୍ ତା'ହେଲେ ସରିଲା। ସାରା ଦିନଟା ପଡ଼ିଚି – ତଥାପି ଏମାନେ ରାତିରେ ଚେଇଁ ନିଶ୍ଚୟ ପଢ଼ାଶୁଣା କରିବେ। ସକାଳେ ତ କେହି ଆଠଟା ଆଗରୁ ବିଛଣା ଛାଡ଼ି ଉଠିବା ନାଁ ଧରନ୍ତି ନାହିଁ। କିନ୍ତୁ ରାଜନୀତି କ୍ଷେତ୍ରକୁ ଆସି ସୁଦ୍ଧା ଏମାନେ ଯେ ପଢ଼ାଶୁଣା ଭୁଲି ନାହାନ୍ତି, ଏହା ଦେଖିଲେ ପ୍ରକୃତରେ ଆନନ୍ଦ ହୁଏ। ମାଷ୍ଟରି କରୁଥିଲି ତ; ସେଥିପାଇଁ ପିଲାମାନଙ୍କୁ ପଢ଼ିବା ଦେଖିଲେ, ମନର ଆନନ୍ଦ ଏବେ ସୁଦ୍ଧା ଚାପି ରଖିପାରେ ନାହିଁ। ସୋସିଆଲିଷ୍ଟମାନେ, ଫର୍‌ୱାର୍ଡ଼–ବ୍ଲକ୍‌ର ପିଲାମାନେ, କମ୍ୟୁନିଷ୍ଟ୍ ଓ କିଷାନସଭାର ପିଲା ଦୁଇଟି, ସମସ୍ତଙ୍କଠାରେ ଦେଖେ, ପଢ଼ିବାର ଉତ୍ସାହ ଆଉ ବିସ୍ମିତ ହୋଇ ଆମ ଦଳର କର୍ମୀମାନଙ୍କ ସହିତ ତୁଳନା କରେ। ଫର୍‌ୱାର୍ଡ଼ ବ୍ଲକ୍‌ର ମାତ୍ର ତିନିଜଣ ଥାନ୍ତି ଏଠାରେ, କିନ୍ତୁ ସେମାନଙ୍କୁ ବି ଦେଖେ କେତେ ଖର୍ଚ୍ଚାନ୍ତ ହୋଇ ସେନ୍‌ସର୍ ହୋଇ ନଥିବା ମାର୍କସିଷ୍ଟ୍ ବହିସବୁ ମଗାଉଛନ୍ତି। କମ୍ୟୁନିଷ୍ଟ୍ ପିଲାଟିର ମଧ ଛୋଟ ଛୋଟ ବହି ମଗାଇବା ପ୍ରାୟ ଲାଗି ରହିଛି। ଏମାନଙ୍କ ପରି ଘଡ଼ି ଧରି ପଢ଼ାଶୁଣା ପାଇଁ କ୍ଲାସ୍ ଆରମ୍ଭ କର, ଆମ ଭିତରେ ଲୋକ ଜୁଟିବେ ନାହିଁ। ନିଶ୍ଚିତ ଭାବରେ। ତା'ର ପ୍ରତ୍ୟକ୍ଷ ପ୍ରମାଣ ତ ମିଳି ଯାଇଛି। ସଦାଶିବର ଉତ୍ସାହ ଓ ଅନୁରୋଧରେ ମୁଁ ଶୀତଦିନେ ସେଇ ବେଲଗଛ ମୂଳେ 'ରଚନାତ୍ମକ – କାର୍ଯ୍ୟକ୍ରମ' ଉପରେ କ୍ଲାସ୍ ନେବା ଆରମ୍ଭ କରିଥିଲି। ପ୍ରଥମ ସପ୍ତାହରେ କେତେଜଣ ଜୁଟିଥିଲେ। ପରେ ଦେଖିଲି ଶେଷକୁ ରହିଗଲେ କେବଳ, ସଦାଶିବ, ଦାସ୍‌ଜୀ ଆଉ ରାମଶରଣଜୀ। ଏଣେ ସି.ଏସ୍.ପି.ର ରୁଷ୍ ବିପ୍ଳବ କ୍ଲାସ୍‌ରେ ବସିବା ପାଇଁ ଲୋକଙ୍କୁ ଜାଗା ମିଳୁ ନାହିଁ। ଆମ ପିଲାଙ୍କୁ ମଧ ଦେଖେ ସେଇ କ୍ଲାସ୍‌ରେ ବସିଛନ୍ତି – ଏହା ଅବଶ୍ୟ ଅସ୍ୱାଭାବିକ ନୁହେଁ। ନୀଲୁ ବିଲୁଙ୍କ ଦଳର ପ୍ରୋଗ୍ରାମର ଭିତ୍ତି, ମଣିଷର ମନ ଆଜି ଯେପରି ଅଛି; ତାରି ଉପରେ, ଆଉ ଆମ କାର୍ଯ୍ୟକ୍ରମର ଭିତ୍ତି, ହିଂସାଲୋଉହୀନ, ଆଦର୍ଶବାଦୀ ମଣିଷ ମନ ଉପରେ। ସେଥିପାଇଁ ସାଧାରଣ ଲୋକଙ୍କୁ ସେମାନଙ୍କର ପଥ ଆକର୍ଷଣ କରିଥାଏ ବେଶୀ।...

ନୀଲୁ ବିଲୁଙ୍କର ପଢ଼ିବା ପାଇଁ କି ଝୁଙ୍କ। ଆଉ ଆମ ଦଳ ଲୋକମାନଙ୍କର? ସେମାନଙ୍କର କଥା କହି ଆଉ କଣ ହେବ? ମୁଁ ଖଣ୍ଡେ ବହି ଧରି ବସିଲେ, ସେମାନେ କହନ୍ତି, —''ମାଷ୍ଟର୍ ସାହେବ, ପୁଣି ଇନ୍ତେହାନ୍ ଦେବେ ନାଁ କଣ?'' ଆମ ଦଳର ରାମଚନ୍ଦର୍‌ଜୀ ଆଉ ହରହର୍‌ଜୀ ଏ ଦୁଇଜଣଙ୍କର ପଢ଼ାଶୁଣାର ଟିକିଏ ଅଭ୍ୟାସ ଅଛି। ସେଥିରେ ପୁଣି ରାମ୍‌ଚନ୍ଦର୍‌ଜୀ ପଢ଼ନ୍ତି 'ଜଳଚିକିତ୍ସା' ଆଉ ହରିହର୍‌ଜୀ ପଢ଼ନ୍ତି ଆସନ ଆଉ ପ୍ରାଣାୟମର ବହି। ଏମାନଙ୍କର ଧାରଣା, ଗାନ୍ଧିଜୀଙ୍କ ମତ ଉପରେ ଯେଉଁ ମାନଙ୍କର ଆସ୍ଥା ଅଛି, ସେମାନଙ୍କର ପୁଣି ପଢ଼ାଶୁଣା କରି ନୂଆ ଜାଣିବାର ଆଉ କଣ ଥାଇପାରେ? ମିଛରେ କଣ ନୀଲୁ ଆମକୁ ଥଟ୍ଟା କରେ? ମୁଁ ଟୁର୍‌ରେ ବାହାରିଲେ ବିଲୁବୋଉ ମୋ ଟିଣ ସୁଟ୍‌କେଶ୍ ସଜାଡ଼ିବା ବେଳେ, କେତେଥର ଶୁଣିଚି, ନୀଲୁ ତା ମାକୁ ଥଟ୍ଟା କରି କହେ, ''ମା, ପୁରୁଣା ସର୍ବୋଦୟ ଫାଇଲ୍‌ଟା ଦେଇଚ ତ?'' ପିଲାଦିନୁ ନୀଲୁର ଲଘୁ ଗୁରୁ ଜ୍ଞାନ କମ୍। ଏ ବିଷୟରେ ବିଲୁ ସହିତ ତାର ଆକାଶ ପାତାଳ ପ୍ରଭେଦ। ନୀଲୁ ସବୁଦିନେ ଟିକିଏ ଉଦ୍ଧତ ସ୍ୱଭାବର—ରାଗିଲେ ତାର ହିତାହିତ ଜ୍ଞାନ ରହେ ନାହିଁ।

...ଘର ଭିତରେ ପଶି ଦେଖିଲି, ରୋଷେଇ ଘର ପିଣ୍ଡାରେ ବିଲୁବୋଉ, ନୀଲୁ ଆଉ ବିଲୁ ଦୂରଛଡ଼ା ହୋଇ ବସିଛନ୍ତି, ଯେପରି ଜଣକ ସହିତ ଅନ୍ୟର କୌଣସି ସମ୍ବନ୍ଧ ନାହିଁ। ବିଲୁ ବୋଉ ଆଉ ବିଲୁ ବସି କାନ୍ଦୁଚନ୍ତି। ନୀଲୁ ଖଣ୍ଡେ ପିଞ୍ଚରେ ଲିପାପୋଛା ମାଟି ଚଟାଣ ଉପରେ କଣ ଗାରୋଉଛି କିମ୍ବା ଆଙ୍କୁଛି। ପାଖରେ ଗୋଟାଏ ପନିକୀ ପଡ଼ିଚି। ଲକ୍ଷ୍ୟ କରି ଦେଖିଲି, ବିଲୁବୋଉ ଲୁଗାରେ କଣ ଗୋଟାଏ ଲୁଚାଇବା ପାଇଁ ଯେପରି ଚେଷ୍ଟା କରୁଛନ୍ତି। ମୁଁ ପଚାରିବାରୁ ଘଟଣାଟା ଜଣା ପଡ଼ିଲା। ବିଲୁ ହାତରୁ ଦୁଆତଟା ଓଲଟି ପଡ଼ି ନୀଲୁର 'କ୍ଷୀରେର ପୁତୁଳ' ବହିର ମଲାଟଟା ଖରାପ ହୋଇଗଲା। ସେଥିପାଇଁ ନୀଲୁ ରାଗରେ ବିଲୁର ମାର୍ସଡ଼େନ୍‌ଙ୍କ ଇତିହାସ ବହିଟିକୁ ଦୁଇଗଡ଼ କରି ପନିକୀରେ କାଟି ଦେଇଛି। ବହିଟି ଦୁଇଗଡ଼ ହୋଇ, ଦୁଇଖଣ୍ଡ ଛୋଟ ଛୋଟ ନୋଟ୍ ବହି ପରି ଦିଶୁଛି। ଆଶ୍ଚର୍ଯ୍ୟ ପିଲା। ତାଙ୍କ ମା' ବି ଗେହ୍ଲା କରି କରି ପିଲା ମାନଙ୍କର ମୁଣ୍ଡ ଖାଇଲେଣି। ପୁଅ ଅନ୍ୟାୟ କରିଚି, ମୋତେ କହି ଦିଅନ୍ତେ କଣ, ନାଁ ମୋ ଠାରୁ ଘଟଣାଟାକୁ ଲୁଚାଇବାର ଚେଷ୍ଟା ହେଉଚି।

''କିୟା ସଦାଶିବ, ଭୂମିହାର୍—ରାଜପୁତ୍—ଜାତୀୟ ମହାସଭା କି ବୈଠକ୍ ଖତମ୍ ହୁଇ''—କମ୍‌ରେଡ୍ ବୈଜନାଥ ସଦାଶିବଙ୍କୁ ଥଟ୍ଟା କରି ପଚାରିଲେ। କଟାକ୍ଷ 'ସ୍ୱତ୍ରପଞ୍ଚ' ପ୍ରତି। ବିହାରର ଚରମପନ୍ଥୀ, ଅର୍ଥାତ୍ ସୋସିଆଲିଷ୍ଟ, କମ୍ୟୁନିଷ୍ଟ, ଫର୍‌ୱାର୍ଡ଼ ବ୍ଲକ୍ ଆଉ କିଶାନ୍‌ସଭାର ସଭ୍ୟମାନେ, ଦକ୍ଷିଣ ପନ୍ଥୀ ମାନଙ୍କୁ ଥଟ୍ଟା କରନ୍ତି ଯେ, ବିହାର—ପ୍ରାଦେଶିକ—କଂଗ୍ରେସ, କେବଳ ଭୂମିହାର ଓ ରାଜପୁତ ଜାତିଙ୍କ ପାରସ୍ପରିକ ଜାତିଆଣ ଦଳାଦଳିର ମୁଖପାତ୍ର ମାତ୍ର। ପ୍ରାଦେଶିକ କଂଗ୍ରେସରେ କୁଆଡ଼େ ରାଜନୈତିକ ଦଳାଦଳି ନାହିଁ। ଦଳାଦଳି ଅଛି ଜାତି ଘେନି ଆଉ ବ୍ୟକ୍ତିକୁ କେନ୍ଦ୍ର କରି। କଥାଟା କେତେକାଂଶରେ ସତ। ଜେଲ୍ ଭିତରେ ଦେଖିଚି, ରାମଶରଣଜୀ ଆଉ ହରିହରଜୀ ଜାତି ଭିତ୍ତିରେ ଛୋଟ ଛୋଟ ଉପଦଳ ଗଢ଼ିବା ଚେଷ୍ଟାରେ ଥାନ୍ତି—ଖଲାସ୍ ପାଇବା ପରେ ଯେପରି ସେମାନଙ୍କର ଲିଡ଼ର୍‌ଗିରି ବଜାୟ ରହି ପାରିବ। ଆମ ଦେଶରେ ସ୍ୱରାଜ କଣ କେବେ ହୋଇ ପାରିବ? ବେଳେ ବେଳେ ମନରେ ଘୃଣା ଆସିଯାଏ। ନୀଲୁ ବିଲୁଙ୍କ ଦଳଗୁଡ଼ିକ

ଯାହା କହନ୍ତି, ସବୁ ଭୁଲ୍ ନୁହେଁ। କିନ୍ତୁ ତା' ବୋଲି କିଛି ଆଗେ ଏମାନେ ସୂତ୍ରଯଜ୍ଞରେ ବସିବା ସହିତ ଜାତିଆଣ ଦଳାଦଳିର କି ସମ୍ପର୍କ? ହଉ, ଧରାଯାଉ, ସଦାଶିବ ତମର ସମବୟସୀ, କିନ୍ତୁ ସିଏ ଯେତେବେଳେ ମୋ ଆଗରେ ବସିଛି, ସେତେବେଳ ତାକୁ ଆକ୍ଷେପ କରିବା ଅର୍ଥ, ମୋତେ ଆଘାତ ଦେବା। ବୟୋଜ୍ୟେଷ୍ଠମାନଙ୍କୁ ଟିକିଏ ସମ୍ମାନ ଦେଖାଇଲେ, ମହାଭାରତ କଣ ଅଶୁଦ୍ଧ ହୋଇଯାନ୍ତା ?

ସଦାଶିବ ଜବାବ୍ ଦେଲା, "ଚୁପ୍ କର୍ ଲାଲ୍‌ଦାସିୟା। କଥାରେ ଅଛି, ବ୍ରାହ୍ମଣଙ୍କୁ ଖୁଆଇ, ରାଜପୁତ୍‌କୁ ବାବୁ ସାହେବ କହି, କାୟସ୍ଥକୁ ଟଙ୍କା ଦେଇ, ଆଉ ସବୁ ଜାତିଙ୍କୁ ପ୍ରହାର ଦେଇ, ଯେ କୌଣସି କାର୍ଯ୍ୟ କରାଇନେବା ସମ୍ଭବ। ଟଙ୍କା କେତେଟା ପାଇଲେ, ପାର୍ଟି ଛାଡ଼ି ଦେବାକୁ ତ ଇତସ୍ତତଃ କରିବ ନାହିଁ। ତୁମମାନଙ୍କୁ ଆଉ ଜାଣି ନାଇଁ ?"

ବୈଜନାଥ କାୟସ୍ଥ। ମିଥିଳା କାୟସ୍ଥମାନଙ୍କର ପଦବୀ ହୋଇଥାଏ ପ୍ରାୟ ଲାଲ୍ ନୋହିଲେ ଦାସ। ଏଥିପାଇଁ କାୟସ୍ଥମାନଙ୍କୁ ସାଧାରଣ ଲୋକେ କହନ୍ତି 'ଲାଲ୍ ଦାସିୟା'। ଜମିଦାରଙ୍କ ନାୟେବ, ଗୁମାସ୍ତା, ପଟୁଆରୀ କାର୍ଯ୍ୟ ଏମାନଙ୍କର ଏକଚାଟିଆ। ସେଥିପାଇଁ ଗରିବ କିଶାନ୍‌ମାନଙ୍କ ପାଖରେ ଏମାନେ ଜନପ୍ରିୟ ନୁହନ୍ତି। ଏଥିପାଇଁ ଲାଲ୍‌ଦାସିୟା କଥାଟିର ଅର୍ଥ ଆଉ କେବଳ ସ୍ଥାନୀୟ କାୟସ୍ଥ ନୁହେଁ—ତାହାର ଯୋଗାରୂଢ଼ ଅର୍ଥ ଗୋଟିଏ— ଅର୍ଥଲୋଲୁପ ପଟୁଆରୀ ମନୋବୃତ୍ତି ଯୁକ୍ତ ଜୀବ।

ବୈଜନାଥ କହିଲେ, "ଆଉ ଗୋଟିଏ ପ୍ରବାଦ ମନେ ଅଛି ତ ? ଗଉଡ଼୍‌ଦେଖା ଘାସ ଆଉ ବ୍ରାହ୍ମଣ୍‌ଦେଖା ଦହି।" —ଦୁଇଟା ଜିନିଷର ବରାଦ ଏକ।"

ସଦାଶିବ ଭୂମିହାର୍ ବ୍ରାହ୍ମଣ। ସେ ଜବାବ ଦେଲା—"ସେ କଥା ତ ମାନୁଚି। ଦେଖିଲ ନାଇଁ ମୋ ଦହି ମାଷ୍ଟର୍ ସାହେବ ଖାଇଲେ। କାୟସ୍ଥମାନେ କହାବତ୍‌ର ସଚ୍ଚାଇ (ପ୍ରବାଦର ସତ୍ୟତା) ମାନିବାକୁ ରାଜି ନୁହନ୍ତି ବୋଲି ତ କଥା ବଢ଼ିଯାଏ। ତା'ପରେ ସଦାଶିବ ଟେବୁଲ୍ ଉପରୁ ଓହ୍ଲାଇ ବୈଜନାଥ ପାଖକୁ ଗଲା। ଦୁଇଜଣ ଫୁସ୍‌ଫାସ୍ ହୋଇ କଣ କଥାବାର୍ତ୍ତା ହେଲେ। ସେମାନଙ୍କର ପୁଣି କି ଗୋପନୀୟ କଥା ହଠାତ୍ ମନେ ପଡ଼ିଗଲା ? ଆଜି ବୈଜନାଥ ପ୍ରଭୃତିଙ୍କ ଦଳର ଜଣେ ନେତୃସ୍ଥାନୀୟ କମ୍‌ରେଡ୍‌ର ଫାଶୀ; କିନ୍ତୁ ଏମାନଙ୍କ କାର୍ଯ୍ୟକଳାପରେ ଅନ୍ୟ ଦିନ ଠାରୁ କୌଣସି ପାର୍ଥକ୍ୟ ତି କିଛି ଦେଖିଲି ନାଇଁ। ସେଇ ପର୍ଦ୍ଦାଘେରା କ୍ଲାସ୍, ସେଇ ଠୋ-ଠୋ ହସ, ମଝିରେ ମଝିରେ ଭାଲ୍ୟୁ, ଲେବର୍ ପାୱାର୍, ସିରପ୍ଲସ୍ ଭାଲ୍ୟୁ ପ୍ରଭୃତି ଶବ୍ଦ ଗୁଡ଼ିକ ଅନ୍ୟ ଦିନ ପରି ଆଜି ମଧ୍ୟ କାନରେ ପଡୁଛି। ମୋ ବାଁ ପଟରେ ଯେଉଁମାନେ ଥା'ନ୍ତି, ସେମାନଙ୍କ ଆଚରଣ ମଧ୍ୟ ଦେଖୁଛି ଅନ୍ୟ ଦିନ ମାନଙ୍କ ପରି। କୋଉଠି ଟିକିଏ ହେଲେ ଦାଗ ପଡ଼ିନାହିଁ। ନାଁ, ହୁଏତ ସମସ୍ତେ ଅନୁଭବ କରୁଛନ୍ତି; ନ ହେଲେ ଦାସ୍‌ଜୀଙ୍କ ଛଡ଼ା ଆଉ ସମସ୍ତେ ବର୍ତ୍ତମାନ ପର୍ଯ୍ୟନ୍ତ ଚେଇଁ ରହିଥାନ୍ତେ କାହିଁକି ? ଭୂଷଣଜୀ, ବିଷ୍ଣୁଦେଓଜୀ, ମଶାରୀ ପକାଇ ଶୋଇଚନ୍ତି ସତ; କିନ୍ତୁ କିଛିକ୍ଷଣ ପୂର୍ବରୁ ସେମାନଙ୍କ କଥାବାର୍ତ୍ତା ତ ଶୁଣାଯାଉଥିଲା। ସେମାନେ ଶୋଇ ନାହାନ୍ତି। ଅନେକ ସିଟ୍‌ରେ ମଶାରୀ ପଡ଼ିଚି, ବେଶୀ ଦୂର ପର୍ଯ୍ୟନ୍ତ ଦେଖାଯାଏ ନାହିଁ; ତେବେ କାନରେ ପଡ଼େ କଥାବାର୍ତ୍ତାର ଅସ୍ପଷ୍ଟ ଶବ୍ଦ। ଅସ୍କାର୍ ୱାଇଲ୍‌ଡ଼ଙ୍କ ସେଇ Ballad of Reading Gaol, ଫାଶୀ ରାତିର ଲାଇନ୍ କେତୋଟା ମନେ ପଡ଼ିଲା . . .

But there is no sleep, when men must weep
Who never yet have wept,
So we the fool, the fraud, the knave -
That endless vigil kept,
And through each brain, on hands of pain
Another's terror crept....

ଆଉ ମନେ ପଡୁ ନାହିଁ। ମାଷ୍ଟରୀ କେବେଠୁ ଛାଡ଼ିଲିଣି। ସିଏ କଣ ଆଜିର କଥା? ଏ କେତେଟା ଲାଇନ୍ ଯେ ତଥାପି ମନେ ଅଛି, ସେଇଆ ଆଶ୍ଚର୍ଯ୍ୟ। ବର୍ତ୍ତମାନ ମନେ ପକାଇବା ପାଇଁ ଚେଷ୍ଟା କରୁଛି। କିନ୍ତୁ ଏବେ ଆଉ ମନେ ପଡ଼ିବ ନାହିଁ। ପରେ ହଠାତ୍ ମନେ ପଡ଼ିଯିବ ଅପ୍ରତ୍ୟାଶିତ ଭାବରେ। ଏମାନେ ସମସ୍ତେ କଣ ଭୟରେ ଶୋଇନପାରି ଚେଇଁଛନ୍ତି? ହୁଏତ ସହାନୁଭୂତିରେ। ନାଁ, ଏ ଚେଇଁ ରହିବା ଇଚ୍ଛାକୃତ ନୁହେଁ। ଚେଷ୍ଟା କରି ସୁଦ୍ଧା ଏମାନଙ୍କ ଆଖିକୁ ନିଦ ଆସୁ ନାହିଁ। ଗପସପ କରି ଏମାନେ ମନର ଗୁରୁଭାର ଲାଘବ କରିବା ପାଇଁ ଚାହାନ୍ତି। ମୋ ନିଜ ମନ ତ ବେଶ୍ ଶାନ୍ତ ରହିଛି। ବୋଧହୁଏ ମୋର ନିଜ ପିଲା ମାନଙ୍କୁ ଯେତେଟା ଗଭୀର ଭାବରେ ଭଲ ପାଇବା ଉଚିତ, ସେତେଟା ଗଭୀର ଭାବରେ ଭଲ ପାଏ ନାହିଁ। ନହେଲେ ମୋ ମନରେ ସେପରି ଚାଞ୍ଚଲ୍ୟ ନଥାନ୍ତା କାହିଁକି? ବୈଜନାଥର ସିଟ୍ ପାଖରେ ସଦାଶିବ ଆଉ ବୈଜନାଥ କେତେଖଣ୍ଡ ଚଉକି ଆଣି ପକାଇଲେ। ଏତେ ରାତିରେ ଚଉକି ପକାଇ ପୁଣି କଣ ହେବ? ସଦାଶିବ ଆସି ମୋ ଖଟ ଉପରେ ବସିଲା। ମୁଁ ତଳେ କମ୍ବଳ ବିଛାଇ ବସିଚି। ବୈଜନାଥ, ଲଛମୀ ଚର୍ତୁବେଦୀ, ଗିରିଧର, ରାମପ୍ରକାଶ ଚଉକୀ ମାନଙ୍କରେ ବସିଲେ। ଏମାନେ ସାରାରାତି ଚେଇଁବେ ନାଁ କଣ? ବିଲୁର ବି ରାତିଚେଇଁ ପଢ଼ିବା ଅଭ୍ୟାସ। କେତେଥର ତାକୁ ମନା କରିଛି। ବିଲୁ ଅବିକା କଣ କରୁଥିବ? ହୁଏତ ପାଗଳ ପରି ସେଲ୍ ଭିତରେ ଏପାଖ ସେପାଖ ହେଉଥିବ। ତାର କ'ଣ ଥରେ ହେଲେ ବାପ କଥା ମନେ ପଡୁନଥିବ? ସେ ଅବଶ୍ୟ ଡରିବା ପିଲା ନୁହେଁ, କିନ୍ତୁ ସେ ନାଁ କାଟେ ଚରଖା, ନାଁ ଅଛି ତାର ଭଗବତ୍‌ବିଶ୍ୱାସ! ଏ ଦୁଇଟିରୁ ଗୋଟିଏ ଥିଲେ, ଆଜି ରାତିରେ ସେ ମନରେ କେତେ ବଳ ପାଉଥାନ୍ତା! ସ୍କୁଲ୍‌ର ସଂସ୍କୃତ ପଣ୍ଡିତ ଜେଲ୍‌ର ରିଲିଜିୟସ୍ ଇନ୍‌ଷ୍ଟ୍ରକ୍ଟର୍। ପ୍ରତି ରବିବାର, ଜେଲ୍‌ର ହିନ୍ଦୁ କୟଦୀ ମାନଙ୍କୁ ଧର୍ମୋପଦେଶ ଦେବା ପାଇଁ ଆସନ୍ତି। ମୁଁ ହେଡ୍‌ମାଷ୍ଟର୍ ଥିବା ବେଳେ ପଣ୍ଡିତ୍‌ଜୀ ଚାକିରୀରେ ଢୁକି ଥିଲେ। ସେଇ ସୂତ୍ରରେ ସେଦିନ ସେ ଆସିଥିଲେ ବିଲୁ ସହିତ ଦେଖା କରିବା ପାଇଁ। ବିଲୁ ତାଙ୍କର ଛାତ୍ର। ସେ ଦୁଃଖ କରି କହିଲେ, ବିଲୁ ସେଲ୍‌କୁ ସେ ଯାଇଥିଲେ। ବିଲୁ କହିଲା, ଧର୍ମୋପଦେଶର୍ କୌଣସି ପ୍ରୟୋଜନ ନାହିଁ। ପଣ୍ଡିତ୍‌ଜୀ ଆଉରି ପୁଣି କହିଲେ, ବିଲୁ କିନ୍ତୁ ତାଙ୍କର ପାଦ ଛୁଇଁ ପ୍ରଣାମ କରିବାକୁ ଭୁଲି ନଥିଲା। ବିଲୁ ସେପରି ପିଲା ନୁହେଁ। ଆଚ୍ଛା, ଭଗବାନଙ୍କୁ ବିଶ୍ୱାସ କଲେ କଣ ସତରେ ସାମ୍ୟବାଦୀ ହୋଇ ହେବ ନାହିଁ? କେତେ ଗେରୁଆପିନ୍ଧା ସ୍ୱାମୀଜୀଙ୍କୁ ଦେଖିଚି, ସେମାନେ ଦଳର କର୍ମୀ। ସେମାନେ କଣ ଭଗବାନଙ୍କୁ ବିଶ୍ୱାସ କରନ୍ତି ନାହିଁ? ସେଦିନ ବିଲୁ ପାଇଁ ଜଣେ ଆସିଷ୍ଟାଣ୍ଟ ଜେଲର୍‌ଙ୍କ ହାତରେ ପଠାଇ ଦେଇଥିଲି ଖଣ୍ଡେ ପକେଟ୍ ଗୀତା। ପରଦିନ ଆସିଷ୍ଟାଣ୍ଟ ଜେଲର୍ ବହିଟା ଫେରାଇ ଦେବାବେଳେ କହିଲେ, ''ଅପଣଙ୍କ

ପୁଅର ଏ ବହି ଦରକାର ନାହିଁ। ଅନ୍ୟ ଭଲ ବହି ଫହି ଦେଲେ ସେ ପଢ଼ି ପାରନ୍ତି। ମୋ ପାଖରେ ଅନ୍ୟ କେତେ ଖଣ୍ଡ ବହି ଥିଲା। ସେଇ ବହି ଗୁଡ଼ିକୁ ତାଙ୍କ ପାଖରେ ପହଞ୍ଚାଇ ଦେବା ପାଇଁ ଅନୁରୋଧ କଲି। ସେ କହିଲେ, ''ଧର୍ମପୁସ୍ତକ ଦେବା ପାଇଁ ମୋର ଅଧିକାର ଅଛି। ଡିଭିଜନ୍ ଥ୍ରୀ କଣ୍ଡେମ୍‌ଡ଼୍ ପ୍ରିଜ୍‌ନର୍‌ଙ୍କୁ ଅନ୍ୟ ବହି ଦେବା ପାଇଁ ହେଲେ, ସୁପରିଟେଣ୍ଡେଣ୍ଟଙ୍କଠୁଁ ହୁକୁମ ନେବା ପାଇଁ ପଡ଼ିବ। କିନ୍ତୁ ପ୍ରିଜନ୍‌ର୍ ନିଜେ ତ ସାହେବଙ୍କ ଆଗରେ କହିଲେ ତାଙ୍କର କୌଣସି ଜିନିଷର ପ୍ରୟୋଜନ ନାହିଁ।

ଠିକ୍ କହିଛି। ଏଇପରି କଥା ତ ବିଲୁ ଠାରୁ ଆଶା କରାଯାଇପାରେ। ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଣ୍ଡ ଉଞ୍ଚା କରି ଚାଲିଯିବ। ମୋର ନାମ ଉଜ୍ଜ୍ୱଳ କରି, ସକଳ ପ୍ରକାର ହୀନତାକୁ ପଦାଘାତ କରି ଗୌରବୋଜ୍ଜ୍ୱଳ ମୁହଁରେ ନନ୍–ମିଲିଟାଣ୍ଟ୍ ବିଲୁ ଚାଲିଯିବ। . . .

ଗତ ମହାଯୁଦ୍ଧ ପରେ ଗୋଟିଏ ବ୍ୟଙ୍ଗଚିତ୍ରର କଥା ମନେ ପଡୁଛି। 'ପଞ୍ଚ୍'ରେ ବାହାରିଥିଲା। ଦୁଇଜଣ ବୃଦ୍ଧ ଲର୍ଡ୍, ମେଦବହୁଳ ସଯତ୍ନଲାଳିତ ଶରୀର ଗୋଟିଏ ଅତି ଆରିଷ୍ଟୋକାଟିକ୍ କ୍ଳବ୍‌ର କୁଶନ୍ ଦିଆ ସୋଫା ଉପରେ ରଖି ବସିଚନ୍ତି। ଓଠରେ ଚୁରଟ୍, ଟେବୁଲ୍ ଉପରେ ବୋତଲ୍, ଗ୍ଳାସ୍। ଦୁଇଜଣ ଗପି ଚାଲିଚନ୍ତି – କାହାରି କେତେ ପୁଅ ଯୁଦ୍ଧରେ ମଲେ। ପୁଅର ମୃତ୍ୟୁ ପାଇଁ କେହି ଦୁଃଖିତ ନୁହନ୍ତି – ଅନ୍ୟକୁ ପରାଜିତ କରିବାର ଗର୍ବ ପାଖରେ, ପୁଅର ମର୍ମନ୍ତୁଦ ମୃତ୍ୟୁ ଗୋଟିଏ ଅତି ସାମାନ୍ୟ ଘଟଣା। ଅଥଚ ସେମାନଙ୍କ ଗର୍ବ ଏଇ ଘଟଣା ପାଇଁ। ସେ କଥା କିଏ ଭାବୁଚି ? ମୋ ଗର୍ବ ବି ସେଇପରି ହାସ୍ୟାସ୍ପଦ। ଯାହା ପ୍ରତି ପିତାର କର୍ତ୍ତବ୍ୟ କରି ନାହିଁ, ସେଇ ପୁତ୍ରର କୃତକର୍ମର ଗୌରବରେ ଅଂଶ ନେବା ପାଇଁ ମୋର ମନ କୁଣ୍ଠିତ ନୁହେଁ। . . . ମୁଁ ଯଦି ଏ ପଥରେ ଆସି ନଥାନ୍ତି, ତାହେଲେ ବିଲୁର କଣ ଏ ଦଶା ହୋଇଥାନ୍ତା ? ମୋ ବାପା ସରକାରୀ ଚାକିରୀ କରୁଥିଲେ, ମୁଁ ସରକାରୀ ଚାକିରୀ କରୁଥିଲି, ମୋ ପୁଅ ମଧ୍ୟ ଅନ୍ୟ ଗୃହସ୍ଥଙ୍କ ପୁଅ ପରି ପଢ଼ାଶୁଣା ଶେଷ କରିବା ପରେ ଅର୍ଥୋପାର୍ଜନ କରିଥାନ୍ତା, ସ୍ତ୍ରୀ – ପୁତ୍ର – ପରିବାର ନେଇ ଘର ସଂସାର କରିଥାନ୍ତା। ଆମ ପଡ଼ାର ବୃଦ୍ଧ ମିଭିର୍ ମହାଶୟ ଠିକ୍ କହିଥିଲେ। ବିବାହ ପରେ, ବିଶେଷ କରି ଯଦି ସନ୍ତାନାଦି ଥାନ୍ତି, ତାହେଲେ କାହାରି ପକ୍ଷରେ ନିଜ ଇଚ୍ଛାନୁସାରେ ଜୀବନର ଗତି ପରିଚାଳିତ କରିବାର ଅଧିକାର ନଥାଏ। ସେ ଅବସ୍ଥାରେ ତାର ଜୀବନଟା କେବଳ, ତା'ର ନିଜର ନୁହେଁ, ତା ଉପରେ ଆଉରି ଅନେକଙ୍କର ଦାବି। ମୋର ତ ଧନ ନଥିଲା, ସେ କଥା ବି ଉଠୁ ନାହିଁ। ଯେଉଁ ମାନଙ୍କର ଟଙ୍କା ପଇସା ଅଛି, ସେମାନେ ଏପରି କ୍ଷେତ୍ରରେ, ସ୍ତ୍ରୀ ପୁତ୍ର ପରିବାର ପାଇଁ କିଛି ବ୍ୟବସ୍ଥା ପୂର୍ବରୁ କରି ରଖିଥାଇ ପାରନ୍ତି। କିନ୍ତୁ ସେତିକିରେ କଣ କର୍ତ୍ତବ୍ୟ ଶେଷ ହୋଇଗଲା ? ସେଇପରି ହୋଇପାରିଲେ, ପିଲାଛୁଆ ଟିକିଏ ଆରାମରେ ହୁଏତ ରହି ପାରନ୍ତି, କିନ୍ତୁ ଆଶ୍ରମରେ ରହିବା କଣ ପୃଥିବୀରେ ଏକମାତ୍ର କାମ୍ୟ ? ଗାର୍ହସ୍ଥ୍ୟ ଜୀବନରେ ଯେଉଁ ମଧୁର ସମ୍ପର୍କ ଗୁଡ଼ିକ ଗଢ଼ି ଉଠେ, ତା'ର କଣ କୌଣସି ମୂଲ୍ୟ ନାହିଁ ? ରାଜୈଶ୍ୱର୍ଯ୍ୟ ରଖିଯାଇଥିଲେ ବୋଲି, ସିଦ୍ଧାର୍ଥ କଣ ନିଜ ସ୍ତ୍ରୀ ଓ ସନ୍ତାନ ପ୍ରତି ସୁବିଚାର କରିଥିଲେ ?

ବିଲୁକୁ ଇଂରାଜୀ କଲେଜରେ ପଢ଼ାଇନାହିଁ। ତା' ମା'ର ଏକାନ୍ତ ଅନୁରୋଧରେ ଇଂରାଜୀ ହାଇସ୍କୁଲରେ ମାଟ୍ରିକୁଲେସନ୍ ପର୍ଯ୍ୟନ୍ତ ପଢ଼ାଇଥିଲି। ଯଦି ମୋର ଇଚ୍ଛାରେ କାମ ହେଉଥାନ୍ତା, ତାହେଲେ ହୁଏତ ଇଂରାଜୀ ସ୍କୁଲ୍‌ରେ ଏତେ ଦୂର ପଢ଼ା ହୋଇ ନଥାନ୍ତା।

ମୋର ଇଚ୍ଛା ଥିଲା, ତାକୁ 'ବିହାର – ବିଦ୍ୟାପୀଠ'କୁ ପଠାଇବା ପାଇଁ। ବିଲୁ ଇଂରାଜୀ ସ୍କୁଲ୍‌ରେ ପଢୁଛି ବୋଲି ମୋତେ ସହକର୍ମୀ ମାନଙ୍କ ଠାରୁ ନାନା କଥା ଶୁଣିବା ପାଇଁ ପଡ଼ିଛି। ମହାତ୍ମାଜୀ ଯେବେ ଆମ ଆଶ୍ରମରେ ପାଦଧୂଳି ଦେଇ ଥିଲେ, ସେତେବେଳେ ଜୟସୋଆଲ୍‌ଜୀଙ୍କ ଭଉଣୀ ଏକଥା ତାଙ୍କ କାନରେ ସୁଦ୍ଧା ପୋଡ଼ି ଦେଇଥିଲେ। ଭଦ୍ରମହିଳାଙ୍କର ଟିକିଏ ପାଗଳାମି ବିକାର ଅଛି। କିନ୍ତୁ ମୁଁ ଜାଣେ, ଭଦ୍ରମହିଳା ସ୍ୱତଃପ୍ରଣୋଦିତ ହୋଇ, ଏସବୁ କଥା ମହାତ୍ମାଜୀଙ୍କୁ କହି ନଥିଲେ। ମୋର କୌଣସି ଶୁଭାନୁଧ୍ୟାୟୀ ବନ୍ଧୁଙ୍କ ପ୍ରରୋଚନାରେ ସେ ଏ କାର୍ଯ୍ୟ କରିଥିଲେ। ମହାତ୍ମାଜୀ ମୋତେ ସେତେବେଳେ ଏ ବିଷୟରେ କିଛି କହି ନଥିଲେ। "ସବୁ ପ୍ରକାର ପିଲା ଏତେ ବଡ଼ ଦେଶରେ ରହିବେ। ମୋ ପିଲାମାନେବି ତ ମୋତେ ଦୋଷ ଦିଅନ୍ତି।" – ଏତିକି କହି ସେ କଥାଟାକୁ ହସରେ ଉଡ଼ାଇ ଦେଇଥିଲେ। ମୋ ମୁଣ୍ଡ ଲଜ୍ଜାରେ ନଇଁ ପଡ଼ିଥିଲା। ଏଇ ମନ୍ତବ୍ୟର ତୀବ୍ରତା ବିଲୁ ଓ ବିଲୁବୋଉ ବେଶ୍ ଅନୁଭବ କରି ପାରିଥିଲେ। ସେଥିପାଇଁ ବିଲୁ ମାଟ୍ରିକ୍ୟୁଲେସନ୍ ପାସ୍ କରିବା ପରେ, ସେ ଆଉ ତା ମା, ଠିକ୍ କରିଥିଲେ ଯେ, ବିଲୁ କାଶୀ – ବିଦ୍ୟାପୀଠରେ ପଢ଼ିବା ଉଚିତ। ଇଂରାଜୀ କଲେଜରେ ଯାହା ପଢ଼ି ପାରିଥାନ୍ତା, ତା ଅପେକ୍ଷା ସେଠାରେ କଣ ସେ କମ୍ ଶିଖିଛି ? ନୀଲୁ ତ ବି.ଏ. ପାଶ! ବିଲୁ ଅପେକ୍ଷା କୌଣସି ବିଷୟରେ ତା'ର କଣ ଅଧିକା ଭଲ ଜ୍ଞାନ ଅଛି ? ବିଲୁ ଦଳର ଅଧିକାଂଶ କଲେଜ ପଢୁଆ ବି.ଏ., ଏମ୍.ଏ ପାଶ୍ କରା ପିଲା। ତେବେ ସେମାନେ ସମସ୍ତେ ବିଲୁ ପାଖକୁ ପଢ଼ିବା ପାଇଁ: ଆସନ୍ତି କାହିଁକି ? କିନ୍ତୁ ଏସବୁ ସତ୍ତ୍ୱେ ବି ଲୋକେ 'ବିଦ୍ୟାପୀଠ'ର ଶାସ୍ତ୍ରୀ ଉପାଧିକୁ ତାଚ୍ଛଲ୍ୟ କରନ୍ତି। – ଯେଉଁ ଦିନ ବିଲୁ ପାସ୍ କରିଥିବା ଖବର ମିଳିଲା, ମୁଁ ଚିଠିଟା ହାତରେ ଧରି ବିଲୁମା'କୁ ଖବର ଦେବା ପାଇଁ ଘର ଭିତରକୁ ଯାଇଥିଲି। କହିଲି "ଆଜିଠୁ ବିଲୁର ନାଁ ପୂର୍ଣ୍ଣଚନ୍ଦ୍ର ଶାସ୍ତ୍ରୀ।" ମୁଁ ଭାବିଥିଲି ବିଲୁବୋଉଠି କେତେ ଉତ୍ସାହ ଦେଖିବି। କିନ୍ତୁ ସେ କୌଣସି ଉତ୍ତର ଦେଲା ନାହିଁ। ମୁଣ୍ଡ ନୁଆଇଁ, ଏକ ଲୟରେ, ବଡ଼ି ପକାଇଗଲା। ତା'ପରେ ଅନେକ ସମୟରେ ଦେଖିଚି, ପଢ଼ାଶୁଣା କଥା ପଡ଼ିଲେ, ବିଲୁବୋଉ ସେ କଥା ଏଡ଼ାଇ ଦେବାକୁ ଚେଷ୍ଟା କରେ। ଏଇ ପରି ନାନା କାରଣରୁ ବିଲୁ ଭିତରେ inferiority complex ଆସିଯାଇଛି। ବିଲୁ ବୋଉ ମନେ ମନେ ଭାବେ, ତା ପୁଅର ଉଚ୍ଚଶିକ୍ଷା ହୋଇ ନାହିଁ। ପୁଅ ଦୋଷରୁ ନୁହେଁ, ଦଶାଚକ୍ରରେ ପଡ଼ି, ଆଉ ମୁଖ୍ୟତଃ ମୋ ଦୋଷରୁ। ପ୍ରକୃତରେ ବିଲୁ ପରି ବୁଦ୍ଧିମାନ ପିଲା ଯଦି, ସୁବିଧା ସୁଯୋଗ ପାଇଥାନ୍ତା, ତା' ହେଲେ ହୁଏତ ବଡ଼ ପ୍ରଫେସର୍ ବା ବୈଜ୍ଞାନିକ ହୋଇଥାନ୍ତା। ନୂଆ ନୂଆ ଗବେଷଣାରେ ତାର ଅନେକ ସୁଖ୍ୟାତି ହୋଇଥାନ୍ତା। ମୁଁ କିନ୍ତୁ ତାକୁ ଏପରି ପରିସ୍ଥିତିରେ ଆଣି ପକାଇଛି ଯେ, ସେଠାରୁ ଜେଲ୍‌କୁ ଆସିଲେ, ବିଶ୍ରାମ, ଆରାମ ଓ ଶାନ୍ତି ମିଳେ। ଏପରି ପରିବେଶ ଭିତରେ ସେ ମଣିଷ ହୋଇଛି, ଯେଉଁଠି ଫାଶୀ ହୁକୁମ୍ ସାମାନ୍ୟ ଦୁର୍ଘଟଣା ଠାରୁ ଅତିରିକ୍ତ ଆଉ କିଛି ନୁହେଁ। ବିଲୁ କିନ୍ତୁ ମୂର୍ଖ ନୁହେଁ। ତା'ର ଭଲ ମନ୍ଦ ବିଚାରଶକ୍ତି ଅଛି। ବଡ଼ ହେବା ପରେ ସେ ନିଜ ବାଟ, ନିଜେ ବାଛି ନେଇଛି। ଏହା ଛଡ଼ା ସେ ଆଉ ଅନ୍ୟ କ'ଣ କରନ୍ତା ?

ଚମକି ପଡ଼ିଲି। ଏମିତି କ'ଣ ଦରଜାରେ କିଏ ଧକ୍କା ଦିଅନ୍ତି ? ଦରଜା ବନ୍ଦ ଅଛି କି ନାହିଁ ଦେଖିବା – ଏଇଆ ତ ତୁମମାନଙ୍କ କାମ। ଏଥିପାଇଁ ଏତେ ଜୋର୍ ଦେଖାଇବା

ଦରକାର କଣ ? ପାଖ ସିଟ୍‌ରୁ ଜଣେ ପାଟି କରି ଉଠିଲା, ''ହାଁ, ତୋଡ଼ୋ; ତୋଡ୍ ଦୋ''। ଆଉ ଜଣେ ମସାରୀ ଭିତରୁ ଟିପ୍ପଣୀ କଲା, . . . ''ତାହେଲେ ମଣିଷ ତ ବଞ୍ଚିଯାନ୍ତା !''

ରାତି ଗୋଟାଏ ବେଳର ୱାର୍ଡ଼ର୍ ତା'ହେଲେ ଆସି ଗଲାଣି। ୱାର୍ଡ଼ର୍ ମୋତେ ଚାହିଁ ଦେଖୁଛି। ଲମ୍ୱା ପାଚିଲା ଦାଢ଼ୀ—ବେଶ୍ ଗୋଲଗାଲ୍ ଚେହେରା। ଦେଖା ହେବା ମାତ୍ରେ, ସେ ମୋତେ ହାତ ଜୋଡ଼ି ନମସ୍କାର କଲା। ତା'ପରେ ବୈଜନାଥ ପ୍ରଭୃତି ଚାରିଜଣ ଯେଉଁଠି ଚଉକୀରେ ବସିଥିଲେ, ସେ ଆଡ଼କୁ ମୁହଁ ବୁଲାଇ କହିଲା 'ନମସ୍ତେ ବାବୁ ସାହେବ! ଲୋଗ୍ ମଜେମେ ହୈନାଁ ?''

ଲଛମୀ ଚର୍ତୁବେଦୀ କହିଲେ. . . ''ଆରେ ସିଂଜୀ ଯେ! ଅନେକ ଦିନ ପରେ ତୁମକୁ ଏଠି ଆଜି ଡିଉଟୀରେ ଦେଖୁଚି। କଥା କଣ ?''

''ଗୋଟାଏ ସପ୍ତାହ ଛୁଟି ନେଇ ଯାଇଥିଲି। କାଲି ଜୟେନ୍ କରିଚି। ଆଉ ଯୁଦ୍ଧ ଖବର କହନ୍ତୁ।''

''ଆମେ ପୁଣି ଖବର ଦେବୁ ତୁମକୁ ? ଆମେ ଥାଉ ଜେଲ୍‌ରେ। ତୁମେ ଆମକୁ ବାହାରର ଖବର ଦିଅନ୍ତ, କଣ ନାଁ, ଆମଠୁ ଖବର ଶୁଣିବ ?''

''ହଜୁର୍‌ମାନେ ଇଂରାଜୀ ଅଖ୍‌ବାର୍ ପଢ଼ନ୍ତି। ସେଇଥିପାଇଁ ପଚାରି ଦେଲି।'' ତା'ପରେ ୱାର୍ଡ଼ର ସାହେବ ଆରମ୍ଭ କଲେ, ଯୁଦ୍ଧର, ନିଜ ସହରର, ନିଜ ଗାଁର, ମହାତ୍ମାଜୀଙ୍କର ଯେତେ ସବୁ ଅଜଗୁବି ଖବର! —ମାଲଗାଡ଼ି ବୋଝେଇ କରି କେତେ ବିଲୁଆ ଆଉ ଶାଗୁଣା ଯୁଦ୍ଧକ୍ଷେତ୍ରକୁ ବୁହା ହୋଇଚି। ମହାତ୍ମାଜୀ ଯେଉଁଦିନ ଅନଶନ ଆରମ୍ଭ କଲେ, ସେଦିନ କେଜାଣି କାହିଁକି ଫଟ୍ କରି ଲାଟସାହେବଙ୍କ କୋଠା ଛାତ ଫାଟିଗଲା। ମହାତ୍ମାଜୀଙ୍କ ବିରୁଦ୍ଧରେ ଯାଇ, ସେଥର ରାଜକୋଟ୍ ଦେୱାନ୍‌ଙ୍କର କି ଦଶା ହୋଇଥିଲା, ଆଉରି ଏମିତି କେତେ ଖବର! ଏଇ ଖବର ଗୁଡ଼ାକ ଦେବା ପାଇଁ ସେ ଯେପରି ଅସ୍ଥିର ହୋଇ ଉଠିଥିଲା! ତାର ପ୍ରଶ୍ନ ଗୁଡ଼ାକ ଏହାର ଅବତରଣିକା ମାତ୍ର! ତା'ପରେ ବେଶ୍ ଭଲ ଭାବରେ ଗପ ଜମାଇବା ପାଇଁ, ସେ ବୈଜନାଥର ଝରକା ବାହାର ବାରଣ୍ଡା ଉପରେ ବସି ପଡ଼ିଲା। ଅନ୍ୟ ଦିନ ମାନଙ୍କରେ ନାଇଟ୍-ଡିଉଟି ବେଳେ କେହି ଚେଇଁ ନଥାନ୍ତି। ସେତେବେଳେ ଭାରି ଏକୁଟିଆ ଲାଗେ। ବୁଲେଇ ବୁଲେଇ, ଖଇନି ଖାଇ, ପହରା ମାନଙ୍କୁ ନିଦରୁ ଉଠାଇ, ଏପାଖ ସେପାଖ ହୋଇ, ଯେତେ ଯାହା କଲେ ବି, ଦୁଇ ଘଣ୍ଟା ସମୟ ଯେପରି କଟେ ନାହିଁ। ସେମାନେ ଗପସପ ହେବା ବେଳେ ୱାର୍ଡ଼ର୍ ପାଖରେ ବସି ରହିବ; ଏକଥା ବୋଧହୁଏ ବୈଜନାଥ ପ୍ରଭୃତିଙ୍କୁ ଭଲ ଲାଗିଲା ନାହିଁ।

ବୈଜନାଥ୍ କହିଲା, ''ସିଂଜୀ, ତୁମେମାନେ ଦ୍ୱାପରରେ କିଷୁଣ୍‌ଜୀଙ୍କ ମା ଆଉ କିଷୁଣ୍‌ଜୀଙ୍କୁ ବନ୍ଦୀ କରି ରଖିଥିଲ, ଜେଲ୍ ଭିତରେ। ଆଉ ଏ ଯୁଗରେ ମହାତ୍ମାଜୀ ଆଉ ତାଙ୍କ ଶିଷ୍ୟ ମାନଙ୍କୁ ବନ୍ଦୀ କରି ରଖିଚ।'' —''କର୍ମର ଖେଳ ଖଣ୍ଡିବାର କଣ ଉପାୟ ଅଛି ? ହେଲେ କିଷଣ୍‌ଜୀଙ୍କୁ କେତେଦିନ ବା ଆମେ ଅଟକ ରଖିଥିଲୁ ? କିନ୍ତୁ ଆପଣମାନେ ବାବୁ କେତେଦିନ ଯେ କୟଦୀରହିବେ, ତାର କଣ ଠିକଣା ଅଛି ? ଏ ନିଆଁଲଗା ଯୁଦ୍ଧ କେବେ ଶେଷ ହେବ ବୋଲି ତ ମନେ ହେଉ ନାହିଁ।''

ବୈଜନାଥ ଦଳ ହୋ—ହୋ ହୋଇ ହସି ଉଠିଲେ। ସିଂଜୀଙ୍କୁ ସେମାନେ ଆଚ୍ଛା ଫାନ୍ଦରେ ପକାଇଚନ୍ତି। ''ରାଧାକିଷନ୍'' କହିଲେ ସିଂଜୀ ରାଗିଯାଏ। ସେ କହେ 'ବୋଲୋ

ସୀତାରାମ୍’। ଆଜି ନିଜର ଅଜ୍ଞାତସାରରେ କିଷୁଣ୍‌ଜୀଙ୍କ ନାମ ଉଚ୍ଚାରଣ କରି ପକାଇଲା। ଲଜ୍ଜାରେ ହସି ହସି, ଦୁଇ ହାତରେ ଗୋଟାଏ ତାଳି ପିଟି, ସିପାହିଜୀ ସେଠାରୁ ଦଉଡ଼ି ପଳାଇଲା। ବୈଜନାଥ ପ୍ରଭୃତି ଡାକିଲେ, ‘‘ଶୁଣ, ଶୁଣ ସିଂଜୀ ଆମେ ଖଲାସ ପାଇବା ଖବର।’’ ସେମାନଙ୍କ ଡାକ କିଏ ଶୁଣୁଚି ? – ସିଂଜୀ ସେତେବେଳକୁ ୱାର୍ଡ଼ର ଅନ୍ୟ ଆଡ଼କୁ ଚାଲିଗଲାଣି। ୱାର୍ଡ଼ର୍ ମାନଙ୍କ ହାତରେ ଥାଏ, ଗୋଟାଏ କରି ଲଣ୍ଠନ୍। ସିଂଜୀ ତା ଲଣ୍ଠନ୍‌ଟାକୁ ଝରକା ପାଖରେ ଛାଡ଼ି ଯାଇଥିଲା। କମ୍‌ରେଡ୍ ଗିରିଧର୍, ଗରାଦ ବାଡ଼ା ଭିତରେ ହାତ ପୁରାଇ, ତା ଲଣ୍ଠନରୁ ତେଲ ଗୋଟାଏ ଚା’ କପ୍ ଭିତରେ ଢାଳି ନେଲା। ଆଜିକାଲି ଯୁଦ୍ଧ ବଜାରରେ, କିରୋସିନ୍ ତେଲର ଭାରି ଅଭାବ... ସେମାନେ ସମସ୍ତେ ଖଲାସ ପାଇବା କଥା ଗପୁଚନ୍ତି। ହୋମ୍‌ମେମ୍ବରଙ୍କ ଷ୍ଟେଟମେଣ୍ଟର ଅନ୍ତଃସ୍ୱର, ଆମେରୀ ସାହେବ ପାର୍ଲିଆମେଣ୍ଟରେ କଣ କହିଚନ୍ତି, କେଉଁ କେଉଁ କଂଗ୍ରେସକର୍ମୀ ଛାଡ଼ ପାଇଲେଣି, ଏଇ ସବୁ ତଥ୍ୟ ଭିତ୍ତି କରି ସେମାନଙ୍କ ଭିତରେ ଚାଲିଛି କଲ୍‌ପନା ଜଲ୍‌ପନା, ବାଦାନୁବାଦ – ଗଭର୍ଣ୍ଣମେଣ୍ଟର୍ ମନୋବୃତ୍ତିରେ କିଛି ପରିବର୍ତ୍ତନ ଘଟିଚି କି ନାହିଁ। ଜେଲ୍‌କୁ ଆସି ପ୍ରଥମେ ପ୍ରଥମେ ମଣିଷ ସ୍ୱସ୍ତିର ନିଃଶ୍ୱାସ ପକାଇ ବଞ୍ଚିଯାଏ। – କିନ୍ତୁ ଦିନ କେଇଟା ପରେ ଜେଲ୍‌ଜୀବନ ଭାରି ଏକଟଣା ହୋଇ ଉଠେ। ତା’ପରେ ଆରମ୍ଭ ହୁଏ – ଦିନ ରାତି କେବଳ ଖଲାସ ପାଇବା କଥା – ଖବରକାଗଜରୁ ତା’ ସପକ୍ଷ ଓ ବିପକ୍ଷରେ ପ୍ରମାଣ ସଂଗ୍ରହ। ଫୁଦନ୍ ବାବୁ ସ୍ୱତଃପ୍ରଣୋଦିତ ହୋଇ ଖଲାସ ପାଇବାର ପ୍ରମାଣ ସଂଗ୍ରହ କରିବାର ଠିକା ନେଇଛନ୍ତି। ଖବରକାଗଜ ପଢ଼ା ଶେଷ ହୋଇ ଯିବା ପରେ, ତାଙ୍କ ଚାରିପଟେ କି ଭିଡ଼ ଜମେ! ବିଷ୍ଣୁଦେଓଜୀ ଏଇ ବିଷୟରେ ତୁଳସୀଦାସଙ୍କ ଅନୁକରଣରେ ଗୋଟାଏ ଦୋହା ମଧ ରଚନା କରିଛନ୍ତି। ପ୍ରତ୍ୟହ ‘ମେଟ୍’ ଖବରକାଗଜ ବଣ୍ଡଲ୍ ନେଇ ଆସିବା ବେଳେ କେହି ନା କେହି ଏହି ଦୋହା ଆବୃତ୍ତି କରଥାନ୍ତି –

‘‘ତୁଳସୀ ଚୁଁରତ ଜେଲ୍‌ମେ ବହ୍ ବଢ଼ିହିୟା ଅଖ୍‌ବାର୍
ଜିସ୍‌ମେ ଚର୍‌ଚା ସୁଲହ କୀ କରତି ହୋ ସରକାର୍।’’

ଅର୍ଥାତ ତୁଳସୀଦାସ, ଜେଏଲ୍‌ରେ ସେଇ ବଢ଼ିଆ ଖବରକାଗଜଟିକୁ ଖୋଜିଚନ୍ତି, ଯୋଉଥିରେ ଲେଖା ଅଛି ଯେ, ଗଭର୍ଣମେଣ୍ଟ୍ ଆମମାନଙ୍କ ସହିତ ସନ୍ଧିର ଆଲୋଚନା ଚଳାଇଛନ୍ତି।

ଆଜି ଖଲାସ ନ ହେଉନ୍ତୁ, ଦିନେ ନାଁ ଦିନେ, ସମସ୍ତେ ତ ଖଲାସ ହେବେ। କିନ୍ତୁ ବିଲୁ ? ବିଲୁକୁ ସାଙ୍ଗରେ ଧରି ଆଉ ତ ଫେରି ପାରିବି ନାହିଁ। ମୁଁ ବୁଢ଼ା ହେଲିଣି – ତଥାପି ମୋ ଭିତରେ ବଞ୍ଚିବାର କି ଆକାଂକ୍ଷା! ଆଉ ବିଲୁର ବୟସ ବା କେତେ ? ସାରା ଜୀବନଟାତ ତା ଆଗରେ ପଡ଼ିଚି। ମୁଁ କିନ୍ତୁ ଫେରିଯିବି – ବିଲୁ ନୁହେଁ। ବିଲୁକୁ ବାହା କରି ଦେଇଥିଲେ, ଗାନ୍ଧିଜୀଙ୍କ ମତରେ ତାର ହୁଏତ ବିଶ୍ୱାସ ଥାନ୍ତା। ବିବାହ ପରେ ଜୀବନର ଉଦ୍ଦାମତା କମିଯାଏ – ଦାୟିତ୍ୱଜ୍ଞାନ ବଢ଼େ। ତା’ହେଲେ ହୁଏତ ବିଲୁ ସାମ୍ୟବାଦର ବିପଦସଙ୍କୁଳ ପଥରେ ପାଦ ବଢ଼ାଇ ନଥାନ୍ତା। ‘ସର୍ବୋଦୟ’ରେ କାକା କାଲେଲ୍‌କର୍ ହାସ୍ୟ ପରିହାସ ଭିତରେ ମୋଟାମୋଟି ଠିକ୍ କଥା କହିଛନ୍ତି। ସେ ଦେଖାଇଛନ୍ତି ଯେ, କଂଗ୍ରେସ ନେତା ମାନଙ୍କ ଭିତରେ ଯେଉଁ ମାନଙ୍କ ସ୍ତ୍ରୀ ଅଛନ୍ତି, ସେମାନଙ୍କ ସ୍ୱଭାବ ବେଶ୍ ନରମ। ଆଉ ଯେଉଁମାନେ ଅବିବାହିତ ବା ବିପତ୍ନୀକ, ସେମାନେ ରୁକ୍ଷ ପ୍ରକୃତିର। ଜବାହାରଲାଲ୍,

ସୁଭାଷବୋଷ, ବଲ୍ଲଭଭାଇ ପଟେଲ୍, କେହି ଥଣ୍ଡା ମିଜାଜ୍‌ରେ କୌଣସି କଥା ବିଚାର କରି ପାରନ୍ତି ନାହିଁ। ନାଁ, ସାମ୍ୟବାଦୀ ଦଳରେ ସେ ଯୋଗ ଦେଇନଥିଲେ ସୁଦ୍ଧା ବିଲୁକୁ ହୁଏତ ବଞ୍ଚାଇ ପାରି ନଥାନ୍ତି। ଏ ଆନ୍ଦୋଳନରେ ଏପରି ଅନେକେ ପ୍ରାଣ ହରାଇଛନ୍ତି, ଦୈନନ୍ଦିନ ଜୀବନରେ ଯେଉଁମାନଙ୍କର ରାଜନୀତି ସହିତ କୌଣସି ସମ୍ପର୍କ ନଥିଲା। ମହାତ୍ମାଜୀଙ୍କ ଶିଷ୍ୟ ମାନଙ୍କ ଭିତରେ କେତେ ଲୋକ ହିଂସାତ୍ମକ କାମ କରୁଛନ୍ତି, ତା'ର କଣ ଇୟତ୍ତା ଅଛି? ଜନ୍ମ ଆଉ ମୃତ୍ୟୁ କାହା ହାତର କଥା ନୁହେଁ।

...ସରସ୍ୱତୀ ସାଙ୍ଗରେ ବିଲୁକୁ ବାହା ଦେଇଥିଲେ ବେଶ୍ ହୋଇଥାନ୍ତା। ଦୁହେଁ ଜୀବନରେ ସୁଖୀ ହୋଇ ପାରିଥାନ୍ତେ। ସରସ୍ୱତୀ ବେଶ୍ ଭଲ ଝିଅ। ଅଗଷ୍ଟ ମାସରେ ପୁଲିସ ତାକୁ ଗିରଫ କରିଥିଲା। କିନ୍ତୁ ପ୍ରମାଣ ଅଭାବରେ ତିନି ମାସ ପରେ ସେ ଖଲାସ ହେଲା। ପୁଣି ଜାନୁୟାରୀ 26 ଦିବସରେ ସେ ଜେଲ୍ ଆସିଛି। ତା' ସହିତ ବିବାହ ହୋଇଥିଲେ, ରାଜନୀତି ସହିତ ଘର ସଂସାର ମଧ କରି ପାରିଥାନ୍ତେ। ଲେନିନ୍ ତ ପୁଣି ବିବାହ କରିଥିଲେ...

କପିଳଦେଓ ଆଉ ତା ମା' ମୋ ପାଖକୁ ପ୍ରସ୍ତାବ ଆଣିଥିଲେ। ସେମାନଙ୍କ ନିଜ ବଂଶରେ ଟିକିଏ ଗୋଳମାଳ ରହିଛି। ତା'ନହେଲେ କଣ ଏଇ ଅଳ୍ପ—ଶିକ୍ଷିତ ଭୂମିହାର—ବ୍ରହ୍ମଣ ପରିବାର ବଙ୍ଗାଳୀ ଘରେ ଝିଅ ଦେବା ପାଇଁ ରାଜି ହୁଅନ୍ତେ? ମୋର ଅବଶ୍ୟ ଏଥିରେ କୌଣସି ଆପତ୍ତି ନଥିଲା। କିନ୍ତୁ ବିଲୁବୋଉ ରାଜି ହେଲେ ନାହିଁ। ବିଲୁ ମତାମତ ତ ଆଦୌ ପଚରା ଯାଇ ନାହିଁ। ଆଜିକାଲିକା ପିଲା – ତାର ମତାମତ ଆଗେ ବୁଝିବା ଉଚିତ ଥିଲା। କିନ୍ତୁ ବିଲୁ ବୋଉ ଅମତ ହେବା ପରେ, ତାର ମତାମତ ପଚାରି, କଥା ଲମ୍ୱାଇ ଆଉ ଲାଭ କଣ? ବିଲୁବୋଉହିଁ ମୋତେ ଅନେକ ଦିନ ଆଗେ ଥରେ କହିଥିଲେ, ରାଜନୈତିକ କର୍ମୀ ପକ୍ଷରେ ବିବାହ କରିବା ଉଚିତ୍ ନୁହେଁ। କିନ୍ତୁ ସରସ୍ୱତୀ ସହିତ ଖାସା ମାନିଥାନ୍ତା। ଆଜିକାଲିକା ମଧ୍ୟବିତ୍ତ ବଙ୍ଗାଳୀ ଘର ଝିଅ ଅପେକ୍ଷା ସରସ୍ୱତୀ ଅନେକ ବେଶୀ କାମିକା। ଅବସ୍ଥା ତା'ର ଅନେକ ଭଲ। ଗଢ଼ଣ ମଧ ସୁନ୍ଦର। ଏଇତ ଚାହୁଁ ଚାହୁଁ ଏଡୁଟେ ହୋଇ ଗଲାଣି। କପିଳଦେଓର ମାମ୍‌ଲା ମୋକଦ୍ଦମା ସଦର କଚେରୀରେ ପ୍ରାୟ ଲାଗି ରହିଥାଏ। ଏଇ କଚେରୀ କାମରେ ଆସିଲେ ସେ ଆସେ ଆଶ୍ରମକୁ। ପ୍ରାୟ ପ୍ରତିଥର ସେ ଆସିବା ବେଳେ, ସାଙ୍ଗରେ ସରସ୍ୱତୀକୁ ନେଇ ଆସେ। ଏଇ ସେ ଦିନର କଥା। ଗୋଲାପୀ ରଙ୍ଗର ଶାଢ଼ୀ ପିନ୍ଧି, ଗୁଲାବ୍‌ବାଗ ମେଳା ଦେଖିବ ବୋଲି, ଶଗଡ଼ରେ କପିଳଦେଓ ସାଙ୍ଗରେ ଆଶ୍ରମକୁ ଆସିଥିଲା। ଆମମାନଙ୍କ ଘର ଝିଅ ହୋଇଥିଲେ, ଏଇ ବୟସରେ ଫ୍ରକ୍ ପିନ୍ଧୁଥାନ୍ତା। ରୋଷେଇଘର ପିଣ୍ଡାରେ ବିଲୁବୋଉ ତାକୁ ଖାଇବାକୁ ଦେଇଚନ୍ତି। କିନ୍ତୁ ଦୁଧଗିନାରେ ଗୋଟାଏ ଚୁମକ୍ ଦେବା ମାତ୍ରେ ସେ କାନ୍ଦି ଅସ୍ଥିର। ପରେ ସହଦେଓ ଆସି ଆଦର ଖୋସାମତ କରି, କାନ୍ଦିବାର କାରଣ ବାହାର କଲା – 'ଦୁଧଅ ଫିକଅ ଲଗଇଛେ।' ...ଅର୍ଥାତ ମଇଁଷି ଦୁଧ ଖାଇବା ତାର ଅଭ୍ୟାସ, ଗାଈଦୁଧ ପାଣିଚିଆ ଲାଗୁଛି ବୋଲି ବିଚାରୀ ପିଇ ପାରୁ ନାହିଁ। ...ବାହା ନ ହୋଇଛି ଭଲ ହୋଇଛି। ହୋଇଥିଲେ ତ ଆଉ ଗୋଟିଏ ଅଭାଗିନୀର ସଂଖ୍ୟା ବଢ଼ିଥାନ୍ତା ମାତ୍ର! ମୋରି ବୋଝ ବଢ଼ିଥାନ୍ତା। ତା ଛଡ଼ା ମୁଁ ବା ଆଉ କେତେଦିନ ବଞ୍ଚିବି? ତା ପରେ ନୀଲୁ ପୁଣି ଅଛି। ନୀଲୁର ପୁଣି ରହିବାର ଆଉ ନ ରହିବା ଏକାକଥା। ସେ ଥାଇ ସୁଦ୍ଧା ନାହିଁ। ତା ଉପରେ ନିର୍ଭର କଲେ ତ ସେ ଯେପରି ଖାମ୍‌ଖିଆଲୀ, ଦାୟିତ୍ୱ

ଜ୍ଞାନହୀନ ! କେବଳ ବିଲୁ ପାଖରେ ସେ ଟିକିଏ ଥଣ୍ଡା ଥାଏ ! ସେ କ'ଣ ଆଉ କାହାକୁ ମଣିଷ ବୋଲି ଭାବେ ନା କାହା କଥାରେ କାନ ଦିଏ ? ପିଲାଦିନୁ ସେ ଶାସନର ବାହାରେ। ବଡ଼ ହୋଇ ବରଂ ଶାନ୍ତ ଓ ଗମ୍ଭୀର ହୋଇଚି। ପିଲା ଦିନେ ସେ କି ଦୁଷ୍ଟ ଥିଲା ! ସବୁଦିନ ଗୋଟାଏ ନା ଗୋଟାଏ ଦୁଷ୍ଟାମି ଲାଗି ରହିଥାଏ।

...ଦିନେ ଦୁର୍ଗାବାବୁଙ୍କର ଗୋଟାଏ ବତକ ମାରି ସେମାନେ ଆଶ୍ରମର ପଶ୍ଚିମପଟ ବାଉଁଶ ବଣରେ ରାନ୍ଧୁଥିଲେ। ଦୁର୍ଗାବାବୁ ବ୍ୟସ୍ତ ବିବ୍ରତ ଭାବରେ ଆସି ନାଲିଶ କଲେ। ତାଙ୍କୁ ସାଙ୍ଗରେ ଧରି ନୀଲୁକୁ ଖୋଜିବା ପାଇଁ ବାହାରିଲି। ସାଙ୍ଗରେ ଥିଲା ଦୁର୍ଗାବାବୁଙ୍କ ବଡ଼ ପୁଅ। ଘରେ ସେଇ ଖବର ଦେଇଥିଲା। ବାଉଁଶ ବଣ ଭିତରେ ଆସାମୀ ଗିରଫ୍। ସାଙ୍ଗରେ ସାଇର ଆଉ କେତୋଟି ପିଲା—ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ଦୁର୍ଗାବାବୁଙ୍କ ସାନପୁଅ ନରୁ ମଧ ଥିଲା ସେମାନଙ୍କ ଦଳରେ। ନୀଲୁକୁ ବତକ ମାରିବା କଥା ପଚାରିବା ମାତ୍ରେ, ସେ କହିଲା, "ହଁ, ଆମେ ସମସ୍ତେ ମିଶି ବତକ କାଟିଚୁ।" ଏଇ ପ୍ରଶ୍ନ ପାଇଁ ସେ ଯେପରି ଆଗରୁ ପ୍ରସ୍ତୁତ ହୋଇ ରହିଥିଲା। ପରେ ଜେରାରେ କଥା ବାହାରିଲା, ଛୁରୀ ଆଣିଥିଲା ନରୁ—କାଟିଥିଲା ନୀଲୁ। କାଟିବା ଆଗରୁ ନୀଲୁ ସମସ୍ତଙ୍କ ଠାରୁ ସର୍ତ୍ତ ଆଦାୟ କରିଥିଲା ଯେ, କାଟିବା ବେଳେ ବାକି ଅନ୍ୟମାନେ ସମସ୍ତେ ତାକୁ ଛୁଇଁ ଠିଆ ହେବେ। ନୀଲୁ ବତକ କାଟିଥିଲା ଓ ତା'ପଛରେ ନରୁ ପ୍ରଭୃତି ପିଲାମାନେ, ଜଣକ ପରେ ଜଣେ, ରେଳଗାଡ଼ି ଖେଳ ପରି ପିଠି ଧରାଧରି ହୋଇ, ଠିଆ ହୋଇଥିଲେ। ସେମାନଙ୍କ ମୁଣ୍ଡରେ ପୁଣି ଏତେ ଫିକର !

ନୀଲୁର ବଳିଷ୍ଠ ଦେହ, ଭାବପ୍ରବଣତାହୀନ ମୁହଁ, ବିଲୁ ପାଖରେ ଯେପରି ଆଦୌ ମାନେ ନାହିଁ। ଆଜିକାଲି ନୀଲୁ ଦେଖିବାକୁ ବିଲୁ ଅପେକ୍ଷା ବଡ଼ ଜଣାପଡ଼େ। ତା' ମନକୁ ଯାହା ଆସିବ, ସେ ତାହାହିଁ କରିବ। ତାର ଅଦମ୍ୟ ସାହସ ଆଗରେ ସବୁ ବାଧା, ବିପତ୍ତି ତୁଚ୍ଛା ମନେ ହୁଏ। ନୀଲୁକୁ କିଛି କହିବା ପାଇଁ ଡର ମାଡ଼େ। ତା' ମୁହଁରେ ତ ବାଡ଼ବତା ନାହିଁ। କିନ୍ତୁ ବିଲୁକୁ କିଛି କହିବା ପୂର୍ବରୁ ଭାବେ, ମୋ କଥା ଏଇ ଭାବପ୍ରବଣ ମନକୁ ଆହତ କରିବ ନାହିଁ ତ ! ବିଲୁ ମୁହଁ ଫିଟାଇ କିଛି କହିବ ନାହିଁ—କିନ୍ତୁ ତା ଆଖି ହୁଏତ ଲୁହ ଛଳଛଳ ହୋଇ ଉଠିବ। ଆଉ ନୀଲୁ—ନୀଲୁ ତ ମୋ ପ୍ରାଣରେ ଆଘାତ ଦେବାର ସୁଯୋଗ ପାଇଲେ ଛାଡ଼େ ନାହିଁ। ନୀଲୁ କଲେଜରେ ପଢ଼ିବା କଥା ଯେତେବେଳେ ଉଠିଲା, ମୁଁ ମନା କରି ନାହିଁ। ମୁଁ ଲକ୍ଷ୍ୟ କଲି, ନୀଲୁର ଇଚ୍ଛାତ ରହିଚି, ତା' ଛଡ଼ା ବିଲୁ ଆଉ ତା' ବୋଉର ଇଚ୍ଛା ସେ ଇଂରାଜୀ କଲେଜରେ ପଢୁ—ସେ ନିଜେ କାଶୀ ବିଦ୍ୟାପୀଠରେ ପଢ଼ି ସନ୍ତୁଷ୍ଟ ହୋଇ ପାରିନାହିଁ। ଆଉ ତ' ମା ବିଦ୍ୟାପୀଠ ପଢ଼ାକୁ ପାଠ ବୋଲି ଜ୍ଞାନ କରନ୍ତି ନାହିଁ। ...ସବୁ ଠିକ୍ ଠାକ୍। ନୀଲୁ ହଠାତ୍ ଅଡ଼ି ବସିଲା, ଗାନ୍ଧି ସେବା—ସଂଘ ପଇସାରେ, ସେ କଲେଜରେ ପଢ଼ିବ ନାଇଁ ! ତା' ମୁଣ୍ଡରେ ପୁଣି ଏତେ କଥା ଜୁଟେ ! ଚାକିରୀ କଲା ବେଳେ ଯେଉଁ ସାମାନ୍ୟ ଟଙ୍କା ପଇସା ଜମାଇଥିଲି, ସେତକ ପ୍ରାୟ ଶେଷ ହୋଇ ଆସୁଥିଲା ! ନିଜ ଟଙ୍କାରେ ପୁଣି ପକାଇଥିଲି ଆଶ୍ରମ ମୂଳଦୁଆ। ସେଥିରେ ବି ଅନେକ ଟଙ୍କା ଖରଚ ହୋଇ ଯାଇଥିଲା। ତିନିଥର ଜୋରିମାନାରେ ପୁଣି ନଅଶହ ଟଙ୍କା ଯାଇଛି। କଂଗ୍ରେସ ନାମରେ ଅନେକ ଲୋକ ମୋତେ ସାହାଯ୍ୟ କରିବା ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ସେମାନଙ୍କ ସାହାଯ୍ୟ ନେବା ପାଇଁ ମୁଁ ଅସ୍ୱୀକାର କରି

ଦେଇଥିଲି । ଅନ୍ୟାନ୍ୟ ଆଶ୍ରମରେ ଯେପରି ଚାନ୍ଦା ଉଠେ, ମୋ ଆଶ୍ରମରେ ତାହା ଆରମ୍ଭରୁ ନିଷିଦ୍ଧ । ଚାନ୍ଦା ନେଲେ ଆତ୍ମସମ୍ମାନ ବଜାୟ ରଖିବା ଯେପରି କଠିନ, ନିଷ୍ପକ୍ଷ ଓ ନିର୍ଭୀକ ଭାବରେ କାର୍ଯ୍ୟ କରିବା ସେଇପରି ଅସମ୍ଭବ । ଅର୍ଥାଭାବରେ ମୋର ସଂସାର ଯେତେବେଳେ ପ୍ରାୟ ଅଚଳ ହୋଇ ପଡ଼ିଲା, ସେତେବେଳେ ଖବର ପାଇଲି ଯେ, ଗାନ୍ଧି ସେବା – ସଂଘ ପକ୍ଷରୁ ମୋତେ ମାସିକ ପଞ୍ଚସ୍ତରୀ ଟଙ୍କା ଭତ୍ତା ମିଳିବ । ଏ ଟଙ୍କା ନ ପାଇଥିଲେ, ମୋତେ ହୁଏତ ଆଶ୍ରମର ଆୟ ଉପରେ ନିର୍ଭର କରିବାକୁ ପଡ଼ିଥାନ୍ତା । ଆଶ୍ରମର ଆୟ ବା କ'ଣ ? ଦୁଇଟା ଶଗଡ଼ ଭଡ଼ା ଲାଗେ, ଦୁଇଟା ତେଲ ଘଣି, ଗୋଟିଏ ଗ୍ରାମୋଦ୍ୟୋଗ ଭଣ୍ଡାର, ଲୁଗାକଚା ସାବୁନ୍ ତିଆରି ଆଉ କେତେଟା ଦୈନିକ ସମ୍ବାଦପତ୍ରର ଏଜେନ୍‌ସୀ – ଆଶ୍ରମ ଆୟର ସୂତ୍ର ଏତିକି । ଆମ ଆଶ୍ରମରେ ମହୁମାଛି ପୋଷା, ଗୋଟିପୋକ ଚାଷରୁ ବିଶେଷ ଆର୍ଥିକ ଲାଭ ହୁଏ ନାହିଁ । ତେବେ ବାଡ଼ିବଗିଚାରୁ ଆଶ୍ରମ ଲୋକଙ୍କ ଖାଇବା ପାଇଁ ପରିବା ଖର୍ଚ୍ଚଟା ଚଳିଥାଏ । କିନ୍ତୁ ଏତେ କରି ସୁଦ୍ଧା, ଆଶ୍ରମର ଯେଉଁ ଆୟ ହୁଏ, ସେଥିରେ ଆଶ୍ରମର ଭଲେଣ୍ଟିଅର୍ ମାନଙ୍କର ଖାଇବା, ପିନ୍ଧିବା ଖର୍ଚ୍ଚ ମେଣ୍ଟିବା ମୁସ୍କିଲ୍ । ତା' ଉପରେ ଯଦି ଆଶ୍ରମ ଆୟରୁ ମୋ ସଂସାରର ଖର୍ଚ୍ଚ ଚଳାଇବାକୁ ପଡ଼ନ୍ତା, ତା' ହେଲେ ଆଶ୍ରମ ପାଠାଗାର ଆଉ ଜିଲ୍ଲା – କଂଗ୍ରେସର ସାପ୍ତାହିକ ପତ୍ରିକା କିପରି ଚଳନ୍ତା ? ଜିଲ୍ଲା – କଂଗ୍ରେସର ଅନ୍ୟାନ୍ୟ ଖର୍ଚ୍ଚ ସହିତ ଅବଶ୍ୟ ଆଶ୍ରମର କୌଣସି ସମ୍ବନ୍ଧ ନାହିଁ । ଏଇ ସବୁ ଦୁଶ୍ଚିନ୍ତାରୁ ମୋତେ ବଞ୍ଚାଇ ଦେଇଥିଲା, ଗାନ୍ଧି – ସେବା – ସଂଘ ପକ୍ଷରୁ ପ୍ରଦତ୍ତ ମାସିକ ସାହାଯ୍ୟ । ଏ ଟଙ୍କା ନେବାରେ ଯେ କିଛି ଅପମାନଜନକ କଥା ଥାଇପାରେ, ତାହା ମୋର ମନେ ହୋଇ ନଥିଲା । ଏ ଟଙ୍କା ମୋତେ ଯେଉଁ ପ୍ରତିଷ୍ଠାନ ଦେଉନ୍ତୁ ନାଁ କାହିଁକି, ଏହା ଯେ କୌଣସି କୋଟିପତିଙ୍କର ଦାନ ହେଉନା କାହିଁକି, ମୁଁ ତ ଜାଣିଚି ଏହା ମହାତ୍ମାଜୀଙ୍କର ଆଶୀର୍ବାଦ – ତାଙ୍କ ସେବକ ଅସୁବିଧାରେ ପଡ଼ିଚି ଜାଣି, ସେ ତାର ବ୍ୟବସ୍ଥା କରି ଦେଇଛନ୍ତି । ଆଉ ନୀଳୁ କହୁଚି କଣ ନାଁ, ସେ କଲେଜରେ ପଢ଼ିବ ନାହିଁ – କାରଣ, ତା'ହେଲେ ତାକୁ ଗାନ୍ଧି – ସେବା – ସଂଘର ଟଙ୍କା ନେବା ପାଇଁ ପଡ଼ିବ । ସେଥର ଜୟସୋଆଲ୍‌ଜୀଙ୍କ ଭଗ୍ନୀଙ୍କ ସହିତ ବାପୁଜୀଙ୍କ କଥାବାର୍ତ୍ତା ସମସ୍ତଙ୍କର ସ୍ମରଣ ଥିଲା । କେହି ବି ଜୋର୍ କରି ପାରୁ ନାହାନ୍ତି । ପୁଣି ବିଲୁ ଆଉ ବିଲୁବୋଉକୁ ଦେଖୁଚି, ସେମାନେ ନୀଳୁ ମତକୁ ସମର୍ଥନ କରୁଚନ୍ତି । ମୋ ଦୃଷ୍ଟିକୋଣରୁ କଥାଟାକୁ କେହି ବିଚାର କରୁ ନାହାନ୍ତି । ମୁଁ ଆଉ ମୋ ପରିବାର ମଧ୍ୟରେ ବ୍ୟବଧାନ ଗୋଟାଏ ସ୍ଥାନରେ ଏତେ ଗଭୀର ସେକଥା ମୁଁ ଆଗରୁ ଭାବି ପାରି ନଥିଲି । ବିଲୁ ବୋଉର ସହ୍ୟଶକ୍ତିକୁ ମୁଁ ଉତ୍ସାହପୂର୍ଣ୍ଣ ସମ୍ମତି ବୋଲି ଭାବି ଭୁଲ୍ କରିଥିଲି । ପିଲାମାନେ ଅନ୍ୟ ରାଜନୈତିକ ପଥ ଗ୍ରହଣ କରିବା ମୂଳରେ ହୁଏତ ରହିଛି, – ଏଇ ଆନ୍ତରିକ ଦ୍ୱନ୍ଦ୍ୱ । ତା'ପରେ ନୀଳୁ କଲେଜରେ ପଢ଼ିଲା – କିନ୍ତୁ ମୋ'ଠୁ ଗୋଟାଏ ପଇସା ସୁଦ୍ଧା ନେଇ ନାହିଁ । କଲେଜଖର୍ଚ୍ଚ ଯୋଗାଉଥିଲା ବିଲୁ । ବିହାର – ଆର୍ଥକ୍ୱେକ୍ – ରିଲିଫ୍ କାମ ପଡ଼ିଥିଲା କଂଗ୍ରେସ କର୍ମୀ ମାନଙ୍କ ଉପରେ । ଏ କାମରେ ପୂର୍ଣ୍ଣିଆ ଜିଲ୍ଲାର ଆକାଉଣ୍ଟାଣ୍ଟ୍ ଥିଲା ବିଲୁ । ସେଥିପାଇଁ ସେ ତିରିଶ ଟଙ୍କା କରି ମାସିକ ଭତ୍ତା ପାଉଥିଲା । ଏ ଟଙ୍କା ସେ ଖର୍ଚ୍ଚ କରୁଥିଲା ନୀଳୁର ପଢ଼ାରେ । ଭାଇ ପାଖରୁ ଟଙ୍କା ନେବା ପାଇଁ ନୀଳୁର ଆପତ୍ତି ନଥିଲା – ଯେତେ ସଙ୍କୋଚ ମୋ ଠାରୁ ଟଙ୍କା ନେବା ବେଳକୁ । ମୋ ଜୀବନରେ ଏତେ ବଡ଼ ନିର୍ମମ ଆଘାତ, ଆଉକାହାଠୁ ପାଇଛି କି ନାହିଁ,

ସନ୍ଦେହ। ...ଅଥଚ ଏକଥା ମୁଁ ଠିକ୍ ଜାଣେ ଯେ, ପଢ଼ାଶୁଣା ଛଡ଼ା ନୀଳୁକୁ ଆଉ ଯେ କୌଣସି କ୍ଷେତ୍ରରେ ଛାଡ଼ି ଦିଆଯାଉ, ସେ ସେଇ କ୍ଷେତ୍ରରେ ସର୍ବୋଚ୍ଚ ସୀମା ସ୍ପର୍ଶ କରିବ। ବିଲୁ କିନ୍ତୁ ଶିକ୍ଷକତା ଛଡ଼ା ଅନ୍ୟ କୌଣସି ଲାଇନ୍‌ରେ ଥିଲେ, ବିଶେଷ ସାଫଲ୍ୟ ଅର୍ଜନ କରି ପାରିନଥାନ୍ତା। କେତେ ଛାତ୍ରଙ୍କୁ ଏଇ ହାତରେ ଗଢ଼ିଲି, ଆଉ ଏଇ ଟିକକ ବୁଝିପାରିବି ନାହିଁ? କିନ୍ତୁ ନୀଳୁ, ତୁମେ ନିଜ ଭାଇ ବିରୁଦ୍ଧରେ ସାକ୍ଷ୍ୟ ଦେବା ମର୍ମ ମୁଁ ବୁଝି ପାରିଲି ନାହିଁ। ତୁମ ପାର୍ଟିର ନିର୍ଦ୍ଦେଶ ସେଇପରି ଥିଲେ ମୋର କିଛି କହିବାର ନାହିଁ। ମହାତ୍ମାଜୀଙ୍କ ଆଦେଶ ହେଲେ, ମୁଁ ମଧ୍ୟ ମୋର ସର୍ବସ୍ୱ ତ୍ୟାଗ କରିବା ପାଇଁ ପ୍ରସ୍ତୁତ ଅଛି। କିନ୍ତୁ କୌଣସି ରାଜନୈତିକ ପାର୍ଟି କଣ ଏପରି ନିର୍ଦ୍ଦେଶ ଦେଇପାରେ? ନୀଳୁ ଓ ବିଲୁଙ୍କର ଉଭୟ ଦଳର ଲକ୍ଷ୍ୟ ଏକ–କାର୍ଯ୍ୟକ୍ରମରେ ଟିକିଏ ହୁଏତ ପାର୍ଥକ୍ୟ ରହିଯାଇଛି। କିନ୍ତୁ ଏହାର ପରିଣତି କଣ ଏତେଦୂର ପର୍ଯ୍ୟନ୍ତ ଯାଇପାରେ? ଜନମତ ଉପରେ ଯେଉଁ ପାର୍ଟି ନିର୍ଭର କରେ, ତାର ତ ଏକମାତ୍ର କର୍ତ୍ତବ୍ୟ ହେବା ଉଚିତ, ଜନତାକୁ ଅନ୍ୟ ଦଳର ଭୁଲଭ୍ରାନ୍ତି ବୁଝାଇ, ଭ୍ରାନ୍ତପଥଗାମୀ ଜନତାକୁ ନିଜ ପଥାନୁସାରୀ କରିବା। ନିର୍ଦ୍ଦେଶ ବୁଝିବାରେ ତୁମର ନିଶ୍ଚୟ ଭୁଲ୍ ହୋଇଛି ନୀଳୁ। ଏଇ ଭୁଲ୍‌ର ପରିଣତି ନିଶ୍ଚୟ ଭୋଗ କରିବା ପାଇଁ ପଡ଼ିବ। ତୁମର ଫର୍ମୁଲାବନ୍ଧା ଯୁକ୍ତି ମୁଁ ବୁଝେ ନାଇଁ ସତ; କିନ୍ତୁ ସାଦାସିଧା ବୁଦ୍ଧିରେ ଯେଉଁ ଟିକକ ବୁଝେ, ସେ କଥା ଠିକ୍ କି ନୁହେଁ; ତୁମ ଦଳର ନେତା ମାନଙ୍କ ପାଖରୁ ପଚାରି ବୁଝିବ। ବର୍ତ୍ତମାନ ତାହା ଠିକ୍ ହେଉ ବା ନହେଉ, ସେଥିରେ ଆଉ କିଛି ଯାଏ ଆସେ ନାହିଁ। ଅନ୍ୟାୟ ଓ କ୍ଷତି ଯାହା ହେବାର ହୋଇ ଯାଇଛି। ସାରାଜୀବନ ତୁମକୁ ଏକଥା ଖୁଞ୍ଚା ଦେଉଥିବ। ଅନୁତାପର ଜ୍ୱାଳା ତିଳେ ତିଳେ ତୁମକୁ ଦଗ୍ଧ କରୁଥିବ–ତେବେ ବି ତୁମ କୃତକର୍ମର ପ୍ରାୟଶ୍ଚିତ୍ତ ହେବ ନାହିଁ। ଏ କ'ଣ, ନିଜ ପୁଅକୁ ଅଭିଶାପ ଦେଉଚି ନାଁ କଣ? ନାଁ ନୀଳୁ, ଭଗବାନ କରନ୍ତୁ, ତୁମେ ଯେପରି କୌଣସି ଦିନ ନିଜର ଭୁଲ୍ ନ ବୁଝ। ତୁମେ ତୁମ ପାର୍ଟିର ନିର୍ଦ୍ଦେଶ ଯାହା ବୁଝିଚ ସେଇଆ ଯେପରି ଠିକ୍ ହୁଏ; କାରଣ ତୁମେ ତାକୁ ଇ ନିର୍ଭର କରି ଠିଆ ହୋଇଚ। ତୁମ ମନର ଦୃଢ଼ତା ଯେତେ ହେଉ ନା କାହିଁକି, ତୁମ ଯୁକ୍ତିର ଯଥାର୍ଥତା ସମ୍ପର୍କରେ ତୁମର ସନ୍ଦେହ ଜନ୍ମିଲେ, ତୁମେ ଭାଙ୍ଗି ପଡ଼ିବ। ମୁଁ ତ ଜାଣେ, ତୁମ ପାଖରେ ତୁମ ଭାଇର ସ୍ଥାନ କଣ ଥିଲା!

"ମହାଶୟ ଜୀ!"

ଖେଦନ୍‌ଲାଲ୍‌ଜୀ ମୋ ସାମ୍‌ନାରେ ଠିଆ ହୋଇଚନ୍ତି।

"ନିଦ ମାଡ଼ିଲାଣି?"

ନ ବସନ୍ତା କି ଏଠି! ବସିଲେ ଅବିକା ଅନର୍ଗଳ ଗପିବ। ଭଦ୍ରଲୋକ, ଏତେ ବାଜେ କଥା ଗପି ପାରନ୍ତି ପୁଣି! ତାଙ୍କର ତିନିପୁଅ–ସ୍ୱରାଜପ୍ରସାଦ, ସ୍ୱତନ୍ତ୍ର ପ୍ରସାଦ ଆଉ ସଙ୍ଗଠନପ୍ରସାଦ। ନାଁ ସବୁ ଆଶ୍ଚର୍ଯ୍ୟ। ନୀଳୁ ଆଉ ବିଲୁ। ମୋ ପୁଅ ମାନଙ୍କର ନାଁ ଅତି ସାଧାରଣ। ଭାବିଚିନ୍ତି ନାଁ ଦିଆ ଯାଇନଥିଲା। ବାପା, ବିଲୁକୁ ଡାକୁଥିଲେ ବଲୋଇ–ସେଇଥିରୁ କ୍ରମେ ହୋଇଗଲା ବିଲୁ। ନୀଳୁକୁ ବାପା ବୋଧହୁଏ ଦେଖିନାହାନ୍ତି। ନାଁ, ନୀଳୁ ଜନ୍ମ ପରେ ତ ବାପାଙ୍କର ପରଲୋକପ୍ରାପ୍ତି ଘଟିଥିଲା। ଭାବିଚିନ୍ତି ନାଁ ଦେବା, ପୁଣି ଏକ ଜଞ୍ଜାଳ। ଖେଦନ୍‌ଲାଲ୍‌ଜୀ ତାଙ୍କ ମଝିଆଁ ପୁଅ ସ୍ୱତନ୍ତ୍ରପ୍ରସାଦକୁ ଚିଠି ଲେଖିଥିଲେ।

ଚିଠିରେ ଅନ୍ୟ ପୁଅମାନଙ୍କ ନାଁ ଲେଖାଥିଲା । ଜେଲ୍ ସି.ଆଇ.ସେ ଚିଠିକୁ କୌଣସିମତେ ପାସ୍ କଲେ ନାହିଁ। ତାଙ୍କର ସନ୍ଦେହ, କୋଡ୍‌ରେ କୌଣସି ଖବର ପଠାଯାଉଛି। ତା' ପରଠୁ ସି.ଆଇ.ଡ଼ି. ସହିତ ଚାଲିଚି ତାଙ୍କର ଝଗଡ଼ା। ଭଲରେ ଭଲରେ ବୁଝାଇ ଦେଇଥିଲେ ତ ଚଳିଥାନ୍ତା। ତା' ପରିବର୍ତ୍ତେ ଦୁଇପକ୍ଷ ନିଜ ଜିଦ୍‌ରେ ଅଟଳ। ଭଦ୍ରଲୋକ ସାନପୁଅକୁ ଚିଠି ଲେଖିଥିଲେ। ଜିଦାଜିଦି ଫଳରେ ସେ ଚିଠି ପଅରଦିନ ଫେରି ଆସିଛି। ଚିଠିରେ ଗୋଟାଏ ଲାଇନ୍‌ଥିଲା – ''ତୁମେ ମାନେ ଏତେ ଦିନ ଯେ ମୋ ଚିଠି ପାଇ ନାହିଁ, ତା' ଉପରେ ମୋର କୌଣସି ହାତ ନଥିଲା। ଏ ଚିଠିକୁ କିନ୍ତୁ କୌଣସି ଉଲ୍ଲୁ (ପେଚା)ର ବାବା ସୁଦ୍ଧା ଅଟକାଇ ପାରିବ ନାହିଁ।'' ସେ ଚିଠି ବି ଫେରସ୍ତ ଆସିଲା। – ତା' ସହିତ ଖଣ୍ଡେ ଚିର୍‌କୁଟିରେ ସି.ଆଇ.ଡ଼ିର ନୋଟ୍ ''ଏଇ କୟଦୀ ଚିଠିରେ ନିଜ ବାବାଙ୍କ ସମ୍ପର୍କରେ କଣ ସବୁ ଲେଖିଛନ୍ତି। ସେସବୁ ସନ୍ଦେହଜନକ ମନେହୁଏ। ସେଥିପାଇଁ ଏ ଚିଠି ପାସ୍ କରାଗଲା ନାହିଁ।''

ଏ କଣ ଖେଦନଲାଲ୍‌ଜୀ ଉଠି ଯାଉଛନ୍ତି ଯେ? ମୋ ଅନୁରୋଧରେ ଏଇମାତ୍ର କମ୍ବଳ ଉପରେ ବସିଲେ, ବସିବା ସାଙ୍ଗେ ସାଙ୍ଗେ ଉଠି ଚାଲିଯାଉଛନ୍ତି। ବୋଧହୁଏ ମୁଁ କଥାବାର୍ତ୍ତା ହେଲି ନାହିଁ ବୋଲି ସେ ଉଠିଗଲେ। ଭଦ୍ରଲୋକ କଣ ଭାବିଥିବେ ? ଖେଦନ୍‌ଲାଲ୍ ସେଠୁ ଯାଇଁ ବୈଜନାଥର ଚେଆର୍ ଉପରେ ବସିଲେ। ବୈଜନାଥଙ୍କ ଦଳ ଶୋଇ ପଡ଼ିଲେଣି ବୋଧହୁଏ ! ବସି ରହିଛନ୍ତି କେବଳ, ଖେଦନ୍‌ଲାଲ୍‌ଜୀ, ସୁରଜ୍‌ବଲ୍ଲୀବାବୁ, ହରିହରଜୀ ଆଉ ରାମଶରଣ ଜୀ। ବୋଧହୁଏ ଏମାନେ ପାଳି କରି ରାତିରେ ଚେଇଁବେ। ସମସ୍ତେ ତ ଚେଇଁଥିବା ପରି ମନେ ହେଉଚି। ପାଳି କରି ଚାରି ଚାରି ଜଣ ମୋ ପାଖ ସିଟ୍‌ରେ ଆସି ବସୁଛନ୍ତି। ଏଇଥିପାଇଁ ବୋଧହୁଏ ବୈଜନାଥଙ୍କ ଦଳ କିଛି ସମୟ ପୂର୍ବେ ଆସି ମୋ ପାଖରେ ବସିଥିଲେ। ସଦାଶିବ ଆଉ ବୈଜନାଥ ଭିତରେ ସେଇ ଯେଉଁ ଚୁପ୍‌ଚୁପ୍ କଥାବାର୍ତ୍ତା ହେଉଥିଲା, ତାହା ଏଇଥିପାଇଁ, ଏତେବେଳେ ବୁଝାପଡ଼ିଲା। ଏମାନେ ମୋ ଉପରେ ନଜର ରଖିବା ପାଇଁ ଚାହାନ୍ତି। ସେମାନଙ୍କ ଆଶଙ୍କା, କାଳେ ମୁଁ କ'ଣ କରି ପକାଇବି। ଏମାନଙ୍କୁ କିଏ ବୁଝାଇବ ଯେ, ଏମାନେ ମୋତେ ଯେତେଟା ବିଚଳିତ ମନେ କରୁଚନ୍ତି, ମୁଁ ସେତେଟା ବିଚଳିତ ହୋଇ ନାହିଁ। ପୁଅ ପ୍ରତି ଯଦି ମୋର ମମତା ଥା'ନ୍ତା, ତା'ହେଲେ ବିଲୁର କ'ଣ ଆଜି ଏଇ ଅବସ୍ଥା ହୋଇଥାନ୍ତା ? ସଦାଶିବ ପୁଣି ଗଲା କୁଆଡ଼େ ? ମୋରି ଖଟ ଉପରେ ତ ବସିଥିଲା। ଓ ! ଏଇତ ...ମୋ ବିଛଣାରେ ଶୋଇ ପଡ଼ିଚି। ବୋଧହୁଏ ତାକୁ ନିଦ ମାଡ଼ିଲାଣି। ଆହା ! ମଶାଗୁଡ଼ା ବିଚରାକୁ ଝୁଣି ପକାଇଲେ। ବରଂ ମଶାରୀଟା ଉଠି ପକାଇଦିଏ। ମତେ ଉଠିବା ଦେଖି, ସୁରଜବଲ୍ଲୀ ବାବୁ ଆଉ ହରିହରଜୀ ଛୁଟି ଆସିଲେ – ''କଣ ? କଣ ହେଲା ? ଛାଡ଼ନ୍ତୁ ମୁଁ ମଶାରୀ ପକାଇ ଦେଉଛି। ଅପଣ ବସନ୍ତୁ।'' ପାଟି ଗୋଳରେ ସଦାଶିବ ଉଠି ବସିଲା। ବିଚ୍ରା ଏକାବେଳେ ଅପ୍ରସ୍ତୁତ ହୋଇ ପଡ଼ିଚି – ଛି, ଛି, ଏତେ ଗୋଳମାଳର କାରଣ ସେଇ ! ଫେରି ଆସି କମ୍ବଳ ଉପରେ ବସିଲି।

'ବସନ୍ତୁ ସୁରଜବଲ୍ଲୀ ବାବୁ'।

ସୁରଜବଲ୍ଲୀ ବାବୁ ମୋ ପାଖରେ କମ୍ବଳ ଉପରେ ବସିଲେ। ଭଦ୍ରଲୋକଙ୍କୁ ଭାରି ଭଲ ଲାଗେ। ତା'ଛଡ଼ା ତାଙ୍କର ଏକମାତ୍ର ପୁଅ ଗତ ଆନ୍ଦୋଳନରେ, ଅଗଷ୍ଟ ମାସରେ,

ପ୍ରାଣ ହରାଇଛି। ଦଶବର୍ଷର ପୁଅ। ତା' ବାପାକୁ ଗିରଫ କରି ଥାନାକୁ ନେବା ବେଳେ, ଦଳ ଦଳ ଲୋକ ପ୍ରୋସେସନ୍ କରି ଥାନା ଆଡ଼କୁ ମାଡ଼ି ଆସିଲେ। ସେ ମଧ୍ୟ ସେଇ ଭିଡ଼ ଭିତରେ ଆସିଥିଲା; ସଦରକୁ ପଠାଇବା ପୂର୍ବରୁ ବାପକୁ ଥରେ ଦେଖିବା ପାଇଁ। ଘରେ ତାର ଆଈମା କାନ୍ଦବୋବାଳି ଆରମ୍ଭ କରିଛନ୍ତି। ମା' ବସିଛନ୍ତି ଝିଡ଼୍‌କି ପାଖରେ। ତାକୁ କିନ୍ତୁ ବେଶ୍ ଲାଗୁଥିଲା। ''ଜୟ ସୁରଜବଲ୍ଲୀଜୀ କି ଜୟ''– ଅଗଣିତ ଲୋକଙ୍କ ମୁହଁରେ ତା'ରି ବାପାଙ୍କ ଜୟଧ୍ୱନି। ସମସ୍ତଙ୍କ ମୁହଁରେ ତାରି ବାପାଙ୍କ ପ୍ରଶଂସା। ବଯେରେ ମହାତ୍ମାଜୀଙ୍କ ମିଟିଂ ହୋଇ ଯାଇଛି। ଆଜି ସକାଳେ ବାପା ସମସ୍ତଙ୍କୁ ଖବର ଶୁଣାଇଥିଲେ ଯେ, ମହାତ୍ମାଜୀ ଗିରଫ ହୋଇଗଲେ। ତା'ପରେ ବାପା ହେଲେ ଗିରଫ। ମୁହୂର୍ତ୍ତକ ଭିତରେ ଲୋକ ମୁଖରେ ବାପାଙ୍କ ନାଁ ଖେଳିଗଲା। ବାପା ମହାତ୍ମାଜୀଙ୍କ ପରି ବଡ଼ ହୋଇ ଉଠିଚନ୍ତି। ପୁଲିସ ଗୁଡ଼ାଙ୍କ ଉପରେ ତା'ର ରାଗ ହେଉଚି। କିଏ ଜାଣେ ସେମାନେ ତାର ବାପାଙ୍କୁ ନେଇ କ'ଣ ନାଇଁ କ'ଣ କରିବେ? ଜେଲ୍ ନାଁ ଶୁଣି ପ୍ରଥମେ ତା'ର ଭୟ ହେଉଥିଲା। କିନ୍ତୁ ଗତବର୍ଷ ତା'ର ବାପା ସତ୍ୟାଗ୍ରହ କରି ଜେଲ୍ ଯିବା ବେଳେ ସେ ଦେଖିଛି ବାପାଙ୍କ ବେକରେ କେତେ ଗେଣ୍ଡୁଫୁଲମାଳା। ଆଈମା ତା' ପୂର୍ବରୁ କହିଥିଲେ, ବାପା 'ନ ଏକ ପାଇ, ନ ଏକ ଭାଇ, ଇଂରେଜକା ଲଢ଼ାଇ ମେ' ଏଇ ନାରା ଦେବା ମାତ୍ରେ, ପୋଲିସ ଲାଠିମାଡ଼ରେ ଜାନ୍ ବାହାର କରିଦେବ। କିନ୍ତୁ ତା'ର ପରିବର୍ତ୍ତେ ସେ ଦେଖିଥିଲା ଦାରୋଗା ସାହେବ–ଏତେ ବଡ଼ ଜଣେ ହାକିମ, ବାପାଙ୍କୁ ନିଜ ଘରକୁ ଅମନ୍ତ୍ରଣ କରି ଆଣି ଖୁଆଇ ଥିଲେ। ଦାରୋଗା ସାହେବଙ୍କ ସ୍ତ୍ରୀ ତାଙ୍କୁ ମଧ୍ୟ ଡାକି ଚର୍ଚ୍ଚା କରିଥିଲେ। ବାପା କେତେ ମାସ ପରେ, ଜେଲ୍‌ରୁ ଫେରିବା ବେଳେ, ବାକ୍ସ ଭର୍ତ୍ତି କରି କେତେ ଜିନିଷ ଆଣିଥିଲେ। ଜେଲରେ ଦାଢ଼ୀ ଖିଅର ହେବା 'ବିଲେଡ଼'ରେ ସେ ଛୁରୀ ତଆରି କରିଥିଲା। ସେଇ ବାକ୍ସ ଭିତରେ ସେ ପ୍ରଥମେ ଦେଖିଥିଲା, 'ବିଲାତୀ ଦାଁତୋୟାନ୍ (ଟୁଥ୍‌ବ୍ରସ୍)। ନାନା (ଅଜା) ମୁଣ୍ଡ ନଣ୍ଡା ହେବାର ଦଶ ବାର ଦିନ ପରେ, ବାଳ ଗୁଡ଼ାକ ଯେପରି ଗଜୁରି ଉଠେ, ବିଲାତୀ ଦାଁତୋୟାନ୍‌ର ରୁଆ ଗୁଡ଼ାକ ଦେଖିବାକୁ ଠିକ୍ ସେଇପରି। ତା' ଉପରେ ଦୁଧ ପରି ଦବାଇ ରଖି ଦାନ୍ତଘଷିବାକୁ ହୁଏ। ଛୋଟ ଭଉଣୀ ଧନ୍‌ଧନିଆ ଏଡ଼େ ବୋକୀ ଯେ, ତା' ଗାଲରେ ଏଇ ଦାନ୍ତୋଆନ୍ ଟିକିଏ ଘଷି ଦେବାରୁ ସେ କାନ୍ଦି ଉଠିଲା। ପିଲାଦିନେ ନାନା ମଧ୍ୟ ତାକୁ ଏଇପରି ଦାଢ଼ୀ ଘଷି ଦେବାର ଭୟ ଦେଖାଉଥିଲେ। ...ଥାନାର ତାରବାଡ଼ ଚାରିପଟ ଲୋକାରଣ୍ୟ। ଥାନା ଛାତ ଯେଉଁଠି ଦେଖାଯାଉ ନାହିଁ, ସେଠି ପୁଣି ବାପା ଦେଖାଯିବେ? ତାରବାଡ଼ ଭାଙ୍ଗି ଜନସମୁଦ୍ର ଥାନାହତା ଭିତରକୁ ପଶିଲେ। ଭିଡ଼ ଆଉ ଠେଲାପେଲା ଭିତରେ ସେ କ୍ରମେ ଆଗେଇ ଯାଉଛି। ସୁରଜବଲ୍ଲୀଜୀକି ଜୟ। ସମସ୍ତେ ଥାନା ଆଡ଼କୁ ଦଉଡ଼ୁଛନ୍ତି କାହିଁକି? ତା'ପରେ...

ତା' ପରଦିନ ରାତିରେ ସୁରଜବଲ୍ଲୀରବାବୁଙ୍କୁ 'ଲକ୍–ଅପ୍' ପରେ ଦବାରଜା ଖୋଲି ଜେଲ୍ ବାହାରକୁ ନେଇଗଲେ। ଶୁଣିଲି ସହର ହାସ୍‌ପାତାଳକୁ ନେଇ ଯାଉଛନ୍ତି। ସେମାନଙ୍କର ଅସୀମ କରୁଣା– ଶେଷ ମୁହୂର୍ତ୍ତରେ ଆନ୍ତତଃ ଦେଖା କରାଇ ଦେଇଥିଲେ। କେତେ ଘଣ୍ଟା ପାଇଁ ଶ୍ମଶାନଘାଟରେ ରହିବା ପାଇଁ ଅନ୍ତତଃ ଅନୁମତି ଦେଇଥିଲେ। ପିଲାଟିର ଆଣ୍ଠୁ ଉପରୁ ବାଁ ପାଦଟା କାଟି ଦେବା ପାଇଁ ପଡିଲା; ତା'ପରେ ସିଭିଲ୍ ସର୍ଜନ୍ ବୁଝିଲେ ଯେ, ସିଏ ଆଉ ବଞ୍ଚିବ ନାହିଁ। ....ପରଦିନ ସନ୍ଧ୍ୟାରେ ସୁରଜବଲ୍ଲୀ ବାବୁ ପୁଣି

ଯେତେବେଳ ଆମ ଭିତରକୁ ଫେରି ଆସିଲେ, ତାଙ୍କ ଆଗକୁ ଯିବା ପାଇଁ ମୋତେ ସଙ୍କୋଚ ଲାଗୁଥିଲା । ସେଇ ନିର୍ବାକ୍ ଗମ୍ଭୀର ଭଦ୍ରଲୋକଙ୍କୁ କଣ କହି ଆଶ୍ୱାସନା ଦେବି ? ସେଦିନ ମୁଁ ମଧ ଏଇ ପରି ତାଙ୍କ ପାଖରେ ଯାଇଁ ବସିଥିଲି । "ବସନ୍ତ" । ଅନେକ ସମୟ ପରେ ସେ କେବଳ ଗୋଟିଏ କଥା କହିଥିଲେ– "ଅଳ୍ପ ସମୟ ପାଇଁ ଚେତା ଫେରିଥିଲା । ସେତେବେଳେ ମୋ ବେକକୁ ଜାବୁଡ଼ି ଧରି କହିଥିଲା, "ଉଃ କି ଗରମ ! ପୁଣି କି ଜୋର୍‌ରେ ତୀର ପରି ଆସେ ! ନାଁ ବାବୁଜୀ ?" ତାପରେ ଦୁଇ ଘଣ୍ଟା ଭିତରେ ତ ସବୁ ଶେଷ ।" ଏ କଣ ? ମୋଆଖିରେ ଲୁହ ଭରିଗଲା, ଦେଖୁଚି । ଏ ଲୁହ ସୁରଜବଲ୍ଲୀ ବାବୁଙ୍କ ପ୍ରତି ସହାନୁଭୂତିରେ, ବିଲୁ କଥା ଭାବି ନୁହେଁ । ସୁରଜବଲ୍ଲୀ ବାବୁଙ୍କ ଆଖିରେ ମଧ ଲୁହ । ଜଣକୁ କାନ୍ଦିବା ଦେଖିଲେ, ପାଖ ଲୋକ ପକ୍ଷରେ ଲୁହ ଚାପି ରଖିବା କଷ୍ଟ । ଛି, ଛି, ମୋର ଏତେ ଟିକିଏ ନିଜକୁ ସଂଯତ କରିବା କ୍ଷମତା ନାହିଁ । ଏତେ ଟିକିଏ ସହ୍ୟ କରିବାର ଶକ୍ତି ନାହିଁ ? ମହାତ୍ମାଜୀ ମୋ ମନରେ ବଳ ଦିଅ । ଏକମାତ୍ର ସୁରଜବଲ୍ଲୀ ବାବୁ ମୋ ମନର ଅବସ୍ଥା ଠିକ୍ ବୁଝି ପାରିଛନ୍ତି । ତାଙ୍କର ସହାନୁଭୂତି . . .

ବାରଣ୍ଡା ଉପରେ ଦଉଡ଼ି ଦଉଡ଼ି କିଏ ଏ ଆଡ଼କୁ ଆସୁଛି ? ୱାର୍ଡ଼ର୍ ସିଂଜୀ ଧଇଁ ସଇଁ ହୋଇ ଝରକା ପାଖରୁ ଲଣ୍ଠନଟା ଉଠାଇ ନେଲା । ତା' ପରେ ଗମ୍ଭୀର ଭାବରେ, ଧୀର ପଦକ୍ଷେପରେ ଅନ୍ୟ ଆଡ଼କୁ ଚାଲିଗଲା । କେଇ ମିନିଟ୍ ପରେ ଗରାଦର ଦରଜା ସାମ୍‌ନାରେ ଆସି ଠିଆ ହେଲେ ଜାଫର ସାହେବ–ଆସିଷ୍ଟାଣ୍ଟ ଜେଲର୍ । ହସି ହସି ଆମ ସମସ୍ତଙ୍କୁ ଆଦବ୍ କଲେ, ତା' ପରେ ଆଉ କିଛି କହି ଚାଲିଗଲେ । ଇଏ ଆସଥିଲେ ରାତି ରାଉଣ୍ଡରେ । ପ୍ରତ୍ୟହ ଜଣେ ଜଣେ ଆସିଷ୍ଟାଣ୍ଟ ଡିଉଟୀରେ ଥାନ୍ତି । ଏଇଥିପାଇଁ ୱାର୍ଡ଼ର୍ ଆସି ଲଣ୍ଠନ ନେଇ ପଳାଇଥିଲା ।

ଆଚ୍ଛା ସୁରଜବଲ୍ଲୀ ବାବୁଙ୍କୁ ଦାହକାର୍ଯ୍ୟ ପାଇଁ ଯେପରି ଶ୍ମଶାନକୁ ଯିବା ପାଇଁ ଅନୁମତି ଦେଇଥିଲେ, ମୋତେ, କଣ ସେଇପରି ଅନୁମତି ଦେବେ ? ବୋଧହୁଏ ଦେବେ ନାହିଁ । ଅନୁମତି ଦେଉଥିଲେ ମୋତେ ନିଶ୍ଚୟ ପୂର୍ବରୁ ଖବର ଦେଇଥାନ୍ତେ । ତାହେଲେ ବିଲୁର ମୁହଁକୁ ଶେଷଥର ପାଇଁ ଦେଖି ପାରିଥାନ୍ତି । ଦେଖିବାର ଅଛି ବା କଣ ? ହୁଏତ ତା ମୁହଁକୁ ଚାହିଁ ଦେଖି ପାରିବି ନାହିଁ । ନାଁ ନାଁ ବିଲୁରୁ ଯେଉଁ ସୁନ୍ଦର ଢଳ ଢଳ ମୁହଁ ମୋ ମନରେ ଆଙ୍କି ହୋଇ ରହିଛି, ସେଇ ମୁହଁଇ ଭଲ । ସେଇ ସ୍ୱାଭାବିକ ପରିଚିତ ମୁହଁଟି ମୋ ହୃଦୟରେ ଜାଗ୍ରତ ରହିଥାଉ । ପୁଣି କ'ଣ ନାଇଁ କ'ଣ ଦେଖିବି ? ତେବେ କାଲି ଥରେ ବାହାରକୁ ଯାଇ ପାରିଲେ ନୀଳୁ ସହିତ ଦେଖା ହୁଅନ୍ତା । ତା ସହିତ ଦେଖା ହେବା ବର୍ତ୍ତମାନ ନିମନ୍ତେ ଦରକାର । ବର୍ତ୍ତମାନ ତା ମନର ଯାହା ଅବସ୍ଥା ଶେଷରେ କ'ଣ ନାହଁ କ'ଣ କରି ବସିବ, ସେଥିପାଇଁ ମୋର ଭୟ, ଜଣେ ତ ଗଲା; ଆଉ ଜଣକ ଭାଗ୍ୟରେ କ'ଣ ଅଛି, ଭଗବାନ ତୁମେ ଇ ଜାଣ । ମୋର ତ ଯାହା ହେବାର ହେଲା–ଭାବନା କେବଳ ବିଲୁ'ମା ପାଇଁ । ସେ ତ ନିଶ୍ଚୟ ଗାଧୋଇବା, ଖାଇବା ଛାଡ଼ି ଦେଇଥିବ । ଜେଲ୍ ଭିତରେ କୌଣସି ଖବର ପହଞ୍ଚିବା ପାଇଁ କଣ ଡେରି ଲାଗେ ? ସବୁ ଖବର ସେ ପାଇଥିବ । ନୀଳୁ ନିଜ ଭାଇ ବିରୁଦ୍ଧରେ ସାକ୍ଷୀ ଦେବା କଥା ମଧ ସେ ହୁଏତ ଜାଣିଚି । ଏ ଆଘାତ ସେ କିପରି ସହ୍ୟ କରିବ ? ସ୍ୱେଚ୍ଛାରେ ତ ସେ ରାଜନୀତିର ବନ୍ଧୁର କ୍ଷେତ୍ର ବାଛି ନେଇ ନାହିଁ । ତା'ର ସ୍ୱାଭାବିକ

କ୍ଷେତ୍ର, ନିଜ ହାତରେ ଗଢ଼ା, ନିବିଡ଼ ସୁଖଭରା ଘରକରଣାର ଗୋଟିଏ ସଂସାର। ସେ ଗୃହପ୍ରାଚୀର ଭିତରେ ବାହାରର କୌଣସି ବାତ୍ୟାବିକ୍ଷୋଭ ପହଞ୍ଚେ ନାହିଁ। ସେ ଗୃହପ୍ରାଚୀର ଅନୁପଲବଧି ଜୀବନକୁ ସୀମାୟିତ, ପ୍ରତ୍ୟକ୍ଷ ଓ ନିଶ୍ଚିତ କରିଦେଇଛି। ତାହାହିଁ ଥିଲା ତାର କାମ୍ୟ। ସେଠାରୁ ଜୋର୍ କରି ମୁଁ ତାକୁ ଏକ ଅସ୍ପଷ୍ଟ ଲକ୍ଷରେ କଣ୍ଟକମୟ ପଥକୁ ଟାଣି ଆଣିଚି। ମୁହଁ ଫିଟାଇ ନ କହିଲେ ସୁଦ୍ଧା, ସେ କାହିଁକି ଏହାକୁ ବରଦାସ୍ତ କରିବ? ବିଲୁମା' ଅନେକ ସହ୍ୟ କରିଛି, କିନ୍ତୁ ସହିବାର ପୁଣି ତ ଗୋଟାଏ ସୀମା ଅଛି! ତାକୁ କାଲି କ'ଣ ଦାହକାର୍ଯ୍ୟ ବେଳେ ବାହାରକୁ ଯିବା ପାଇଁ ଅନୁମତି ଦେବେ? ଅନୁମତି ନଦେଲେ ଭଲ। କର୍ତ୍ତୃପକ୍ଷ କାହାକୁ ହୁଏତ ଯିବା ପାଇଁ ଅନୁମତି ଦେବେ ନାହିଁ। ହୁଏତ ମିଲିଟାରୀ ଲରୀରେ ଶବ ବୋହି ନେଇଯିବେ। ଆଉ ସୁପରିଟେଣ୍ଡେଣ୍ଟ ବୋଧହୁଏ, ବିଶେଷ ଖାତିର୍‌ରେ ବ୍ରାହ୍ମଣ ୱାର୍ଡ଼ର ମାନଙ୍କ ଦ୍ୱାରା ଦାହକାର୍ଯ୍ୟଟା ସମ୍ପନ୍ନ କରାଇବେ। ଜେଲ୍ ଚାରିପଟେ ଆଜି କ'ଣ ସଶସ୍ତ୍ର ପୋଲିସ ବାହିନି ପହରା ଦେଉଛନ୍ତି? ସେମାନେ ବର୍ତ୍ତମାନ ବୋଧହୁଏ ପାଚେରୀ ଚାରିପାଖେ ଟହଲ କରୁଚନ୍ତି। ବୃଥା ସେମାନଙ୍କର ପରିଶ୍ରମ। ଏତେ ସତର୍କତାର କିନ୍ତୁ କୌଣସି ପ୍ରୟୋଜନ ନଥିଲା। ବାହାର ଆବ୍‌ହାୱା କିପରି ଜାଣେନା; ଜେଲ୍ ଭିତରେ ତ ବିନ୍ଦୁମାତ୍ର ବିକ୍ଷୋଭ ଓ ଚାଞ୍ଚଲ୍ୟ ନାହିଁ। ସବୁ ଚାଲିଛି, ଅନ୍ୟ ଦିନମାନଙ୍କ ପରି। ...ସକାଳେ ହୁଏତ ଜେଲ ଗେଟ୍‌ରେ ଖୁବ ଭିଡ଼ ହେବ। ହୁକୁମ୍ ଅମାନ୍ୟ କରି କେହି କେହି ବୋଧହୁଏ ଶୋକସଭା କରିବେ। ସହରରେ ହୁଏତ ହରତାଳ ହୋଇପାରେ। କିନ୍ତୁ ସେଥିରେ ମୋ କ୍ଷତିର ତ ଭରଣା ହେବ ନାହିଁ। ବିଲୁମା'କୁ ସୁଦ୍ଧା ସାନ୍ତ୍ୱନା ଦେବା ପାଇଁ କେହି ଲୋକ ନାହାନ୍ତି। ତା' ଛୋଟ ଭଉଣୀ ଥାଏ ବୃନ୍ଦାବନରେ। ସେ ତ ସଂସାର ସମ୍ବନ୍ଧରେ ଉଦାସୀନ। ପୁତୁରା ମାନଙ୍କ ସହିତ ତା'ର ଭଲ ଭାବରେ ପରିଚୟ ସୁଦ୍ଧା ହୋଇ ନାହିଁ। ବିଲୁ ମାମୁଁ ସରକାରୀ କର୍ମଚାରୀ; ଏମିତି ତ ତାଙ୍କର ଟିକିଏ ଛାଡ଼ ଛାଡ଼ ଭାବ। ବିଜୟା ଦଶମୀର ପ୍ରଣାମି ଚିଠି ସୁଦ୍ଧା ପଠାନ୍ତି ନାହିଁ। ତା' ଉପରେ ପୁଣି ଏହି କାଣ୍ଡ। ଏହା ପରେ ଚାକିରୀ ରକ୍ଷା ପାଇଁ ସେ ତ ଆମ ସହିତ ଆତ୍ମୀୟତାର ସମ୍ପର୍କ ସୁଦ୍ଧା ସ୍ୱୀକାର କରିବେ ନାହିଁ। ...ନୀଲୁ ବିଲୁ କେହି ମାମୁଁ ଘରକୁ ଯିବା ପାଇଁ ଚାହାନ୍ତି ନାହିଁ। ବଡ଼ ହୋଇ ଥରେ ଯାଇଥିଲେ। ହଠାତ୍ ଦିନେ ଦେଖିଲି ସେମାନେ ଫେରି ଆସିଚନ୍ତି। କାହିଁକି ଚାଲି ଆସିଲେ କିଛି ବୁଝା ପଡ଼ିଲା ନାହିଁ। ପରେ ଜାଣି ପାରିଥିଲି, ସେମାନଙ୍କ ମାମୁଁ ମୋ ସମ୍ପର୍କରେ ମନ୍ତବ୍ୟ କରିଥିଲେ ଯେ, "ମୁଁ ଜଣେ ପର୍‌ଫେକ୍ଟ ଭାଗାବଣ୍ଡ୍"। ନୀଲୁ, ବିଲୁ ମୋ ପ୍ରତି ସେଇ ଅପମାନ ସହ୍ୟ କରି ପାରି ନଥିଲେ। ସତରେ ତ—ତାଙ୍କ ଦୃଷ୍ଟିରେ ଭାଗାବଣ୍ଡ୍ ଛଡ଼ା ମୁଁ ଆଉ କଣ? ସଂସାର ସମ୍ବନ୍ଧରେ ମୋର ଦାୟିତ୍ୱଜ୍ଞାନ ନାହିଁ। ଅର୍ଥୋପର୍ଜନ କରେ ନାହିଁ। ବାରବୁଲା ବାସ୍ତୁରାଙ୍କ ପରି ବୁଲୁଥାଏ। ହିସାବୀ ଲୋକେ ଆକୁ ଭାଗାବଣ୍ଡ୍ କହିବେ ନାହିଁ ତ୍ ଆଉ ଭାଗାବଣ୍ଡ୍ କହିବେ କାହାକୁ? ସାଧାରଣତଃ ସେମାନେ ଆମକୁ ଜାଣନ୍ତି ପାଗଳ ବୋଲି। ଟିକିଏ ଖାତିର୍ କଲେ କହନ୍ତି, ଭାଗାବଣ୍ଡ୍। ବିଲାତରେ ପୂର୍ବକାଳରେ ଯେଉଁ ସବୁ 'ଭାଗ୍ରାନ୍‌ସୀ' ଆଇନ ଥିଲା, ଆମେ ସବୁ ପଡ଼ନ୍ତୁ ଠିକ୍ ସେଇଥିରେ। ଏଠାରେ ବର୍ତ୍ତମାନ ବି ଆମ ନାଁରେ ବି.ଏଲ.କେସ୍ ଚାଲିପାରେ। 1921–22 ସାଲରେ ଅନେକ ବଡ଼ ବଡ଼ କଂଗ୍ରେସନେତା ବି.ଏଲ୍.କେସ୍‌ରେ ସଜା ପାଇଥିଲେ। ...ପିଲାଏ ପୁଣି ଏତେ ଭାବପ୍ରବଣ ହୁଅନ୍ତି! ମୁଁ ହୋଇଥିଲେ ତ

କଥାଟାକୁ ହସି ଉଡ଼ାଇ ଦେଇଥାନ୍ତି। ଆଉ ନୀଲୁ କଥା-ନିଜେ ବାପକୁ ସମ୍ମାନ ଦେଖାଇ ଯେପରି କଥା କହେ, ଘରେ ସମସ୍ତଙ୍କୁ ତା' ଜଣା ଅଛି। କିନ୍ତୁ ଅନ୍ୟ କେହି ଲୋକ ବେଆଡ଼ା କରି ପଦେ କଥା କହିଲେ, ଆଉ କଣ ରକ୍ଷା ଥାଏ ? ତେବେ ହଁ, ଏକଥା ମୁଁ ନିଶ୍ଚୟ କହିବି ଯେ, ମୋ ଆଗରେ ସେ ଏବେ କିଛି କହେ ନାହିଁ। ଆଜି ପର୍ଯ୍ୟନ୍ତ, ମୋ ମୁହଁ ଉପରେ ସେ କେବେ ଜବାବ୍ ଦେଇ ନାହିଁ।

ଯାଏଁ, ମୁହଁରେ ଟିକିଏ ପାଣି ଛାଟି ଆସେ। ବସି ବସି ଅଣ୍ଟା ପିଠି ଲାଗି ଗଲାଣି। ନିଜ ଦେହ କଥା ଲୋକେ କ'ଣ ଇଚ୍ଛା କରି ମନେ ପକାନ୍ତି–ଦେହ ସେ କଥା ମନେ ପକାଇ ଦିଏ। ଉଠିବା ମାତ୍ରେ ସୁରଜବଲ୍ଲୀ ବାବୁ ପଚାରିଲେ, ''କ'ଣ ? କୁଆଡ଼େ ପୁଣି ଉଠିଲେ ?''

ଉତ୍ତର ଦେଲି, ''ଡ୍ରମ ପାଖକୁ ଟିକିଏ ମୁହଁ ହାତ ଧୋଇବା ପାଇଁ।''

ଗୋଟିଏ ଏରୋପ୍ଲେନ୍‌ର ଶବ୍ଦ କାନରେ ପଡୁଛି। ଏମାନଙ୍କ ଯାତାୟତରେ ବିରାମ ନାହିଁ। ଯେଉଁ ମାନଙ୍କର ଶହ ଶହ ଲୋକ ଯୁଦ୍ଧରେ ମରୁଛନ୍ତି, ସେମାନେ ଗୋଟାଏ ପ୍ରାଣର ମୂଲ୍ୟ କଣ ବା ବୁଝିବେ ? ମୋ ଆଖିରେ ବିଲୁ, ମୋ ପୁଅ। କିନ୍ତୁ ସେମାନଙ୍କ ଆଖିରେ ? ଯୁଦ୍ଧବେଳେ କ'ଣ ଅନ୍ୟ ବେଳର ମାପକାଠି ଚଳିବ ? ସାଧାରଣ ନାଗରିକ ଆଜି ରକ୍ତମାଂସଗଢ଼ା, ବିଚାରବୁଦ୍ଧିଶୀଳ ମଣିଷ ନୁହେଁ– ପରିଚୟ ଆଜି ତା'ର ଆଇଡ଼େଣ୍ଟୀ କାର୍ଡ଼ରେ, ରେସନ୍ ଟିକେଟ୍ ନମ୍ବରରେ। ଯୁଦ୍ଧରତ ସୈନିକମାନଙ୍କ କଥା ଛାଡ଼ି ଦିଅ। ସର୍ବତ୍ର, ସ୍ୱାଭାବିକ ଜୀବନ ଲୋକେ ଭୁଲି ଯାଇଛନ୍ତି। ପୂର୍ବେ ଖଣ୍ଡେ ଦୁଇଖଣ୍ଡ ଏରୋପ୍ଲେନ୍ ଚାଲିଗଲେ, ଲୋକେ ବିସ୍ମୟରେ ଆଖି ଟେକି ଚାହୁଁଥିଲେ, ଏବେ ତିନି ଡଜନ୍ ବୋମା ଏକାଠି କଲେ ବି ସେଆଡ଼େ କେହି ଅନାଇବେ ନାହିଁ। ବୋମା ପଡ଼ିଲା ବେଳେ କଲିକତାର ଲୋକମାନେ କଣ ବ୍ୟାପାରଟାକୁ ଏଇପରି ଉଦାସୀନତା ସହିତ ନେଇଥିଲେ ? ସେମାନେ ତିଳେମାତ୍ର କ'ଣ ବିଚଳିତ ହୋଇ ନଥିଲେ ? ବିଲୁ କଥା ଭାବିବା ପାଇଁ ଲୋକମାନଙ୍କର ଅବିକା ଅବସର କୋଉଠି ? ଲୋକେ ଯଦି ନ ଭାବିଲେ, ତା'ହେଲେ ଗଭର୍ଣମେଣ୍ଟର ମୁଣ୍ଡ ବଥେଇବ କାହିଁକି ? ବିଲୁ ପ୍ରଭୃତିଙ୍କ ଦଳ ଠିକ୍ କହନ୍ତି– କାହାର ହୃଦୟ ପରିବର୍ତ୍ତନ କରିବ ? ହୃଦୟ ଥିଲେ ସିନା ତାହା ପରିବର୍ତ୍ତନ ହେବ। କିନ୍ତୁ ଏ କଥା ଠିକ୍ ଯେ ହିଂସା ଯେତିକି ବଢ଼ିବ, ଅପର ପକ୍ଷରେ ଦମନ ସେତିକି ବଢ଼ିବ। ଏତେଟା ଦମନ ସହ୍ୟ କରିବା ଶକ୍ତି କଣ ଦେଶଲୋକଙ୍କର ଅଛି ? ଲକ୍ଷ୍ୟରେ ପହଞ୍ଚିବାର ଆକାଂକ୍ଷା କେତେ ତୀବ୍ର; ସେଥିପାଇଁ ମାପକାଠି ହେଉଛି, କେତେ ତ୍ୟାଗ କରିବା ପାଇଁ ଦେଶ ପ୍ରସ୍ତୁତ। ଏଇ ସିଧା କଥାଟାକୁ ବିଲୁ ପ୍ରଭୃତି ବୁଝନ୍ତି ନାହିଁ। ଡେଇଁ ପଡ଼ିବା ଆଗରୁ ନିଜ ସାମର୍ଥ୍ୟ ତ କଳନା କରିବାକୁ ପଡ଼େ।

ମୁହଁହାତ ଧୋଇ ଗାମୁଛାରେ ପୋଛିଲି। ଏ କଣ, ଦାସଜୀ ଉଠି ପଡ଼ିଲେଣି ଦେଖୁଚି। ହାତ ମୁହଁ ଧୋଇବା ଓ କୁଳକୁଞ୍ଚା ଶବ୍ଦରେ ତାଙ୍କ ନିଦ ଭାଙ୍ଗି ଦେଲି ନାହିଁ ତ ! ନାଁ, ବୋଧହୁଏ ତିନିଟା ବାଜିଲାଣି, ଭଦ୍ରଲୋକ ପ୍ରତ୍ୟହ ରାତି ତିନିଟାରେ ଉଠନ୍ତି। ତା'ପରେ କି ଶୀତ କି ଗ୍ରୀଷ୍ମ ଅଧଘଣ୍ଟା ପାଣି ଟବ୍‌ରେ ବସି ରହନ୍ତି। ଅନେକ ଖର୍ଚ୍ଚ କରାଇ, ଜେଲ– ଫାକ୍ଟରୀରେ ଜଳଚିକିତ୍ସା ପାଇଁ ଟବ୍ ତିଆରି କରାଇଥିଲେ। ଦେଖିବାକୁ ଅନେକଟା ଇଜି–ଚେଆର୍ ପରି। ତା'ରି ଭିତରେ ବେକ ପର୍ଯ୍ୟନ୍ତ ପାଣିରେ ବୁଡ଼ାଇ ବସି, ମୁହଁରେ

ଗୋଟାଏ ପ୍ରକାର ଶବ୍ଦ କରନ୍ତି, ଗଡ଼ୁ ନଳ ଭିତରେ ପାଣି ଇଡ଼ିବା ବେଳେ, ଯେପରି ଶବ୍ଦ ହୁଏ, ଶବ୍ଦଟା ଠିକ୍ ସେଇ ପ୍ରକାରର। ବିଛଣା ଚାଦର ଝୁଲାଇ ଚାରିପଟେ ଗୋଟାଏ ଆଢୁଆଳ କରି ନେଇଛନ୍ତି। ବାଥ୍ ନେବା ଶେଷ ହେଲେ ସେ ଆରମ୍ଭ କରିବେ ଶୀର୍ଷାସନ। ଅଧଘଣ୍ଟାରୁ ଉପରେ, ମୁଣ୍ଡ ତଳକୁ ଗୋଡ଼ ଉପରକୁ କରି ନିଶ୍ଚଳ, ନିଷ୍ପନ୍ଦ ଭାବରେ ରହିବେ; ମୋର ତ ଭୟ ହୁଏ କୋଉ ଦିନ ନାକ ମୁହଁ ଦେଇ ରକ୍ତ ପଡ଼ିବ!

ନିଜ ସିଟକୁ ଫେରି ଆସିଲି। ସୁରଜ୍‌ବଲ୍ଲୀ ବାବୁ ବସି ରହିଚନ୍ତି। ବିଲୁ ବର୍ତ୍ତମାନ କ'ଣ କରୁଥିବ? ବୋଧହୁଏ ଭୟ ଚିନ୍ତାରେ ଜର୍ଜରିତ ହୋଇ, ସେଲ୍ ଭିତରେ ଏପାଖ ସେପାଖ ହେଉଛି। ମୋ କଥା କଣ ତାର ମନେ ପଡୁଥିବ? ମୋ ସପକ୍ଷରେ ବିଲୁ ଶେଷ ମୁହୂର୍ତ୍ତରେ କଣ ଭାବିଗଲା, ଯଦି ଜାଣି ପାରନ୍ତି! ନୀଲୁକୁ ସେ ଦୋଷ ଦେବ ନାହିଁ। ତାକୁ ସେ କ୍ଷମା କରିବ ଏକଥା ମୁଁ ଜୋର୍ ଦେଇ କହିପାରେ। ଏବେ ତାର ମନର ଅବସ୍ଥା କଣ ଯେ ହେଉଥିବ, ସେ କଥା ଭଗବାନ ଜାଣନ୍ତି। ହୁଏତ ପାଗଳ ପରି ହୋଇ ଯିବଣି। ନୁଖୁରା ଅଲରା ବାଳଗୁଡ଼ାକୁ ସିଏ ହୁଏତ ଦୁଇ ହାତରେ ଛିଣ୍ଡାଉଚି। ହୁଏତ ଗରାଦ ବାଡ଼ାରେ ମୁଣ୍ଡ କୋଡୁଚି। ହୁଏତ ପିଲାଙ୍କ ପରି ଦରଜା ଫିଟାଇ ଦେବା ପାଇଁ ୱାର୍ଡ଼ରକୁ ନେହୁରା ହେଉଚି। ନା, ନା, ବିଲୁ କେବେ କଣ ଏମିତି କରିପାରେ? ଦୁଃସହ ମର୍ମବେଦନାରେ ତାର ହୃଦୟ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲେ ସୁଦ୍ଧା, ତା ମୁହଁରେ ସେପରି ଭାବ ପ୍ରକାଶ ପାଇବ ନାହିଁ। ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାର ଆଦର୍ଶର ଯୋଗ୍ୟ ସମ୍ମାନ ଯେପରି ବଜାୟ ରଖିପାରେ, ସେଥିପାଇଁ ସେ ଚେଷ୍ଟା କରିବ। ସୁପରିଟେଣ୍ଡେଣ୍ଟଙ୍କୁ ଦେଖାଇବା ପାଇଁ, ଶେଷ ମୁହୂର୍ତ୍ତରେ ସେ ଜୋର୍ କରି ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କରିବ। ଜେଲରଙ୍କୁ ଥଟ୍ଟା ତାମ୍‌ସା କରି ହୁଏତ କିଛି କହିବ। ସିଡ଼ିରେ ମଞ୍ଚ ଉପରକୁ ଉଠିବା ବେଳେ ଅଫିସର୍ ମାନଙ୍କୁ ହୁଏତ ଧନ୍ୟବାଦ ଦେବ; ଏପରି ସୁନ୍ଦର ପ୍ରତ୍ୟୁଷରେ ଶୁକ୍ରତାରାଟିକୁ ସାକ୍ଷୀ ରଖି ତାକୁ ଫାଶୀ ଦେଉଥିବା ପାଇଁ। କିନ୍ତୁ କୌଣସିମତେ ଦୁର୍ବଳତା ପ୍ରକାଶ କରି ସେ ତାର ପାର୍ଟିର ନାଁକୁ କଳଙ୍କିତ ହେବାକୁ ଦେବ ନାହିଁ। ମୋ ପୁଅ, ମୋ ବଡ଼ ପୁଅ, ତାକୁ ଆଉ ଚିହ୍ନିନାଇଁ? ମିଛରେ କଣ ସମସ୍ତେ ବିଲୁକୁ ଶ୍ରଦ୍ଧା କରନ୍ତି? ଦୁରଦାର ଦୁବେ, ଦୁବେଇନ୍ 'ବିଲୁ' 'ବିଲୁ' ବୋଲି ଅଜ୍ଞାନ। ସହଦେଓର ମା ବିଲୁ କହିଲେ ପାଗଳ। ଆଉ ଜିତେନ୍‌ର ମା, ବୋହୂଠାକୁରାଣୀଙ୍କର ତ କଥା ଇ ନାହିଁ। ବିଲୁ ମଧ କମ୍ ସ୍ନେହକାଙ୍ଗାଳ ନୁହେଁ। ଜିତେନ୍‌ର ମା, ବୋହୁଠାକୁରାଣୀ ତ ଘରଲୋକଙ୍କ ପରି। ଅନ୍ୟ ଅଳ୍ପ ପରିଚିତ ସ୍ଥାନରେ ସୁଦ୍ଧା ଯେଉଁଠି ସେ ଶ୍ରଦ୍ଧାସ୍ନେହର ଇଙ୍ଗିତ ପାଇଚି, ସେଠାରେ ବିଲୁ ସେଇ ସମ୍ପର୍କକୁ ସ୍ଥାୟୀ ଓ ବଜାୟ ରଖିବା ପାଇଁ ସଚେଷ୍ଟ। କୋଉଠିକୁ ଯିବ, ହୋଲିପରେ ପ୍ରଣାମ ଜଣାଇବା ପାଇଁ। କୋଉଠିକୁ ଆଶ୍ରମରୁ ଲେମ୍ବୁ ପଠାଇବ। କାହାର ପିଲାପିଲିଙ୍କ ପଢ଼ାର ବ୍ୟବସ୍ଥା କରିଦେବ! ତା'ର ଏପରି ସବୁ କାମର ଅନ୍ତ ନାହିଁ। ଏଥିରେ ସ୍ନେହର ଦାୟିତ୍ୱ ନାହିଁ, କୌଣସି ଦାବି ନାହିଁ, ବନ୍ଧନ ମଧ ସର୍ବତ୍ର ସେପରି ଦୃଢ଼ ନୁହେଁ। ଇଏ କେବଳ ସ୍ନେହ ଆଦାୟ କରିବାର ନିଶା। ଘରେ ମାତୃସ୍ନେହ ଉପରେ ଏ ଗୁଡ଼ିକ ଉପୁରି ପାଉଣା— ସେଥିପାଇଁ ଏହାର ସ୍ୱାଦ ଏତେ ମଧୁର। ନୀଲୁର କିନ୍ତୁ ଏ ସବୁର ବନ୍ଧନ ନାହିଁ। ସ୍ନେହର ଦାବି ଜଣ୍ଣାଇବା ପରି ସେ କ'ଣ କଥା କହି ଜାଣେ? ନିଜ ଖିଆଲରେ ସେ ଉନ୍ମତ୍ତ। ନିଜ ମତକୁ ଧ୍ରୁବସତ୍ୟ ବୋଲି ମନେ କରି, ତାକୁ ଦୃଢ଼ତାର ସହିତ ବ୍ୟକ୍ତ କରବାରେ ସେ ବ୍ୟସ୍ତ। ସ୍ନେହର ଋଣ ପରିଶୋଧ

କରିବା ପାଇଁ ଯେଉଁ ସବୁ ଛୋଟ ଛୋଟ କର୍ତ୍ତବ୍ୟ ସର୍ବଦା କରିବାକୁ ପଡ଼େ, ନୀଳୁ ସେଥିରେ କ'ଣ ସମୟ ନଷ୍ଟ କରି ପାରେ। ବରଂ ସେମାନଙ୍କର ସମାଲୋଚନା କରି ପାରିଲେ, ସେ ଆନନ୍ଦିତ ହୁଏ ବେଶୀ। ବିଲୁ ଲୋକଙ୍କୁ ମନ୍ତ୍ରମୁଗ୍ଧ କରିପାରେ। ବାବାଙ୍କୁ ବି କରିଥିଲା। କହିବା ଉଚିତ ନୁହେଁ ସେ ସ୍ୱର୍ଗକୁ ଗଲେଣି, ବାବା ରାଗୀ ପ୍ରକୃତିର। କେତେ ଥର ଦେଖିଚି– ଖାଇବାକୁ ବସିଚନ୍ତି, ରନ୍ଧା ପସନ୍ଦ ହେଲା ନାହିଁ, ପ୍ରଥମେ ଟିକିଏ କୁନ୍ଥ କୁନ୍ଥ ହେଲେ, ତାପରେ ରେଚ୍ଡ଼େଡ଼ ଡାଏଟ୍ ଏତିକି କହି ଠକ୍ କରି ପାଣି ଗ୍ଲାସ୍‌ଟା ତଳେ କଚ଼ି ଦେଇ ଉଠି ପଡ଼ିଲେ। ଉପାସରେ ଅଫିସ ଚାଲିଗଲେ। ଏଣେ ମା' ସାରାଦିନ ଉପାସ। ...ଟା ଖରାପ ଲାଗିଲା, ଆଉ ବାବା ''ଯେତେ ସବୁ ବାଜେ'' କହି କପ୍‌ସସର ଫୋପାଡ଼ି ଦେଲେ। ଏଇପରି କେତେ ଦିନର କେତେ କଥା ମନେ ଅଛି। ବୃଦ୍ଧ ବୟସରେ ରାଗମାତ୍ରାଟା ଆଉରି ବଢ଼ିଥିଲା। ଶେଷ ବୟସରେ ଅଳ୍ପ ଅଳ୍ପ ପାଗଳାମିର ଲକ୍ଷଣ ମଧ୍ୟ ଦେଖା ଦେଇଥିଲା। ପାଦ ଦୁଇଟା ଧୀରେ ଧୀରେ ପଙ୍ଗୁ ହୋଇ ଆସୁଥିଲା। ବାଧ୍ୟ ହୋଇ ତାଙ୍କୁ କାଶୀ ଛାଡ଼ି ପୂର୍ଣ୍ଣିଆରେ ରହିବା ପାଇଁ ପଡ଼ିଲା। ଦେହ କ୍ରମେ ଯେତିକି ଅକର୍ମଣ୍ୟ ହେଉଥିଲା, କ୍ରୋଧ ସେତିକି ବଢ଼ୁଥିଲା ; ଏଇ ସମୟରେ ବିଲୁର ଜନ୍ମ। ବାବା ଦିନରାତି ଏଇ ପିଲା ଟିକକକୁ ଧରି ରହନ୍ତି, ଯିବା ଆସିବା କରି ପାରନ୍ତି ନାହିଁ; ସେଥିପାଇଁ 'ବଲାଇ' (ବିଲୁ)କୁ ଆଖି ଆଡୁଆଳକୁ ଯିବା ପାଇଁ ଦେବେ ନାହିଁ। ଅନ୍ୟ ଘରର ସ୍ତ୍ରୀ ଲୋକମାନେ ବୁଲି ଆସିଲେ କହନ୍ତି, ସେ ଗୁଡ଼ା ଡ଼ାଆଣୀ– ବଲାଇକୁ କିମିଆଁ କରିବା ପାଇଁ ଆସିଚନ୍ତି। ବିଲୁମା'କୁ ଏଥିପାଇଁ କେତେ ଗଞ୍ଜଣା ଦିଅନ୍ତି। ଶେଷ ବୟସରେ ଶଯ୍ୟାଶାୟୀ ହେବା ବେଳକୁ ତାଙ୍କ ମୁଣ୍ଡ ଖରାପ ହୋଇ ଯାଇଥିଲା। ଖଟ ଚାରିପଟେ କାଠଫ୍ରେମ ବାନ୍ଧି ଦେଲି, ଯେପରି ତଳେ ଗଡ଼ି ନପଡ଼ନ୍ତି। କଥା କହିବାର ଶକ୍ତି ତ ଆଉ ନଥିଲା। ବୋଧଶକ୍ତି ମଧ୍ୟ କମି ଆସିଥିଲା। ଆଖି ବୁଜି ପଡ଼ିଥାନ୍ତି। କିନ୍ତୁ ଏହା ସତ୍ତ୍ୱେ ରାଗ କମି ନଥିଲା। ବିଲୁ ମା' ଓ ମୋତେ ରାମ୍ପୁଡ଼ି ବିଦାରି ଅସ୍ଥିର କରି ପକାନ୍ତି। ଭାତ ଖୁଆଇଲା ବେଳେ ଆଙ୍ଗୁଠି କାମୁଡ଼ି ଧରନ୍ତି। କିନ୍ତୁ ସେପରି ସମୟରେ ବିଲକୁ ପାଖରେ ବସାଇ ଦେଲେ, ନିମିଷକ ଭିତରେ ସବୁ ରାଗ କୁଆଡ଼େ ଉଭାଇଯାଏ। ପ୍ରଚଣ୍ଡ କ୍ରୋଧରେ ବିଛଣାରେ ଛୁଆଙ୍କ ପରି ହୁଏତ ଗଡୁଥାନ୍ତି। ସେତିକିବେଳେ ବିଲୁର କଅଁଳିଆ ହାତ ଦୁଇଟି ତାଙ୍କ ମୁହଁ ଉପରେ ରଖିଦେଲେ, ମନ୍ତ୍ରମୁଗଧ ସାପ ପରି ହଠାତ୍ ଶାନ୍ତ ହୋଇଯିବେ। ହୁଏତ ଆଖି ବୁଜି ପଡ଼ିଚନ୍ତି, ଆମେ ଯେତେ ଡାକିଲେ ବି, କୌଣସିମତେ ଆଖି ଫିଟାଇବେ ନାହିଁ। ଯେତିକି ଡକାଡକି କରିବୁ, ଦୁଷ୍ଟ ପିଲାଙ୍କ କରି ସେତିକି ଜିଦ୍ ବଢ଼ିବ। ଆମେ ସେତେବେଳେ ବିଲୁକୁ ଶିଖାଇଦେଉ, ''ବିଲୁ (ଜେ ଜେ) ଦାଦୁଙ୍କୁ ଡାକ ତ!'' ଆଶ୍ଚର୍ଯ୍ୟ ଏଇ ଅର୍ଦ୍ଧଚେତନ ଅବସ୍ଥାରେ ସୁଦ୍ଧା ସେ ଠିକ୍ ବୁଝି ପାରନ୍ତି ଯେ, ବିଲୁ ଡାକୁଚି। ହାତ ବଢ଼ାଇ ବିଲୁକୁ ଖୋଜନ୍ତି। ତା ପରେ ଆଖି ମେଲି ଚାହାନ୍ତି। ଯେଉଁଦିନ ବାବାଙ୍କର ପ୍ରାଣବାୟୁ ଉଡ଼ିଗଲା, ସେଦିନ ଶେଷ ମୁହୂର୍ତ୍ତରେ ବି, ବାବାଙ୍କ କାନ ପାଖରେ ମୁହଁ ଲଗାଇ କହିଲି ବାବା, ''ବଲାଇ ଡାକୁଚି''। ବଲାଇ! ବଲାଇ! ସେତେବେଳେ ବି ମନରେ କ୍ଷୀଣ ଆଶା, ବିଲୁ ନାଁ ଶୁଣି ଯଦି ଚାହିଁ ଦିଅନ୍ତି। କିନ୍ତୁ ସେତେବେଳକୁ ସେ କୌଣସି ଡାକ ଶୁଣିବାର ବାହାରେ। ଆଶ୍ଚର୍ଯ୍ୟ ବୁଦ୍ଧି ଥିଲା ବିଲୁର। ତା'କୁ କେତେ ବା ସେତେବେଳେ ବୟସ ? ତା ଛଡ଼ା, ଆଉ କେହି ଦାଦୁଙ୍କୁ ଯେ ବଶ କରିପାରିବ ନାହିଁ, ଏକଥା ଏଡ଼େ ଟିକିଏ ପିଲା ଠିକ୍ ବୁଝିଥିଲା। ଦାଦୁଙ୍କୁ ଶାନ୍ତ କରିବା

ପାଇଁ ବା ତାଙ୍କୁ ଖୁଆଇବା ପାଇଁ, ତାର ଉପସ୍ଥିତି ଯେ ପ୍ରୟୋଜନ, ଏକଥା ତାଙ୍କୁ ଡାକିବାର ସ୍ୱରରୁ ସେ ବୁଝି ପାରୁଥିଲା । ସେତେବେଳେ ସେ ଦେଖାଏ କପଟ ଗାମ୍ଭୀର୍ଯ୍ୟ ଆଉ ଔଦାସ୍ୟ । ବୋଧହୁଏ ସେ ଯେପରି ଚାହେଁ ମା' ତାଙ୍କୁ ଆଉ ଟିକିଏ ଖୋସାମତ୍ କରୁ । ...ବିଲୁ ତା ଦାଦୁଙ୍କୁ ପୁଣି ଥରେ ଦେଖିବାକୁ ପାଇବ ? ବାବା, ଆଦରର ବଳାଇକୁ ଶେଷରେ ଏଇପରି ଭାବରେ କ'ଣ ନିଜ ପାଖକୁ ଟାଣିନେଲେ ?

ମନ ଭାରି ଅସ୍ଥିର ଲାଗୁଛି । ୱାର୍ଡ୍ ଭିତରେ ଏତେ ଲୋକ ସମସ୍ତେ ଚେଇଁଛନ୍ତି । ବାହାରେ ୱାର୍ଡ଼ର୍ । ୱାର୍ଡ଼ ଭିତରେ ଗପସପ ମାନ୍ଦା ପଡ଼ି ଆସିଥିଲେ ବି ଏକାଥରେ ବନ୍ଦ ହୋଇନାହିଁ । ଗାଧୋଇବା ବେଳେ ଦାସଜୀଙ୍କ ଶବ୍ଦ କାନରେ ପଡ଼ୁଚି । ଭିତରଟା ଟିକିଏ ଥଣ୍ଡା ଲାଗିଲାଣି । ବାହାରେ କୁକୁର ଭୁକିବା ଶବ୍ଦ ଶୁଭୁଚି । ତା ସତ୍ତ୍ୱେ ଚାରିଆଡ଼େ କିପରି ଗୋଟାଏ ଥମ ଥମ ଭାବ ।

ଗାରଦ ଭିତରେ ଦେଇ ଆଲୁଅ ବାହାର ବାରଣ୍ଡା ଉପରେ ପଡ଼ିଚି । ଶାଢ଼ୀ ପିନ୍ଧି—କିଏ ସେ ସେଠି ଠିଆ ହୋଇଛି ? ନା, ସେ ଗୁଡ଼ା ଜାଳେଣି କାଠ, ଗଦା ହୋଇଚି । ତା ଉପରେ ଆଲୁଅ ପଡ଼ି, ସେଇପରି ଦେଖାଯାଉଥିଲା । ବିଷ୍ଣୁଦେଓଜୀ ମେସ୍‌ର ଜାଳେଣୀ କାଠ ପର୍ଯ୍ୟନ୍ତ ସଞ୍ଚୟ କରି ରଖନ୍ତି । ଜେଲ୍‌ରେ ସମସ୍ତଙ୍କ ଠାରେ ଏଇ ସଞ୍ଚୟର ପ୍ରବୃତ୍ତି ଲକ୍ଷ୍ୟ କରିଛି । ଛିଣ୍ଡା ଜାମା, ପୁରୁଣା କଠଉ ସୁଦ୍ଧା ସଞ୍ଚୟ କରାଯାଏ । ଜେଲ୍‌ରେ ରହିଲେ ଏଇପରି ମନୋବୃତ୍ତି ହୁଏ । କାଠ ଗଦା ଦେଖି, ଏପରି ଦୃଷ୍ଟିବିଭ୍ରମ ହେଲା କାହିଁକି ? ...ଆଶ୍ରମରେ ରୋଷେଇ ଘର ବାରଣ୍ଡାରେ ଚିରାକାଠ ଆଉ ଘଷିର ସ୍ତୁପ । ଭିତରେ ବିଲୁମା ରାନ୍ଧୁଚନ୍ତି । ବିଲୁ କୁଆଡ଼େ ଯିବ ପରା ! ସେଥିପାଇଁ ସେ ଖାଇ ବସିଛି । ସେ ଖୁବ୍ ଚଞ୍ଚଳ ଖାଇପାରେ, ମୋଟେ ଚୋବେଇବ ନାହିଁ । ...ଅଲରା, ନୁଖୁରା ବାଳ । ଜେଲ୍‌ର ଅଧାମଇଳା, ନେଳୀ ଗାରଟଣା ଗେଂଜି ଆଉ ଜଂଘିଆ । ରୋଗା, ଶେତା ଦିଶୁଛି... ଭଗବାନ ! ଗାନ୍ଧୀଜି ! ତୁମ ମାନଙ୍କର ନାମ ନେଇ ସୁଦ୍ଧା, ମନରେ ତ ବଳ ପାଉନାହିଁ । ପୁଣି ଚରଖା ଧରି ବସିଲି । ଏହାଇ ମୋର ଶେଷ ସମ୍ବଳ, ଅନ୍ଧର ଯଷ୍ଟି, ମୋର ଜପମାଳା... ତିବ୍ବତରେ 'ୟାର୍‌ବେଡ଼ା ଚକ୍ର' ପରି ଗୋଟାଏ ଜିନିଷ ବୁଲାଇ ଲୋକେ ନାମ ଜପ କରନ୍ତି । ସୁରଜବଲ୍ଲୀ ବାବୁଙ୍କ ଉପରେ ହଠାତ ଆଖି ପଡ଼ିଲା । ଉଦ୍ରଲୋକ ଚିନ୍ତିତ ଭାବରେ ମୋ ମୁହଁ ଆଡ଼କୁ ଅନାଇଁ ବସିଛନ୍ତି । ମୋ ଆଖିରେ, ମୁହଁରେ, ବ୍ୟବହାରରେ ନିଶ୍ଚୟ କୌଣସି ଅସ୍ୱାଭାବିକତା ପ୍ରକାଶ ପାଇଛି । ପାଁଜ ଗୁଡ଼ା ଏତେ ଖରାପ— ସୁତା ଖାଲି କଟିଯାଉଛି । ...ପ୍ରବାସରେ ଲୋକ ଟିକିଏ ବେମାର ପଡ଼ିଲେ ବ୍ୟସ୍ତ ହୋଇ ପଡ଼େ । ଆତ୍ମୀୟସ୍ୱଜନଙ୍କୁ ଦେଖିବା ପାଇଁ ଇଚ୍ଛା କରେ । ଘର ଲୋକଙ୍କ ସେବା ପାଇଁ ମନ ବ୍ୟାକୁଳ ହୋଇ ଉଠେ । ଆଉ ଆଜି ପରି ଦିନରେ ବିଲୁ ପାଖରେ କେହି ଆତ୍ମୀୟ ସ୍ୱଜନ ନାହାନ୍ତି । ହୁଏତ କହିବା ପାଇଁ ତା'ର କେତେ କ'ଣ ଥିଲା । ପିଲାମାନେ ସାମାନ୍ୟ ବେମାର ପଡ଼ିଲେ, ବିଲୁମା'ର ସ୍ନାନାହାର ବନ୍ଦ ହୋଇଯାଏ । ସାରା ଦିନ– ରାତି ରୋଗୀ ବିଛଣା ପାଖରେ କଟାଏ । ପଙ୍ଖା କରିବାରେ ବିରାମ ନାହିଁ । ଟିକିଏ ଭଲ ଆଡ଼କୁ ଆସିଲେ ପଥ୍ୟାପଥ୍ୟର କେତେ ବିଚାର । ଜର ଛାଡ଼ିବା ଦିନ ଟିକିଏ ଖାଲି ଶୁକ୍‌ତ, ତା' ପରଦିନ ପାଉଁରୁଟି, ତା'ପରଦିନ ଅଟା ରୁଟି, ତା' ପରଦିନ ଭାତ । ନୀଲୁ ବିଲୁ ଜାଣନ୍ତି, ଜର ହେଲେ ଏଥିରେ ବ୍ୟତିକ୍ରମ ହେବାର ଜୁ ନାହିଁ । କିନ୍ତୁ ଆଜି ମୁଁ ଏମାନଙ୍କୁ ଏପରି ଅବସ୍ଥାରେ ଆଣି ପକାଇଛି ଯେ, ବିଲୁମା' ବିଲୁର ଅନ୍ତିମ

ମୁହୂର୍ତ୍ତରେ ତାକୁ ପାଖରେ ପାଇବେ ନାହିଁ। ...ଅନେକ ଜାନୁଆର୍ ନିଜ ସନ୍ତାନକୁ ଖାଇ ପକାନ୍ତି। ମୁଁ କଣ ସେଇମାନଙ୍କ ଦଳର ? ପୁଣି ସୂତା କଟିଗଲା। ବୋଧହୁଏ ଖୁବ୍ ସରୁସୂତା କାଟୁଛି ବୋଲି ବାରମ୍ବାର ଛିଣ୍ଡି ଯାଉଚି। ନାଁ, ଆଉ ମୋଟା ସୂତା କାଟିଲେ, ତାତ ସତରଞ୍ଜିବୁଣା ସୂତା ହୋଇଯିବ।

ନେପାଳରେ ଶୁଣିଛି, ଜଣକ ବଦଳରେ ଆଉ ଜଣେ ରାଜଦଣ୍ଡ ଭୋଗ କରିପାରେ। ସତ କି ନୁହେଁ, ଜାଣେ ନାଇଁ, ତେବେ ଶୁଣିଛି, ବଡ଼ ଲୋକମାନେ ନିଜ ପରିବର୍ତ୍ତେ ଚାକର ବାକର ମାନଙ୍କୁ ଜେଲ ପଠାଇ ଦିଅନ୍ତି। ଏଠି ଯଦି ସେମିତି ଗୋଟିଏ ନିୟମ ଥା'ନ୍ତା; ଯେଉଁଥିରେ ବିଲୁ ବଦଳରେ ମୁଁ ଗଲେ ବି ...

କେତେ ଗପ ଶୁଣିଚି, ଜଣେ ଆଉ ଜଣକ ରୋଗ ନିଜ ଉପରକୁ ନେଇଛି। ହୁମାୟୁନଙ୍କ ମୃତ୍ୟୁଶଯ୍ୟାରେ ବାବର ସେଇପରି କରିଥିଲେ। ଯୁଦ୍ଧ ବେଳେ ଯେଉଁ ହୋଷ୍ଟେଜ୍ ରଖନ୍ତି, ଗୋଟିଏ ପ୍ରାଣ ପରିବର୍ତ୍ତେ ଆଉ ଗୋଟିଏ ପ୍ରାଣ ଦାବି କରିବା ବ୍ୟତୀତ ତାହା ଆଉ କଣ ?

ପୁଣି ସୂତା ଛିଣ୍ଡିଲା। ତୁଳାଟା ବୋଧହୁଏ ପୁରୁଣା। ଏତେଥର ସୂତା ଛିଣ୍ଡିଲେ କଣ ଚରଖା କାଟିହୁଏ ? ଏଇ ପାଁଜ୍‌ରେ ଆଗେ ବି ତ ସୂତା କାଟିଛି, ସେତେବେଳେ ତ ଛିଣ୍ଡୁ ନଥିଲା। ନାଁ ମୋର ଗୋଡ଼ ହାତ ଥରୁଚି। ପାଁଜ୍‌ଟାକୁ ଠିକ୍ ଭାବରେ ଧରି ଇଚ୍ଛା ଅନୁସାରେ ଟାଣି ପାରୁନାହିଁ। ଆଖିଡ଼ୋଳା ମଧ କମ୍ପୁଚି। ସୂତା ଝାପ୍‌ସା ହୋଇ ଯାଉଚି। ଲଣ୍ଠନ୍‌ରୁ ତେଲ ବୋଧହୁଏ ସରି ଆସିଲାଣି। ଦୃଷ୍ଟିଶକ୍ତି ଆଉ କେତେଦିନ ବା ରହିବ ? ବୟସ କଣ ଆଉ ଆସୁଚି ? ନାଁ ବୃଥାରେ ନିଜକୁ ଭୁଲ୍ ବୁଝାଇବା ପାଇଁ ଚେଷ୍ଟା କରୁଛି। ଏଠି ମୋର ଏପରି ମାନସିକ ଅବସ୍ଥାରେ ଚରଖା କାଟିବା ଅସମ୍ଭବ। ...ସୋରାବ-ରୁସ୍ତମ୍ କାହାଣୀରେ କୌଣସି ସତ୍ୟତା ନାହିଁ। —ତାହା ସମ୍ପୂର୍ଣ୍ଣ କାଳ୍ପନିକ। ପିତାପୁତ୍ରଙ୍କ ମଧ୍ୟରେ କେବେ କଣ ଏପରି ଘଟିପାରେ ? ହେବ ନାହିଁ କାହିଁକି ? ପୃଥିବୀରେ ସବୁ ସମ୍ଭବ। ସିଂହାସନ ପାଇଁ ପିତାପୁତ୍ରଙ୍କ ମଧ୍ୟରେ ଯୁଦ୍ଧ ତ ଇତିହାସର ସାଧାରଣ ଧାରା। କିନ୍ତୁ ମୋର ବା ଶାସ୍ତି ହୋଇଛି କ'ଣ ? ଶାସ୍ତି ହୋଇଥିଲା, ଶିଖ୍‌ଗୁରୁ ବାନ୍ଦାଙ୍କର। ନିଜ ହାତରେ ପ୍ରାଣପ୍ରିୟ ପୁତ୍ରକୁ ହତ୍ୟା କରିଥିଲେ। ''ଉଃ ! କି ରକ୍ତ ! ଛାତିରୁ ରକ୍ତ ବାହାରିଥିଲା ପିଚ୍‌କାରୀ ମାରି ।।''

ସୁରଜବଲ୍ଲୀ ବାବୁ ପଚାରିଲେ ... ''କଣ କହିଲେ କି ?''

ଅପ୍ରସ୍ତୁତ କଣ୍ଠରେ ଉତ୍ତର ଦେଲି...'' ନାଁ କିଛି କହି ନାହିଁ ତ।'' ବୁଝିପାରିଲି ଅନ୍ୟମନସ୍କ ଭାବରେ କେତେବେଳେ ଶେଷ କଥା ଗୁଡ଼ାକୁ କହି ପକାଇଛି। ସୁରଜବଲ୍ଲୀ ବାବୁ ଥଙ୍ଗ ଥଙ୍ଗ ହୋଇ କହିଲେ ... ''ଚରଖା କାଟିଲା ବେଳେ ଟିକିଏ -ଏ-ଟିକିଏ ଯଦି-ଇ-ଇୟେ ହୋଇ ଯାଉଚି, ତା'ହେଲେ ଥାଉ ନା ବର୍ତ୍ତମାନ ! କହିଲି, ''ନା-ନା, ବେଶ୍ ତ ହଉଚି।''

ମନେ ହେଉଛି, ଯେପରି ଗୋଟାଏ ଅନ୍ୟାୟ କାର୍ଯ୍ୟ କରିବାକୁ ଯାଇଁ ଧରା ପଡ଼ି ଯାଇଚି, ଉତ୍ତର ଦେବାକୁ ଯାଇଁ କଥା ଅଟକି ଯାଉଥିଲା, କୌଣସି ପ୍ରକାରେ ଏଇ ସଂକ୍ଷିପ୍ତ ଉତ୍ତରଟି ଦେଇ ସୂତା ଆଡ଼େ ଦୃଷ୍ଟି ନିବଦ୍ଧ କରି ପାରିଲେ, ମୁଁ ଯେପରି ବଞ୍ଚିଯାନ୍ତି। ପାଁଜ ଯେଉଁଠୁ ସୂତା ବାହାରୁଚି, ସେଇଆଡ଼େ ଜୋର କରି ଅନାଇଁ ରହିଲି—ଯେପରି କାହା ସହିତ ଚାରିଚକ୍ଷୁ ନ ହୁଏ ! ଆଖିରୁ ପାଣି ଗଡ଼ୁଚି। ରାତିରେ ଚେଇଁଲେ ଆଖି ପୋଡ଼େ। ମହାତ୍ମାଜୀ ମୋ ମନରେ ବଳ ଦିଅ। ସଂଯମର ବନ୍ଧ ଆଉ ବୋଧହୁଏ ରହିବ ନାହିଁ। ନିଜକୁ ତ

ଆଉ ସମ୍ଭାଳି ପାରୁ ନାହିଁ।

ସୁରଜବଲ୍ଲୀ ବାବୁ କହିଲେ, ''ମାଷ୍ଟର୍ ସାହାବ! ମାଷ୍ଟର୍ ସାହାବ୍! ଓ ମାଷ୍ଟର୍ ସାହାବ୍।''

ବହୁ ଦୂରରୁ ଯେପରି ଏଇ ଶବ୍ଦ ଭାସି ଆସୁଚି। ଚନ୍ଦ୍ରାଛନ୍ନତା ଭିତରେ ଦୂରରୁ ରେଳ ଗାଡ଼ିର ଶବ୍ଦ ଯେପରି ଲାଗେ, ସେଇପରି। ବୁଝୁଚି, ସୁରଜବଲ୍ଲୀ ବାବୁ ଡ଼ାକୁଚନ୍ତି। କିନ୍ତୁ ଉତ୍ତର ଦେବା ପାଇଁ ଇଚ୍ଛା ହେଉ ନାହିଁ। ସୁରଜବଲ୍ଲୀ ବାବୁ ପିଠି ଉପରେ ହାତ ରଖିଲେ – ଦରଦୀ ହାତରେ ଛୁଆଁ ଲାଗିବା ମାତ୍ରେ ନିଜକୁ ଆଉ ସଂଯତ ରଖି ପାରିଲି ନାହିଁ –'ବିଲୁ'! 'ବିଲୁ'! ଚରଖା ପାଁଜ ଫିଙ୍ଗି ଦେଇ ସୁରଜବଲ୍ଲୀ ବାବୁଙ୍କ ହାତ ଚାପି ଧରିଲି। ଦୁହେଁ ନିର୍ବାକ୍। ଭଦ୍ରଲୋକଙ୍କ ଆଖିରୁ ଲୁହଧାର ଛୁଟିଚି। ଚଉକୀରୁ ଉଠି ସେ ଚାରିଜଣ ଚାଲି ଆସିଲେ। ଛି, ଇଏ କ'ଣ କଲି ? ଲୋକ ଜମି ଗଲେ ଯେ! ତତ୍‌କ୍ଷଣାତ୍ ହାତ ଛାଡ଼ି ଦେଇ ପୁଣି ଚରଖା କାଟିବା ପାଇଁ ଚେଷ୍ଟା କଲି। ବୃଥା ଚେଷ୍ଟା। ସଦାଶିବ ପୁଣି ପଙ୍ଖା କରିବାକୁ ଆରମ୍ଭ କଲା। ସିଏ ପରା ଶୋଇ ପଡ଼ିଥିଲା! ପୁଣି ଉଠିଲା କେମିତି ? ସୁସ୍ଥ ଲୋକକୁ ପଙ୍ଖା କରିବା କି ଦରକାର।? ସେମାନେ କଣ ଭାବୁଛନ୍ତି, ମୁଁ ଅଚେତ ହୋଇ ପଡ଼ିବି ?''

ସଦାଶିବକୁ କହିଲି . . . ''ବେଶ୍ ଥଣ୍ଡା ପବନ ଦଉଚି। ଆଉ ପଙ୍ଖା କରିବା ଦରକାର ନାହିଁ।''

କିଏ କାହା କଥା ଶୁଣୁଚି ?

ଟିକିଏ ପରେ ସୁରଜବଲ୍ଲୀ ବାବୁ ଚୁପ୍ ଚୁପ୍ ମୋତେ ପଚାରିଲେ, ''ଟିକିଏ ଗୀତା ପଢ଼ିବି, ଶୁଣିବେ ?''

ଏପରି ଦରଦଭରା ମିଠା କଥା, ଅନୁରୋଧ ଏଡ଼ାଇବାର ଜୁ' ନାହିଁ। କହିଲି 'ପଢ଼ନ୍ତୁ।'

ପୁଣି ଚରଖା କାଟି ବସିଲି। ସେ ଗୀତାପାଠ ଆରମ୍ଭ କଲେ। ମୁଁ ବୁଝିଚି, ସେ କାହିଁକି ମୋ ଆଗରେ ଗୀତାପାଠ କରିବା ପାଇଁ ଚାହାନ୍ତି। ମୋ ମନରେ ଶକ୍ତି ଆଣିବା ପାଇଁ ନୁହେଁ, ସହାନୁଭୂତିରେ ନୁହେଁ, ନିଜ ନିଜର ଦୁଷ୍ଚିନ୍ତା ଦୂର କରିବା ପାଇଁ ନୁହେଁ– ଶବବାହୀ ମିଲିଟାରୀ ଲରୀର ଶବ୍ଦ ଆଉ ମାଜିଷ୍ଟ୍ରେଟ୍ ଓ ଡାକ୍ତର ସାହେବଙ୍କ ମୋଟରଗାଡ଼ିର ଶବ୍ଦ ଯେପରି ମୋ କାନରେ ନପଡ଼େ, ସେଥିପାଇଁ! ଏହା ପୂର୍ବରୁ ଯେତେଥର ଫାଶୀ ହୋଇଚି, ପ୍ରତ୍ୟେକ ଥର ଆମେ ଭୀତିମିଶ୍ରିତ ଉତ୍କଣ୍ଠାରେ ଏଇ ଶବ୍ଦ ପାଇଁ ଅପେକ୍ଷା କରିଛୁ। ମୋଟର-ହର୍ଣ୍ଣର ତୀବ୍ର ଧ୍ୱନି ସେତେବେଳେ ଆମର ସ୍ନାୟୁ ମଣ୍ଡଳୀକୁ ଆଲୋଡ଼ିତ କରିଦିଏ। ତାପରେ ୱାର୍ଡ଼ ସାରା ଖେଳିଯାଏ ଏପରି ସ୍ତବ୍ଧତା, ଯାହା ଭିତରେ ନିଜ ଛାତିରେ ଦୁକ୍ ଦୁକ୍ ଶବ୍ଦ ସ୍ପଷ୍ଟ ଶୁଣି ହୁଏ। ସେତେବେଳେ ସମୟ ଯେପରି କଟିବା ପାଇଁ ଆଦୌ ଚାହେଁନା।– ସକାଳ ଯେପରି ଆଉ ହେବ ନାହିଁ। ପରେ ମୋଟର ଲରୀ ଶବ୍ଦରୁ ଲୋକେ ବୁଝନ୍ତି, ଲାସ୍ ବାହାରକୁ ଚାଲି ଗଲାଣି। ତାଠାରେ ନଅ ଥର ଘଣ୍ଟା ବାଜେ, କୟଦୀମାନଙ୍କୁ ଉଠାଇବା ପାଇଁ। ଫାଶୀ ରାତିରେ ସମସ୍ତେ ଚେଇଁ ରହିଥାନ୍ତି– ତଥାପି ନିୟମରେ ବ୍ୟତିକ୍ରମ ହେବାର ଉପାୟ ନାହିଁ। ଏହାପରେ ବାଜେ, ଦୁଇଟା ଘଣ୍ଟା ''ଗିନ୍‌ତୀ ମିଲାନ୍'' ପାଇଁ। ସେ ଶବ୍ଦ ସମସ୍ତଙ୍କୁ ଜଣାଇ ଦିଏ ଯେ, ରାତିରେ ଯେତେ ଜଣ କୟଦୀ ବନ୍ଦୀ ଥିଲେ, ସକାଳେ ଠିକ୍ ସେତିକି ଅଛନ୍ତି– ଗୋଟିଏ ବଢ଼ି ନାହିଁ କିମ୍ବା ଗୋଟିଏ କମି ନାହିଁ। ବିଭିନ୍ନ ୱାର୍ଡ଼ର ୱାର୍ଡ଼ର୍‌ମାନେ ନିଜ ନିଜ ୱାର୍ଡ଼ର କୟଦୀ ମାନଙ୍କର ସଂଖ୍ୟା ଜଣାଇ ଦିଅନ୍ତି ଗୁମ୍‌ଟିକୁ,

ଏ ଗୁଡ଼ିକର 'ଟୋଟାଲ' ରାତିର ସଂଖ୍ୟା ସହିତ ମିଶିଗଲେ, ଏଇ ଅଭାବନୀୟ ସମ୍ବାଦ ଚର୍ତୁଦିଗରେ ପ୍ରଚାର କରି ଦିଆଯାଏ ଦୁଇଟା ଘଣ୍ଟା ଶବ୍ଦରେ। ଜେଲର୍ ସାହେବ ଚାବି ଦିଅନ୍ତି ଜମାଦାରଙ୍କୁ, ତାପରେ ୱାର୍ଡ଼ମାନଙ୍କର ଦରଜା ଖୋଲାଯାଏ। ପିମ୍ପୁଡ଼ି ଧାର ପରି ବାହାରନ୍ତି କୟଦୀମାନେ, ''ଜୋଡ଼ା ଫାଇଲ। ଜୋଡ଼ା ଫାଇଲ।'' ସେମାନଙ୍କ ମିଆଦ୍‌ରୁ ଗୋଟିଏ ଦିନ କମିଗଲା। ନୂତନ ଉଦ୍ୟମରେ ଦୁର୍ବହ, ଦୁରତିକ୍ରମ୍ୟ ଆଉ ଗୋଟିଏ ଦିନ ପୋଛି ପକାଇବା ପାଇଁ ସେମାନେ ସଚେଷ୍ଟ ହୁଅନ୍ତି। ପ୍ରତିଟି ଘଣ୍ଟା ସେମାନଙ୍କୁ ମନେ କରାଇ ଦିଏ ଯେ ଚବିଶ ଘଣ୍ଟାରେ ଗୋଟିଏ ଦିନ ହୁଏ– ଗୋଟିଏ ଦିନ କଟି ଗଲା–ଆଉ ଏତେ ଦିନ ବାକି ରହିଲା। . . .

ମୋତେ ଏମାନେ ଭୁଲାଇବାକୁ ଚେଷ୍ଟା କରୁଛନ୍ତି। କିନ୍ତୁ ବର୍ତ୍ତମାନ କଣ ବିଲୁ କଥା କେବେ ଭୁଲି ହେବ ? ଚେଷ୍ଟା କଲେ ସୁଦ୍ଧା କଣ ଅନ୍ୟମନସ୍କ ହେବା ସମ୍ଭବ ? ହୋଇ ପାରିଲେ ତ ବଞ୍ଚିଯାନ୍ତି . . . ଭଗବାନଙ୍କ ଅଶେଷ କରୁଣା ଯେ, ଏକ ସଙ୍ଗରେ, ଏକ ମୁହୂର୍ତ୍ତରେ ଗୋଟିକରୁ ବେଶୀ କଥା ଭାବି ହୁଏ ନାହିଁ। ବିଲୁ ଯଦି ଶେଷ ମୁହୂର୍ତ୍ତରେ କିଛି ସମୟ, ନିଜ ମୃତ୍ୟୁ ବ୍ୟତୀତ ଅନ୍ୟ କୌଣସି କଥା ଭାବି ପାରନ୍ତା। ତା'ହେଲେ ସେ ମାନସିକ ଅଶାନ୍ତି ଓ ଆତଙ୍କରୁ ବଞ୍ଚିପାରନ୍ତା। ହୁଏତ ସେ ଯନ୍ତ୍ରଣା ଜାଣି ପାରିବ ନାହିଁ। ଭଗବାନ, ତୁମକୁ କେତେ ତ କିଛି ମାଗି ନାହିଁ। ଆଜି ଏଇ ଘୋର ବିପଦ ବେଳେ, ମୋର ସିଦ୍ଧାନ୍ତରେ ଜଳାଞ୍ଜଳି ଦେଇ, ତୁମକୁ ମୋର ଇଚ୍ଛା ନ ଜଣାଇ ରହି ପାରିଲି ନାହିଁ। ଭଗବାନ ବିଲୁକୁ ଶେଷ ମୁହୂର୍ତ୍ତରେ ଅନ୍ୟ କଥା ମନେ ପକାଇ ଦିଅ। ଅନ୍ତିମ ମୁହୂର୍ତ୍ତ ପୂର୍ବରୁ ମୃତ୍ୟୁଭୟରେ ତାକୁ ଯେପରି ତିଳେ ତିଳେ ମରିବା ପାଇଁ ନ ପଡ଼େ। ଟେଲିପାଥି କଣ ସତ ? ମୋ ଇଚ୍ଛା, ଆକାଂକ୍ଷା କ'ଣ ବିଲୁ ପାଖରେ ପହଞ୍ଚୁଚି ? ବିଲୁ ଦେଖ, ତୋ ବାପା, ତୋ ପାଇଁ, ନିଜ ପାଖରେ, ଭଗବାନଙ୍କ ପାଖରେ ଆଜି ଛୋଟ ହୋଇଗଲା !

ସୁରଜବଲ୍ଲୀ ବାବୁ ଗୀତାପାଠ କରୁଛନ୍ତି। ଅତି ପରିଚିତ ଗୀତାର ଶ୍ଳୋକ ଗୁଡ଼ିକ ଶୁଣି ସୁଦ୍ଧା ଯେପରି ଶୁଣି ପାରୁନାହିଁ। ଶବ୍ଦତରଙ୍ଗ କାନରେ ପହଞ୍ଚୁଛି; କିନ୍ତୁ ମନ ଆଉ ମସ୍ତିଷ୍କରେ କୌଣସି ସ୍ପନ୍ଦନ ଆଣି ପାରୁ ନାହିଁ।– ଭୟଙ୍କର ଯୁଦ୍ଧକ୍ଷେତ୍ରରେ ଠିଆ ହୋଇ ଗୀତାବାଣୀ ଶୁଣିବା ଦ୍ୱାପର ଯୁଗରେ ସମ୍ଭବ ହୋଇଥିଲା; ମୁଁ ତ ଆଉ ଅର୍ଜୁନ ନୁହେଁ। ଆମେ ଗୀତାର ମର୍ମ କଣ ବୁଝିଛୁ ? ଯେଉଁ ନାସ୍ତିକ ବିଲୁ, ଗୀତା ଫେରସ୍ତ ଦେଇଥିଲା, ସେଇ କିନ୍ତୁ କର୍ମଯୋଗର ମୂଳମନ୍ତ୍ର ବୁଝିଚି, କର୍ମ ଭିତରେ ନିଜକୁ ଲୀନ କରି ଦେଇଛି। ଆଉ ନୀଲୁ; ସେ ବା କମ୍ କେଉଁଥିରେ ? ତାର କଠୋର କର୍ତ୍ତବ୍ୟଜ୍ଞାନ ପାଖରେ, ସ୍ନେହ, ଭଲପାଇବା, ଆତ୍ମୀୟତାର ଦାବି, ଜନମତ, ଏତେ ଆଦରର ଭାଇ– ସବୁ ତୁଚ୍ଛ ହୋଇଯାଇଛି। ଏଇମାନଙ୍କୁ ପୁଣି, ମୁଁ କହେ ନାସ୍ତିକ ! ଈଶ୍ୱର ବିଶ୍ୱାସ ଆମ ମନରେ ବଳ ଆଣେ; କିନ୍ତୁ ଈଶ୍ୱରଙ୍କ ପ୍ରତି ଅବିଶ୍ୱାସ ଏମାନଙ୍କ ମନରେ ଦୁର୍ବଳତା ଆଣି ନାହିଁ। ଯାହା ହୁଏ ଅନ୍ୟ ପକ୍ଷରେ ପତନର କାରଣ, ତାନ୍ତ୍ରିକ ସାଧକର ହୁଏ ସେଇଥିରେ ସିଦ୍ଧି।

ଆଁ ! ଚମକି ପଡ଼ିଲି। ହାତରୁ ପାଁଜ ଖସି ପଡ଼ିଲା। ଚଉଖାର ଘିର୍ ଘିର୍ ଶବ୍ଦ ଆଉ ଗୀତପାଠର ଏକଟଣା ସୁର ଭେଦ କରି, ଅନ୍ୟ ସବୁ ଶବ୍ଦକୁ ବୁଡ଼ାଇ, ଶୁଣାଗଲା ମଟର ଲରୀର ହର୍ଣ୍ଣ– ତା'ପରେ ମଟର ରହିବା ଶବ୍ଦ। ମୋ ଛାତି ଉପରେ ଲରୀଟା ଯେପରି ମାଡ଼ି ଚାଲିଗଲା– ଲରୀଟାକୁ ଟାଣି ଯଦି ଅଟକାଇ ରଖି ପାରିଥାନ୍ତି–ଦେହ ବଳରେ, ଯେତେ

ଶକ୍ତି ଅଛି ମୋ ଦେହରେ– ଗେଙ୍ଗୁଟିବିଛା ରାସ୍ତା ଉପରେ ମୋତେ ଯେପରି ଟାଣି ଘୋଷାଡ଼ି ନେଇ ଯାଉଛି– ଲରୀର ଚକ ବନ୍ଦ କରିଦେବି, ଏତେ ଶକ୍ତି କଣ ମୋର ଅଛି– ଲରୀ ଅଟକିଲା– ମୋର ହୃତ୍‌ସ୍ପନ୍ଦନ ସହିତ ତାଳ ମିଶାଇ ମୋଟର ଇଞ୍ଜିନ୍‌ର ଶବ୍ଦ ହେଉଚ଼ି– କ୍ରୁଦ୍ଧ ହିଂସ୍ର ଜନ୍ତୁର ଗର୍ଜନ ପରି। ସଦାଶିବ ପିଠିରେ ହାତ ବୁଲାଇ ଦେଉଛି। ଚାରିପାଖେ ଘେରି ସମସ୍ତେ ଆସି ଠିଆ ହେଲେଣି। ଗାଡ଼ି ତଳେ କେହି ଚାପା ପଡ଼ିଲେ ଯେପରି ଭିଡ଼ ଜମେ ସେହିପରି।...

ସଦାଶିଭ କହିଲା ... ''ଆସନ୍ତୁ ସମସ୍ତେ ମିଶି ଟିକିଏ ପ୍ରାର୍ଥନା କରାଯାଉ। ସମସ୍ତେ ସେଇଠି ବସିଲେ। ବୈଜନାଥ୍ ପ୍ରଭୃତିଙ୍କ ଦଳ, ଫରୱାର୍ଡ଼-ବ୍ଲକ୍ ଦଳ, କିଶାନ୍‌ସଭାର ସେଇ ପିଲାଟି, କମ୍ୟୁନିଷ୍ଟ ପାର୍ଟିର ସେଇ ପିଲା, ଆଉ ବାକି ସମସ୍ତେ ରହିଛନ୍ତି। ମେହେର୍‌ଚ଼ନ୍ଦଜୀ 'ରାଷ୍ଟ୍ରଗଗନ କି ଦିଦ୍ଧିୟ ଜିୟୋତୀ'' ଆରମ୍ଭ କଲେ। ପ୍ରାର୍ଥନା ପାଇଁ ଆଜି କାହାରି ଆପତ୍ତି ନାହିଁ। ପ୍ରାର୍ଥନା ବେଳେ ବ୍ୟଙ୍ଗ କରି ଚୁଟ୍‌କି ଗୀତ ନାହିଁ। ମେହେରଚ଼ନ୍ଦଜୀଙ୍କର ଯେଉଁ ଧାଡ଼ିଟି ମନେ ପଡ଼େ ନାହିଁ, ସେଇଟିକୁ ଆଗରୁ ସମସ୍ତେ ଗାଇ ଦେଲେ। ପକେଟ୍‌ରୁ କାଗଜ ଖଣ୍ଡକ ତାଙ୍କୁ ଆଉ ବାହାର କରିବାକୁ ପଡ଼ିଲା ନାହିଁ। ସମସ୍ତେ ପ୍ରାଣପଣେ ଚିତ୍‌କାର କରୁଛନ୍ତି। ଏତେ ଚିତ୍‌କାର ଭିତରେ ମାଜିଷ୍ଟ୍ରେଟ୍ ଆଉ ଡାକ୍ତର ସାହେବଙ୍କ ମୋଟରଗାଡ଼ିର ଶବ୍ଦ ଶୁଣାଯିବ ନାହିଁ। ସେଇ ମତ୍‌ଲବ୍‌ରେ ଏମାନେ ପ୍ରାର୍ଥନାରେ ବସିଛନ୍ତି। ମେହେରଚନ୍ଦଜୀ ପ୍ରାର୍ଥନା ଶେଷ କରିବା ମାତ୍ରେ ସଦାଶିବ ଆରମ୍ଭ କଲା, ''ରଘୁପତି ରାଘବ ରାଜାରାମ!''

ମହାତ୍ମାଜୀଙ୍କ ପ୍ରିୟ ଭଜନ। କି ମଧୁର ଚିର ନୂତନ ସୁର ଭଜନଟିର। ବିଲୁ ପ୍ରଭୃତିଙ୍କ ଦଳର ଆଜି ଭଜନଗାନରେ କୌଣସି ଆପତ୍ତି ନାହିଁ। ଆଗ ଗୀତଟି ହୁଏତ ଜାତୀୟ ପତାକା ସମ୍ବନ୍ଧରେ,କିନ୍ତୁ ଏ ଭଜନଟି ତ ତା' ନୁହେଁ। ବିଲୁର ଅନ୍ତିମ ମୁହୂର୍ତ୍ତରେ ତାର ଆତ୍ମାର ଶୁଭ କାମନାରେ ଆଉ ବିଲୁର ବାପାକୁ ଟିକିଏ ଅନ୍ୟମନସ୍କ ରଖିବା ପାଇଁ, ସେମାନେ ନିଜ ନିଜର ମତବାଦକୁ ବିସର୍ଜନ ଦେଇଛନ୍ତି। ବିଲୁର ଦଳ– ସେମାନେ ଏଇ ଟିକିକକ କ'ଣ କରନ୍ତେ ନାହିଁ? ନୀଲୁ ହୋଇଥିଲେ, ସିଏ କଣ ଭଜନରେ ଯୋଗ ଦେଇଥାନ୍ତା? କଦାପି ନୁହେଁ। ସେ ଭାଙ୍ଗିବ ପଛେ ନଇଁବ ନାହିଁ। ନୀଲୁ ବିଲୁ ଆଶ୍ରମରେ ଆଗେ ଏଇ ଭଜନଟିକୁ କି ସୁନ୍ଦର ଗାଉଥିଲେ! ଏମାନେ ଅସ୍ୱାଭାବିକ ଜୋରରେ ଭଜନ ଗାଉଛନ୍ତି। ସେମାନେ ସ୍ଥିର କରିଛନ୍ତି ଯେ– ବର୍ତ୍ତମାନ ଆଉ ଭଜନ ଶେଷ କରିବେ ନାହିଁ– ଯେତେ ସମୟ ପାରନ୍ତି ପ୍ରାଣପଣେ ଗାଇ ଚାଲିବେ... ସିଡ଼ି ଉପରେ ବିଲୁ ମଞ୍ଚ ଉପରକୁ ଉଠୁଚ଼ି– ଆହା, ଖାଲି ପାଦରେ ଝୁଣ୍ଟି ପଡ଼ିଲା– କି ରୋଗା ହୋଇ ଯାଇଚ଼ି– ବେକଟା ଚଢ଼େଇ ବେକ ପରି ସରୁ ନାକଟି ଖଣ୍ଡାଧାର ପରି– ତଳେ ଅନ୍ଧାର– ଦଉଡ଼ିରେ ଝିଙ୍କ ଟାଣ ପଡ଼ିଲା– ବିଲୁ– ବିଲୁ– ଗଲେ କଣ ହେବ? ଏତେ ଗୁଡ଼ିଏ ବିଲୁଙ୍କୁ ସେ ଯେ ପଛରେ ରଖିଦେଇ ଯାଇଛି? ଭଗବାନ! ମହାତ୍ମାଜି! ବିଲୁ ମା' କୁ ଆଘାତ ସହ୍ୟ କରିବାର ଶକ୍ତି ଦିଅ। ନୀଳୁମନରେ ବଳ ଦିଅ, ବିଲୁ ଅତ୍ମାକୁ ଶାନ୍ତି ଦିଅ। ଭଜନ ଚାଲିଛି :

ରଘୁପତି ରାଘବ ରାଜାରାମ୍, ପତିତପାବନ ସୀତାରାମ୍
ଜୟ ରଘୁନନ୍ଦନ ଜୟ ଘନଶ୍ୟାମ, ଜାନକୀ ବଲ୍ଲଭ ସୀତାରାମ୍।''

ଜୋର୍‌ରେ, ଆଉରି ଜୋର୍‌ରେ।

# ଔରତ କିତା
## (ମା)

ସରସ୍ୱତୀ ଚାଲିଗଲା। ତା'ହେଲେ ଦରଜା ବନ୍ଦ କରିବା ବେଳ ହେଲା ବୋଧହୁଏ। ହଁ ସେଇଆ– ଏଇ ତ ଲୁସି ଜମାଦାଣୀର କଥାବାର୍ତ୍ତା ଶୁଣାଯାଉଛି। ସରସ୍ୱତୀ ଟିକିଏ ମୁଣ୍ଡ ଚିପି ଦେଉଥିଲା। ତା' ଆଙ୍ଗୁଠିଗୁଡ଼ାକ ଭାରି ନରମ– ଦୁଇ କାନମୁଣ୍ଡା ଉପରେ ଚାପି, ଧୀରେ ଧୀରେ ଆଙ୍ଗୁଠି ଗୁଡ଼ାକ ଚଲାଇ ଆଣେ, ଭ୍ରୂଲତା ଉପର ଦେଇ ନାକ ଉପରକୁ। ବିନ୍ଧାଟା ସାଙ୍ଗେ ସାଙ୍ଗେ କମି ଯାଏ। ମୁଣ୍ଡ ଭିତରେ କ'ଣ ଯେପରି ଗୋଟାଏ ଚାପି ହୋଇ ଜମାଟ ବାନ୍ଧିଥିଲା– ସେଟାବି ସଙ୍ଗେ ସଙ୍ଗେ ହାଲୁକା ହୋଇଯାଏ। ଜମାଦାରାଣୀ ତାକୁ କ'ଣ ଗୋଟାଏ ମିନିଟ୍‌ରୁ ବେଶୀ ସୁଦ୍ଧା ବସିବା ପାଇଁ ଛାଡ଼ିଦେବ ? ଆମ ସହିତ ଟିକିଏ ସମ୍ମାନ ଦେଖାଇ ଅବଶ୍ୟ କଥାବାର୍ତ୍ତା କରେ, କିନ୍ତୁ ସରସ୍ୱତୀ ଯେ 'ସି' କ୍ଲାସର। ସେମାନଙ୍କ ୱାର୍ଡ଼ ଅଲଗା। ତାକୁ ଏତେ ବେଳେ ଏଇ ୱାର୍ଡ଼ରେ ରହିବା ପାଇଁ ଛାଡ଼ି ଦେଇଚି; ସେଇ ଯଥେଷ୍ଟ। ଆହା-ରେ ସିଏ ଯେ କାହିଁକି ଜେଲ୍‌କୁ ପୁଣି ଫେରି ଆସିଲା, ସେ କଥା ମୁଁ ବୁଝିଚି। ମୋ'ଠୁ ସେ କଥା ସିଏ କ'ଣ ଲୁଚାଇପାରିବ ? ଆଗରୁ ଯଦି ଏ କଥାଟା ବୁଝିଥାନ୍ତି, ତାହେଲେ ସହଦେଓର ମା' ମୋ ପାଖରେ କଥାଟା ପକାଇବା ବେଳେ ରାଜି ହୋଇଯାଇଥାନ୍ତି। ତା'ହେଲେ ବିଲୁର ମୋର ହୁଏତ ଏ ଦଶା ହୋଇନଥାନ୍ତା। ହେଲେ ମୁଁ ରାଜି ହୋଇଥାନ୍ତି କାହିଁକି ? ଭଗବାନ ମତେ ସେଇପରି ତ ଗଢ଼ିଚନ୍ତି। ତା' ନହେଲେ ସମସ୍ତଙ୍କୁ ପେଟରେ ଗିଳି ବସି ରହିବି କିପରି ? ''ଅଭାଗା ଯେଦିଗେ ଜାୟ ସାଗର ଶୁଖାୟ ଯାୟ''– ମୋର ହୋଇଚି ସେଇଆ। ସରସ୍ୱତୀ କପାଳ ତ ପୋଡ଼ିଚି। ଆଉ ବାହା ହୋଇଥିଲେ ବି ପୋଡ଼ିଥାନ୍ତା। ବିଲୁ ମତାମତ ମୁଁ ପଚାରି ନାଇଁ। ଝିଅର ପାଠ ମୋଟେ ଛାତ୍ରବୃତ୍ତି ପର୍ଯ୍ୟନ୍ତ। ଆଜିକାଲିକା ପିଲାଏ ତା' କଣ ପସନ୍ଦ କରିବେ ? ସହଦେଓ ମା'କୁ ଏହାର ଟିକିଏ ଆଭାସ ମଧ୍ୟ ଦେଇଥିଲି। ସହଦେଓ ମା' ମୋତେ ତ କୌଣସି ଜବାବ ଦେଲା ନାହିଁ। ସେତେବେଳେ କେବଳ ଆଚମ୍ବିତ ହୋଇ ମୋ ମୁହଁକୁ ତବ ତବ କରି ଚାହିଁଲା। କିନ୍ତୁ ସହଦେଓ ମୋତେ ଶୁଣାଇବାକୁ ଛାଡ଼ି ନଥିଲା। ସହଦେଓ କହିଥିଲା, ''ଆମେ ଚଷାଭୁଷା ଲୋକ। ଆମ ଝିଅ ମିଡ଼ିଲ ପାସ୍ ହେବ ନାଇଁ ତ ଆଉ କଣ ସରୋଜିନୀ ନାଇଡୁ ଆଉ ବିଜୟ ଲକ୍ଷ୍ମୀ ପଣ୍ଡିତଙ୍କ ପରି ବିଦୂଷୀ ହେବ ? ତାଛଡ଼ା ବିଲୁ ବାବୁ ଏମିତି କି ପାଠ ପଢ଼ିଚନ୍ତି ଯେ ! ବିଦ୍ୟାପୀଠର ଶାସ୍ତ୍ରୀ ହୁଏତ ନୁହେଁ।'' ସହଦେଓ ଦେଖିବାକୁ ମିଡ଼ିମିଡ଼ିଆ। ଗୋରୁ ଚୋର ପରି ଥାଏ ଚୁପ୍‌ଚାପ୍। କିନ୍ତୁ କଥା କହିବା ବେଳେ ଯେପରି

ଶୂଳ ବିନ୍ଧିଦିଏ । ମୋ ପୁଅ ବାହା ହେବ– ଯେଉଁଠି ଇଚ୍ଛା ଦେବି, ଯେଉଁଠି ଇଚ୍ଛା ନହେବ, ଦେବି ନାହିଁ; ଏଥିରେ ଦାଣ୍ଡଲୋକଙ୍କର କଣ ଅଛି ? ମୁଁ ରାଜି ହୋଇ ନାହିଁ, ଦୁଇଜଣଙ୍କୁ ଭଲ ମାନିବ ନାହିଁ ବୋଲି । ହିନ୍ଦୁସ୍ଥାନୀ ଆଉ ବଙ୍ଗାଳୀ କଣ ମାନିବ ? ଯିଏ ଯେଉଁଠିର ସିଏ ସେଇଠିର । ଗୋଟାଏ ଗଛର ବକଳା ଆଉ ଗୋଟାଏ ଗଛରେ ଜୋଡ଼ିଦେଲେ, କେବେ କଣ ଜୋଡ଼ି ହେବ ? ଆମେ କହୁ ସରସ୍ୱତୀ ସେମାନେ କହିବେ ସରସୋୟାତୀ । ସରସ୍ୱତୀକୁ କଣ ଶୁକ୍ତ ରାନ୍ଧି ଆସେ ? ଚକୁଳିପିଠା ନାଁ ଶୁଣିଚି ? ବିଲୁକୁ ହରଡ଼ ଡ଼ାଲି ଭଲ ଲାଗେ ନାହିଁ, ସେମାନେ କିନ୍ତୁ ହରଡ଼ ଡାଲି ଛଡ଼ା ଅନ୍ୟ କୌଣସି ଡାଲି ଛୁଅଁନ୍ତି ନାହିଁ। ପିଲାଜନ୍ମ ପରେ ପୁଆତୀ ଅନ୍ତୁଡ଼ୀରେ ଥିବା ବେଳେ କେବଳ, ସେମାନେ ମସୁର ଡାଲି ଖାନ୍ତି । . . . ଦିନେ ବହୁରିୟାଜୀକୁ ତାଙ୍କ ଚଡ଼ଚଡ଼ି ରାନ୍ଧି ଦେଇଥିଲି । ସେ କହିଲା, ''ହାମି ଡ୍ୟାଁଟା ଖେତେ ଖୁବ୍ ପସନ୍ କରେ ।'' ତଙ୍କ କିନ୍ତୁ କିପରି ଖା'ନ୍ତି ଜଣା ନାଇଁ, ତଙ୍କ ଯେ ଚୋବାଇ ଖାଇବାକୁ ହୁଏ, ତା' ସେ ଜାଣେନାଁ । ପୁଣି ବଙ୍ଗଳା କହିବାର ଢ଼ଙ୍ଗ ବା କଣ ? ଏମାନେ କଣ ଗୋଟାଏ ଭଲ ମିଠା ତିଆରି କରି ଜାଣନ୍ତି ? ଜେଲ୍‌ରେ ତ ଦେଖୁଚି । ପୁଣି ସେମାନଙ୍କ ଅଞ୍ଚଳରେ ସାରା ଜୀବନଟା ବିତାଇ ଦେଲି । କିଛି ଜାଣିବା ପାଇଁ ତ ଆଉ ବାକି ନାହିଁ। ମିଠା ଭିତରେ ଏମାନେ ଜାଣନ୍ତି ଖାଲି 'ପୁଆ'– ପୂଜା ଉତ୍ସବ, କ୍ରିୟା କର୍ମ ସବୁଥିରେ ସେଇ ପୁଆ । ପାଣିରେ ଟିକିଏ ଅଟା ଗୋଳେଇ, ସେଥିରେ ଗୁଡ଼ ମିଶାଇ ଭାଜି ଦେଇ ପାରିଲେ, ହୋଇଗଲା 'ପୁଆ' । ତାକୁ ନାଁ ପକାନ୍ତି ସିରାରେ, ନାଁ କରନ୍ତି ଆଉ କିଛି । ଦୁଇଟା ପରିବା ମିଶାଇ ତରକାରୀ ରାନ୍ଧିଲେ, ସେମାନେ ଚମକି ପଡ଼ିବେ । ଆଉ ତା'ରି ସାଙ୍ଗରେ ମୁଁ ମୋ ବିଲୁକୁ ବାହା ଦେଇଥାନ୍ତି ? ଇଏତ ଆଉ ଦିନେ ଦି' ଦିନର କଥା ନୁହେଁ । ଜୀବନ ସାରା ରସୁଣ ଆଉ ଗୋଲ ମରିଚ଼ ଖାଇ, ବଙ୍ଗାଳୀ ପିଲା କଣ ବଞ୍ଚିପାରେ ? ତା ସତ୍ତ୍ୱେ ସରସ୍ୱତୀକି ଭାରି ଭଲ ଲାଗେ ମୋତେ । ନିଜ ବୋହୂ କରିବାକୁ ଚାହିଁ ନାଇଁ ବୋଲି, ତାକୁ ଯେ ଦି ଆଖିରେ ଦେଖି ପାରେନା, ତା' ତ ନୁହେଁ । ତାକୁ ପିଲାଟି ଦିନୁ ଦେଖି ଆସୁଚି । କପିଳ ଦେଓ ସାଙ୍ଗରେ ଅନେକ ଥର ଅନେକ ଦିନ ଆମ ଆଶ୍ରମକୁ ଆସିଚି । ବିଲୁ ନୀଲୁ ପରି ସହଦେଓ ଆଉ ସରସ୍ୱତୀ ମୋ ନିଜ ହାତରେ ଗଢ଼ା କହିଲେ ଚଳେ । ବୟସ ବା କେତେ ? ଏଇ ସେ ଦିନ ତ ଟିକି ଝିଅଟିଏ ଥିଲା ।

. . . ଆମ ରନ୍ଧାଘର ପିଣ୍ଡାରେ ଶିଉଳିଫୁଲ ଡେମ୍ପରେ ରଙ୍ଗା, ଖଦଡ଼ ବୃନ୍ଦାବନୀ ଶାଢ଼ୀ ପିନ୍ଧି, ଝିଅଟି ବାଉଁଶ ଧରି ଚକ୍ର ମାରୁଚି । କୋଉଠି ବାଳ, କୋଉଠି ଜୁଡ଼ା, କୋଉଠି ଶାଢ଼ୀ– କାଇଁ ବାଇଁ କରି ଚକ୍ରୀ ବୁଲି ଚାଲିଚି । ମୁଁ କହିଲି, ସେତିକି ଥାଉ, ମୁଣ୍ଡ ବୁଲେଇ ପଡ଼ିଯିବୁ, ଦେହ ବୁଲେଇବ – କିଏ କାହା କଥା ଶୁଣୁଚି ? ''ସରସୋୟତୀଙ୍କ ଇସ୍କୁଲ, ଭେରୀ ବ୍ୟାଡ଼ ଟିଚ଼ର କୁଲ'' ...ଏଇ ପହଳି ମେଲି, ବିଲୁ ଚିତ୍କାର କରି କରି ରନ୍ଧାଘର ପିଣ୍ଡାରେ ଆସି ଠିଆ ହେଲା । ତେବେ ବି କଣ ସରସ୍ୱତୀର ଚକ୍‌ରୀବୁଲା ବନ୍ଦ ହଉଚି ? ଚକ୍ରୀ ବୁଲୁବୁଲୁ ବିଲୁ କଥାର ଓଲଟ ଜବାବ ଦିଆ ହେଲା...

''ମ୍ୟାଓ ମ୍ୟାଓ ମ୍ୟାଓ କୁ
ବିଲ୍ଲୀ ଭାୟା ଆଙ୍କୁ ।''

ବିଲୁ ତା ସଙ୍ଗରେ ସ୍ୱର ମିଶାଇ କହିଲା–''ମୁର୍‌ଗୀ ଭାୟା କି ଠାଙ୍ଗଖାଏ ?'' ତା' ପରେ ଯାଇ ଝିଅର ଚକ୍ରୀବୁଲା ବନ୍ଦ ହେଲା । ହସି ହସି ସେ ପିଣ୍ଡା ଉପରେ ଲୋଟି ପଡ଼ିଲା ।

ଝିଅଟିର ଗଠଣଗାଠଣ ଭଲ। କାମ ଚଳେଇ ନିଅନ୍ତା। ବଙ୍ଗାଳୀ ଘର ଝିଅ କ'ଣ କଂଗ୍ରେସ-ଆଶ୍ରମର ସଂସାର ଚଳାଇ ପାରନ୍ତା ? ଆଶ୍ରମ ତ ନୁହେଁ—ଗୋଟିଏ ହୋଟେଲ। ମାମଲତ୍‌କାରମାନେ ମୋକଦ୍ଦମା ତଦ୍‌ବିର୍ ପାଇଁ ସଦରକୁ ଆସିଲେ—ପହଞ୍ଚିଯିବେ ଆଶ୍ରମରେ। ମିଟିଙ୍ଗ୍ ତ ଲାଗି ରହିଛି। ସମୟ ନାଇଁ, ଅସମୟ ନାଇଁ, ରାତି ନାଇଁ, ବିକାଳି ନାଇଁ, ଲୋକ ଆସିବାର କ'ଣ ଆଉ ବିରାମ ଅଛି ? ମୁଁ ବୋଲି ସମ୍ଭାଳି ପାରିଚି— ଆଉ କିଏ ହୋଇଥିଲେ କାନ୍ଦି କାନ୍ଦି ମରନ୍ତା।— ସରସ୍ୱତୀ ହାତରନ୍ଧା ଖାଇ କିନ୍ତୁ ବିଲୁ ପେଟ ଦିନେ ବି ପୁରନ୍ତା ନାଇଁ। ବିଲୁ ମୋର ତରକାରୀ ଖାଇବାକୁ ଭାରି ଭଲପାଏ। ବସି ବସି ଖୁଣ୍ଟି ଖୁଣ୍ଟି ଖାଇବ, ଯେତିକି ଭାତ ପ୍ରାୟ ସେତିକି ତରକାରୀ। ସେଇଥା ଖାଇ ବତ ହାଡ଼ କେଇଖଣ୍ଡ ରହିଚି। ତା' ନହେଲେ ଭାତ ଖାଇବାର ଯୋଉ ଶିରୀ ! ଚଢ଼େଇ ପରି ଥଣ୍ଟ ମାରି ଦି'ଟା ଖାଇଦେଲେ ହେଲା ! ଆଉ ଏଇ ସରସ୍ୱତୀ— ଏମାନଙ୍କର ତରକାରୀ ଖାଇବା ଅଭ୍ୟାସ ଅଛି ନାଁ କଣ ? ଏମାନଙ୍କ ଭିତରେ ଯିଏ ଲକ୍ଷପତି ତାର ଗର୍ବ ଯେ, ସେ ଭାତ ସାଙ୍ଗରେ ଦୁଇ ତିନି ରକମର ତରକାରୀ ଖାଏ। ଗାଁ ଲୋକେ ସେଇ କଥା ଆଲୋଚନା କରନ୍ତି। ଆଉ ସାଧାରଣ ଗୃହସ୍ଥ ଘରେ, କାନ୍ଧେ ଉଞ୍ଚ ପିତ୍ତଳ ଥାଳିରେ ନାଲି ବଗଡ଼ା ଚାଉଳ ଭାତ ମଳାରେ ଟିକିଏ ହରଡ଼ ଡାଲି, ଆଉ ଥାଳିର ଗୋଟାଏ ପାଖରେ 'ନମ ନମ' କରି ଚନ୍ନ (ଚନ୍ଦନ) ବୁନ୍ଦା ପରି ଏତେ ଟିକିଏ ତରକାରୀ। ବେଶ୍ ତୃପ୍ତିରେ ସେତକ ଖାଇ ଉଠି ପଡ଼ନ୍ତି। କପିଳଦେଓ ଆଉ ସହଦେଓ ଢାଳେ ଢାଳେ ପାଣି ପିଅନ୍ତି ତା ଉପରେ।

ଇଏ କିଏ ? ମୋ ପାଦ ନେଇ ଟଣା ଘୋଷଡ଼ା କାହିଁକି ? କିଏରେ ? ମନ୍ଚନିୟା ? ପାଦରେ ତେଲ ଲଗାଇ ଦବାକୁ ତତେ କିଏ କହିଲା ? ନିଶ୍ଚୟ ବହୁରିୟାଜୀ ! ନିଜେ ତ ଦଳ ବଳ ଧରି ରାମାୟଣ ପାଠରେ ବସିଚନ୍ତି, ଆଉ ଆକୁ ପଠାଇ ଦେଇଚନ୍ତି ମୋତେ ବିରକ୍ତ କରି ମାରିବା ପାଇଁ। ରାମାୟଣ ପାଠ ତ ବେଶ ଜମି ଉଠିଲାଣି, ଦେଖୁଚି। ବହୁରିୟାଜୀ ବୋଲେ, ଆଉ ବାକି ସତର ଜଣ ତା ସାଙ୍ଗରେ ସୁର ମିଶାନ୍ତି। କାନ ଏକାଥରେ ତାବ୍‌ଦା। ଆମ ଚଳଣି ହେଲା, ଜଣେ ରାମାୟଣ କି ମହାଭାରତ ପଢ଼େ, ଆଉ ବାକି ସମସ୍ତେ ବସି ଶୁଣନ୍ତି। ବଡ଼ ଜୋର, ଟିକିଏ ଅଧେ, ଆହା ଉହୁ କରନ୍ତି। ଏମାନଙ୍କର ସବୁ ଅଦ୍ଭୁତ . . . "ଆଲୋ ମନ୍ଚନିୟା, ମୋ ପାଦରେ ତେଲ ଘଷିବାକୁ କିଏ କହିଲା ଲୋ ?"

"ସରସୋୟାତୀଜୀ ଗଲାବେଳେ କହିଗଲେ, କେଇଦିନ ହେଲା ପିତ୍ତ ପଡ଼ି ପଡ଼ି ମାଈଜୀଙ୍କ ହାତପାଦ ଜଳୁଚି। ହାତ ପାପୁଲିରେ ତେଲ ଆଉ ପାଦରେ ଟିକିଏ ତେଲ ପାଣି ମାଲିସ୍ କରିଦେ। ଆପଣ ମାଈଜୀ ବିରକ୍ତ ହେବେ ବୋଲି, ଏତେବେଳ ଯାଏ ତ ଦେଇ ନାହିଁ। ମୁଁ ବସିଥିଲି ଦୁଆରମୁହଁରେ। ଜମାଦାରାଣୀ ଆସି ପୁଣି ପରସ୍ତେ ଗାଳି ଦେଇଗଲା। କହିଲା "ଏତିକି ବେଳୁ ଶୋଇବା ଯୋଗାଡ଼ ହଉଚି। ମାଈଜୀ ସେବା ପାଇଁ ତେତାର୍ ଯା ଗଲକଟୀର ଡିଉଟୀ ପଡ଼ିଚି। ଅବିକାଠୁ ଆସି ଦୁଆରମୁହଁରେ ବସିଲୁ କଣ ? ଅଧେ ରାତି ତୁ ଚେଇଁବୁ, ବାକି ଅଧକ ଚେଇଁବ ଗଲକଟୀ।" ଏଇଥା କହି ସିଏ ତମ ତମ ହୋଇ ଚାଲିଗଲା। ସରକାର ଜେଲ୍‌ରେ ପୂରେଇଚି, ଏଠି ତୁମେ ଯାହା କହିବ, ସେଇଥା କରିବି। ଅନେକ ପାପ କରିଚି, ନଇଲେ କଣ ବାହ୍ମଣ ଘର ଝିଅ ହୋଇ, ଅନ୍ୟର ଗୋଡ଼ ମୋଡ଼ନ୍ତି ? ସେମାନଙ୍କ ହୁକୁମ୍‌ରେ ତମ ଗୋଡ଼ ଘଷିବା ପାଇଁ ଆସିଲି— ଚେଇଁକି ତୁମେ

ମାଈଜୀ କ'ଣ ନାଁ ନାରାଜ!

ବୟସ ତିରିଶ ଖଣ୍ଡେ ହେବ ମନ୍ଚନିୟାର। ସେ 'ସି' କ୍ଲାସ୍ ସାଧାରଣ କୟଦୀ। ବେଶ୍ ଡଉଲଡାଉଲ ଚେହେରା। ବ୍ରାହ୍ମଣ ଘରର ବାଳ-ବିଧବା। କିଛି ଦିନ ଆଗେ ପିଲାଟିଏ ହୋଇଥିଲା; ସଦ୍ୟଜାତ ଶିଶୁଟିର ମୃତଦେହ ମିଳିଥିଲା ବାଉଁଶ ବଣ ଭିତରେ ଗୋଟିଏ ହାଣ୍ଡିରେ। ଶିଶୁଟିର ଗଳାରେ ଆଙ୍ଗୁଳି ଦାଗ। ଆହା, ଲହୁଣୀ ପରି ନରମ ଗଳା, ରକ୍ତ ଜମି ନେଳି ପଡ଼ି ଯାଇଥିଲା। ସେଇଥିରେ ମନ୍ଚନିୟାର ସଜା ହୋଇଚି ଦଶବର୍ଷ ଆଉ ମନ୍ଚନିଆ ମା' କୁ ଦୁଇବର୍ଷ! ବେଶ୍ ହେଇଚି, ଖୁବ୍ ହେଇଚି। ତୁ ହେଲୁ ମା। ନିଜ ଗର୍ଭରେ ପିଲା ଧରିଚୁ! ସେ ପିଲା ଭଲ କରି କାନ୍ଦିବା ପର୍ଯ୍ୟନ୍ତ ଶିଖିନାଇଁ। ସେଇ ପିଲାକୁ କଣ ନାଁ, ମା ହୋଇ ଏଇଆ କଲୁ? ତୋ ପରି ମା'କୁ ଗୋଡରେ କଣ୍ଟା, ମୁଣ୍ଡରେ କଣ୍ଟା ପିଟି ଚଷୁନିଆଁରେ ପୋଡ଼ି ମାରିବା କଥା! ନାଁ, ସିଏ ନିଜେ ଏ କାମ କଦାପି କରି ନାଇଁ। ସେତେବେଳେ ସେ ହୁଏତ ଅଜ୍ଞାନ, ଅଚେତନ। କରିଛି ତା' ମା। ସେ ସ୍ତ୍ରୀଲୋକ ଭାରି ବଜାତ୍। ତାର ସଜା ହେଲା କଣ ନାଁ, ଦୁଇବର୍ଷ! ଏମାନଙ୍କ ଆଇନ୍, ଇଜଲାସର କ'ଣ ଆଉ ଠିକ୍ ଠିକଣା ଅଛି? ତା' ଥିଲେ, ବିଲୁର ମୋର କଣ ଏପରି ସଜା ହୋଇଥାନ୍ତା? ନାଁ ସେ କାହାକୁ ଖୁନ୍ କରିଚି, ନାଁ ସେ କାହାକୁ ମାରିବା ପାଇଁ ଯାଇଚି! କଂଗ୍ରେସ କାମ କରିଚି। ସେଥିପାଇଁ ଜେଲ୍ ଦିଅ, ଜୋରିମାନା କର। ସେଥିପାଇଁ ଏକାଥରେ ଫାଶୀ? ଭଗବାନ୍ ଏତେ ଅବିଚାର କଣ ସହିବେ?

''ମାଈଜୀ ହାତ ପାପୁଲିରେ ତା'ହେଲେ ତେଲ ପାଣି ଟିକିଏ ଲଗାଇ ଦିଏ!'' ମୋତେ ଜଳେଇ ପୋଡ଼େଇ ଆଉ ମାର ନାହିଁତ! ମୁଁ ମରୁଚି ନିଜ ଜ୍ୱାଳାରେ। ଆଉ ଏମାନେ ସମସ୍ତେ ମିଶି ଲାଗିଚନ୍ତି ମୋ ପଛରେ! ମତେ ଆଉ ଟଣାଘୋଷଡ଼ା କର ନାଁ, ଟିକିଏ ଶାନ୍ତିରେ ଚୁପ୍‌ଚାପ୍ ରହିବା ପାଇଁ ଛାଡ଼ିଦିଅ। ଚବିଶ ଘଣ୍ଟା, ଛତିଶ ଜଣଲୋକ ମତେ ଘେରି ମେଳା କରି ବସିଚନ୍ତି, ମତେ ଯେମିତି ତୁଳସୀ ଚଉରା ମୂଳେ ରଖା ଯାଇଚି। ରାମାୟଣ ପାଠ ଆରମ୍ଭ ହେବାରୁ ଭାବିଲି, ଯା'ହେଉ କିଛି ବେଳ ପାଇଁ ନିଶ୍ଚିନ୍ତ—ସେ ଯୋଗ ନାଇଁ, ଇଏ ଆସି ପୁଣି ଗଜର୍ ଗଜର୍ ଆରମ୍ଭ କଲାଣି। ମନ୍ଚନିୟା କହି ଚାଲିଲା, ''ମାଈଜୀ, ଆଜି ସକାଳେ ଆପଣ ଯେତେବେଳେ ବେହୋସ୍ ହୋଇ ପଡ଼ିଥିଲେ ନାଁ, ଡାକ୍ତରସାହେବ ଆସିଥିଲେ-କହି ଯାଇଚନ୍ତି, ଆପଣଙ୍କର ଖାଡ଼ା ଖାଡ଼ା ଓପାସ ତିନି ଦିନ ହୋଇଗଲା। କାଲି ଯଦି କିଛି ନଖାଇବେ, ତା'ହେଲେ ସେମାନେ ଜୋର୍ କରି ଖୁଆଇବେ। 'ସୁଇ' (ଇଞ୍ଜେକସନ୍) ଦେବେ। ଆଉ ନାକ ଭିତରେ ନଳ ପୂରାଇ ମୁର୍ଗୀ ଡିମ୍ବ ଖୁଆଇ ଦେବେ।''

''ଯା ଲୋ ଯା, ମୋର ଖାଇବାଟା ଅବିକା ବଡ଼ ହେଲା! ଆଲୋ, ମୁଁ ନଖାଇଲେ, କାହାର ସାଧ ଅଛି, ମତେ ଖୁଆଇ ଦେବ?''

''ବୁଢ଼ୀ ମାଈଜୀ, ଆପଣ ଏମାନଙ୍କୁ ଜାଣନ୍ତି ନାଇଁ। ନର୍ମଦାବେନ୍‌ଙ୍କ ବିଛଣାବିନ୍ଧା ଖୋଲ ଦେଖିଚନ୍ତି ତ? ଖଟିଆରେ ପକାଇ ଏଇପରି ଚମଡ଼ା ଦେଇ ବାନ୍ଧିବା ବ୍ୟବସ୍ଥା ଅଛି ଏମାନଙ୍କର। ଜୋର୍ କରି, କେଇଜଣ ଜମାଦାରାଣୀ ମିଶି, ଆପଣଙ୍କୁ ଖଟିଆ ଉପରେ ଶୁଆଇ ଦେବେ। ତାପରେ ବିଛଣା ବାନ୍ଧିବା ପରି ଆପଣଙ୍କୁ ଚିତ୍ କରି ଶୁଆଇ ବାନ୍ଧିଦେବେ, ଏଇ ଗଦିଦାର ଖଟିଆ ସାଙ୍ଗରେ।''

"ଆଲୋ, ମୁଁ ନ ଗିଳିଲେ ମତେ ତ ଆଉ ଗିଳାଇ ଦେବେ ନାହିଁ, ଯା, ଆଉ ବେଶୀ ବକ୍ ବକ୍ କର ନାଇଁ ତ!"

ଭବୀ ଭୁଲାଇବାର ପାତ୍ର ନୁହେଁ। ମନଚ଼ନିୟା ମନକୁ ମନ ଗପି ଚାଲିଲା–"ଏଇ ଯୋଉ ହାରୀନ୍ ମଘାଇୟା ଡମୁଣୀ ଅଛି– ତା' ନାକ ଭିତରେ ଘା; ଢାଇଁଲେ ମାଈଢ଼ୀ। ସେଥିରୁ ଯେତେବେଳେ ନାଇଁ ସେତେବେଳେ ରକ୍ତ ପଡ଼େ। ସିଏ, ଗତ ବର୍ଷ, ଆପଣ ଆସିବା ଆଗରୁ 'ଅନ୍ଶନ୍' କରିଥିଲା– ତାକୁ ପାଇଖାନା 'ସଫାଇୟା' କମାଣ୍ଡରେ କାମ ଦିଆ ଯିବାରୁ ତାର ଆପତ୍ତି, ରାଜା ହରିଶ୍ଚନ୍ଦ୍ରର ବଂଶଲୋକ ସେମାନେ। ନିଜ ଜାତିରେ ସେମାନଙ୍କର କେତେ 'ବୋଲବାଲା' (ସୁଖ୍ୟାତି), ସିଏ ପୁଣି ମଇଳା ସଫା କରିବ? ତାଙ୍କ ଜାତି ମୂର୍ଦାର୍ ଛୁଅନ୍ତି ନାହିଁ, ଆଉ ଯୋଉମାନେ ନାଳୀ ସଫା କରନ୍ତି, ସେମାନଙ୍କ ସାଙ୍ଗରେ ବସି ସେମାନେ ତ ଖା'ନ୍ତି ନାହିଁ। ସିଏ ପୁଣି କହୁଥିଲା ଯେ, ଏ ଜେଲରେ ଆବହମାନ କାଳରୁ ସଫାଇୟା କାମ କରନ୍ତି ସାନ୍ତାଳୁଣୀମାନେ। ତା'ପରେ କେତେ ଦିନ ପର୍ଯ୍ୟନ୍ତ ତାକୁ ମୁର୍ଗୀ ଅଣ୍ଡା ସରବତ୍ ଖାଇବାକୁ ଦିଆଗଲା। କିନ୍ତୁ ଦେଲେ କଣ ହେବ?– ତାର ସଂସ୍କାର ଭଲ। ଡାକ୍ତରମାନେ ମୁର୍ଗୀ ଅଣ୍ଡା କଥା ନ କହିଲେ ବି, ତା'ର ବାନ୍ତି ଆରମ୍ଭ ହେଲା। ତାପରେ ସରକାରକୁ ହାର ମାନିବା ପାଇଁ ପଡ଼ିଲା। ତାକୁ ପାଇଖାନା କମାଣ୍ଡରୁ ବାହାର କରିନେବା ପାଇଁ ସରକାର ହୁକୁମ ଦେଲା। ମହାତ୍ମାଜୀ ସରକାର ସାଙ୍ଗରେ ପାରୁ ନାହାନ୍ତି। ହେଲେ ଦିନ କେଇଟାରେ ସେ ସରକାରକୁ ଥଣ୍ଡା ବନେଇଦେଲା। 'କଲଷ୍ଟର' ସାହେବ୍ 'ସୁପରିଟନ୍' ସାହେବଙ୍କୁ କି ଗାଳି ନ ଦେଲା! ଚମାଇନ୍ ଜମାଦାରାଣୀ ଦିନେ ମୋତେ ଏସବୁ କଥା କହୁଥିଲା। ଗୋଟିଏ ରିଷ୍ଟତ ଖଣ୍ଡିଲା, ହେଲେ ସେଇ ଦିନୁ ତା ନାକରୁ ରକ୍ତ ଝରୁଚି।"

ଫାଶୀରେ ଝୁଲିଲା ବେଳେ, ନାକ ମୁହଁବାଟେ ରକ୍ତ ବାହାରେ ନାଁ କଣ? ମନ୍ଚ଼ନିୟାକୁ ପଚାରିଲେ ହୁଅନ୍ତା, ସିଏ ଗଳା ଚିପିଲା ବେଳେ, ନାକ ମୁହଁ ବାଟେ ରକ୍ତ ପଡ଼ିଥିଲା କି ନାଇଁ! ନାଁ, ମା' ହୋଇ ମା'କୁ କଣ ଏପରି ପ୍ରଶ୍ନ ପଚାରି ହୁଏ? ସିଏ ଯଦି ଏଇ ପାପ କାମ କରିଥାଏ, ତା'ହେଲେ ସେତେବେଳେ କଣ ସେଇ କଁଅଳା ମୁହଁଟି ଆଡ଼େ ଅନାଇଁ ପାରିଥିବ?

...ଦୁର୍ଗାର ସେଇ ଛୋଟ ପୁଅଟାର କଣ ବେମାରି ହେଲା। ମୋ'ରି କୋଳରେ ତା'ର ସବୁ ଶେଷ ହୋଇଗଲା। ଜର ଭୋଗି ଭୋଗି ତାର ଚେହେରା ହୋଇ ଯାଇଥିଲା ହାଡ଼ଗିଳା! ପେଟଟା ଆଟିକା ପରି। ଦୁର୍ଗା ମା' ହଠାତ ଡାକି ପଠାଇଲା। ମୁଁ ତରକାରୀ କଡ଼େଇଟା ଓହ୍ଲେଇ ରଖି ତାଙ୍କ ଘରକୁ ଦଉଡ଼ିଲି। ଦୁର୍ଗାମା' ପୁଣି ଯେପରି ଡରକୁଳୀ, ସବୁ କଥାରେ ଡରିମରେ। କାନ୍ଦିକାଟି, ଚିତ୍କାର କରି ସାରା ପଡ଼ାଟାକୁ ସରଗରମ କରି ଦେଇଚି। ଆଲୋ ଯାହା ପାଇଁ ଭଗବାନଙ୍କ ଡାକ ଆସିଗଲାଣି, ତା' ପାଖରେ ଦି'ଦଣ୍ଡ ନିଶ୍ଚିନ୍ତ ହୋଇ ବସ। ହେଲା ନାଇଁ। କହିଲା, ସେ କଥା ମୁଁ ପାରିବି ନାହିଁ ଦିଦି। ମତେ ଭାରି–ଇ ଡର ମାଡୁଚି। ଯାଇଁ ଦେଖିଲି ଛୁଆଟା ପାଖରେ ଦୁର୍ଗା ଭୟରେ ଜଡ଼ ପରି ବସିଚି। ସେଇଟାର ସେତେବେଳକୁ ଏଇ ଯିବ, ଏଇ ଗଲା ଅବସ୍ଥା। ପିଲାଟିକୁ କୋଳରେ ଧରି ବସିଲି। ଅଣଚାଶ ବୋହିଲାଣି, ତଣ୍ଟିରେ କଫ ଘଡ଼ଘଡ଼ ହେଲାଣି। ଆଖି ଡୋଳାର ଧଳାଟା ଦେଖାଯାଉଚି। ପ୍ରାଣପଣେ ପିଲାଟା ନିଃଶ୍ୱାସ ନେବା ପାଇଁ ଚେଷ୍ଟା କରୁଚି। ମୁହଁ,

ହାତ, ପାଦ ନେଳୀ ପଡ଼ି ଆସିଗଲାଣି। ଟିକି ଛୁଆଟାର ବଞ୍ଚିବା ପାଇଁ କି ପ୍ରଚେଷ୍ଟା! ତା'ପରେ ମୋ କୋଳରେ ତାର ସବୁ ଚେଷ୍ଟା ଶେଷ ହୋଇଗଲା। ଔଷଦ ତ ଦୂରର କଥା, ବୁନ୍ଦାଏ ପାଣି ସୁଦ୍ଧା ତା ତଣ୍ଟି ଭିତରକୁ ଗଳିଲା ନାହିଁ। କିନ୍ତୁ ସବୁଠୁ ଆଶ୍ଚର୍ଯ୍ୟ ଯେ, ତା' ନାକ ମୁହଁରୁ ରକ୍ତ ପଡ଼ି, ମୋ ଲୁଗାପଟା ଏକାଥରେ ଜୁଡ଼ବୁଡ଼ ହୋଇଗଲା। ଏମିତି ତ ଆଉ କେବେ ଦେଖି ନଥିଲି। ଦୁର୍ଗାମା, ସେତେବେଳକୁ କାନ୍ଦି କାଟି ଘର ଫଟଉଚି। ଦୁର୍ଗା କାଠ ହୋଇ ବସିଚି– ଆଉ ତାକୁ ଟେପୀମା, ଖୋଳି ତାଡ଼ି ପଚାରୁଚି, ''ଆଲୋ ଦୁର୍ଗା ପୁଅ ସକାଳେ ଅମୃତଭଣ୍ଡା ଆଉ ତାଳ ମିଶ୍ରି ଖାଇଥିଲା ତ ?''

ବିଲୁ ଜନ୍ମ ହେବାବେଳେ, ବେଶ୍ ମୋଟା ସୋଟା ଥିଲା। କୋଳପୂରି ଯାଉଥିଲା। ହେଡ଼ ପଣ୍ଡିତଜୀଙ୍କ ସ୍ତ୍ରୀ ଅନ୍ତୁଡ଼ୀ ଶାଳକୁ ଆସିଥିଲେ ଦେଖିବାପାଇଁ। ରୁକ୍‌ମିଣୀ ଧାଈ ମେଞ୍ଚାଏ କଳା, କଅଁଳା ପିଲା ଗାଲରେ ବୋଳିଦେଲା। ସେ କହିଲା, ଏଇ ପଣ୍ଡିତିଆଣୀ ମାନଙ୍କୁ ତୁମେ ଜାଣ ନାଇଁ। ଏମାନେ ଡାଆଣୀଙ୍କ -- ଠୁ ବଳି। ଏମାନଙ୍କ ବିଷଦୃଷ୍ଟି ଯୁଆଡ଼େ ପଡ଼ିବ, ସେଆଡ଼େ ପୋଡ଼ି ଛାରଖାର ହୋଇଯିବ। ଗାଲରେ କଳା ନ ବୋଳିଲେ, ପିଲା ଦିନକୁ ଦିନ ଶୁଖିଲା ବଳିତା ପରି ହୋଇଯିବ। ବୁଢ଼ୀ ଧାଈ ମୋତେ ସେତେବେଳେ ଚବିଶ ଘଣ୍ଟା ଶାସନରେ ରଖୁଥିଲା – ଏଇଟା କର, ସେଇଟା କର ନାଇଁ, ଉଠିଲେ ବସିଲେ ପଦେପଦେ ମତେ ସବୁ କଥାରେ ସାବଧାନ କରି ଦେଉଥିଲା। ଆଚ୍ଛା, ବାବା ଯାହା କରୁଛ କର। ବିଲୁ ଜନ୍ମିଥିଲା ବିଜୟା ଦଶମୀ ଦିନ। ହେଡ଼ ପଣ୍ଡିତଜୀଙ୍କ ସ୍ତ୍ରୀ ଆସିଲେ ପୂଜାଛୁଟୀ ପରେ। ସିଏ ଆଗେ ରହୁଥିଲେ ଗାଁରେ। ସେଇଥର ହେଡ଼ପଣ୍ଡିତଜୀ ପ୍ରଥମେ ପରିବାର ନେଇ ଆସିଲେ, ପଣ୍ଡିତଜୀଙ୍କ ସ୍ତ୍ରୀ ବିଶ୍ୱାସ କରି ପାରିଲେ ନାଇଁ ଯେ, ବିଲୁ ବୟସ ସେତେବେଳକୁ କୋଡ଼ିଏ ଦିନ। ବିଲୁର ମୋଟା ସୋଟା ହାତଗୋଡ଼କୁ ସେ ଚାହିଁଚନ୍ତି ଆଉ ରୁକ୍ମିଣୀ ଗଣ ଗଣ ହୋଇ କନ୍ଥାରେ ପିଲାକୁ ଢାଙ୍କି ଦଉଚି।...

ତା'ପରେ ସେଥର ଡବଲ ନ୍ୟୁମୋନିଆ ହେବା ପରେ ବିଲୁ ଦେହ ଭାଙ୍ଗି ପଡ଼ିଥିଲା। ସେତେବେଳକୁ ତାର ବୟସ ହେବ ଅଢ଼େଇ। 'ଠାକୁର' (ଶ୍ୱଶୁର) ସେତେବେଳକୁ ଶଯ୍ୟାଗତ। ପାଦ ଆଣ୍ଠୁ ତାଙ୍କର ଆସ୍ତେ ଆସ୍ତେ ଅବଶ ହୋଇଆସୁଚି। ସେତିକିବେଳେ ବିଲୁ ମଧ ବେମାର ପଡ଼ିଲା। ...କାର୍ତ୍ତିକରୁ କାର୍ତ୍ତିକ ଦୁଇ ବର୍ଷ, ମାର୍ଗଶୀର, ମାଘ, ଫାଲଗୁନ, ଚୈତ,– ଦୁଇବର୍ଷ ପାଞ୍ଚମାସ– ବିଲୁ ବୟସ ସେତେବେଳକୁ ଦୁଇବର୍ଷ ପାଞ୍ଚମାସ। ନିଆଁଲଗା, ମାସ ଦିନ ହିସାବ ମୋର ଏତେ ମନେ ରହେନା। ଟେପୀମା ଥିଲେ, ମୋ ହିସାବରେ ନିଶ୍ଚୟ ଭୁଲ ବାହାର କରି ଦିଅନ୍ତା। ତା' ଆଗରେ କି କୋଉ କଥା କହିବାର ଜୁ ଅଛି? ...ପହିଲୁ ଦିନ, ବିଲୁ କପାଳଟା ଧକ ଧକ କରିବାରୁ ମୋ ମନଟା ଅସ୍ଥିର ହେଲା। ରାତି ସାରା ପିଲାଟାର କି କାନ୍ଦ ଆଉ ଛଟପଟ! ଆଉ ପାଖଘରୁ 'ଠାକୁର'ଙ୍କର କି ରାଗ ଆଉ ଗାଳି! ପିଲାଟାକୁ କୌଣସିମତେ ସମ୍ଭାଳି ହୁଏନାହିଁ। ସିଏ କହିଲେ, ସକାଳେ ହରଗୋବିନ୍ଦ ଡାକ୍ତରକୁ ଦେଖାଇଲେ ଚଳିବ। ବିଲୁ ଜେଜେବାବା– ଶ୍ୱଶୁରେ– ରାଗିମାଗି ଅସ୍ଥିର। ତାଙ୍କ ଗାଳିରେ ଶେଷକୁ ଡାକ୍ତର ପାଖକୁ ଖବର ପଠାଗଲା। ଡାକ୍ତରବାବୁ କହି ପଠାଇଲେ, ରାତିରେ ଆସି ପାରିବେ ନାଇଁ! ସେ କଥା ଶୁଣି 'ଠାକୁର'ଙ୍କର କି ରାଗ! କହିଲେ, ଗଭର୍ଣ୍ଣମେଣ୍ଟକୁ ରିପୋର୍ଟ କରି ତା' ଡାକ୍ତରୀ ମୁଁ ଛଡ଼ାଇ ଦେବି! ରାତି ଗୋଟାଏ ପର୍ଯ୍ୟନ୍ତ ସସ୍ମିତାପତି ଦୋକାନରେ ବସି ପଶା ଖେଳିବ, ଆଉ ରୋଗୀ

ମରିଗଲେବି, ରାତିରେ ରୋଗୀ ଦେଖି ଆସିବ ନାଇଁ! ଅବିକା ଶୀତ ନାଇଁ— କି ମେଘ ନାଇଁ। ଏ ଗୁଡ଼ା ସବୁ ଖୁଣୀ। ଡାକ୍ତର ନୁହନ୍ତି ଡକାୟତ। 'ଠାକୁର'ତ ସେତେବେଳେ ବିଛଣାରୁ ଉଠି ପାରୁ ନଥିଲେ। ରିପୋର୍ଟ୍ ଲେଖିବା ପାଇଁ ତାଙ୍କ ପାଖରେ ଲଣ୍ଠନ, ଚଷମା, କାଗଜ, କଲମ ରଖି, ତାଙ୍କୁ ଶାନ୍ତ କରାଇ ଆସିଲି। ସ୍କୁଲ ଦରୱାନ ନନ୍‌କୁ ପୁଣି ପଠାଇଲି ଡାକ୍ତର ପାଖକୁ। ସେଇ ରାତିରେ ସେ, ଆଲୀବକସ୍ ଗାଡ଼ି ନିଜେ ଚଳାଇ ଡାକ୍ତରବାବୁଙ୍କୁ ନେଇ ଆସିଲା। ...ଏବେ ବି ଲାଠି ଉପରେ ଭରା ଦେଇ ନନ୍ ମଝିରେ ମଝିରେ ଆଶ୍ରମକୁ ଆସେ ମାଇଜୀ ସାଙ୍ଗରେ ଦେଖା କରିବା ପାଇଁ। ...ହରଗୋବିନ୍ଦ ଡାକ୍ତରର ମୁହଁ ଦେଖି, ମୁଁ ବୁଝିଲି ମୋ ପିଲାର ବେମାର କଠିନ। ତାପରେ ଦିନାକେତେ ଚାଲିଲା ଯମ ଆଉ ମଣିଷ ଭିତରେ ଲଢ଼େଇ। ଦିନେ ତ ସବୁ ଶେଷ ହୋଇ ଯାଇଥିଲା। ସେଇ ପ୍ରଥମ ଥର ଦେଖିଲି ମୃଗନାଭିର ଗୁଣ। ହାତ ପାଦ ସନ୍ନିପାତରେ ଏକାଥରେ ହେମକାକର ହୋଇ ଯାଇଥିଲା। ହରଗୋବିନ୍ଦ ଡାକ୍ତର ନାଡ଼ି ଚିପି, ମୁହଁ ବିଚିକିଟା କରି ବସି ରହିଚି। ଔଷଧର କି କରାମତି! ଚାହୁଁ ଚାହୁଁ ସାରା ଦେହ ଝାଳରେ ଜୁଡ଼ୁବୁଡ଼ୁ ହୋଇଗଲା। ଝୋଲାମାରି ପଡ଼ିଥିବା ଏଇ ପିଲାକୁ ବିଛଣାରୁ ଉଠାଇ କଣ ଝାଳ ପୋଛି ହୁଏ? ତା' ପିଠିରେ ପୁଣି ପୁଲ୍ଟିସ୍‌ର ବୋଝ। ସକାଳ ଓଳି ଡାକ୍ତରବାବୁ ମୋତେ କହିଗଲେ— ''ଆପଣଙ୍କ ପୁଅକୁ ନୂଆ ଜୀବନ ଦେଲି''— କଥାଟାରେ ଟିକିଏ ହେଲେ ଅତିରଞ୍ଜନ ନଥିଲା। ଧନ୍ୟ ଧନ୍ୱନ୍ତରୀ ଡାକ୍ତର ହରଗୋବିନ୍ଦ ବାବୁ! କିନ୍ତୁ ଏଇ କସ୍ତୁରୀ ଖାଇବା ପରେ, ମାସେ କାଳ ପିଲା ଦେହରୁ ଜଳାପୋଡ଼ା ଗଲା ନାହିଁ। ଦିନ ରାତି ଖାଲି ଛଟପଟ। ରାତିରେ ଟଣାପଙ୍ଖା ଝୁଲାଇବାରେ ବ୍ୟବସ୍ଥା ହେଲା। ତା'ପରେ ପୁଅତ ଆସ୍ତେ ଆସ୍ତେ ଭଲ ଆଡ଼କୁ ଆସିଲା। କିନ୍ତୁ ସେଇ ଯେ ଦେହ ଭାଙ୍ଗିଗଲା ସବୁ ଦିନେ କିଛି ନା କିଛି ଗୋଟାଏ ବେରାମୀ ଆରାମୀ ଲାଗି ରହିଚି। ବଡ଼ଲୋକ ଘର ହୋଇଥିଲେ, ବାକ୍ସରେ ପୂରାଇ ଅଙ୍ଗୁର ରଖିବା ପରି ଆଦର ଯତ୍ନରେ ମଣିଷ ହୋଇ ପାରିଥାନ୍ତା। କିନ୍ତୁ ଯୋଉ କପାଳ ନେଇ ସିଏ ଆସିଥିଲା, ସେପରି ଖିଆପିଆ, ଆଦରଯତ୍ନ, ଦିନକ ପାଇଁ ସୁଧା ପୁଅକୁ ମୋର ମିଳିଲା ନାହିଁ। ହରଗୋବିନ୍ଦ ବାବୁ ତାକୁ ସେତେବେଳେ ବଞ୍ଚେଇଥିଲେ କାହିଁକି? କାହିଁକି ଏଡ଼େ ବଡ଼ କରାଇଥିଲେ? ଭଗବାନ! ତାକୁ ଯଦି ନେଇଯିବାର ଇଚ୍ଛା ଥିଲା; ତାହେଲେ ସେତେବେଳେ ନେଲ ନାହିଁ କାହିଁକି? କାହିଁକି ମୋର ଲୋଭ ବଢ଼ାଇ ଦେଲ? ରାକ୍ଷସ ଝିଙ୍କି ନେବା ପରି, ଏପରି ନେଇଯିବା ତା' ଭାଗ୍ୟରେ ରଖିଥିଲ କାହିଁକି! ଭଗବାନ୍, ମୋ ପାପ ପାଇଁ ତାକୁ ଶାସ୍ତି ଦେଲ କାହିଁକି? ସେତେବେଳେ ନେଇ ଯାଇଥିଲେ ହୁଏତ, ନୀଳୁକୁ କୋଳରେ ପାଇ, ଏତେ ଦିନେ ମୁଁ ତାକୁ ଭୁଲି ସାରନ୍ତିଣି। ପୁଅ ସିନା ଗୋଟିଏ, ହେଲେ ତା'ର ହଜାର ରକମର ରୂପ। ତା'ର ଲକ୍ଷେ ରକମର ହାବଭାବ, କଥାବାର୍ତ୍ତା ମନେ ପଡ଼ି ଯାଉଚି। ଗୋଟିଏ ପୁଅ, ହଜାରେ ପୁଅର ସମାନ। କେତେ ସଂସ୍କୃତି, ଛୋଟବଡ଼ କେତେ ଘଟଣା, କେତେ ଅଳି ଅର୍ଦ୍ଦଳୀ, କେତେ ହସକାନ୍ଦର ଛବି, ଚବିଶ ଘଣ୍ଟା ଆଖି ଆଗରେ ନାଚି ଯାଉଛି! ତା'ର କ'ଣ ଇୟତା ଅଛି। ଇଚ୍ଛା କରିତ, ଏଇ ସ୍ମୃତି ଗୁଡ଼ାକୁ ଜାବୋଡ଼ି ପଡ଼ି ରହିଚି। ପାରେତ, ଛାତି ଭିତରେ ଗାର ପକେଇ ରଖି ଦେବି। ମନେ ହୁଏ, ବିଲୁକୁ ଯେପରି ହୃଦୟ ଭିତରେ ପାଇଚି, ତା' ପାଖରେ ବସି ରହିଚି, ତା' ଦେହ ଆଉଁସି ଦେଉଚି— କୁଣ୍ଢେଇଧରିଚି— କୌଣସିମତେ ଛାଡ଼ିବି ନାଇଁ, କା'ର ସାଧ ଅଛି ମୋ କୋଳରୁ ପୁଅକୁ

ଟାଣି ଛଡ଼େଇ ନେଇଯିବ ? . . .

ଉତ୍କଟ ଚିତ୍କାର କରି, ସେମାନେ ରାମାୟଣର ଆରତି ଆରମ୍ଭ କଲେ। ଏଥର ତାହେଲେ ରାମାୟଣ ପାଠ ଶେଷ ହେବ! ଏମାନେ ଆରତି ତ କହନ୍ତି ନାଇଁ, କହନ୍ତି ଆର୍ତି। ଏ ସମୟଟାରେ କି ଚିତ୍କାର କରନ୍ତି ସେମାନେ! ଜେଲ ଆସିବା ପରଠାରୁ ନିତ୍ୟ ଶୁଣି ଶୁଣି ମନ ବିରକ୍ତି ହୋଇ ଗଲାଣି।

ଆରତି ଗାନ ଚାଲିଚି। ସବୁଟା ବୁଝାପଡୁ ନାଇଁ।

ଆରତି ଶ୍ରୀ ରାମାୟଣ – ଅ ଜୀ କି
କାରତି—କଲିତ—ଲଲିତ—ଅ ସିୟ ପୀ କି॥....
ଗାଓଅତ—ଅ ବ୍ରହ୍ମା ଦିକ—ଅ ମୁନି ନାରଦ—ଅ
ବାଲ୍ମୀକ ବିଜ୍ଞାନ ବିଶାରଦ—ଅ
ଶୁକା ସନକାଦି ଶେଷୁ ଅରୁ ସାରଦ—ଅ
ବରନି ପବନ—ସୁତା କାରତନି—ଇ—ଇ—କି
କିରତନୀକି ରମା କିରତନୀ—ଇ—ଇ—କି
ଗାଓୟତ—ଅ ବେଦ ପୁରାଣ—ଅ ଅଷ୍ଟାଦଶ—ଅ
ଛୟୋ ଶାସ୍ତ୍ର—ଅ ସବ—ଅ ଗ୍ରନ୍ଥ—ଅ ନହକୋ ରସ—ଅ
ସୁନିଜନ—ଅ ଧନ—ଅ ସନ୍ତନହକୋ ସରବସ—ଅ
ସାର—ଅ ଅଂଶ—ଅ ସମ୍ମତି ସବହୀ—ଇ କୀ—ଇ
ସାମ୍ମାତି ସାବହୀକି ରାମା, ସାମ୍ମାତି ସାବହୀ—ଇ—କୀ—ଇ
ଆରତି—ଇ ଶ୍ରୀ ରାମାୟଣ ଅ—ଜୀକି କୀରତି କଲିତ—ଅ
ଲଲିତ—ଅ ସିୟ ପୀ କି।
ଗାଓୟତ—ଅନ୍ତତ—ଅ— ସମ୍ଭୁ ଭବା— ଆ— ନୀ
ଅରୁବହ— ଅ ସମ୍ଭ— ଅ—ବ—ଅ ମୁନି ବିଜ୍ଞା—ନୀ—ଇ
ବ୍ୟା—ଯା—ସ—ଅ—ଆ— ଆଦି କବି ବର୍ଗ ବଖା—ଆ—ନୀ
କାଗା ଭୂଖଣ୍ଡି ଗରୁଡ଼ାକେ ହୀ—ଇକୀ—ଇ
ଆରତି—ଇ ଶ୍ରୀ ରାମାୟଣ ଅ ଜୀ— କି କାର— ଅତି
କଲିତ—ଅ ଲଲିତ—ଅ ସିୟ ଦୀ କି।

ତା'ପରେ ନୂଆ ସୁରରେ ଆରମ୍ଭ ହେଲା,

ଆଜ—ଅ କଥା ଇତ୍‌ନୀ ଭଇ, ସୁନହୁ ବାର—ଆ—ହନୁମାନ
ରାମା—ଅ ଲକ୍ଷ୍ମଣ—ଅ ସିୟା ଜାନକୀ—ସଦା—ଆ କରହୁ କଲ୍ୟାଣ ॥

ଏଥର ଘର ଫଟାଇ ଚିତ୍କାର ଆରମ୍ଭ ହେଲା –

''ଅଯୋଧ୍ୟା ରାମଲାଲ୍ଲା କି ଜେ; ବୃନ୍ଦାବନ ବିହାରୀଲାଲ୍ କି ଜେ !
ଉମାପତି ମହାଦେବ କି ଜେ; ରମାପାତି ରାମଚନ୍ଦ୍ରା ଜୀ କି ଜେ !
ପ୍ୟାବନା ସୁତା ହନୁମାନ କି ଜେ; ମହାତ୍ମାଗାନ୍ଧୀ କି ଜେ !
ସର୍ବ—ଅ ସନ୍ତୋଁ କି ଜେ ! ଜେୟ ଜେୟ ହୋ— ଓ— ଓ— ଓ— ଓ।''

ସମସ୍ତେ ଦୁଇ ହାତରେ ତାଳି ବଜାଇ ପ୍ରଣାମ କଲେ। ତା'ପରେ ସମସ୍ତେ ଉଠି

ପଡ଼ିଲେ। ଲୁସି ଜମାଦାରଣୀ, ଚମେଇନ୍ ଜମାଦାରଣୀ, ଯେଉଁଠି ରାମାୟଣ ପାଠ ହୁଏ, ତା ବାହାର ବାରଣ୍ଡାରେ ଝରଣା ପାଖରେ ହାତ ଜୋଡ଼ି ବସି ରହନ୍ତି।

ଲୁସି ସାନ୍ତାଳ ଖ୍ରୀଷ୍ଟାନ୍। କିନ୍ତୁ ଭଗବାନ୍‌ଙ୍କ ନାଁ ନେବାରେ ଜାତି ବିଚାର ଥାଏ ନାଁ କ'ଣ ? ଖୁବ୍ ଭକ୍ତି ତା'ର। "ଆରତି ଶ୍ରୀ ରାମାୟଣ ଜୀ କି, କିରତି କଳିତ ଲଳିତ ସିୟ ପୀ କି" ଏଇ ଦୁଆଟା ଯେତେବେଳେ ଗାନ୍ତି, ସେତେବେଳେ ସିଏ ମଧ୍ୟ ବାହାରୁ ଚିତ୍କାର କରିବାକୁ ଛାଡ଼େ ନାହିଁ... ଗରୁଡ଼୍‌ଜୀଙ୍କର ଗଳା ଅଛି, ମାନିବା ପାଇଁ ପଡ଼ିବ। ତାଙ୍କର ଅସଲ ନାଁ ସନ୍ଧ୍ୟାଦେବୀ। ରାମାୟଣ ବୋଲା ହେବା ବେଳେ, ତାଙ୍କ ଗଳା ଅନ୍ୟ ସମସ୍ତଙ୍କ ଗଳାକୁ ବୁଡ଼ାଇ ଦିଏ। ଆରତିରେ ଯୋଉଠି 'ଗରୁଡ଼ା ହି କୀ' ଅଛି, ସେଇ ଜାଗା ଆସିଗଲେ, ତା' ସ୍ୱର ସପ୍ତମକୁ ବଢ଼ିଯାଏ। ସେଥିପାଇଁ ସମସ୍ତେ ତାକୁ ଗରୁଡ଼ଜୀ ବୋଲି ଡାକନ୍ତି। ବର୍ତ୍ତମାନ ଏପରି ହୋଇଛି ଯେ ସମସ୍ତେ ତା'ର ଅସଲ ନାଁ ଭୁଲି ଗଲେଣି। ଜମାଦାରଣୀ ପର୍ଯ୍ୟନ୍ତ ତାକୁ ଗରୁଡ଼ଜୀ ବୋଲି ଡାକେ। ପ୍ରଥମେ ପ୍ରଥମେ ସିଏ ରାଗୁଥିଲେ, ଏବେ ଦେହସହା ହୋଇ ଗଲାଣି। ... ଲୁସି ଜମାଦାରଣୀ 'କାପଡ଼ା ଗୁଦାମ୍'ରୁ ଗରୁଡ଼୍‌ଜୀଙ୍କ ନାଁରେ ଥରେ ଶାଢ଼ୀ ଆଣିଥିଲା। ସେ ଦିନ କି କାଣ୍ଡ ! ଯୋଉ ଖାତାରେ ଜେଲ୍‌ରୁ ଜିନିଷପତ୍ର ନେବା ପରେ ନାଁ ଦସ୍ତଖତ କରିବାକୁ ପଡ଼େ, ସେ ଖାତାରେ ଦେଖିବା ବେଳକୁ ଲେଖା ହୋଇଚି – ଗରୁଡ଼ଜୀ – ଖଣ୍ଡେ ଶାଢ଼ୀ। ଆଉ ଯାଏ କୁଆଡ଼େ ? ଭଦ୍ରମହିଳା କାନ୍ଦି କାଟି ଏକାଥରେ ଖାଇବା ପିଇବା ଛାଡ଼ି ଦେଲା। ଜମାଦାରଣୀ ତାଙ୍କୁ ଅପମାନ ଦେଇଚି ବୋଲି, ଜେଲର୍ ସାହେବଙ୍କୁ ଲେଖିଲେ ଚିଠି। ସେଥିରେ ପୁଣି ଲେଖିବାକୁ ଛାଡ଼ିଲେ ନାଇଁ ଯେ, ଲୁସି ଅନ୍ୟ ଜନାନା କୟଦୀମାନଙ୍କୁ ବିଡ଼ି ଆଉ ଖଇନି ବିକ୍ରୀ କରେ। ଲୁସି ଭାରି ଅପ୍ରସ୍ତୁତ ହୋଇ ପଡ଼ିଲା। ଜେଲର୍ ସାହେବ ଆସି ଗରୁଡ଼ଜୀ ପାଖରେ ଲୁସିକୁ କ୍ଷମା ମଗାଇଲେ। ତା'ପରେ ଯାଇଁ ତାଙ୍କ ରାଗ ଶାନ୍ତି ପଡ଼ିଲା। କିନ୍ତୁ ତାଙ୍କ ନାଁ ଆଉ ବଦଳିଲା ନାହିଁ।

ବିଲୁ ପିଲାଦିନେ ରାମାୟଣ ମହାଭାରତ ପଢ଼ି ଆମକୁ କେତେ ଶୁଣାଇଚି। ମର୍ଣ୍ଣିଂ ସ୍କୁଲ ଆଉ ଖରାଛୁଟୀ ବେଳେ, ଧୁ–ଧୁ– ଖରାରେ ଜଳି ପୋଡ଼ି ଟେପୀମା, ଦୁର୍ଗାମା ଆଉ ଜିତେନ୍ ମା–ଦିଦି– ଆଶ୍ରମକୁ ଆସନ୍ତି; ବିଲୁର ରାମାୟଣ, ମହାଭାରତ ବୋଲା ଶୁଣିବା ପାଇଁ। ରାମାୟଣ ବୋଲିବା ପାଇଁ ବିଲୁକୁ ଭଲ ଲାଗେ ନାଇଁ। ସେ ଚାହେଁ ମହାଭାରତ ବୋଲିବା ପାଇଁ। କିନ୍ତୁ ଜିତେନ୍ ମା–ଦିଦି ଆସି ଆରମ୍ଭ କରନ୍ତି, "ଆରେ ହେ ବାରିନ୍ଦର୍ ପୁଅ, ତତେ କହିଚି ପରା, ଆମେ ପୁଣ୍ୟବାନ ଲୋକ ନୋହୁ, ଆମେ କାଶୀରାମ ଦାସ ଶୁଣିବାକୁ ଚାହୁଁନା, ରାମାୟଣ ନେଇ ଆ। ରାମାୟଣ ହେଲା ଗୋଟାଏ ଜିନିଷ, ଆଉ ଇଏ ହେଲା ଆଉ ଗୋଟାଏ ଜିନିଷ।" ବିଲୁ ଉତ୍ତର ଦିଏ ... "ରହ ନା ଜେଠେଇମା। ଏଇ ଜାଗାଟା ଟିକିଏ ଶେଷ କରିଦିଏ।" ଦେହ ଆଉ ମୁଣ୍ଡ ଝୁଲାଇ ଝୁଲାଇ ବିଲୁ ପଢ଼ି ଚାଲେ– "କାନ୍ଦେ ଯାଜ୍ଞସେନୀ, ତିତିଲ ଅବନୀ, ନୟନେର–ଅ ନୀର–ଅ ଝରେ।" ...ସେତେବେଳକୁ ବିଲୁ ଆଖିରେ ଲୁହ ଜକେଇ ଗଲାଣି। ସିଏ ଯେତେବେଳେ ଠିକ୍ ଏଇ ଜାଗାଟା ବୋଲିବ, ସେତେବେଳେ ତା' ଆଖିରେ ଲୁହ ଜକେଇବ। ଟେପୀମା କହେ "ଆହା ବିଜୟା ଦଶମୀ ଦିନ ଜନ୍ମ ହୋଇଥିଲା ତ, – ସେଥିପାଇଁ ତା'ର ବର୍ଷାଧାତୁ ହୋଇଚି।" ସତରେ ମହାଭାରତ ବୋଲିବା ବେଳେ, କେତେ ଜାଗାରେ ଯେ ତା' ଆଖିରେ ଲୁହ ଭରିଯାଏ, ତା'ର ଠିକଣା ନାଇଁ। ଆମେ ସବୁ ବୁଢ଼ୀ ହେଲୁଣି, ପିଲାଛୁଆଙ୍କ ମା,

ଷଷ୍ଠୀମଙ୍ଗଳବାର କରୁ, ଧର୍ମକର୍ମ ବହି ପଢ଼ିଲେ, ଆମ ଆଖିରୁ ଲୁହ ଝରି ଛାତି ତିନ୍ତିଯିବା କଥା । ହେଲେ ଏ ପୋଡ଼ା ଆଖିକୁ କ'ଣ ଲୁହ ଆସୁଚି ? ବିଲୁ ଲୁଚାଇ, ଅନ୍ୟ ଆଡ଼େ ମୁହଁ ଫେରାଇ, ଆଖିରୁ ଲୁହ ପୋଛିବାର ଚେଷ୍ଟା କରେ । ନୀଲୁ ଅଙ୍ଗ ଛଡ଼ାରେ ଚିତ୍ ହୋଇ ଶୋଇ, ସବୁ ଲକ୍ଷ୍ୟ କରି ଦେଖୁଥାଏ । ସେତିକି ବେଳେ ସେ ପାଟି କରି ଉଠେ, ''ମା ଦେଖ, ଦେଖ, ଦାଦା କ'ଣ କରୁଚି ।'' ଜିତେନ୍ ମା– ଦିଦି ତାକୁ ଗାଳି ଦେଇ ଚୁପ୍ କରାଇ ଦିଅନ୍ତି – କହନ୍ତି, ''ଘର କୋଣର ଭଙ୍ଗା ହାଣ୍ଡି, କହୁଚି କଣ ନାଁ ମୁଁ ସବୁ ଜାଣେ । ଆପଣ ଟିକିଏ ଚୁପ୍ ରହନ୍ତୁତ !'' କିନ୍ତୁ ନୀଲୁକୁ କଣ ଚୁପ୍ କରି ହୁଏ ? ସେ ହସି ହସି ଚିତ୍କାର କରି ଘର ଫଟାଏ । ମହାଭାରତ ବହି ଖଣ୍ଡ, ନନ୍‌କୁ ସ୍କୁଲ ଦପ୍ତରୀ ପାଖରୁ ବନ୍ଧେଇ ଆଣି ଦେଇଥିଲା । ତାର ପ୍ରଥମ ପୃଷ୍ଠାରେ, ବିଲୁ ହାତରେ ଲେଖା ଦୁଇଟି ଲାଇନ୍ ''ଖୋଦ୍—ଇ—ମାଲେକ୍—ମା । ବ'କଲମ୍ ବିଲୁ ।'' ମହାଭାରତ ଉପରେ ଲେଖା ହୋଇଛି ଯେତେକ ମେଳେଚ୍ଛ କଥା ! ଦୁର୍ଗାମା କହେ, ''ଏଥର ବିଲୁର ଗୋଟାଏ ଚୁଟୀ ରଖି ଦିଅ । ମହାଭାରତ ବୋଲିବା ବେଳେ ଚୁଟୀଟା ବେଶ୍ ନାଚିବ । ଆରେ ହେ ସଂକ୍ରାନ୍ତି ବାହ୍ମଣ ! ଖୁବ୍ ହଲିଝୁଲି ପଢ଼ିବୁ, ବୁଝିଲୁ ।'' ଲଜ୍ୟାରେ ବିଲୁ ସେମାନଙ୍କ ମୁହଁକୁ ଚାହିଁ ପାରେ ନାହିଁ । ନୀଲୁ ଏଆଡ଼େ ଚିତ୍କାର ଆରମ୍ଭ କରିଦିଏ ''ଚୁଟୀ ଧରି ମାରିବି ଟାଣ, ଉଡ଼ିଯିବୁ ବର୍ଦ୍ଧମାନ ।'' ଜିତେନ୍‌ମା – ଦିଦି କହନ୍ତି, ''ହଁ ଭଉଣୀ, ଏଥର ବିଲୁକୁ ବ୍ରତ କରାଇ ଦିଅ ।''

ଠାକୁର ଦେବତାଙ୍କ ପ୍ରତି ବିଲୁର ଏତେ ଭକ୍ତି, ବୟସ ବଢ଼ିବା ସଙ୍ଗେ ସଙ୍ଗେ କର୍ପୂର ପରି କୁଆଡ଼େ ଉଡ଼ିଗଲା । କିଛି ଦିନ ଏପରି ହେଲା ଯେ, ବ୍ରତ ହୋଇ ପଇତା ନ ପକାଇଲେ ତା' ଜୀବନଟା ଯେପରି ବୃଥା ହୋଇଯିବ ! ସମୟ ଅସମୟରେ ବିଲୁ ସେଇ କଥାଟା ପକାଇ କହେ, ''ବ୍ରତ ନକରାଇବା ତୁମ ମାନଙ୍କର ମତଲବ୍ । ନଅବର୍ଷ ବୟସରେ ତ ବ୍ରତ ହୋଇଯିବା ଉଚିତ ଥିଲା । ଏ ବର୍ଷ ବ୍ରତ ପାଇଁ ଆଉ ଗୋଟିଏ ମାତ୍ର ତିଥି ଅଛି ।'' ବ୍ରତ ହେବା ପରେ ଦେଖିଛି, ନିୟମିତ ସନ୍ଧ୍ୟା, ଗାୟତ୍ରୀ, ପୂଜା, ଏକାଦଶୀ । ଅନେକ ଦିନ ପର୍ଯ୍ୟନ୍ତ ଖାଇବା ବେଳେ ଦେଖେ, କଥା କହେ ନାହିଁ, ବଜାର ଜିନିଷ ଖାଏ ନାହିଁ, କୋଉଠିକି ଭୋଜିଭାତରେ ଯାଏ ନାହିଁ । କେତେ ନିଷ୍ଠା କେତେ ଆଚାର ବିଚାର । ପିଲା ଦିନୁ ତାର ପୂଜାପୂଜିରେ ଝୁଙ୍କ । କେତେ ଶ୍ଳୋକ, ସ୍ତୋତ୍ର ମୁଖସ୍ଥ ଥିଲା ତା'ର । ଚାରିବର୍ଷ ବୟସରେ ଶ୍ରୀକୃଷ୍ଣଙ୍କ ଅଷ୍ଟୋତ୍ତର ଶତନାମ ଆଉ ''ଦେବୀ ସୁରେଶ୍ୱରୀ ଭଗବତୀ ଗଙ୍ଗେ'' ସେ ଗଡ଼ଗଡ଼ କରି ବୋଲି ଯାଇ ପାରୁଥିଲା । ହେଇତ ସେ ଦିନର କଥା ବଡ଼ ହୋଇବି – ବ୍ରତ ହେବାର ଆଗବର୍ଷ – ମୁଁ ରନ୍ଧାଘରେ, ସେ ଦୁଇ ଭାଇ ଶୋଇବା ଘରେ ବିଛଣାରେ ଗଡ଼ା ଗଡ଼ି ହେଉଚନ୍ତି ଆଉ କୋଡ଼ତକିଆ ନେଇ ଚାଲିଛି ଦୁର୍ଯ୍ୟୋଧନର ଉରୁଭଙ୍ଗା ପାଲା । ହଠାତ୍ ବିଲୁର ଚିତ୍କାର ଶୁଣିଲି, ''ମା, ମା, ଜଲଦି ଆସ ।'' କଣ ହେଲା କି ? ହାତ ଗୋଡ଼ ଭାଙ୍ଗିଲେ ନାଁ କଣ ? ସାପ, ବିଛା ନୁହେଁ ତ ! ଭୟରେ ଛାତି ଦକ ଦକ ହେଲା । ଚୁଲି ଉପରେ ତରକାରୀ କଡ଼େଇ ସେମିତି ପଡ଼ି ରହିଲା । ଉଠି ପଡ଼ି ଧାଇଁ ଯାଇଁ ଦେଖିଲି, ନୀଲୁ କାଠ ହୋଇ ବିଛଣା ଉପରେ ବସିଚି – ମୁଣ୍ଡ ନଷ୍ଟା ହେବା ବେଳେ, ଭଣ୍ଡାରୀ ଆଗରେ ଯେମିତି ବସନ୍ତି, ସେମିତି । ନୀଳିକୁ କୁଣ୍ଢେଇ ବିଲୁ ବସି ରହିଚି ! ଦୁହେଁ ଭୟରେ କାଠ । ମୁଁ ଆସିବାରୁ ଦେଖେଇଲା, ନୀଲୁ ହାତରେ ବନ୍ଧା ଥିଲା ମା ପୂର୍ଣ୍ଣେଶ୍ୱରୀଙ୍କର ଯୋଉ ମାଦୁଲୀ, ରୁଦ୍ରାକ୍ଷ ଆଉ ଚକା ହୋଇ ଏତେ ଟିକିଏ ହରିଡ଼ା, ସେଥିରୁ ସୁପଟା ଛିଣ୍ଡି ଯାଇଚି ।

ସେମାନଙ୍କର ବିଶ୍ୱାସ, ହାତରେ ମାଦୁଲୀ ବନ୍ଧା ନଥିଲେ ଆଗକୁ ପାଦେ ଯିବାର ନୁହେଁ। ଗଲେ ନୀଲୁର ଅମଙ୍ଗଳ ହେବ। କହିଲା, "ମା ଜଲ୍‌ଦି ଖଣ୍ଡେ ସୂତା ଆଣ।" ହାତରେ ମାଦୁଲୀ ପୁଣି ବନ୍ଧା ହେଲା। ତା' ପରେ ଯାଇଁ ଦୁଇ ମହାରଥୀ ବିଛଣାରୁ ଓହ୍ଲାଇଲେ।

ସେଥର ମହାତ୍ମାଜୀଙ୍କ ଟୁର୍ ବେଳେ—ମାନ୍‌ସାହୀ ପୋଲ ଉପରକୁ ଆମ ମୋଟରଗାଡ଼ିଟା ଯେମିତି ଉଠିଚି, ଆଗରେ ଦେଖିଲି ଧୂଳି କାଦୁଅ ବୋଳା ଦୁଇଟା ଲଙ୍ଗଳା ପିଲା, ହଠାତ୍ ମୋଟରଗାଡ଼ି ଦେଖି ଡରି ଯାଇଚନ୍ତି। କଣ କରିବେ ଠିକ୍ କରି ନ ପାରି, ଏପାଖ ସେପାଖ ଦଉଡ଼ିବାକୁ ଟିକିଏ ଚେଷ୍ଟା କଲେ। ତାପରେ କୁଣ୍ଡାକୁଣ୍ଡି ହୋଇ ଦୁଇଜଣ ରାସ୍ତା ମଝିରେ ଶୋଇ ପଡ଼ିଲେ। ଭଗବାନ୍‌ଙ୍କ ଦୟାରୁ ସେମାନେ ରକ୍ଷା ପାଇଗଲେ। କିନ୍ତୁ ମଟରରୁ ଓହ୍ଲାଇ, ସେମାନଙ୍କୁ ତଳୁ ଉଠାଇବାକୁ ଯାଇଁ ଦେଖିଲି ଭୟରେ ସେମାନେ ନେଳୀ ପଡ଼ିଯାଇଚନ୍ତି। କୌଣସିମତେ ଆଖି ଫିଟାଇଲେ ନାହିଁ। ବିଲୁ ନୀଲୁ ଦୁଇ ଭାଇଙ୍କ କଥା ମନେ ପକାଇ ସେତେବେଳେ ମୋ ଆଖିରୁ ଲୁହ ବୋହି ଆସିଥିଲା। ସେମାନଙ୍କୁ ଘରେ ପହଞ୍ଚାଇ ଦେବା ପରେ ଯାଇଁ ମନରେ ଟିକିଏ ଶାନ୍ତି ଆସିଲା। ଆଉ ଟିକିଏ ହୋଇଥିଲେ, କଣ ହୋଇ ନଥାନ୍ତାଟି! ତା ପରଠାରୁ ଯେତେବେଳେ ବିଲୁ ନୀଲୁଙ୍କ କଥା ମନେ ପଡ଼େ, ସେତେବେଳେ ମୋ ଆଖି ଆଗରେ ଭାସିଉଠେ ଧୂଳି କାଦୁଅବୋଳା ସେଇ ପିଲା ଦୁଇଟାଙ୍କର ଅସହାୟ ରୂପ।

ଭଗବାନ୍! ତୁମ ଉପରେ ବିଲୁ ନୀଲୁଙ୍କର ଏତେ ବିଶ୍ୱାସ ଥିଲା; ସେ ବିଶ୍ୱାସ କାଢ଼ି ନେଲ କାହିଁକି? ...ପ୍ରଥମେ ଯୋଉଦିନ ବିଲୁ ଆଶ୍ରମ ପ୍ରାର୍ଥନାକୁ ଗଲା ନାହିଁ, ମୁଁ ଭାବିଲି ବୋଧହୁଏ ତା ମୁଣ୍ଡ ବିନ୍ଧୁଚି। ପଚାରିବାରୁ କହିଲା, ଦେହ ଭଲ ଅଛି। ହାତବୁଲାଇ ଦେଖିଲି—ଜରଫର କିଛି ନାହିଁ। ତା'ହେଲେ ହେଲା କଣ? ପରେ ଯେତେବେଳେ ବୁଝିଲି, ଛାତିରେ ଚାପୁଡ଼ା ମାରି ମରିବା ସାର ହେଲା। ବିଲୁର ଯଦି ଏପରି ହେଲା, ତା'ହେଲେ ତ ପୃଥିବୀରେ ସବୁ ସମ୍ଭବ। ଇଏ ତ ଆଉ ନୀଲୁ ପରଦା ଛିଣ୍ଡାଇ ପକାଇ ଦେବା ପରି ସାମାନ୍ୟ କଥା ନୁହେଁ। ନୀଲୁ ଏକ୍‌ଜିଦିଆ ପିଲା— ସେ ଥାଏ ନିଜ ଖିଆଲ୍‌ରେ। ତା ମୁଣ୍ଡ ଗରମ ହେବା ଦେଖିଲେ, ମୁଁ ମନେ ମନେ ହସେ। ଇଏ ଆସିଚନ୍ତି ତମ୍ବି ଦେଖାଇବା ପାଇଁ। ଆରେ, ମୁଁ ତ ଆଉ ତୋ ପେଟରୁ ଜନ୍ମି ନାଇଁ, ତୁ ଜନ୍ମିଚୁ ମୋ ପେଟରୁ। ତୋ ନାଡ଼ି ନକ୍ଷତ୍ର ମୁଁ ଜାଣିବି ନାଇଁତ, ଆଉ ଜାଣିବ କିଏ? ଆଜି ରାଗିଚୁ, କାଲି ସକାଳକୁ ତୋ ରାଗ ଥଣ୍ଡା ପଡ଼ିଯିବ! ପିଲାଦିନୁ ତୋ ଗୁଆଁର ପଣିଆ ଦେଖି ଆସୁଚି। ପିଲାଦିନେ କାଗଜଠୁଙ୍ଗା ପାଦରେ ଲାଗିଲେ ବି, ନୀଲୁ ବିଷ୍ଟୁ ହେଉଥିଲା। ପାଞ୍ଜିଟା ଭୁଲରେ ଡେଇଁ ପଡ଼ିଲେ, ମୁହଁ ଶୁଖେଇ ମୋ ପାଖକୁ ଆସି ତା ଅପରାଧ କଥା କହୁଥିଲା— ମୋ ମୁହଁରେ କୁହାଇବାକୁ ଚାହୁଁଥିଲା, ଅଜାଣତରେ କଲେ ପାପ ଲାଗେ ନାହିଁ। ଦିନେ ରୋଷେଇବାସ ସାରି, ରାତିଟ୍ରେ ସୋଡ଼ା ଦେଇ ମୁଁ ଏଣ୍ଡୀକୋକୁନ୍ ସିଝାଉଚି, ଏତିକିବେଳେ ବିଲୁ ଆସି କହିଲା, "ମା ଦେଖ ନୀଲୁର କୀର୍ତ୍ତି।" ପିଲାଙ୍କ ପରୀକ୍ଷା ସେତେବେଳେକୁ ସରିଛି। ପାଠପଢ଼ାର ଜଂଜାଳ ନାଇଁ। ଭାବିଲି ଗୋଟାଏ ନୂଆ ଫନ୍ଦି ହୁଏତ ନୀଲୁ ମୁଣ୍ଡରେ ପଶିଚି। ଯାଇଁ ଦେଖିଲି; ଫ୍ରେମ୍‌ରେ ବନ୍ଧା ସରସ୍ୱତୀଙ୍କ ଛବିଟା ତଳେ ରଖି, ତା ଉପରେ ନୀଲୁ କାମ କରିପାରେ? ସିଏ ପରା ପରୀକ୍ଷା ଦେବାକୁ ଯିବାବେଳେ, ମୋତେ ପ୍ରତ୍ୟହ ପ୍ରଣାମ କରିବା ପୂର୍ବରୁ ସରସ୍ୱତୀଙ୍କ ଛବିକୁ ପ୍ରଣାମ କରେ। ଏ ଚିତ୍ରପଟ ପୁଣି ପ୍ରତିବର୍ଷ ସରସ୍ୱତୀ

ପୂଜା ବେଳେ ପୂଜା ହୁଅନ୍ତି। ଏତେବ ବି ସେଥିରେ ଚନ୍ଦନଛିଟାର ଦାଗ ଲାଗି ରହିଚି। ଆରେ ପିଶାଚ, ଡକାୟତ, ତୋର ଏ ଦୁର୍ବୁଦ୍ଧି ହେଲା କାହିଁକି ? ବିଲୁ କହିଲା ପଢ଼ାଶୁଣା କରି ନାହୁଁ, ବର୍ଷାସାରା ଖେଳିଚୁ, ବୁଲିଚୁ, ଅଙ୍କରେ ତୁ ଫେଲ୍ ହେବୁ ନାଇଁ ତ ଆଉ ହେବ କିଏ ? କେତେଥର କହିଚି ତାଙ୍କ ପାଖରେ ବସି ଅଙ୍କଟା ଟିକିଏ ଦେଖାଦେଖି କର। ପୁଅ ଜବାବ ଦିଅନ୍ତି କଣ ନାଁ, ''ଯଦି ପାଠ ପଢ଼ି ପାସ୍ କରିବି, ତା'ହେଲେ ମା' ସରସ୍ୱତୀଙ୍କି ଖୋସାମୋଦ୍ କରିବି କାହିଁକି ? ପାଠ ନପଢ଼ା ପିଲାଙ୍କୁ ଯଦି ପାସ୍ କରେଇ ନ ପାରନ୍ତି, ତା'ହେଲେ ସେ କି ଠାକୁରାଣୀ' ନୀଲୁ ମୁହଁ ଫଣଫଣ କରି ଘରକୋଣକୁ ଚାହିଁ ବସି ରହିଲା। ବିଲୁ ସେତେବେଳକୁ ଜୋତା ଚପଲ ସବୁ ମାଡ଼ି, ଗଙ୍ଗାଜଳ ଛିଞ୍ଚି ଚିତ୍ରପଟକୁ ପୁଣି କାନ୍ଥରେ ଟାଙ୍ଗିସାରିଥିଲା। ମୁଁ ପାଞ୍ଚଟା ପଇସା ମା' ସରସ୍ୱତୀଙ୍କ ଚିତ୍ରପଟରେ ଛୁଆଇଁ, ଠେକି ଭିତରକୁ ପକାଇଦେଲି। ଏଇ ଗୁଆଁର– ଗୋବିନ୍ଦର ରାଗ ଥଣ୍ଡା ପଡ଼ିଲେ, ତା ହାତରେ ପୂଜା ଦିଆଇବି ବୋଲି। ନୀଲୁର ଏସବୁ ଖାମ୍‌ଖିଆଲ୍ ଧର୍ତ୍ତବ୍ୟ ମଧ୍ୟରେ ନୁହେଁ। ବିଲୁ କିନ୍ତୁ କୀର୍ତ୍ତନକୁ ନ ଯିବା, ମନରୁ ଦେବଦ୍ୱିଜ ଭକ୍ତି ଦୂର କରିଦେବା, ମୋତେ ଭାରି ଚିନ୍ତିତ କରି ଦେଇଥିଲା। ବିଲୁର ମୋର ଠାକୁର ଦେବତାଙ୍କ ପ୍ରତି ଅଚଳ ବିଶ୍ୱାସ ଥିଲା। ପିଲାବେଳେ, ଲକ୍ଷ୍ମୀପୂଜା ଦିନ, ତାର ଲଟୁ ଆଉ ଗୁଲୀ ଉପରେ ମୋ ହାତରେ ମା ଲକ୍ଷ୍ମୀଙ୍କର କମ କୁଟାଇ ନେଉଥିଲା। ନହେଲେ ଅନେକ ଲଟୁ ଆଉ ଅନେକ ଗୁଲୀ ହେବ କେମିତି ? ସେଇ ବିଲୁ ଏପରି ହୋଇଗଲା – ପୁଣି ମୋରି ଆଖି ଆଗରେ ! ଚବିଶଘଣ୍ଟା ମୁଁ ଭଗବାନଙ୍କୁ ଡାକେ– ବିଲୁର ତୁମେ ଇଏ କଣ କଲ ? ତା' ବାପାଙ୍କ କାନରେ ଯେପରି ଏ କଥାଟା ନପଡ଼େ, ସେଥିପାଇଁ ଅନେକ ଚେଷ୍ଟା କଲି। କିନ୍ତୁ ସେ ପିଲା ପ୍ରାର୍ଥନାକୁ ଯିବ ନାଇଁ– ଏ କଥା କେତେଦିନ ଲୁଚାଇ ରଖିହେବ ? ମୁଁ ଲୁଚେଇ ଲୁଚେଇ ବିଲୁର ଖାଇବା ସାଙ୍ଗରେ, ପୂର୍ଣ୍ଣେଶ୍ୱରୀଙ୍କ ଖଣ୍ଡାଧୂଆ ପାଣି ଆଉ ଚରଣାମୃତ ମିଶାଇ ଦିଏ, ଆଉ ଗୁହାରି କରେ, ମା' ପୂର୍ଣ୍ଣେଶ୍ୱରୀ ମୋ ପୁଅର ଦୋଷ ଘେନା କର ନାଇଁ। ...ଆଉ ସିଏ ବା କେମିତି ମଣିଷ। ତୁମେ ହେଲ ସେମାନଙ୍କ ବାପ। ସେମାନଙ୍କର ଭୁଲ ଭଟ୍‌କା ହେଲେ, ସେମାନଙ୍କୁ ତୁମେ ବୁଝେଇଦେଇ ପାରନ୍ତ। ତୁମେ ବୁଝାଇଲେ ତା ଆଗରେ ତ ସେମାନଙ୍କର ଚାରିଜୁରି ଆଉ ଚଳନ୍ତା ନାଇଁ। କିନ୍ତୁ ସିଏ ମୁହଁ ଫିଟାଇ କିଛି କହିବେ ନାହିଁ। ପିଲାମାନଙ୍କର ଭଲମନ୍ଦର ଠିକା ଯେପରି ଏକା ମୁଁ ନେଇଚି। ସିଏ ସେମିତି ଧରଣର ମଣିଷ ...

...ହେଇରେ, ପୁଣି ସବୁ ଆଇଲେ ଜଳେଇ ପୋଡ଼େଇ ମାରିବା ପାଇଁ। ଅବିଦ୍ଧା ମଣିଷ ଦେଖିଲେ ମୋ ଦେହ ଜଳୁଚି, ଏକଥା ଏମାନଙ୍କୁ କହିବି କେମିତି, ବୁଝେଇବି ବା କେମିତି ?

କମଳା ଦେବୀ ଚୁପଚାପ୍ ଆସି ମୋ ନାଡ଼ିଟା ଚିପି ଧରିଲେ। ...କେତେ ନାଡ଼ି ଦେଖି ଜାଣିଚ ତମେ, ସେ କଥା ତ ମତେ ଜାଣିବାକୁ ଆଉ ବାକି ନାହିଁ। ସ୍ୱାମୀ ଜିଲ୍ଲାବୋର୍ଡ଼ ଡାକ୍ତର, ସେଥିପାଇଁ ଇଏ ବି ଢଙ୍ଗ ଦେଖାନ୍ତି ଯେ, ଆଙ୍କୁ ମଧ କିଛି କିଛି ଡାକ୍ତରୀ ମାଲୁମ୍ ଅଛି ! ଏ ମିଛ ଢମ କାହିଁକି ? ସିଏ ତ ମାଷ୍ଟର୍ ଥିଲେ। ମୁଁ ତ ଦିନକ ପାଇଁ ସୁଦ୍ଧା ଭାବି ନାଇଁ ଯେ, ତାଙ୍କ ସ୍ତ୍ରୀ ବୋଲି ମୁଁ ମଧ ପଣ୍ଡିତ ହୋଇଯାଇଚି ! ସିଏ କଂଗ୍ରେସ କଥା କେତେ ବୁଝନ୍ତି– ତା' ବୋଲି କଣ ମୁଁ ବି କହିବି ଯେ, ମୁଁ ମଧ ବୁଝେ।

କମଳା ଦେବୀ ପଚାରିଲେ ... ''କେମିତି ଅଛନ୍ତି ? ରାଗରେ ପାଦଠୁ ମୁଣ୍ଡ ପର୍ଯ୍ୟନ୍ତ

ଢଳିଗଲା। ମୋ ପାଇଁ ତୁମେମାନେ ଯାହା ବ୍ୟସ୍ତ, ସେ କଥା ତ ଜାଣିଚି – ତେବେ ଏ ଢଙ୍ଗ ପୁଣି କାହିଁକି ? ରାଗଜାଳାରେ ଜବାବ୍ ଦେଲି, ''ଯା ଭାବୁଚନ୍ତି, ସେଥିପାଇଁ ଅନେକ ଡେରି ଅଛି। ସେମିତି ଭାଗ୍ୟ ନେଇ କଣ ଆସିଚି ଯେ, ସମସ୍ତଙ୍କୁ ପଛରେ ରଖି, ଅହିଅଡ଼େଙ୍ଗୁରା ବଜାଇ ସ୍ୱର୍ଗକୁ ଚାଲିଯିବ ? ବଂଶସାରା ସମସ୍ତଙ୍କୁ ନଖାଇ, ମୁଁ ସଂସାରରୁ ଯାଉ ନାହିଁ।''

କମଳା ଦେବୀଙ୍କ ହାତ ମୋ ନାଡ଼ିରୁ ଅଲଗା ହୋଇଗଲା। ବିଛଣା ଉପରେ ମୋ ହାତଟା ଟପ୍ କରି ପଡ଼ିଗଲା। ହାତ ଝିମିଝିମି ହୋଇ ଯାଉଚି। ଓଃ ! ହାତରେ କି ଯନ୍ତ୍ରଣା। ବାଁ କାନମୁଣ୍ଡା ପଛପାଖଟା ଅବଶ ହୋଇଗଲା ପରି ଲାଗୁଚି। ତକିଆ ଉପରୁ ମୁଣ୍ଡ ଉଠାଇଲେ, ବାଁ ପାଖଟା ଟାଳ ଖାଇ ପୁଣି ତକିଆ ଉପରେ ପଡ଼ି ଯାଉଛି। କାନ ଭିତରେ ଅଷ୍ଟପ୍ରହର ଝିଙ୍କାରୀ ବୋବେଇବା ପରି ଝେଁ ଝେଁ ହେଉଚି। . . . ଆଚ୍ଛା କରି ଶୁଣେଇ ଦେଇଚି କମଳା ଦେବୀଙ୍କୁ। ସେଇ ରାମାୟଣ ଦଳଙ୍କ ଭିତରେ ତମ ମୁରବି ପଣିଆ କର। ସେମାନେ ତମ କଥା ତ ଶୁଣନ୍ତି ନାଇଁ, ହାଁ ଗିଳନ୍ତି। ତାଙ୍କ ଭିତରେ କେଇଟା ଅଛନ୍ତି, ସେମାନେ ନାଁ କିଛି ଜାଣନ୍ତି, ନାଁ କିଛି ବୁଝନ୍ତି। ଅନୁସୂୟାଜୀଙ୍କୁ ସେଦିନ ଚା'କରି ଦେଇଥିଲି। କହିଲା, 'ସର୍ଦ୍ଦି ହେଇଚି, ଟିକିଏ ଅଦା ଲୁଣ ପକାଇ ଚା' କରିଦେବେ ? ଡାଳରେ ପୂରାଇ ଚା'ଟିକକତ ନେଇଗଲା। ତାପରେ ଡାଳରୁ ଯେମିତି ଢକଢକ କରି ପାଣି ପିଅନ୍ତି, ସେମିତି ମୁହଁରେ ଚା'ତକ ଢାଳି ଦେଲା। ଆଉ ଯାଏ କୁଆଡ଼େ ? ମୁହଁ ଜିଭ ପୋଡ଼ି ଏକାକାର। ଚା' ଟୋପାଏ ପିଇ ଜାଣନ୍ତି ନାଇଁ, ସେଥିରେ ପୁଣି ବିଦ୍ୟାର ବଡ଼େଇ। ସେ ଦଳରେ ସଭିଏଁ ସମାନ। ଆଉ ଜଣେ, ସେଇ ସରଳା ଦେବୀ – ସେଇଟାର ବି ଯଦି ବୁଦ୍ଧିଶୁଦ୍ଧି ଟିକିଏ ଥାନ୍ତା ! ତା ବାପଘର, ଜପୌଲୀ ଥାନା, ବୁଢ଼ହିୟାଧନକଟା ଗାଁରେ। ଗାଁଟି କୁଆଡ଼େ ବେଶ୍ ବଡ଼। କେତେ ବଡ଼ ବୁଝାଇବାକୁ ଯାଇଁ, ସେଦିନ କହିଲା କଣ ନାଁ – ''ଗାଁକୁ ହାକିମ ହୁକୁମା, ଦାରୋଗା ପୋଲିସ, ହଇଜା ଡାକ୍ତର, ଏମାନେ ଅହରହ ଯାତାୟତ କରନ୍ତି। ଏତେ ବର୍ଦ୍ଧିଷ୍ଣୁ ଗାଁ ଯେ, ଗାଁର କୁକୁର ଗୁଡ଼ା ପର୍ଯ୍ୟନ୍ତ ଏସବୁ ସହି ଗଲେଣି। – ହାଫ୍‌ପ୍ୟାଣ୍ଟ୍‌ପିନ୍ଧା ଲୋକ ଦେଖିଲେ, ସେମାନେ ଆଉ ଭୁକନ୍ତି ନାହିଁ। ଧନ୍ୟ ତମ ରାଜ୍ୟ, ଧନ୍ୟ ତମର ବୁଦ୍ଧି ! ଏଇଗୁଡ଼ାଙ୍କୁ ନେଇ କମଳା ଦେବୀ ମାମଲତି କରେ, ଦଳ ଗଢ଼େ। କମଳା ଦେବୀ ଆସେମ୍ବ୍ଲି ମେମ୍ବର କିନା ! ଇଂରାଜୀ ଜାଣେ ନାଇଁ ! ହାତ ଟେକିବା ଛଡ଼ା ସେଠି ଅନ୍ୟ କାମ ସେ କେମିତି ଚଳାଏ, ମୁଁ ବୁଝିପାରେ ନାଇଁ। ନର୍ମଦାବେନ୍ ସେଦିନ ମତେ କହୁଥିଲେ, ବିହାରର କୌଣସି ପାଠୋଇ ଝିଅ କଂଗ୍ରେସକୁ ଆସନ୍ତୁ, କମଳା ଦେବୀ ଚାହେଁନା। ତା' ହେଲେ ତାର କଦର୍ କମିଯିବ କିନା ! ସେଥିପାଇଁ ସେ ସେଇ ବୋକା ଗୁଡ଼ାଙ୍କୁ ନେଇ ଦଳ ବାନ୍ଧିଚି ! କଥାଟା ହୁଏତ ଠିକ୍। ଟିଣ ବିଲାତୀ ଦୁଧକୁ ସେ କହେ, ''ମେମିଆଁର ଦୁଧ'' (ମେମ୍ ଦୁଧ)। ଟିଣ ଲହୁଣୀ ସେ କାହାକୁ ଏଠାରେ ଖୁଆଇ ଦିଏ ନାହିଁ। କୁହେ ସେଥିରେ ଅଣ୍ଡା ମିଶିଚି। ତା' ନ ହେଲେ ଲହୁଣୀ କେବେ ହଳଦିଆ ରଙ୍ଗର ହୋଇପାରେ ? କିଏ ତା' ସାଙ୍ଗରେ ବାଜେ ତର୍କ କରିବ ?

. . . ଇଏ କଣ ? କମଳା ଦେବୀ କଇଁ କଇଁ ହୋଇ କାନ୍ଦୁଚି ! ଛି ଛି, ମୁଁ କଣ ନକଲି ? ଉଠି ପଡ଼ି, କମଳା ଦେବୀ ହାତ ଚାପି ଧରିଲା।

''କମଳା, ମୁଁ ତମର ମା ବୟସର୍। ଦୋଷ ହୋଇ ଯାଇଚି। ମନରେ କିଛି ଧରିବ

ନାଇଁ। ମୁଁ ଅବିକା କ'ଣ ଆଉ ମୁଁ ହୋଇ ଅଛି? ବର୍ତ୍ତମାନ ମୋ ମୁଣ୍ଡ ଠିକ୍ ନାଇଁ। କଣ କହିବାକୁ ଯାଇଁ କଣ କହି ପକାଇଲି।'' ତା' ମୁଣ୍ଡରେ ହାତ ବୁଲାଇଦେଲି। ସେ ଆଖିରୁ ଲୁହ ପୋଛି ହସିବା ପାଇଁ ଚେଷ୍ଟା କଲା।

ପଚାରିଲି, ''ମୋତେ କ୍ଷମା କରିଚ ତ ?

''କ'ଣ ଯେ କହୁଚିନ୍ତି! ଏବେ ଶୋଇ ପଡ଼ନ୍ତୁ!''

ଜୋର୍ କରି କମଳା ଦେବୀ ମୋତେ ବିଛଣାରେ ଶୁଆଇ ଦେଲା। ତା ଆଖିରେ ମୁହଁରେ ମୋ ପ୍ରତି ଦରଦ ଆଉ ସହାନୁଭୂତିର ଚିହ୍ନ। ଠିକ୍ ଯେପରି ଝିଅ ମାଆର ସେବା କରୁଚି। ମୋର ତ ଆଉ ଝିଅ ନାହାନ୍ତି। – ମୋର ଯାହା କିଛି ବିଲୁ ଆଉ ନୀଲୁ। ଝିଅଟିଏ ଥା'ନ୍ତା କି? ଝିଅ ସାଦ ପୁଅ କ'ଣ ଆଉ ମେଣ୍ଟାଇ ପାରେ। ଝିଅ କଥା ମନେ ପଡ଼ିଲେ, ମନେ ହୁଏ ବିଲୁ ମୋର ଝିଅ, ନୀଳ ମୋର ପୁଅ। ବିଲୁ ସ୍ୱଭାବ ଝିଅଙ୍କ ସ୍ୱଭାବ ପରି ନରମ, ତା'ର ବ୍ୟବହାର ସେଇପରି ଦରଦଭରା, ଝିଅ ପରି ତାର ସହିବାର କ୍ଷମତା, ଆଉ ସେମିତି ଟିକିଏ କଥାରେ ତା ଆଖିରୁ ଲୁହ ଝରେ। ଏଇ ଦେଖ, କମଳା ଦେବୀଙ୍କୁ ଏତେ କଡ଼ା କଡ଼ା କଥା କହିଗଲି। ସେଥିରେ ସିଏ କଣ ଟିକିଏ ରାଗ କଲା? ସିଏ ତ ମତେ ଓଲଟି ଦି'କଥା ଶୁଣେଇ ଦେଇ ପାରିଥାନ୍ତା। ସିଏ ତ କମ୍ ମୁହଁଖୋରଣୀ ନୁହେଁ! ସେଦିନ ରସଦ୍ ଗୋଦାମ୍‌ର ଆସିଷ୍ଟାଣ୍ଟ୍ ଜେଲରଙ୍କୁ ତ କନ୍ଦେଇ କନ୍ଦେଇ ଛାଡ଼ିଥିଲା। ...ଏ ୱାର୍ଡ଼ରେ ମତେ ସମସ୍ତେ କେତେ ଭଲ ପା'ନ୍ତି, ମୋ ପାଇଁ କେତେ ଭାବନ୍ତି, ମୋର କେତେ ସେବା କରନ୍ତି! ଆଉ ମୁଁ କଣ ନା, ସେମାନଙ୍କୁ ମୁହଁ ଛିଞ୍ଚାଡ଼େ, କଡ଼ା କଥା ଶୁଣାଏ। ଏମିତି ତ ମୁଁ ନ ଥିଲି। ମୋ ସାଙ୍ଗରେ ଜୀବନରେ କାହାର କେବେ ଝଗଡ଼ା ହୋଇନାହିଁ। ଜେଲ୍ ଭିତରେ ମୋ ସ୍ୱଭାବ ହୁଏତ ବଦଳି ଯାଇଚି। ଏବେ ମୋ ମନ ଆଉ ମୁହଁ ଉପରେ ଟିକିଏ ହେଲେ ବି ବନ୍ଧନ ନାଇଁ। ...କାମ୍ଲା ମୋତେ ବିଞ୍ଚି ଦେଉଚି।

ସେ କହିଲା, ...''ମିଶ୍ରୀ ସରବତ୍ ଟିକିଏ ପିଅନ୍ତୁ, ଅଙ୍କ ଟିକିଏ ଆଣି ଦଉଚି।'' ''ନାଁ– ଟିକିଏ ମିଠା କଥା କହିବାରୁ, ମୋ ମୁଣ୍ଡ ଉପରେ ଚଢ଼ି ବସିଲେଣି। ଏମାନଙ୍କୁ ନେଇ କ'ଣ ଯେ କରିବି, ଭାବି ପାରୁ ନାଇଁ! ଲୁସି ଜମାଦାରାଣୀ କହିଯାଇଚି, ମୋ ବିଛଣା ପାଖରେ ଚବିଶ ଘଣ୍ଟା ଯେପରି କିଛି ନା କିଛି ଖାଇବା ଜିନିଷ ରଖାଯାଏ; କେତେବେଳେ ଖାଇବାକୁ ଇଚ୍ଛା ହେବ, କହି ତ ହେବ ନାହିଁ! ଏମାନଙ୍କ ଚାଲିଚଳଣ ଦେଖିଲେ ହସ ମାଡ଼େ। ଦୁଃଖ ବି ହୁଏ! ଏଇ ଯେମିତି ହାରିନ୍ ମଘାଇୟା-ଡୋମିନ୍‌ର 'ଅନ୍‌ଶନ୍'। ବାରବ୍ରତ, ଓପାସରେ ଗଢ଼ା ଆମେ ବାହ୍ମଣ ଘର ଝିଅ। ଦିନେ ଦୁଇଦିନ ଓପାସ ତ ଆମର ଦିହସହା।

ଢଂ ଢଂ ଢଂ... ୱାର୍ଡ଼ର ଘଣ୍ଟା ବାଜୁଛି। ଏତେ ରାତିରେ ପୁଣି ଆସିଲା କିଏ? ୱାର୍ଡ଼ ତାଲା ବନ୍ଦ କରି, ଜମାଦାରାଣୀ ପାଚେରୀ ଡିଆଇଁ ଚାବିଟା ଜମା ଦେଲା, ଜେଲର୍ ସାହେବ ପାଖରେ। ଆମ ୱାର୍ଡ଼ର ବାହାର ଫାଟକ ଭିତରୁ ବନ୍ଦ ଥାଏ ଚବିଶ ଘଣ୍ଟା। କାହାର କିଛି କହିବାକୁ ହେଲେ, ସିଏ ବାହାରୁ ଦଉଡ଼ି ଟାଣେ, ଆଉ ଭିତରେ ଘଣ୍ଟା ବାଜେ। ଏଇ ତ ଲୁସି କାହା ସାଙ୍ଗରେ କଥାବାର୍ତ୍ତା ହଉଚି। ପୁଣି କିଛି ଗୋଟାଏ ଘଟିଲା ନାଁ କଣ? ଦିନସାରା ଟୋ-ଟୋ କରି ବାହାରେ ବୁଲିବ, ୱାର୍ଡ଼ର ମାନଙ୍କ ସାଙ୍ଗରେ ଗପ ଜମେଇବ। ତାକୁ ଯେବେ କହିବି, ତରକାରୀ ଟିକିଏ ରାନ୍ଧି ଦଉଚି, ବିଲୁକୁ ସେଲ୍‌ରେ ଦେଇ ଆସି

ପାରିବୁ ? ଆଖି ଡିମାଡିମା କରି ସିଏ ଜବାବ୍ ଦେବ ? ଇଲୋମା; ସିଏ କେମିତି ହବ ? ସେଲ୍‌ରେ କିଛି ଜିନିଷ ପହଞ୍ଚାଇବାର ଜୁ' ଅଛି ନାଁ କଣ ? ସେଠି ଯେ ଚବିଶ ଘଣ୍ଟା କଡ଼ା ପହରା ! ସେଠିକି ଗଲେ ମୋ ଚାକିରି ଆଉ ରହିବ'' ଆରେ ମୋର ଧର୍ମପୁତ୍ର ଯୁଧିଷ୍ଠିରରେ ! ସାତକାଳ ଗଲା ଛୁଆ ଖାଇ ଖାଇ, ଆଉ ଅବିକା କହୁଚି ଡାଆଣୀ ! ତୁମେ ସବୁ ଓ୍ବାର୍ଡ଼ର ଭୟରେ ଏକାଥରେ ଥରହର କିନା ! ଦିନ ରାତି, ସେମାନଙ୍କ ସାଙ୍ଗରେ ଥଟ୍ଟା, ତାମ୍‌ସା ଚାଲିଚି । ଆଉ ଯେମିତି ଗୋଟାଏ କାମ କଥା କହିଚି, ସେମିତି ବାହାରିଲା ତା'ର କୁଛାଣ ! ଆଲୋକ ତୁ ବି ତ ପୁଅର ମା ! ତୁ ଯଦି ମୋ ମନକଥା ବୁଝି ନପାରିଲୁ, ତାହେଲେ ଅନ୍ୟ କେହି ନ ବୁଝିଲେ, ତାକୁ ଦୋଷ ଦେବି ବା କେମିତି ? ଭଗବାନ କରନ୍ତୁ, ତୋର ଯେପରି କୌଣସି ଦିନ ମୋ କପାଳ ନହୁଏ— କିନ୍ତୁ ହୁଅନ୍ତା ଯଦି, ତା'ହେଲେ ବୁଝନ୍ତୁ । ପଅର ଦିନ ପୁଣି ଦି' ପାଟି ଦାନ୍ତ ବାହାର କରି ମୋ ପାଖରେ ଆସି କୁହାଗଲା, ଆପଣଙ୍କ ପୁଅକୁ ଆଜି ଅଲଗା କରି ଆଳୁ ତରକାରୀ ରାନ୍ଧି ଖାଇବାକୁ ଦେଇଚନ୍ତି । ଆହା ! ସରକାର ଯେମିତି ଏକାଥରେ ଭଣ୍ଡାର ଉଜାଡ଼ କରି ଦାନଛତର୍ ଖୋଲି ଦେଇଚି ! ସେଇ ଖବର ଦେଇ, ସିଏ ପୁଣି ଆନନ୍ଦରେ ଫାଟି ପଡୁଚନ୍ତି !...

ବାହାରେ ଲୁସୀ ପାଟି କରୁଚି, ''କମଳା ଦେବୀ।'' ''କିଲୋ କିଏ ଆସିଥିଲା କି ?''

''ରାତି ଡିଉଟୀର ଡାକ୍ତରବାବୁ । ପଚାରିଗଲେ, ବଙ୍ଗାଳୀ ମାଇଜୀ କେମିତି ଅଛନ୍ତି ? ବେଶୀ କିଛି ହେଲେ ହାସ୍‌ପାତାଳରେ ତାଙ୍କୁ ଖବର ଦେବାପାଇଁ ! ଆଉ ବେହୋସ୍ ହୋଇ ମୂର୍ଚ୍ଛାଗଲେ, ସେଇ ଶାଗୁଆ ଶିଶିଟା ସୁଙ୍ଘାଇବା ପାଇଁ । ମନ୍ତନିୟା ଆଉ ଗଳକଟି ବୁଝିରଖିଥା । ଦୁଇଟାଯାକ ଶୋଇ ପଡ଼ିଲେଣି ପରା !''

ଭାରି ତ ଦରଦ ! ଯେମିତି ଡାକ୍ତରବାବୁ, ସେମିତି ଲୁସି ଜମାଦାରାଣୀ ! ତମ ମାନଙ୍କୁ ଆଉ ଚିହ୍ନିନାଇଁ ? ତମ ସମସ୍ତଙ୍କୁ ମୁଁ ହାଡ଼େ ହାଡ଼େ ଗୋଟି ଗୋଟି କରି ଚିହ୍ନିଚି । ତମ ମୁହଁରେ ଏକ, ମନରେ ଏକ ! ତଳୁ ଉପରଯାଏ ସଭିଏଁ ସମାନ । ଏଇ ଦାରୋଗା ସାହେବଙ୍କୁ ଦେଖୁନାଁ ! ବିଲୁ ବାପାଙ୍କୁ ଗିରଫ କଲା ଦିନ, ଜିଲ୍‌ଲା-କଂଗ୍ରେସ ଅଫିସରେ ତାଲା ପକାଇଦେଲେ । ମୋତେ କହିଗଲେ, ''ମା, ଆପଣ, ଆପଣଙ୍କ ଘରେ ରହି ପାରନ୍ତି । ସେଟାକୁ ଗଭର୍ଣ୍ଣମେଣ୍ଟ ଦଖଲ କରିନାହିଁ । 'ଜବ୍‌ତ୍' ହୋଇଚି କେବଳ, ଜିଲ୍ଲା-କଂଗ୍ରେସ-ଅଫିସ । ''ମା ଲୋ, ତାର ତିନି ଚାରି ଦିନ ପରେ ମତେ ଗିରଫ କରି ଥାନାକୁ ନେଇ ଆସିଲେ । କହିଲେ ମାଷ୍ଟର୍‌ସାହେବଙ୍କ ପରି ଆପଣଙ୍କୁ ବି ଅଟକବନ୍ଦୀ ରଖାଯିବ । ଥାନାକୁ ଆଣି ପୁଣି କେତେ ଖାତିର୍ ! ଦାରୋଗା ବାବୁଙ୍କ କ୍ୱାର୍ଟର୍‌ରେ ତାଙ୍କ ସ୍ତ୍ରୀ ମୋ ସନ୍ଧ୍ୟା ଆଉ ଜପର ବ୍ୟବସ୍ଥା କରିଦେଲେ । ସ୍ୱାମୀ ସ୍ତ୍ରୀ ଦୁହେଁ ମା ମା ବୋଲି ପାଗଳ ! ଖାସା ବୋହୂଟି-ପୁଅଟାକୁ ମୋ କୋଳରେ ଶୁଆଇ ଦେଇ କହିଲା— ''ଆପଣମାନେ ଆଶୀର୍ବାଦ କରନ୍ତୁ, ମୋର ଏଇ ପୁଅଟି ଯେମିତି ବଞ୍ଚି ବର୍ତ୍ତି ରହୁ ! ଏମିତି ଚାକିରୀ ଯେ, ରାଜ୍ୟ ଲୋକଙ୍କର ଅପଶାଇପ ପଡୁଚି ! ଆପଣ ମା, ପ୍ରାଣ ଖୋଲି ଟିକିଏ ଆଶୀର୍ବାଦ କରନ୍ତୁ । ଗୋଟାକ ପରେ ଗୋଟାଏ ତ କୋଳ ଖାଲି କରି

ଚାଲି ଯାଇଛନ୍ତି।'' ମୁଁ କହିଲି, ''ଷଠିବୁଢ଼ୀ କଲ୍ୟାଣ କରନ୍ତୁ। ମୋର କଣ ପିଲାଛୁଆ ନାହାନ୍ତି! ଭଲ ମଣିଷମାନେ ତ ଆଉ ଅପଇଶାଇପ ଦିଅନ୍ତି ନାହିଁ। ଏ ପୁଅ ତୁମ ବଂଶର ନାଁ ଉଜ୍ଜ୍ୱଳ କରିବ। ଏଠାରେ ବରହମ୍‌ଥାନ୍ ତ ଜାଣତ– ପୂର୍ଣ୍ଣେଶ୍ୱରୀଙ୍କ ମନ୍ଦିର ପାଖରେ ଭାରି ଜାଗ୍ରତ। ସେଇ ଗଛରେ ତୁମ ନାଁରେ ଖଣ୍ଡେ ଇଟା ବାନ୍ଧି ଦିଅ।'' –ଗଲା, ସେ ପାଲା ବି ସରିଲା। ଜେଲ୍ ଆସିବା ପରେ ଶୁଣିଲି, ଦାରୋଗା ରିପୋର୍ଟ କରିଚି ଯେ, ମୁଁ ସେଠାରେ ଅନଧିକାର ପ୍ରବେଶ କରିଥିଲି। ସେଥିପାଇଁ ମୋ ନାଁରେ କୁଆଡ଼େ ମକଦ୍ଦମା ହବ। ଆଚ୍ଛା ଦେଖିଲ। ଏ କୁଆଡ଼ର କଥା! କହିଲି! ଆକାଶରେ ଚନ୍ଦ୍ରସୂର୍ଯ୍ୟ ଥାଉଁ ଥାଉଁ ଏତେ ବଡ଼ ମିଛ କଥା! ଦାରୋଗା ବାବୁ ନିଜେ ତ ମତେ କହିଲା, ମୋ ନିଜ ଘରେ ରହିଲେ କୌଣସି ଆପତ୍ତି ନାହିଁ। ସେ ପାଖଟା ଗଭର୍ଣ୍ଣମେଣ୍ଟ ଦଖଲ କରିନାହିଁ। ଅଥଚ ଦେଖ ମୋ ନାଁରେ ସାତ ପାଞ୍ଚ ଗାଇଚି...

ଜେଲ୍ ଡାକ୍ତର ମଧ ଏଇ ଦାରୋଗା ପରି! କୟଦୀକୁ ନାଲି ନେଳି ପାଣି ଦେଇ ଭଲ କରାଏ, ଶେଷରେ ତାକୁ ଫାଶୀ ଦଉଡ଼ୀରେ ଝୁଲାଇବା ପାଇଁ। ଠିକ୍ ଯେମିତି ମିଆଁର ମୁର୍ଗୀପୋଷା। ପୁଣି ଆସେ ମା ବୋଲି ଡାକିବା ପାଇଁ। କେହି ମା ଡାକିଲେ, ମନଟା ତରଳି ଯାଏ, ଦି'ଟା ହକ୍ କଥା କହି ରାଗଟା ଯେ ମେଣ୍ଟାଇବି ସେ ଉପାୟ ପର୍ଯ୍ୟନ୍ତ ରହେନାହିଁ। ମୁଁ ରାଜ୍ୟସାରା ସମସ୍ତଙ୍କ ମା, ଜିଲ୍ଲାର ସବୁ କଂଗ୍ରେସକର୍ମୀଙ୍କ ମା, ଦୁନିଆସାରା ସମସ୍ତେ ତ ମୋ ପୁଅ। କିନ୍ତୁ ମନଟା ଯେ ପଡ଼ିଥାଏ ବିଲୁ ନୀଲୁଙ୍କ ଉପରେ। ଏମାନଙ୍କ ଛଡ଼ା ମୁଁ ଆଉ କାହାର ମା ହେବାକୁ ଚାହିଁ ନାହିଁ। ଏମାନେ ଦୁଇଜଣ ବୋଲି ଏମାନଙ୍କୁ ପ୍ରାଣ ଖୋଲି ଭଲ ପାଇ ପାରି ନାହିଁ। ତା ନ ହେଲେ କଣ ବିଲୁ ନୀଲୁ ଜେଠେଇମା ଜେଠେଇମା ବୋଲି ପାଗଳ ହେଉଥାନ୍ତେ? ମୁଁ ଚାହେଁ ବିଲୁ ନୀଲୁଙ୍କୁ ଏକାଥରେ ମୋର ନିଜର କରି ରଖିବା ପାଇଁ, ସେମାନଙ୍କ ଉପରେ ଯେପରି ଆଉ କାହାରି କୌଣସି ଦାବି, ଅଧିକାର ନରହେ। ମୁଁ କିନ୍ତୁ ସେମାନଙ୍କୁ ଆବୋରି ରଖିଲେ କଣ ହେବ? ରାଜ୍ୟଲୋକ ସମସ୍ତଙ୍କର ଯେ ସେମାନଙ୍କ ଉପରେ ଦାବି! ସେମାନଙ୍କ ପ୍ରତି ସମସ୍ତଙ୍କର ଆକର୍ଷଣ! ମୁଁ କଣ ସେମାନଙ୍କୁ ଧରି ରଖି ପାରିବି? ଏମିତି ତ, ବିଲୁ ଯୋଉ ଅଭିମାନୀ ପିଲା! 'ତୁ' ନକହି 'ତୁମେ' କହିଦେଲେ ଅଭିମାନରେ ତା ଆଖି ଛଳ ଛଳ ହୋଇଉଠେ। ସିଏ ଦିନେ ଦି'ପହରେ ଖାଇବାବେଳେ ପଚାରିଦେଲେ– ''ବଡ଼ବାବୁଙ୍କୁ ଘରେ ଦେଖୁ ନାଇଁ ତ! ଏବେ ସୁଦ୍ଧା ଫେରି ନାହାନ୍ତି ପରା!'' ବିଲୁ ଥିଲା ଘର ଭିତରେ। ତାଙ୍କ କଥା ଶୁଣି ସିଏ ତ କାନ୍ଦି କାଟି ଅସ୍ଥିର! ନୀଲୁ ହୋଇଥିଲେ ତ ପାଟିଗୋଳ କରି ଘର ଫଟାଇଥାନ୍ତା! ଦିଦି ତମର ତ ଜିତେନ୍, ଧୀରେନ୍, ହେବ୍‌ଲୁ, ବେଲା, ବୋହୂମାନେ, ନାତି ନାତୁଣୀ ସମସ୍ତେ ଅଛନ୍ତି। ତୁମର ପରିପୂର୍ଣ୍ଣ, ଲକ୍ଷ୍ମୀବନ୍ତ ସଂସାର। କିଛି ଅଭାବ ନାଇଁ। ତୁମେ କାହିଁକି ବିଲୁକୁ ମୋ ଠୁ ଛଡ଼ାଇ ନେବ? କାହିଁକି ତାକୁ ମୋ ଠାରୁ ପର କରି ଦେବ? ମୋ ପୁଅ ଉପରେ ମୁଁ କାହାକୁ ଭାଗ ବସାଇବାକୁ ଦେବି ନାହିଁ। ସଂସାରରେ ବିଲୁ ନୀଲୁ ଛଡ଼ା ମୋର ତ ଆଉ କେହି ନାହାନ୍ତି! ଚାଳ ନାହିଁ, ଚୁଲି ନାହିଁ, ମୁଣ୍ଡ ଗୁଞ୍ଜିବାକୁ ଜାଗା ଟିକେ ନାହିଁ। ନାଁ ଅଛି ଟଙ୍କା କଉଡ଼ି, ନାଁ ଅଛି ଧନ ଦଉଲତ! ମୁଁ ତ ପିଲାମାନଙ୍କ ମୁହଁକୁ ଚାହିଁ ସବୁ ଦୁଃଖକଷ୍ଟ ଭୁଲିଚି।

ସେତକ ବି ଭଗବାନ, ତୁମକୁ ସହିଲା ନାହିଁ! ପିଲାଭୁଲା ମନ୍ତ୍ର କରି ସମସ୍ତେ ମୋ ପୁଅକୁ ପର କରିଦେଲେ। ...ଜିତେନ୍ ମା– ଦିଦି ଉପରକୁ ଭଲ ମଣିଷ, କିନ୍ତୁ ମନଟା ଯେମିତି ଜିଲିପି ପେଞ୍ଚ! ଅନ୍ୟ ଘରର କେହି ଖଣ୍ଡେ ନୂଆ ଗହଣା ଗଢ଼ଉ– ସେଇଟାକୁ ଖୁଣ୍ଟିକାଣ୍ଟି ଦେଖି, ସେଥିରୁ ସାତଖିଅ କାଢ଼ିବ। ସବୁ ଖବର ତାର ଦରକାର– ସୁନାଟା ମରସୁନା ପରି ଲାଗୁଚି– କେତେ ଖାଦ ମିଳାଇଚି– କିଏ ଗଢ଼ିଲା– କେତେ ଭରି ଓଜନ– ମଜୁରୀ କମ୍ ଦେଇଚି ତ ଗଢ଼ଣ ଭଲ ହେବ କିପରି? ବିଲୁ ନୀଲୁ ପାଖରୁ ମୋ ସଂସାରର ସବୁ ଖବର ସଂଗ୍ରହ କରିବା ଦରକାର। ତୋ ମା ଛୁଙ୍କ ଦିଏ ତେଲରେ ନାଁ ଘିଅରେ? –ଛଙ୍କା ତେଲରେ ବାଇଗଣ ଭାଜେ ନାଁ, ଅଳ୍ପ ଟିକିଏ ତେଲରେ ବାଇଗଣ ଖାଲି ସନ୍ତୁଳି ଦିଏ– ଏଇମିତିଆ କଥାସବୁ ସେ ବିଲୁନୀଲୁଙ୍କୁ ପଚାରୁଥିଲା ପିଲାଦିନେ। ଆଚ୍ଛା କହିଲ, ଏସବୁ ଖବରରେ ଦରକାର କଣ? ବିଲୁ ତ ଯେମିତି ଲାଜକୁଳା ପିଲା, କୋଉଦିନ କିଛି କହେନାହିଁ। କିନ୍ତୁ ନୀଲୁ ମୋ ପାଖକୁ ଆସି ଏଇସବୁ କଥା ନକଲ କରି କହେ। ଠିକ୍ ଦିଦିଙ୍କ ପରି କଣ୍ଠସ୍ୱର, ଦିଦିଙ୍କ ପରି ହାବଭାବ! ଶୁଣିଲେ ହସି ହସି ପେଟ ଫାଟିଯିବ। କିନ୍ତୁ ଏଇଟା କଣ ଦିଦିର ଉଚିତ? ମୋର ହେଲା ଅଭାବି ସଂସାର। ତୁମେ ସବୁ ଆପଣା ଲୋକ। ମୋ ଘର କଥା ନେଇ ଖୋଳତାଡ଼ କରିବା ଦରକାର କ'ଣ? ଏଣେ ଦିଦି ଆମର କରନ୍ତି ଖୁବ୍। ସେ କଥା ବି ମୁଁ ଅସ୍ୱୀକାର କରୁନାହିଁ। ନୀଲୁ ତ ଏବେ ସେଇଠି ତାଙ୍କରି ପାଖରେ ରହୁଚି। ପ୍ରାଣ ଦେଇ କରିବେ– କିନ୍ତୁ ଖୁବ୍ କରୁଚି, ଏକଥା ଶୁଣେଇ ଦେବାକୁ ବି ଛାଡ଼ିବେ ନାହିଁ। ଦିଦିଙ୍କ ସ୍ୱଭାବ ସେଇପରି। ଆଦୌ ଗମ୍ଭୀର ପ୍ରକୃତିର ନୁହନ୍ତି। ସରଳ, ତରଳ ଭାବ। ବିଲୁକୁ କହିବେ 'ବରିନ୍ଦର୍‌ର ବେଟା', ନୀଲୁକୁ କହିବେ 'ମାଛ ପତ୍‌ରୀ', ଆଉ ସେମାନଙ୍କ ବାପାଙ୍କ ନାଁ ଦେଇଚନ୍ତି ଦାଢ଼ୀ। ଏମିତି ବୁଲେଇ ବଙ୍କେଇ ନକହି, ସିଧାରେ ନାଁ ଧରି ଡାକିଲେ କି କ୍ଷତିଟା ହୁଅନ୍ତା? ...ଆମ ପିଲାବେଳେ, ମଣିଷ ମୁହଁର ଚିତ୍ର ଥିବା ଗୋଟିଏ ରକମର ଡିବାବାଟୀ ମିଳୁଥିଲା। ଅବିକଳ ସେଇ ରକମର ମୁହଁ। ଦାନ୍ତ ଗୁଡ଼ା ଜହ୍ନିମଞ୍ଜି ପରି କଳା। ମେଞ୍ଚାଏ ଜର୍ଦ୍ଦା ମୁହଁ ଭିତରେ ପୁରାଇ ଚବିଶ ଘଣ୍ଟା ପିଚ୍ ପିଚ୍ କରି ପିଙ୍କ ପକାଉଥିବେ। ନୈବେଦ୍ୟ ଚାଉଳ ଆଉ କଞ୍ଚା କଦଳୀ ଖାଇ ତ ବଢ଼ିଥିଲେ ପିଲା ଦିନେ! ପୁରୋହିତ ପାଉଣା ନାଲିଧଡ଼ିଆ ଶାଢ଼ି ଛଡ଼ା ଅନ୍ୟ କୌଣସି ଲୁଗା ସେ ପିନ୍ଧି ନାହାନ୍ତି ବାରବର୍ଷ ବୟସ ପର୍ଯ୍ୟନ୍ତ। ବଡ଼ଲୋକ ଘରେ ବାହା ହୋଇଥିଲେ ବୋଲି ତରିଗଲେ। ସେଇଥିରେ ଅବିକା ମାଟିରେ ପାଦ ପଡୁନାହିଁ। ଏକାଥରେ ଦେଖିଚନ୍ତି ଯେମିତି ସାପର ପାଞ୍ଚଟା ପାଦ! ତମକୁ ଭଗବାନ ଦେଇଚନ୍ତି, ତମର ଅଛି। ତା ବୋଲି ଯୋଉମାନଙ୍କର ନାହିଁ, ସେମାନଙ୍କୁ ମଣିଷ ବୋଲି ଜ୍ଞାନ କରିବ ନାହିଁ? ମୁଁ ବି ସେମିତି ଅଭାବ ଘରର ଝିଅ ନଥିଲି କି, ଅଭାବ ମଣିଷର ହାତ ଧରି ନାହିଁ! ହେଲେ ମୋର କର୍ମଫଳ– ସୁନାମୁଠା ଧରିଲେ ଧୂଳିମୁଠା ହୋଇଯାଉଚି! ...ଆଚ୍ଛା ଦିଦି, ବିଲୁ ତମକୁ ଜେଠେଇମା ଡାକେ ସେଥିରେ ତମର ମନ ପୂରିଲା ନାହିଁ? ନା ଦିଦି, ସତ କହୁଚି, ତମ ଉପରେ ମୋର ଟିକିଏ ହେଲେ ବି ରାଗ ନାହିଁ! ତମେ ସବୁ ଥିଲ ବୋଲି ବିଲୁ ନୀଳ ସେମାନଙ୍କ ଜୀବନରେ ଆମୋଦ ଆହ୍ଲାଦ ଟିକିଏ ଅଧେ ମେଣ୍ଟାଇ ପାରିଚନ୍ତି। ସିଏ ଯେତେବେଳେ

ଜେଲ୍‌ରେ, ଠିଆ ହେବାପାଇଁ କୋଉଠି, ସେମାନଙ୍କର ଜାଗା ଟିକିଏ ନଥିଲା; ତୁମେ ତ ସେତେବେଳେ ସେମାନଙ୍କୁ ଆଶ୍ରା ଦେଇଚ! ବିଲ୍ଲୁ ଗଲେ, ତୁମ ଦୁଃଖ ମୋଠୁ କଣ କମ୍ ହେବ! ସେ କଥା କଣ ମୁଁ ଜାଣି ନାଇଁ। ଅନ୍ତର ସହିତ ତ ବିଲ୍ଲୁକୁ ଯଦି ତମକୁ ଦେଇ ପାରିଥାନ୍ତି, ତା'ହେଲେ ଦିଦି ତୁମେ କଣ ବିଲ୍ଲୁକୁ ବଞ୍ଚେଇ ପାରିଥାନ୍ତ? ବିଲ୍ଲୁ ମୋର ବଞ୍ଚିରହୁ ଦିଦି, ତାକୁ ତୁମ ହାତରେ ଦେବାପାଇଁ ମୁଁ ଆଉ କୃପଣ ହେବିନାହିଁ। ଏଣିକି ତମର ସମ୍ବଳ ରହିଲା, ବିଲ୍ଲୁର କେତେଗୁଡ଼ିଏ ସ୍ମୃତି, ଆଉ ମୋର ମଧ ସେଇଆ। ସେଇଆକୁ ଆଶ୍ରା କରି ବର୍ତ୍ତମାନ ସାରା ଜୀବନ କଟାଇବାକୁ ପଡ଼ିବ। ନାଁ ଦିଦି, ତୁମର ଦୟା, ତୁମର ମମତା, କୌଣସି ଦିନ ମୁଁ ଭୁଲି ପାରିବି ନାହିଁ। ମୋ ପିଲାମାନେ ମାଛ ଖାଇବାକୁ କେତେ ଭଲ ପା'ନ୍ତି, କିନ୍ତୁ ଆଶ୍ରମରେ ମାଛ ରାନ୍ଧିବାର ତ ଆଉ ଉପାୟ ନାହିଁ। ଆମେ ବୁଢ଼ା ମଣିଷ– ଗାନ୍ଧିଜୀଙ୍କ କଥାରେ କୋଡ଼ିଏ ବର୍ଷ ବୟସରୁ ମାଛ ମାଉଁସ ଖାଇବା ଛାଡ଼ି ଦେଇଚୁ। କିନ୍ତୁ ପିଲାଛୁଆଙ୍କ ଉପରେ ତ ଆଉ ଜୋର ଜବରଦସ୍ତି ଚଳେନାଇଁ। ତୁମେ ଦିଦି, ମୋ ମନକଥା ବୁଝିଥିଲ। ନୀଲୁ ବିଲ୍ଲୁଙ୍କୁ ସବୁଦିନେ ଡାକି ମାଛ ଖାଇବା, ତମ ଘରେ ମାଛ ଖୁଆଇବା ପାଇଁ ମୋ ଉପରେ କେତେ ଜୋର୍ କରିବା– ଦିଦି, ତମ ମମତା ମୁଁ ଠିକ୍ ବୁଝେ। ତୁମ ପାଖରେ ମୁଁ ଜନ୍ମ ଜନ୍ମ ଋଣୀ। ତୁମର ନିନ୍ଦା କଲେ ମୋ ଜିଭ ଛିଣ୍ଡି ପଡ଼ିବ ନାଇଁ? ତୁମ ନିନ୍ଦା କଥା ଭାବିବା ସୁଦ୍ଧା ମୋର ପାପ। ଆଜି ମନର ଅବସ୍ଥା ଠିକ୍ ନାଇଁ ଦିଦି। ବିଶ୍ୱସଂସାର ମୋପାଖରେ ପିତା ହୋଇଯାଇଛି। ଭଲ କଥା ମନକୁ ଆସିବ କିପରି? ତୁମେ ବି ତ ବିଲ୍ଲୁର ମା– ତମକୁ ତ ନୂଆ କରି ମୋ ମନର ଅବସ୍ଥା ବୁଝାଇ ଦେବାକୁ ହେବ ନାଇଁ। ବିଲ୍ଲୁ ତମକୁ କେତେ ଭଲ ପାଏ, କେତେ ଭକ୍ତି କରେ। ବିଲ୍ଲୁ ଯାହାକୁ ଥରେ ମା ବୋଲି ଡାକିଚି, ଆଜି ପରା ଦିନରେ ମୁଁ କ'ଣ ତା ଉପରେ ରାଗ କରିପାରେ? ବିଲ୍ଲୁ ମା ବୋଲି ଡାକିବାର ମର୍ମ ମୁଁ ବୁଝେ। ସିଏ ତ ଖାଲି ଡାକିବା ନୁହେଁ। ସେ ଡାକ ଶୁଣିଲେ, ସାରା ମନଟା ଛୁଟିଯାଏ ତା ଆଡ଼କୁ। ପୁଅ ତ ନୁହନ୍ତି, ଗୋଟିଏ ଗୋଟିଏ ଶତ୍ରୁ। ପୁଅମାନଙ୍କ କଥା ଯେତେ ଭାବିଚି, ତାର ଅଧେ ସମୟ ଯଦି ଭଗବାନଙ୍କ କଥା ଭାବିଥାନ୍ତି, ତାହେଲେ ଭଗବାନ ନିଶ୍ଚୟ ମିଳିସାରନ୍ତେଣି। କିନ୍ତୁ ସେମାନଙ୍କୁ ଯେତେ ଟାଣି ଧରେ, ସେମାନେ ସେତେ ଖସି ବାହାରି ଯାଉଚନ୍ତି। ନହେଲେ ଏଇ ବିଲ୍ଲୁ ବାରଣ୍ଡାରେ ଚଟେଇ ପକାଇ ପାଠ ପଢୁଚି, ତା ପଛରେ ପାଦ ଚିପି ଚିପି ମୁଁ ନିଃଶବ୍ଦରେ ଚାଲିଗଲେ ବି, ସେ ଠିକ୍ ବୁଝିପାରେ। କହେ, 'ମା, ମା, ଠିକ୍ ତୁମ ବାସନା ପାଉଚି।'' ଆଉ ସତରେ ବି ସେଇଆ। ସେ ପିଲା ଥିଲା ବେଳେ, ମୁଁ ଗାଧୋଇ ଆସିବା ମାତ୍ରେ, ମୋତେ କୁଣ୍ଢେଇ ଧରିବ। କହିବ, ''ତୁମେ ଗାଧୋଇ ଆସିଲେ, ତୁମ ଦେହର ମା' ଗନ୍ଧ ପାଏ।'' ମୁଁ ଉତ୍ତର ଦିଏ, ''ଆରେ ଦୁଷ୍ଟ, ବାସୀ ଲୁଗା ପିନ୍ଧି ମତେ ଛୁଁ ନାଇଁ। ଠାକୁରଘରେ, ହାଣ୍ଡୀଶାଳରେ ଦୁନିଆଁ କାମ ପଡ଼ି ରହିଚି। ସେ କଥା, ସେ ପିଲା କଣ ଶୁଣିବ? –କହିବ, ''ମଟ୍‌କୋ ଲୁଗା ଛୁଇଁଲେ ମାରା ହୁଏ ନାଁ କଣ?'' ଆଉ ନୀଲୁଟା ଏଡ଼ିକି ସୟତାନ୍, କେତେ ଦିନ ତଳର କେତେ କଥା ମନେ ପକାଇ ଦେଇ ମୋ ପଛେ ପଛେ ଲାଗିଥିବ, ଆଉ କହିବ, ମା ତୁମେ ଦାଦାକୁ ମୋଠୁ ବେଶୀ ଭଲ ପାଅ। ଆରେ

ପାଗଳ, ସେମିତି କଣ ହୁଏ ? ମା କଣ କେବେ ଗୋଟିଏ ପୁଅକୁ ବେଶୀ, ଗୋଟିଏ ପୁଅକୁ କମ୍ ଭଲ ପାଇପାରେ ? ଭଗବାନଙ୍କ ବିଧାନ ସେପରି ନୁହେଁ। ନୀଲୁ ସାଙ୍ଗେ ସାଙ୍ଗେ ଉତ୍ତର ଦେବ, ''ଆଚ୍ଛା ମା, ମନେ କର ପୃଥିବୀରେ ଗୋଟିଏ ବକ-ରାକ୍ଷସ ଅଛି। ସିଏ ଖାଲି ପିଲାଙ୍କ ମାଂସ ଖାଏ। ଅନ୍ୟ କୋଉ ମାଂସ ସେ ଖାଏନା। ପ୍ରତି ଘରୁ ତାକୁ ଗୋଟିଏ ଗୋଟିଏ ପିଲା ଦେବା ପାଇଁ ପଡ଼ିବ। ଆଜି ପଡ଼ିଲା ତୁମ ଘର ପାଳି। ଏପରି ଅବସ୍ଥାରେ କୁହ, ତୁମେ କାହାକୁ ଦେବ– ଦାଦାକୁ ନାଁ ମୋତେ ?'' ''ଯା, ଯା ସେ ଅଲକ୍ଷଣା କଥା ଗୁଡ଼ା ଗପ ନାହିଁ ତ ! ଏତେ ବାଜେ କଥା କହିପାରୁ ପୁଣି ? ତୋ ମୁଣ୍ଡକୁ ଏତେ କଥା ସବୁ କୁଆଡ଼େ ଆସେ, ମୁଁ ତ ବୁଝିପାରୁ ନାଇଁ। କାହାକୁ ପୁଣି ଦେବି ? କାହାକୁ ଦେବି ନାଇଁ।'' ନୀଲୁ ସାଙ୍ଗେ ସାଙ୍ଗେ ''ବୁଝିଲି'' ''ବୁଝିଲି'' କହି ଘର ଫଟେଇବ। ବୁଝିଚୁ ତ ପାଉଁଶ ! ନହେଲେ କଣ ନୀଲୁ ମତେ ଦିନେ ବୁଝଉଥିଲା, ମା ଭଲପାଏ ନିଜ ସ୍ୱାର୍ଥର ଖାତିରରେ ! ସେଇ କଥା ବୁଝାଇବାକୁ ଯାଇଁ ସେ ଗୋଟାଏ ଗପ କହିଥିଲା, ''ଗୋଟାଏ ବିଲେଇ ଆଉ ତା ଛୁଆକୁ ଗୋଟାଏ କଡ଼େଇରେ ପକାଇ ତଳେ ନିଆଁ ଜଳାଗଲା। ବିଲେଇ ଯେମିତି ପଳାଇ ଯାଇ ନପାରେ, ତାର ବ୍ୟବସ୍ଥା ମଧ୍ୟ କରାଗଲା। କଡ଼େଇଟା ଯେତେବେଳେ ଖୁବ୍ ତାତିଗଲା, ବିଲେଇଟା ଯାଇଁ ବସିଲା ଛୁଆର ପିଠି ଉପରେ।'' ସବୁ ମା କୁଆଡ଼େ ଏଇପରି। ନିଜ ଉପରକୁ ବିପଦ ନ ଆସିବା ପର୍ଯ୍ୟନ୍ତ ସବୁ ମା ପୁଅ ପୁଅ ହୋଇ ମରନ୍ତି। ଆଜି କାଲିକା ପିଲାଏ କୋଉଠୁ ଯେ ଏପରି କଥା ସବୁ ଶିଖନ୍ତି, ବୁଝିପାରେ ନାଇଁ। ଆଜି କାଲି କଲେଜରେ ଏସବୁ ପଢ଼ାନ୍ତି ନାଁ କଣ ? ବିଲୁ ତ କେବେ ଏମିତି କଥା କହେ ନାହିଁ। ଏକଥା ଶୁଣିବା ପରେ, ଏ ବିଷୟରେ ନୀଲୁ ସାଙ୍ଗରେ ତର୍କ କରିବା ପାଇଁ ସୁଦ୍ଧା ଘୃଣା ଲାଗେ। କିନ୍ତୁ ନୀଲୁର ଏଇ କଥାଟା ମୋ ମନରେ ଗଣ୍ଠି ପଡ଼ି ଯାଇଚି। ଆଉ ଦିନେ, ସେ ଆଉ ଗୋଟାଏ କଥା କହୁଥିଲା। ସେ କଥା ବି କେବେ ଭୁଲି ପାରିବି ନାହିଁ। ସେ ବି, ମା'ର ସ୍ୱାର୍ଥପରତାର କଥା। ବଡ଼ ଭୂମିକମ୍ପ ପରେ, ଅନେକ ଦିନ ପର୍ଯ୍ୟନ୍ତ ଛୋଟ ଛୋଟ ଭୂମିକମ୍ପ ହେଉଥିଲା। ଦିନେ ରାତିରେ ଯେମିତି ଭୂମିକମ୍ପ ଗୋଟାଏ ଝାଙ୍କ ମାରିଛି, ଜିତେନ୍‌ର ସ୍ତ୍ରୀ ନିଦ ବାଉଳାରେ କୋଳ ଛୁଆଟାକୁ ଘରେ ପକାଇ ଦେଇ, ବାହାରକୁ ଦଉଡ଼ି ପଳାଇ ଆସିଲା। ଆଉ ଯାଏ କୁଆଡ଼େ ? ସେଇ କଥା ପାଇଁ ଘରଲୋକ ବିଚାରୀକୁ ଝୁଣି ଖାଇଗଲେ। ନୀଲୁ ଝୁଲୀରେ ଆଉ ଗୋଟାଏ ଗପଥିଲା, ମୋତେ ଶୁଣାଇବା ପାଇଁ। ହେଲା ବାବୁ, ମା ମାନେ ସ୍ୱାର୍ଥପର– ଆଉ ପିଲା ମାନଙ୍କର ଭଲପାଇବା ଏକାଥରେ ନିଃସ୍ୱାର୍ଥ– ସେଥିରେ ଟିକିଏ ହେଲେ ମଳିଧୂଳି ନାହିଁ। ଏଇଆ ଶୁଣିଲେ ଯଦି ଖୁସି ହେବୁ, ତାହେଲେ ତୋ'ରି କଥା ହେଉ। ପିଲାଦିନୁ ନୀଲୁଟା କଣ କମ୍ ଜଳେଇଚି ମୋତେ ? ବିଲୁ ନୀଲୁ ଦୁଇ ଭାଇ ସାଙ୍ଗରେ ମଣିଷ ହୋଇଚନ୍ତି। କିନ୍ତୁ ନୀଲୁଟା କୋଉଠୁ ଏତେ ଦୁଷ୍ଟାମୀ ଶିଖିଲା, ସେଇଆ ଭାବି ଆଚମ୍ବିତ ହୁଏ। ଅନେକ ସମୟରେ ମତେ ଏକାଥରେ କନ୍ଦେଇ କନ୍ଦେଇ ଛାଡ଼ିବ। ଦି' ପହରେ ମତେ ହୁଏତ ଟିକିଏ ନିଦ ଲାଗି ଆସିଥିବ, ସୁନାପୁଅ ଆମର କେଉଁଠୁ ଗୋଛାଏ ହରଗଉରା ଫୁଲର ପାଚିଲା ଫଳ ଗୁଡ଼ାଏ ଆଣି, ମୋ ନାକ ଆଗରେ ଫଟାଇବା ଆରମ୍ଭ କରିଦେବ। ମଞ୍ଜି ଗୁଡ଼ା ଛିଟିକି

ନାକ କାନ ଭିତରେ ପଶିଯିବ। ଧଡ଼ପଡ଼ ହୋଇ ଉଠିପଡ଼େ। ଗାଳି ଦେଲେ ବି ତା ଦେହରେ ଲାଗେ ନାହିଁ। ଲଘୁ ଗୁରୁ ଜ୍ଞାନ ତାର ଟିକିଏ ହେଲେ ନାହିଁ। ନିଜ ଖିଆଲ୍‌ରେ ସବୁବେଳେ ଉନ୍ମତ୍ତ। ଦିନେ କରିଛି କଣ ନାଁ, ଛାର ପୋକ ମାରି ସେଇ ରକ୍ତରେ ସାଇନ୍‌ବୋର୍ଡ଼ କରି ଲେଖୁଚି– ''ଅହିଂସା ପରମୋଧର୍ମ।'' ମୁଁ ତ ଭାବିଲି କାହାକୁ ଖୁଞ୍ଚା ଦେଇ ଏକଥା ଲେଖା ହୋଇଚି। କାଳେ ତାଙ୍କ କାନକୁ କଥାଟା ଯିବ, ସେଥିପାଇଁ ମୁଁ ଛଳନା କଲି, ଯେପରି ଲେଖାଟା ଦେଖି ନାହିଁ। ଆରେ ନୀଲୁ, ଯେଉଁଦିନ ବାପ ମା ନଥିବେ, ସେଦିନ ବୁଝିବୁ ବାପ ମା କି ଜିନିଷ। ଦାନ୍ତ ଥିଲାବେଳେ କେହି କ'ଣ ଦାନ୍ତର ମୂଲ ବୁଝନ୍ତି ? ତା ବାପ ମନରେ ଦୁଃଖ ଦେବା ପାଇଁ, ଆଶ୍ରମ ଜମିର ସୀମା ମାପି, ସୀମା ଯେଉଁଠି ଶେଷ ହୋଇଛି, ସେଇଠି ସେ ମାଂସ ରାନ୍ଧି ଖାଇବ। ଆଉ କହିବ– ''ଆଶ୍ରମ ଜମିରେ ଛେଳି ମାଂସ ଖାଇବା ମନା; ଏଠି ତ ନାହିଁ।'' ଆରେ ନୀଲୁ, ମହାତ୍ମାଜୀ ଛେଳିଦୁଧ ପିଅନ୍ତି ବୋଲି ଆଶ୍ରମରେ କଣ ଛେଳିଦୁଧ ଖାଇବା ନିଷେଧ ? ଆଶ୍ରମରେ ଆମିଷ ଖାଇବା କାହିଁକି ନିଷିଦ୍ଧ, ସେ କଥା ତୁ ଜାଣୁ, ମୁଁ ବି ଜାଣେ। ତେବେ କାହିଁକି ତାଙ୍କ ମନରେ କଷ୍ଟ ଦେବାଭଳି, ଏପରି କଥାକହିବୁ ? ତୁ ମାଂସ ଖାଇବାକୁ ଭଲ ପାଉ, ତୁମ ମାନଙ୍କୁ କିନ୍ତୁ ହାତରେ ରାନ୍ଧି ଖୁଆଇ ପାରେନା, ଏ କଣ କମ୍ ଦୁଃଖର କଥା ନାଁ କଣ ? କିନ୍ତୁ ଆଶ୍ରମର ନିୟମ, କଣ କରିବି ? କେତେ ଦିନ, ଦିଦିଙ୍କ ଘରକୁ ଯାଇଁ ବିଲୁ ନୀଲୁଙ୍କ ମାଛଖିଆ ଦେଖିଚି। ନୀଲୁ ମାଛ ଭାରି ଭଲ ପାଏ। ରୋହିମାଛ କଣ୍ଟା ପର୍ଯ୍ୟନ୍ତ ଚୋବାଇ ଖାଏ। ବିଲୁ କିନ୍ତୁ କେତେଥର କହିଛି, ଏଣିକି ସେ ମାଛ ଛାଡ଼ିଦେବ, ମୁଁ ଆଉ ଦିଦି କୁହାବୋଲା କରି ତାକୁ ମାଛ ଛାଡ଼ିବାକୁ ଦେଇନୁ। ଏମିତି ତ ଯୋଉ ଚେହେରା... ଦିଦିଙ୍କ ଘରେ ଯା ହେଉ ଖଣ୍ଡେ ଅଧେ ମାଛ ପେଟରେ ପଡ଼େ ପିଲାଦିନେ, ଆମ ଗାଁରେ ଆମେ ଭାବି ପାରୁ ନଥିଲୁ, ବିନା ମାଛରେ ଲୋକେ କିପରି ଭାତ ଖାଇ ପାରନ୍ତି। କିନ୍ତୁ ଆମ ପିଲାଙ୍କୁ ଏଇ ଅବସ୍ଥାକୁ ତ ଆମେ ନେଇ ଯାଇଚୁ। ସେମାନେ ବଙ୍ଗ ଦେଶରେ ରହିଲେ ନାଇଁ, ସେଠାର କଥା, ଆଚାର, ବେଭାର୍ କିଛି ଜାଣିଲେ ନାହିଁ। ଏମାନେ ପହଁରି ଜାଣି ନାହାନ୍ତି। ବନ୍ୟା, ହିଜେଲ, ଗବ ଏସବୁ ଗଛର ନାଁ ଶୁଣି ନାହାନ୍ତି। ଦିନେ ପିଲାମାନଙ୍କୁ 'ଢପକୀର୍ତ୍ତନ' କଥା କହୁଥିଲି। ନୀଲୁ ତ ଢପ କଥା ଶୁଣି ହସି ହସି ଅସ୍ଥିର। କହିଲା ଏମିତି ଅଖାଡୁଆ ନାଁ ସିଏ ତ କେବେ ଶୁଣିନାହିଁ। ବିଲୁକୁ ଦିନେ କହିଲି, 'ତିଜେଲ୍'ଟା ସେ ଘରୁ ଆଣିଲୁ। ସିଏ ପଚାରିଲା, ''ତିଜେଲ କଣ ମା ?'' ଆମ ଆଡ଼ର ସାନ ସାନ ପିଲା ସୁଦ୍ଧା ଯୋଉ କଥା ଜାଣନ୍ତି, ଏମାନେ ସେସବୁ ଜାଣନ୍ତି ନାଇଁ। ବାର ମାସରେ ତେର ପାର୍ବଣ ଏମାନେ କଣ ଜାଣନ୍ତି ? ବିଲୁ ନିଠେଇ ନିଠେଇ ଏଇ କଥା ସବୁ ପଚାରେ। ତାର୍ ସବୁ କଥା ଜାଣିବା ଦରକାର। ମା କୋଉ ପୂଜାକୁ 'ଦେଲ୍' କହନ୍ତି ? ଚଡ଼କ ପୂଜାରେ ପିଲାଦିନେ ତୁମେ ସବୁ କଣ କରୁଥିଲ ? ଗାଜନ ଗୀତର ସୁର କେମିତି ? ତମ ଗାଁରେ ବୈରାଗୀ ଥିଲେ ? ରାଜ୍ୟ ଯାକର ଖବର ତାର ଜାଣିବା ଦରକାର। କେବେ ମନେନାଇଁ, ବିଲୁ ସେତେବେଳକୁ ପିଲା। ଗପ କହିଲାବେଳେ, ଥରେ ତାକୁ କହିଥିଲି ଯେ, ଆମ ଗାଁର ନିଖିଳ ଚୌଧୁରୀ ପିଶାଚସିଦ୍ଧ ହେବାକୁ ଯାଇଁ ମଶାଣିରେ ମରିଥିଲା। ସେ ଦିନ ଦେଖିଲି, ସିଏ ସେଇ

କଥା ଗପୁଛି। ବିଲୁକୁ ଯଦି ପଚାରିବି, ''କିରେ ଏତେ ଗପ ଶୁଣି କଣ କରିବୁ ?'' ସିଏ ଜବାବ ଦେବ, ''ତୁମ ପିଲାଦିନ ମୁଖସ୍ଥ କରିବି।'' ମୋ ପିଲାଦିନ ମୁଖସ୍ଥ କରିବୁ କଣରେ ? ପିଲାଟିର କଥା ଏତେ ମିଠା ! ଶୁଣିଲେ ମନ ଆନନ୍ଦରେ ପୂରିଉଠେ। ନୀଲୁ କିନ୍ତୁ ଏ ସବୁର ଧାର ଧାରେ ନାହିଁ। ଏତେ ସବୁ ଗପ ଆଉ ଖବର ଶୁଣିବା ପାଇଁ ତାର ଧୈର୍ଯ୍ୟ କାହିଁ ? ଦିନରାତି ଟୋ-ଟୋ ହୋଇ ବୁଲୁଥିବ। ମଝିରେ ମଝିରେ ଗୋଳମାଳ କରି ଫେରି ଆସିବ ଘରକୁ। ଜାମାଟାକୁ ଟାଣି ଝିଙ୍କି ଫିଟାଇ ପକାଇବ। ମୁଣ୍ଡରେ ପୋଷେ ତେଲ ବୋଳି ହୋଇ, ଦୁଇ ଲୋଟା ପାଣି ଢାଳି ହେଲା କି ନ ହେଲା, ବାବୁ ଆସିଲେ ରୋଷେଇ ଘରକୁ। ''ଏତେବେଳ ଯାଏ ଭାତ ବାଢ଼ି ନାଁ ?'' ରାନ୍ଧି ବାଢ଼ି କେତେବେଳୁ ମୁଁ ଆଉ ବିଲୁ ତା ପାଇଁ ଭାତ ଜଗି ବସି ରହିଚୁ, ସେ କଥା ପୁଅଙ୍କର ଖିଆଲ୍ ନାହିଁ। ବିଲୁ ନିଜ ଲୁଗା ଜାମା କାଚିଲାବେଳେ, କେତେଥର ତା ଲୁଗା ଜାମା ମଧ୍ୟ ସାବୁନ୍ ଦେଇ କାଚିଦିଏ। କାହା ସାଙ୍ଗରେ କାହାର ତୁଳନା ?

''ବର୍ତ୍ତମାନ କିପରି ଅଛନ୍ତି ?'' — ଆଙ୍ଗୁଠିରେ ଗୋଟାଏ ଠେଲା ମାରି ନୈନାଦେବୀ ମୋତେ ପଚାରିଲେ।

ଏମାନେ ମୋତେ କଣ ନିଃଶ୍ୱାସ ମାରିବା ପାଇଁ ଛୁଟି ଦେବେ ନାଇଁ? ଦି' ଦଣ୍ଡ ନିରୋଳାରେ ବିଲୁ କଥା ଭାବି, ତାକୁ ପାଖରେ ପାଇବାପାଇଁ ଟିକିଏ ଚେଷ୍ଟା କରିବି। ସେ ଉପାୟ କରି ଅଛି ? କି ମୋର ହିତୈଷିରେ ? ଅବିକା ଗୋଟାକ ପରେ ଗୋଟାଏ ପ୍ରଶ୍ନ ପଚାରିଯିବ— କଳଗାଉଣା ରେକର୍ଡ଼ ପରି ! ଗୋଟାଏ ପ୍ରଶ୍ନର ଉତ୍ତର ଶେଷ ନ ହେଉଣୁ ପ୍ରସ୍ତୁତ ହେବାପାଇଁ ପଡ଼ିବ, ଅନ୍ୟ ପ୍ରଶ୍ନର ଉତ୍ତର ଦେବାପାଇଁ। ସେତେବେଳେ ଘରେ ନିଆଁ ଲାଗିଗଲେବି, ନୈନାଦେବୀ ତାଙ୍କ ଗତବନ୍ଧା ପ୍ରଶ୍ନ ଗୁଡ଼ିକୁ ନ ପଚାରି ଛାଡ଼ିବେ ନାହିଁ। ଆହା ଲୋ ! ସରାଗ ଦେଖି ମରିଯାଏ ଟି ! ଜବାବ ଦେଲି, ''ହଁ ଗୋ ହଁ, ଖୁବ୍ ଭଲ ଅଛି।'' ବାନ୍ତି ବାନ୍ତି ଲାଗୁ ନାହିଁ, ମୁଣ୍ଡବିନ୍ଧା କମିଯାଇଚି, ପେଟ ଭିତର ଆଉ ପୋଡୁ ନାହିଁ, ମୁହଁରୁ ପିତୁଳିଆଟା ମଧ୍ୟ ଛାଡ଼ି ଯାଇଚି। କମ୍ବଳ ବିଛଣା ଝାଡ଼ିବା ଦରକାର ନାଇଁ। ହେଲା ତ ! ମୋ ପାଇଁ ଆଉ ଚିନ୍ତା କରିବାକୁ ପଡ଼ିବ ନାଇଁ। ଏବେ ନିଜ ବିଛଣାକୁ ଯାଇଁ ନିଶ୍ଚିନ୍ତରେ ଶୋଇପଡ଼।'' ନୈନାଦେବୀ ମୋ ଉତ୍ତର ଶୁଣି ଅବାକ୍। ବୋଧହୁଏ ଭାବୁଚି, ମୋ ମୁଣ୍ଡ ବିଗିଡ଼ି ଗଲା ନାଁ କଣ ? ଆଉ ପଦେ ହେଲେ କଥା ନ କହି ସେ ନିଜ ବିଛଣାକୁ ଚାଲିଗଲା। କାହାର ମୁହଁଛିଈଡ଼ା ଝିଙ୍ଗାସ ସହିବାର ପାତ୍ର ସେ ନୁହେଁ। ମୋ କଥା ନେଇ, ସେ କିଛି ଗୋଟାଏ ଗୋଳମାଳ ସୃଷ୍ଟି କରିବ, ଆଜି ହେଉ ବା କାଲି ହେଉ। ଏଇ ତ କିଛି ଦିନ ତଳେ ତା ମା 'ଇଣ୍ଟରଭ୍ୟୁ' ପାଇଁ ଆସିଥିଲେ। ନୈନାଦେବୀ କରିଛି କଣ ନାଁ— ସାବୁନ, ପେନ୍‌ସିଲ୍, ବ୍ୟାଗ, ମଖନ୍, କିସ୍‌ମିସ୍, ଆଉରି କେତେ କଣ ଜେଲରୁ ମିଳିଥିବା ଛୋଟ ଛୋଟ ଜିନିଷ, ଜେଲ୍‌ଗେଟ୍ ପାଖକୁ ସାଙ୍ଗରେ ଧରି ଯାଇଚି— ମା ହାତରେ ଘରକୁ ପଠାଇବା ପାଇଁ। ସେଠି ସି. ଆଇ. ଡି. ଆଉ ଜମାଦାର, ଜଗି ବସିଚନ୍ତି— ପ୍ରଥମେ ସେଇମାନଙ୍କ ସାଙ୍ଗରେ ଲାଗିଲା ଝଗଡ଼ା। ସି. ଆଇ. ଡ଼ି. କହିଲା, ମତେ ଆଇନ ଦେଖାଇବେ ତ, ଏସବୁ ଜିନିଷ ନେବାପାଇଁ ମୁଁ ଛାଡ଼ି ଦେବି ନାହିଁ। ଆଉ ଯଦି ନରମ ଭାବରେ କହନ୍ତି,

ଏସବୁ ଜିନିଷ ଆପଣଙ୍କ ଘର ପାଇଁ ଦରକାର, ତା'ହେଲେ ଆପଣଙ୍କ ମା'ଙ୍କୁ ଏ ସବୁ ଜିନିଷ ନେଇଯିବା ପାଇଁ ମୁଁ ଅନୁମତି ଦେଇପାରେ। ନୈନା ଦେବୀ ସେଉଠୁ, ଗେଟ୍ ଜମାଦାର ମାନଙ୍କୁ ସେଇ କିସମିସ୍‌ରୁ କିସମିସ୍ ପୁଣି ଖୁଆଇଲା। ଦେଖତ୍ କି ଅପମାନଟା ନ ହେଲା! ଅପମାନ ତାକୁ ଏକା କ'ଣ ହେଲା? ଏଥିରେ ତ ଆମ ସମସ୍ତଙ୍କ ମୁହଁରେ ଚୂନକଳା ବୋଲି ହୋଇଗଲା ଜାଣ! ଜମାଦାରାଣୀ ଆସି ସବୁ କଥା ଆମ ୱାର୍ଡ଼ରେ ପ୍ରଘଟ କରିଦେଲା। ଏଇ କଥା କହିଚନ୍ତି କି ନାହିଁ, ଆଉ ଯିବେ କୁଆଡ଼େ? ଏକାଥରେ ଯେପରି ନିଆଁ ଲାଗିଗଲା। ବହୁରିଆଜୀଙ୍କୁ ସେ ମାରେ କି ନମାରେ! ଏଠି ନରମ ମାଟି ପାଇଚି କିନା! ସି. ଆଇ. ଡି. ଆଗରେ ଏ ତେଜ ଥିଲା କୋଉଠି? ତା ପରେ ପନ୍ଦର ଦିନ ଧରି ଚାଲିଲା, ସିଏ ଆଉ ବହୁରିଆଜୀଙ୍କ ଦଳ ଭିତରେ ଶ୍ୱାନଯୁଦ୍ଧ! ସିଏ ଏକାତ ଶଏ! କଥାରେ କି ତୀବ୍ରତା! କଥାରେ ଅଛି ନାଁ, "ମଇଁଷୀ ସିଙ୍ଗ ଫଟା ଯୁଝିଲା ବେଳକୁ ଗୋଟା!" ସିଏ ଏକା ଝଗଡ଼ା କରି ସମସ୍ତଙ୍କୁ ଥଣ୍ଡା କରି ଦେଲା। କେଜାଣି ମୋ ପଛରେ ପୁଣି ଲାଗିବ। କଣ ନାଇଁ କଣ କରିବ! କରିବ ତ କରୁ! ମଡ଼ା ପକ୍ଷରେ ଗାଳି ମାଡ଼ ସବୁ ସମାନ! ଭଗବାନ ମତେ ଯୋଉ ଦୁଃଖ ଦେଇଚନ୍ତି, ତା'ଠୁ ସିଏ ଆଉ ବେଶୀ କଣ କରିବ? ସବୁ କଥାରେ ସୀମା ଅଛି; ମଣିଷ ଦୁଃଖର କଣ ସୀମା ନାଇଁ? ...ଏମିତି ତ ବିଲୁ କଥା ଭାବି ମୋ ରକ୍ତ ପାଣି ହୋଇଯାଉଚି। —ତା ଉପରେ ଚମଇନ୍ ଜମାଦାରାଣୀ ଦିନେ ମୋତେ କହିଲା, "ବଙ୍ଗାଳୀ ମାଇଜୀ ତୁମ ପୁଅକୁ କୁଆଡ଼େ ସରକାର ବାହାଦୂର ନିଜେ ଇଚ୍ଛା କରି ସଜା ଦେଇ ନାହାନ୍ତି! ତୁମର ଆଉ ଏକ ପୁଅ କୁଆଡ଼େ ସାକ୍ଷୀ ଦେଇ ଏଇ ସଜା ଦିଆଇଚି।" କଣ କହୁଚି ଏଇଟା? ମୁଁ ଠକ୍ ଠକ୍ ହୋଇ କମ୍ପିଗଲି। ପଚାରିଲି, "କିଏ କହିଲା ତତେ?" ସିଏ ଜବାବ ଦେଲା, "ନୈନା ଦେବୀ ଦିନେ ମୋତେ କହିଥିଲା ଯେ, ସେଇପରି ଗୋଟାଏ କଥା ଶୁଣୁଚି। କାହାର ୱାର୍ଡ଼ର ମାନଙ୍କୁ ପଚାରି କଥାଟା କ'ଣ ବୁଝିନେବୁ ତ।" ବାହାରେ ପଚରା ଉଚରା କରି ମୁଁ ଜାଣିଲି, ନୈନାଦେବୀ ସତକଥା କହିଥିଲେ। ନୈନା ଦେବୀ ତୁମକୁ ଏକଥା କହିବାପାଇଁ ବାରଣ କରିଥିଲେ ମାଈଜୀ। ହେଲେ ମୁଁ ଭାବିଲି ତମ ଘରକଥା। ସମସ୍ତେ ଜାଣିବେ, ସମସ୍ତେ ଚୁପର୍‌ଚାପର୍ ହେବେ, ଆଉ ତୁମେ ଜାଣିବ ନାଇଁ? ସେମିତି କ'ଣ ହୁଏ? ମୋର ତ ଧରମ ଅଛି। ଆଚ୍ଛା ମାଇଉଜୀ ତମର ଦି'ପୁଅଙ୍କ ଭିତରେ ଝଗଡ଼ା ଅଛି ନାଁ କଣ? ମୋର ଦୁଇ ଭାଇ ଗୋଟାଏ ପଣସ ଗଛ ପାଇଁ ଥରେ ମୁଣ୍ଡ ଫଟାଫଟି ହୋଇଗଲେ। ସେଥିପାଇଁ କେତେ ଥାନା, କେତେ ପୁଲିଶ। ମୁଠା ମୁଠା ଟଙ୍କା ଖରଚ ହୋଇଥିଲା। ସତର ଟଙ୍କା ନେଇ ଦାରୋଗା ସାହେବ ମକଦ୍ଦମା ଉଠାଇ ନେଲେ। ତମର ମାଇଜୀ ଅନେକ ଜମିବାଡ଼ି, ଗୋରୁ ମଇଁଷୀ, ଅଛନ୍ତି ନାଁ କଣ? ସେ ପୁଅ ଗାନ୍ଧିଜୀରେ ନାଁ ଲେଖାଇ ନାଇଁ ପରା! କା' ପେଟରେ ଭଗବାନ ଯେ କି ସନ୍ତାନ ଦିଅନ୍ତି! —କେହି କହି ପାରିବେ ନାହିଁ।" ଏକଥା ଶୁଣି ମୋର ହଲକ ଶୁଖିଗଲା। କହିଲି, "ଯେତେ ସବୁ ମିଛକଥା ଲଗଉଚୁ। ତୋ ନାଁରେ ମୁଁ ରିପୋର୍ଟ କରିବି।" ସେ ଉତ୍ତର ଦେଲା, "ମାଇଜୀ ମୁଁ ତ ଭଲ ଭାବି ତମକୁ କହିଥିଲି। ହୋଇପାରେ କଥାଟା ମିଛ। ମୁଁ ତ ଯାହା ଶୁଣିଚି, ସେଇଆ କହିଚି— ଟିକିଏ

ହେଲେ ବି ମନଗଢ଼ା କଥା ନାହିଁ। ତୁମେ ମାଇଜୀ ରିପୋର୍ଟ କରିବ ନାଇଁ; ମୋ ସ୍ୱାମୀ ତିନି ବରଷ ହେଲା ପକ୍ଷାଘାତରେ ପଡ଼ିଚି। ମୋ'ରି ରୋଜଗାରରୁ ପିଲାଛୁଆ ଦୁଇମୁଠା ଖାଇବାକୁ ପାଆନ୍ତି।'' ମୁଁ କହିଲି, ''ଆଚ୍ଛା ହୋଇଚି, ଯା, ଯା! ଖବର୍ଦ୍ଦାର, ଏମିତି କଥା ତୁ ମତେ ଆଉ ଦିନେ କହିବୁ ନାହିଁ।'' ସିଏତ ଚାଲିଗଲା। କିନ୍ତୁ ତା' ପରଠାରୁ ମୋ ମନ ଗୋଳେଇ ଘାଣ୍ଟି ହଉଚି। ଏତେ ମିଛ କଥା, ଲୋକେ ପୁଣି କହି ପାରନ୍ତି!

ପାଇଜାମା ପିନ୍ଧା ବିଲୁ, ଛୋଟ୍ଟେ ନୀଳୁର ଗାଲ ଚିପି ଆଦର କରୁଚି, ନୀଳୁ— ନୀଳୁ— ପିଲ୍ଲୁ— ପିଲ୍ଲୁ...

ସେଇ ନୀଳୁ ଦେବ ବିଲୁ ବିରୁଦ୍ଧରେ ସାକ୍ଷୀ? ଏ କଥା ମରିଗଲେ ମୁଁ ବିଶ୍ୱାସ କରିପାରିବି ନାହିଁ! ନୀଳୁ ଗୁଆଁର, ନୀଳୁ ଅବୁଝା, ନୀଳୁ ଖାମ୍‌ଖିଆଲି— ସବୁ ଠିକ୍; କିନ୍ତୁ ସିଏ ଯେ ଦାଦାଗତ ପ୍ରାଣ! ନୀଳୁ କେବେ କଣ ଏମିତି କରିପାରେ? ସେଇଦିନୁ କଥାଟା ଯେତେବେଳେ ଭାବେ ମୋ ଛାତିରକ୍ତ ହେମାଳ ହୋଇଯାଏ। କଥାଟା ଯଦି ସତ ହୋଇଥାଏ! ଜେଲ୍‌ଗେଟ୍‌ରେ ସେଦିନ ତାଙ୍କ ସଙ୍ଗରେ ଇଣ୍ଟରଭ୍ୟୁ ଥିଲା। ସୁପରିଟେଣ୍ଡେଣ୍ଟ ମଝିରେ ମଝିରେ ଖାତିର କରି ଆମକୁ ଦେଖାସାକ୍ଷାତ ପାଇଁ ଅନୁମତି ଦିଅନ୍ତି— ସେ ଦିନ ଭାବିଲି କଥାଟା ତାଙ୍କୁ ଥରେ ପଚାରି ଦେଖେ, ସେ କିଛି ଜାଣନ୍ତି କି ନାଇଁ! ତା'ପରେ ମନେ ହେଲା ଥାଉ। ଏପରି କଥା କଣ ପଚରା ଯାଏ? ସେ ଯଦି ଉତ୍ତର ଦିଅନ୍ତି— ''ନୀଳୁ ବିରୁଦ୍ଧରେ ଏପରି କଥା ତୁମେ ବି ବିଶ୍ୱାସ କର?'' ଆଉ ଧର, କଥାଟା ଯଦି ସତ ହୋଇଥାଏ! ଏମିତି ତ ତାଙ୍କ ଚେହେରା ଦେଖି ବୁଝିପାରିଲି, ତାଙ୍କ ମନରେ କି ଝଡ଼ ବୋହି ଚାଲିଛି! ମୋ ମନ ଭିତରେ କଣ ଚାଲିଚି ତା ମୁଁ ଜାଣେ। ସେଇଥିରୁ ତାଙ୍କ ମନର ଅବସ୍ଥାଟା ଅନ୍ଦାଜ କରି ପାରୁଚି। ତା ଉପରେ ଲକ୍ଷ୍ୟ କଲି ଯେ, ସିଏ ମୋ ମୁହଁକୁ ଅନାଇଁ ପାରୁ ନାହାନ୍ତି। ଶେଷରେ ସାତପାଞ୍ଚ ଭାବି କଥାଟା ଆଉ ପଚାରି ହେଲା ନାହିଁ। ମନକଥା ମନରେ ରହିଗଲା। ସି. ଆଇ. ଡି. କହିଲା, ''ଏଥର ତା'ହେଲେ ଉଠନ୍ତୁ। ସମୟ ହୋଇଗଲା।'' ବୁଲେଇ ବଙ୍କେଇ ଏଇ କଥାଟି କେବଳ ମନେ ପଡୁଚି। ନୀଳୁ କେବେ କଣ ଏମିତି କାମ କରିପାରେ? ସିଏ ଯେ ଦାଦା ଦାଦା ବୋଲି ପାଗଳ! ପିଲାଦିନୁ ଦାଦା ଯାହା କରିବ, ସିଏ ସେଇଆ କରିବ। ନୀଳୁକୁ ମୁଁ ବିଲୁ ଠାରୁ କେବେ ଅଲଗା କରି ଭାବି ପାରେ ନାହିଁ। ନୀଳୁ ବଦ୍‌ରାଗୀ। ବାହାରେ କେତେବେଳେ କଣ କରି ବସିବ, ସେଇଆ ଭାବି ମୁଁ ତଟସ୍ଥ ହୋଇ ରହିଥାଏ। କିନ୍ତୁ ମନରେ ସବୁବେଳେ ଭରସା ଥାଏ ଯେ, ତା' ଦାଦା ଅଛି, ତାକୁ ସମ୍ଭାଳି ନେବ... ସିଏ ଜେଲ୍ ଯିବାବେଳେ ମଧ୍ୟ ମନରେ ଏଇ ଭରସା ଥିଲା। ପିଲାଦିନେ ନୀଳୁକୁ କେହି କିଛି କହିଲେ, ସେ ବଡ଼ଭାଇ ପାଖରେ ଫେରାଦ୍ ହେଉଥିଲା, ''ଦାଦା, ଦେଖ ନାଁ...''

ଥରେ ପିଲାଦିନେ ନୀଳୁ ବିଲୁ ହେଡ଼ମାଷ୍ଟର କ୍ୱାର୍ଟରର ଆମ୍ବଗଛ ତଳେ ଖେଳୁଚନ୍ତି— ହମିଦ୍ ଦପ୍ତରୀ ଗେଟ୍ ଭିତରକୁ ପଶିଲା। ଭିତରକୁ ଆସିଲା ମାତ୍ରେ ଦୂରରୁ କୁର୍ଣ୍ଣିଶ୍ କରିବା ପରି ନମସ୍କାର କରି କହିଲା, ''ଆଦାବ୍ ନୀଳୁବାବୁ ଗୋଟାଏ ବୁଢ଼ୀ ମେମ୍ ସାଙ୍ଗରେ ତମକୁ ସାଦୀ ଦେବି। କାଲି ଗୋଟାଏ ବୁଢ଼ୀ ମେମ୍ ମୋତେ କହୁଥିଲା ଯେ,

ନୀଲୁ ବାବୁ ଛଡ଼ା ସେ ଆଉ କାହାକୁ ସାଦୀ କରିବ ନାହିଁ।''

''ଦାଦା, ଦେଖନା, ମତେ କଣ ସବୁ କହୁଚି!''

ବିଲୁ ନୀଲୁକୁ ବୁଝେଇଲା– ''ସତରେ କଣ ବୁଢ଼ୀ ମେମ୍ ତତେ ବାହା ହବ? ସିଏ ତତେ ଖାଲି ଚିଡ଼ଉଚି। ବୁଢ଼ୀ ମେମ୍‌ମାନେ ବାହା ହୁଅନ୍ତି ନାଁ କଣ?''

ନୀଲୁ କହିଲା, ''ନାଁ, ସେ କହିବ କାହିଁକି?''

ଦପ୍ତରୀ କହି ଚାଲିଲା– ''ବୁଢ଼ୀ ମେମ୍‌ଟାର ଅଳ୍ପ ଅଳ୍ପ ନିଶ ଅଛି। ମୋତେ ପହିଲେ କହିଥିଲା ସାଦୀ ହେବ। ମୁଁ ସେଉଠୁ କହିଲି, ଯାହାର ଦାଢ଼ୀ ନାହିଁ, ମୁଁ ତାକୁ ବାହା ହେବି ନାଇଁ। ସିଏ ସେଉଠୁ କହିଲା, ମତେ ନୀଲୁ ବାବୁଙ୍କ ସାଙ୍ଗରେ ବାହା କରି ଦିଅ।''

''ଦାଦା, ଦେଖତ!''

ନୀଲୁ କାନ୍ଦିବା ଆରମ୍ଭ କରିଦେଲା। ବିଲୁ ତାକୁ ବୁଝେଇ ସୁଝେଇ ମୋ ପାଖକୁ ଆଣିଲା। ''ବୋକା ପିଲାଲା! ଚିଡ଼େଇଲେ କ'ଣ କିଏ କାନ୍ଦନ୍ତି? ତା'ହେଲେ ଯେତେ କାନ୍ଦିବ, ସେମାନେ ସେତେ ଚିଡ଼େଇବେ।'' ତା'ପରେ ବିଲୁ ମୋ ପାଖରେ ବସି ଗପିଲା ''ନୀଲୁଟା କିଛି ବୁଝେ ନାଇଁ। ମୁଁ ଯେତେ ବୁଝେଇଲି, ସିଏ ସେତେ କାନ୍ଦିଲା। ଯେମିତି ବିଲୁକୁ କହିଚି ''ତୁ ତା'ର ବଡ଼ ଭାଇ। ତୁ ନ ବୁଝାଇଲେ ତାକୁ ଆଉ କିଏ ବୁଝାଇବ କହ;'' ବିଲୁ ତ ମହାଖୁସୀ! ଦାଦା ହବାର ଦାୟିତ୍ୱ କମ୍ ନୁହେଁ।

ବିଲୁ ନୀଲୁକୁ ସବୁବେଳେ ଆଖି ନଜରରେ ରଖିଥାଏ। ନୀଲୁର ଦିନାକେତେ ସଉକ୍ ହେଲା କନିଅର ମଞ୍ଜିରେ ଖେଳିବା ପାଇଁ। ଏ ଆଡ଼େ ତାକୁ 'କର୍ନେଲ' ନାଁ କି ଖେଳ କହନ୍ତି। ବିଲୁକୁ କହିଲି, ''ବିଲୁ ଦେଖିବୁ ତ ପୁଅ, ନୀଲୁ ଉପରେ ନଜର ରଖିଥିବୁ। ମତେ ଭାରି ଡ଼ର, ନୀଲୁ କୋଉଦିନ କାଳେ କନିଅର ମଞ୍ଜି ଗିଳିଦେବ। କନିଅର ମଞ୍ଜି ବିଷ ଜାଣିଚୁ ତ?'' ବିଲୁ ପଣ୍ଡିତଙ୍କ ପରି ଗମ୍ଭୀର ଭାବରେ କହିଲା, ''ସେ କଥା ମତେ ଆଉ କହିଦେବା ପାଇଁ ପଡ଼ିବ ନାହିଁ। ଏଇତ ସେଦିନ ନୀଲୁ ଆଉ ପିଲାମାନେ ଭେରେଣ୍ଡା ମଞ୍ଜି ଏକାଠି କରିଥିଲେ ଖାଇବେ ବୋଲି। ସେମାନେ କହୁଥିଲେ ଏ ମଞ୍ଜିଗୁଡ଼ାକ ହିନ୍ଦୁସ୍ଥାନୀ ବାଦାମ୍। ମୁଁ ତ ସେ ଗୁଡ଼ା ଛଡ଼ାଇ ଆଣିଲି। ସେମାନଙ୍କୁ ଖାଇବା ପାଇଁ ଦେଲି ନାହିଁ।'' ...ସତରେ ପିଲାଦିନେ, ବିଲୁ ନୀଲୁକୁ ଦଣ୍ଡେ ହେଲେ, ଆଖିରୁ ଆଡୁଆଳ କରୁ ନଥିଲା। ସିଏ ସେତେବେଳକୁ କେତେ ଛୋଟ-ନୀଲୁ ଜାମାରେ ବୋତାମ ଲଗେଇ ଦେବା, ଜୋତାରେ ଫିତା ବାନ୍ଧିଦେବା, ସବୁ ନିଜ ହାତରେ କରେ। ସେଇ ନୀଲୁ କେବେ ବିଲୁ ବିରୁଦ୍ଧରେ ଯାଇପାରେ? ଆଉ ଯଦି ଯାଇଥାଏ କଦାପି ସ୍ୱେଚ୍ଛାରେ ନୁହେଁ। ପୋଲିସର ଜୁଲମରେ ହୁଏତ ସାକ୍ଷୀ ଦେଇଚି। ହୁଏତ ପୋଲିସ ନୀଲୁ ଉପରେ ଅନେକ ଅତ୍ୟାଚାର କରିଛି, ହୁଏତ ଜଜ୍ ସାହେବ ଆଗରେ ବିଲୁ ବିରୁଧରେ ସାକ୍ଷୀ ଦେବା ବେଳେ, ତା ଛାତି ଫାଟି ଯାଇଚି। ଆଖିରେ ଲୁହ ଜମି ଯାଇଚି। ବୋଧହୁଏ ମନା କରିବାର ଉପାୟ ନଥିଲା। ନହେଲେ, ବିଲୁ ବିରୁଦ୍ଧରେ ନୀଲୁ ସାକ୍ଷୀ ଦେବା, ଇଏ କଣ ବିଶ୍ୱାସ କରିବା ଭଳି ଗୋଟାଏ କଥା? କୋଉଠୁ କଣ ଶୁଣିଚି ଚମ୍ପାଇନ୍ ଜମାଦାରାଣୀ– ସେଇଆକୁ ଫେଣେଇ ଫାଣେଇ କହି ବୁଲୁଚି। ନୀଲୁ ସତରେ ଯଦି ସେଇଆ କରିଥାଏ, ସେ ପିଲାର ମୁହଁକୁ ମୁଁ ଆଉ

ଚାହିଁବି ? ଦି' ଆଖି ଯୁଆଡ଼େ ନେବ, ସେଆଡ଼େ ଚାଲିଯିବି। କିନ୍ତୁ ମୋ ମନ କହୁଚି, ଏମିତି କେବେ ହୋଇ ପାରେ ନାହିଁ। ମୋ ମନ କେତେବେଳେ କଣ ଭୁଲ୍ କହେ ?

କପିଳଦେଓର ବାହାଘର ବେଳେ ବିଲୁ ନୀଲୁ ଯାଇଥିଲେ ତାଙ୍କ ଘରକୁ ! ସେମାନଙ୍କୁ ପଠାଇବା ପାଇଁ ମୋର ଇଚ୍ଛା ନଥିଲା। ସେତେବେଳକୁ ସେମାନେ ଛୋଟ ଛୋଟ। ସେଠିକି ଯାଇଁ କାଳେ ବେମାରରେ ପଡ଼ିବେ, ସେମାନଙ୍କ ଘରର ଆଚାର ବେଭାର ଜଣାନାହିଁ, କଣ ନାଇଁ କଣ କରି ପକାଇବେ; କିନ୍ତୁ ଦହିଭାତ ଗାଁର ଭଣ୍ଡାରୀ ଆସି ସେମାନଙ୍କ ହାତରେ ହଳଦୀବୋଳା ଗୁଆ ଦେଇଗଲା ଦିନଠାରୁ ସେମାନେ ଜିଦ୍ ଧରିଲେ, ବାହାଘରକୁ ଯିବା ପାଇଁ। କପିଳଦେଓ ବାପା ସେତେବେଳକୁ ବଞ୍ଚିଥାନ୍ତି। ସିଏ ଦିନେ ଶଗଡ଼ରେ ଆସି ପିଲାମାନଙ୍କୁ ନେଇଗଲା। ଆଠ ଦଶ ଦିନରୁ ସେମାନେ ସେଠାରେ ବେଶୀ ନଥିଲେ। କିନ୍ତୁ ସେ ଆଡ଼ର କି ଶିକ୍ଷା, ଏଇ କେତେ ଦିନ ଭିତରେ ସେ ଆଡୁ ଯାହା ତାହା ଗୀତ ସବୁ ଶିଖି ଆସିଲେ। ...ଆପଣାର ଗୋଟାଏ ପାଖରେ ବସିଚି ନୀଲୁ– ଆଉ ଗୋଟାଏ ପାଖରେ ବିଲୁ। ଦି ଜଣ ଧରିଛନ୍ତି ଗୋଟାଏ ଗୋଟାଏ ବିସ୍କୁଟ ଟିଣ, ଆଉ ହାତରେ ଖଣ୍ଡେ ଖଣ୍ଡେ କାଠି। ସେଇ କାଠିରେ ଟିଣ ପିଟୁଛନ୍ତି ସେମାନେ। ନୀଲୁ କହିଲା ''ଏଥର କିନ୍ତୁ ଦାଦା, ବକ୍‌ଡ଼ୀକେ ପାଞ୍ଚଟେଙ୍ଗ୍'' ଆଉ ବଜେଇବି ନାହିଁ। ''ତକାଇ–କେ–ତାକା–ହୁମ୍ ମକଇ–କେ–ଲାଓୟା'' ଟା କି ନୁହେଁ। ଏଥର ବାହା ବେଳର ଗୀତ ଗାଇବା।'' ଦୁହେଁ ଟିଣ ପିଟିବାକୁ ଲାଗିଲେ। ବିଲୁ ଗାଉଚି ''କପିଳଦେଓ ପାଁଚ ବିହା, ଛଠମା ମୌନା।'' ବିଲୁ ବରପକ୍ଷ। ଅଗଣା ଆର ପାଖରୁ ନୀଲୁ ଓଲଟା ଜବାବ ଦେଉଚି। ''ବଜାତେ ଯାଓ ଧାଇଁ ଧାଇଁ– କପିଳଦେଓକେ ବହୁକେ ଛଠମା ସାଇଁ।'' ଖୁବ୍ ପ୍ରସ୍ତେ ଗାଳି ଦେଲି ସେମାନଙ୍କୁ। ଏଇସବୁ ଛୋଟଲୋକଙ୍କ ଗୀତ, ଭଦ୍ରଲୋକଙ୍କ ପିଲାମାନେ ବୋଲନ୍ତି ନାଁ କଣ ? ବିଲୁ ତ ଏକାଥରେ ଅପ୍ରସ୍ତୁତ ହୋଇ ପଡ଼ିଲା। ନୀଲୁ କହିଲା, ''ଦହିଭାତ ଗାଁରେ ସହଦେଓ ଘରେ ସବୁ ପୁଅ ଝିଅ ତ ଏଇ ଗୀତ ଗାନ୍ତି। ସେମାନେ ତାହେଲେ କଣ ଭଦ୍ରଲୋକ ନୁହନ୍ତି ?'' ମୁଁ ଜାଣେ ନୀଲୁକୁ ଯୋଉ କଥା ମନା କରିବ, ସେଇ କଥା ସେ କରିବ ସେତେ ବେଶୀ। ବିଲୁ ତ ମୋ କଥା ଜାଣିଚି। ସେ ଚୁପ୍ ରହିଗଲେ ନୀଲୁ ଏକୁଟିଆ କେତେବେଳେ ଆଉ ସେଇ ନିଆଁ ପାଉଁଶ ଗୀତ ବୋଲିବ ? ତାର ତ କେବଳ ତୁଆ ଦବା କାମ। ବିଲୁ ଚୁପ୍ ରହିବା ପରେ, ନୀଲୁ ମତେ ଶୁଣେଇ ଶୁଣେଇ କେତେବେଳ ପର୍ଯ୍ୟନ୍ତ ଗାଇଲା, ''ତାକାଇୟା ତାକା ମକଇକେ ଲାଓୟା''; ତାପରେ ଆସ୍ତେ ଆସ୍ତେ ଚୁପ୍ ଚୁପ୍ ପଚାରୁଚି ''ଦାଦା ! ଗୀତାଟା କଣ ସତରେ ଖରାପ ? ଦାଦା ଯଦି ଖରାପ କହିବ ତେବେ ହେବ ଖରାପ ! ଦାଦାର କଥା ବେଦବାକ୍ୟ। ଆଉ ମୁଁ ଯେ ଏତେବେଳେ ବୁଝେଇଲି, ମନା କଲି, ଚିତ୍କାର କରି ମଲି– ତାର କୌଣସି ମାନ ନାଇଁ।

...ଏଣିକି ବଡ଼ ହେବା ପରେ କେତେଥର ଦେଖିଲିଣି– ଦୁଇ ଭାଇ ବସି ଗପ କରୁଛନ୍ତି। ମୁଁ ହୁଏତ କଣ ଗୋଟାଏ କହିବା ପାଇଁ, ନୋହିଲେ ଗପିବା ପାଇଁ ଯାଇଚି। ନୀଲୁ ସାଙ୍ଗେ ସାଙ୍ଗେ କ୍ୟାଟ୍ ଲ୍ୟାଟ୍ କରି ଇଂରାଜୀରେ ଭାଇକୁ କଣ ସବୁ କହିବ। ତା ପରେ ହୋ–ହୋ–ହୋଇ ହସି ଉଠିବ। ମୁଁ ବୁଝିଲି ମୋ ସମ୍ବନ୍ଧରେ କଣ ଯେପରି କିଛି ଗୋଟାଏ କୁହାଗଲା ପରା-ଥଟ୍ଟା, ପରିହାସ ବୋଧହୁଏ। ଇଂରାଜୀରେ

ଗୁରୁଜନମାନଙ୍କୁ କିଛି କହିଲେ ତ ଦୋଷ ହୁଏ ନାହିଁ। କି ଶିକ୍ଷା ସବୁ ପାଇଚନ୍ତି ଏମାନେ! ବିଲୁ କହେ ''ମା ରାଗିବ ନାଇଁ। ରାଗିବା ଭଳି କିଛି କଥା ନୀଲୁ କହି ନାହିଁ। ନୀଲୁ, ମା'ଙ୍କୁ କାହିଁକି ମିଛରେ ରଗାଉ?

ମୁଁ ତମ ମାନଙ୍କ ପାଖରୁ କ'ଣ ଚାହେଁରେ? ଦି'ଟା ମିଠା କଥା ତମ ମାନଙ୍କ ମୁହଁରୁ ବାହାରେ ନାଇଁ? ଦିନ ଭିତରେ ନୀଲୁ, ତୁ କେତେ ବେଳେ ବା ମୋ ସାଙ୍ଗରେ ଗପ କରୁ? ସେତିକି କି କଣ ଏମିତି ଠେଙ୍ଗାରେ ପିଟିବା ଭଳି ନ କହିଲେ ଚଳିବ ନାଇଁ? ହସୁଚୁ ପୁଣି? ଲାଜ ମାଡୁ ନାଇଁ? ପିଲାଦିନୁ ତୁ ଏକାଭଳି ରହିଗଲୁ। 'ଅଙ୍ଗାର ଶତ ଧୌତେନ ମଳିନତ୍ୱ ନ ମୁଞ୍ଚତି!'' ନୀଲୁ ପୁଣି ହସି ପକାଏ। ଭୁଲ୍ କହିଦେଲି ପରା!

''ଜମାଦାରାଣୀ! ଜମାଦାରାଣୀ! ଏ ମନ୍‌ଚନିୟା! ବଙ୍ଗାଳୀ ମାଇଜୀ ଶୋଇଚନ୍ତି ନାଁ କଣ?''

କାହିଁ ଜମାଦାରାଣୀ? କାହିଁ ମନ୍‌ଚନିୟା? ଜମାଦାରାଣୀ ବାରଣ୍ଡା ଉପରେ ଶୋଇ ପଡ଼ିଲାଣି; ଆଉ ମନ୍‌ଚନିୟା ମୋ ପାଖରେ ବସି ଢୁଳାଉଚି। ନର୍ମଦା ବେନ୍ ଡାକ ଶୁଣିବ କିଏ? ଆଉ ନ ଶୁଣିଲେ ବି ଭଲ! ନଇଲେ ମନ୍‌ଚନିୟା ପୁଣି ଆସି ମତେ ଜଳେଇବ। ନର୍ମଦାବେନ୍ ଘର ଅହମଦାବାଦ୍‌ରେ। ଖୁବ୍ ବଡ଼ଲୋକ ଘରର ଝିଅ। ବିଲାତ ଫେରନ୍ତା, ହାବଭାବ ଆଉ ପୋଷାକଟି ଛଡ଼ା ବାକି ସବୁ ମେମ୍‌ସାହେବଙ୍କ ପରି! ମହାତ୍ମାଜୀଙ୍କ ପ୍ରିୟ ଶିଷ୍ୟ ମାନଙ୍କ ଭିତରୁ ସିଏ ଜଣେ। ଦେହରଙ୍ଗ ଗୋରା ତକ୍ ତକ୍, ପିନ୍ଧାରେ ଖଦଡ଼ ଶାଢ଼ୀ। ଜାମ୍‌ସେଦ୍‌ପୁର ଶ୍ରମିକ ମାନଙ୍କ ସଙ୍ଗଠନ ପାଇଁ ବିହାର ଆସିଥିଲେ। ସେଇଠି ସେ ହୋଇଥିଲେ ଗିରଫ। ଆମ ୱାର୍ଡ଼ ସାମନାରେ ଗୋଟିଏ ଛୋଟ ଘର ଅଛି। ଆଗେ ଏ ଘରଟି ଅନ୍ତୁଡ଼ୀଶାଳ ପାଇଁ ନୋହିଲେ କାହାର କୌଣସି ଡିଆଁ ବେମାରୀ ହେଲେ, ତାକୁ ଅଲଗା ରଖିବା ପାଇଁ ବ୍ୟବହାର କରା ଯାଉଥିଲା। ନର୍ମଦା ବେନ୍ ଇଂରେଜୀରେ କଥା କହେ। ସୁପରିନ୍‌ଟେଣ୍ଡେଣ୍ଟ୍ ସାଙ୍ଗରେ ତେଣୁ ତାର ବେଶ୍ ଆଳାପ। ତାଙ୍କୁ କୁହାବୋଲା କରି ସେଇ ଘରଟାକୁ ଉଠି ଯାଇଚି। ଏକଲା ରହେ ସେଠି। ବଡ଼ଲୋକର ଝିଅ ତ, ଏଠି ଆମ ସମସ୍ତଙ୍କ ସାଙ୍ଗରେ ଏକାଠି ରହିବାକୁ ତାକୁ ଟିକିଏ ଅସୁବିଧା ହେଇଥିଲା। ଘରଟାକୁ ବେଶ୍ ସଜେଇଚି। କେତେ ପର୍ଦ୍ଦା, କେତେ ଟେବୁଲ-କ୍ଲଥ୍। ଚାରିପଟେ ପୁଣି ଫୁଲବଗିଚା କରିଚି। ଦିନରାତି ସେଇ ବଗିଚାରେ କାମ କରେ। ପ୍ରତିଦିନ ମୋତେ କେତେ ଫୁଲ ଆଣି ଦେଇଯାଏ। ଫୁଲଗୁଡ଼ା ଦେଖିବାକୁ କାଗଜଫୁଲ ପରି। ଟିକିଏ ହେଲେ ବି ବାସନା ନାଇଁ। ବିଲୁ ହୋଇଥିଲେ ନିଶ୍ଚୟ ମନା କରି ଦିଅନ୍ତା। ଆଶ୍ରମରେ ବିଲୁ କେତେ ଯେ ଫୁଲଗଛ ଲଗାଇଥିଲା; ତାର କଣ ଠିକଣା ଅଛି? ନୂଆ ଋତୁରେ କୌଣସି ନୂଆ ଫୁଲ ଫୁଟିଲେ, ସେ ଫୁଲର ନାଁ ମୋତେ ନ ଶୁଣାଇଁ ସେ ଛାଡ଼ିବ ନାହିଁ। ମୋର କଣ ନିଆଁନଗା ଏତେ ଇଂରେଜୀ ନାଁ ମନେ ରହେ? ନର୍ମଦା ବେନ୍‌ର ବିଲୁ ପରି ଫୁଲରେ ସଉକ୍। ସେଥିପାଇଁ ତାକୁ ମୋତେ ଖୁବ୍ ଭଲ ଲାଗେ। ସିଏ ମୋତେ ଏତେ ଫୁଲ ଦିଏ—ଫୁଲର ମର୍ମ କଣ ବା ବୁଝେ ମୁଁ। ଇଏତ କେବଳ ବାଉଁଶ ବଣରେ ମୁକ୍ତା ବିଞ୍ଚିବା ପରି। ନର୍ମଦା ବେନ୍ ରୋଜ ଯଦି ବିଲୁ ସେଲ୍‌କୁ କିଛି ଫୁଲ ପଠାଇ ପାରୁଥାନ୍ତା,

ତେବେ ବୁଝନ୍ତି ତମ ଇଂରାଜୀର ଜୋର୍। ନର୍ମଦା ବେନ୍ ସାହେବଙ୍କୁ କହିଲେ, ସାହେବ ପ୍ରତ୍ୟହ ନିଶ୍ଚୟ ସେଲ୍‌କୁ ଫୁଲ ପଠାଇବା ପାଇଁ ଅନୁମତି ଦିଅନ୍ତୁ। ସେଇଆ ଭାବି ଦିନେ ନର୍ମଦା ବେନ୍‌କୁ ବିଲୁର ଫୁଲ ସଉକ୍ କଥା କହିଲି। ସେ କଥା ତା ମୁଣ୍ଡରେ କାହିଁକି ପଶନ୍ତା ? ବିଲାତ ଯାଇଁ, ସିଏ କଣ ଧାନ ଚାଉଳ ଦେଇ ପାଠ ପଢ଼ିଥିଲା ? ବିଦ୍ୟା ହେଲା ଗୋଟାଏ ଜିନିଷ, ବୁଦ୍ଧି ଆଉ ଗୋଟାଏ ଜିନିଷ। ସେଇଦିନ ଠାରୁ ଗୋଛାଏ କରି ଫୁଲ ମୋର ଏଠାରେ ସେ ଦେଇଯାଏ। ଆଉ ସାହେବ ପାଖରେ ଅନୁରୋଧ କଲାବେଳକୁ କରାଗଲା କଣ ନାଁ ନିଜର 'ୟୁରୋପିଆନ୍' ଡାଏଟ୍ ପାଇଁ। ସାହେବ ପ୍ରତିଦିନ ନିଜ ଘରୁ ନର୍ମଦା ବେନ୍ ପାଇଁ ଖଣ୍ଡେ କରି ଚୋକଡ଼ମିଶା ଅଟା ପାଉଁରୁଟୀ ପଠାଇ ଦିଅନ୍ତି। ତାକୁ ମୋ ମନକଥା ଖୋଲି କହିବା ପାଇଁ କେମିତି କୁଣ୍ଠା ଲାଗେ। ସେ ଝିଅ କିନ୍ତୁ ଭାରି ଲେକ୍‌ଚର୍ ଦିଏ। କଥକ ଗୋସେଇଁଙ୍କ ପରି ଦିନରେ ଯେତେବେଳେ ନାଇଁ ସେତେବେଳେ ଆମକୁ ଆସି ବୁଝାଇବ ସତ୍ୟ ଆଉ ଅହିଂସା କଥା। ହିନ୍ଦୀ ତ କହନ୍ତି, ମୋରି ପରି! ଭଙ୍ଗା ଭଙ୍ଗା ହିନ୍ଦୀରେ କ'ଣ ସବୁ କହିଯାଏ। ସେଥିରୁ ଅଧେ କଥା ବୁଝାପଡ଼େ ନାହିଁ। କେବଳ ମଝିରେ ମଝିରେ କାନରେ ପଡ଼େ, ସତ୍ୟ, ଅହିଂସା ଆଉ ବାପୁଜୀ। ଏସବୁ ଲେକ୍‌ଚର୍ ଦେବା ପାଇଁ ହେଲେ, କଥକ ଗୋସେଇଁ ମାନଙ୍କ ପରି ମିଠା କରି କହିବା, ଶିଖିବା ପାଇଁ ପଡ଼ିବ। ଗାନ୍ଧିଜୀଙ୍କ ଆଶ୍ରମରେ ଏସବୁ ଶିଖାନ୍ତି ନାଁ କଣ ? ନାଁ—ବିଲୁତ ଥରେ ସାବରମତୀ ଆଶ୍ରମକୁ ଯାଇଥିଲା। ସେ ତ ସେପରି କଥା କୁହେ ନାଇଁ, ଆଚ୍ଛା, ଏତେ ଲୋକ ଥାଉଁ ଥାଉଁ ନର୍ମଦାବେନ୍ ମୋତେ କାହିଁକି ଏ ସବୁ କଥା ବେଶୀ କରି ଶୁଣେଇବାକୁ ଆସେ ? ସେ କଣ ଭାବେ ଯେ, ମୁଁ କଣ ସତ କଥା କହେ ନାଇଁ ? ଅନ୍ୟର ଗହଣାଗାଣ୍ଠି ଦେଖିଲେ, ହିଂସାରେ ଜଳି ମରେ ? ଆଲୋ ମତେ କ'ଣ ସେସବୁ କଥା ଶୁଣେଇବୁ ? ଆଜିକୁ କୋଡ଼ିଏ ବର୍ଷ ହୋଇଗଲା, ସେ କଥା ସବୁ ଶୁଣି ଶୁଣି କାନ ଫାଟିଗଲାଣି। କେତେ ବକ୍ତୃତା ଶୁଣିଲିଣି—ଆଉ ନର୍ମଦାବେନ୍ ଭାବୁଚନ୍ତି, ସିଏ ମତେ ନୂଆ କଥା ଶିଖାଉଚନ୍ତି। ... ପ୍ରଥମେ ନୂଆ ନୂଆ ଆଶ୍ରମ ହେବା ବେଳେ, ସିଏ ମତେ ଏସବୁ କଥା ବୁଝେଇବା ପାଇଁ କେତେ ଚେଷ୍ଟା କରନ୍ତି। ମୋ ମନ କିନ୍ତୁ ସେତେବେଳେ ବିଲୁ, ନୀଲୁ ଆଉ ସଂସାର ଉପରେ ପଡ଼ି ରହିଚି। ସେସବୁ କଥା ଜାଣିବା ପାଇଁ ମୋର ଇଚ୍ଛା ନାହିଁ, କିମ୍ବା ସେ କଥାସବୁ ମୁଁ ବୁଝିପାରେ ନାଇଁ। ଏ କାନରେ ଶୁଣି, ସେ କାନରେ ବାହାରିଯାଏ। ଲାଭ ଭିତରେ ମୋର, କେବଳ ଏତିକି ମନେହୁଏ, ଏଇ ସବୁ କଥା ଭିତରେ ତାଙ୍କର ଟିକିଏ ନିକଟରେ ହୋଇ ପାରୁଚି। ସିଏ ଚିରଦିନ, ଟିକିଏ ଗମ୍ଭୀର ପ୍ରକୃତିର ଲୋକ। ତାଙ୍କ ସାଙ୍ଗରେ କୋଉଦିନ କଣ ମନଖୋଲି କଥାବାର୍ତ୍ତା ହୋଇ ପାରିଚି ? ମନକୁ ଯୋଉ କଥା ଆସିଲା, ସେକଥା ସ୍ୱାମୀକୁ ନ କହିବା – ହସ ମାଡ଼ିଲେ ହସ ଚାପିବା, ସବୁବେଳେ କଣ ଗୋଟାଏ କରି ପକେଇଲିନି, ଏଇପରି ଭାବ – ଯେ କି ଯନ୍ତ୍ରଣାଦାୟକ, ଏକା ଭୁକ୍ତଭୋଗୀ ତା' ଜାଣନ୍ତି। ସିଏ ମୋତେ ଶିଖାଇବା ପାଇଁ ଆରମ୍ଭ କଲେ – ଚରଖା କଥା, ମହାତ୍ମାଜୀଙ୍କ କଥା ପଡ଼ିଲେ ହିନ୍ଦୁସ୍ଥାନୀ ମାନଙ୍କ ଆଗରେ କଣ କହିବା ପାଇଁ ପଡ଼ିବ। ଏ ଆଡ଼େ ତ ଆଉ "ଚରଖା ମୋର ସ୍ୱାମୀର ପୁଅ, ଚରଖା ମୋର ନାତି", ଏକଥା କେହି ବୁଝିବେ ନାହିଁ। –ଏଣେ ତ ଅନ୍ୟ କଥା କହିବା ପାଇଁ ପଡ଼ିବ। ସେଥିପାଇଁ ସିଏ ମତେ ହିନ୍ଦୀରେ କେତେ ଢ଼ଙ୍ଗ ଶିଖାଇଥିଲେ। ସିଏ

ସବୁଦିନେ କେତେ ଜାଗାରେ ଲୋକ୍‌ଚର୍ ଦିଅନ୍ତି; ସେଥିପାଇଁ ତାଙ୍କର ଏସବୁ ଢ଼ଗଢ଼ମାଳି ଦରକାର ପଡ଼େ। —କେବେକା କଥା ଭୁଲିଗଲିଣି। ଜଣେ ଥିଲା ଯେ, ତାର ଇଚ୍ଛା ହେଲା ଦ୍ୱିତୀୟ ପକ୍ଷ ବିବାହ ପାଇଁ। ସ୍ତ୍ରୀ ସ୍ୱାମୀର ଏ ମତଲବ ବୁଝି ପାରିଲା। ସିଏ କହିଲା "ଇଚ୍ଛା ହଉଚି ତ ବାହା ହୋଇପଡ଼। ମୋ ପାଇଁ ଭାବିବା ଦରକାର ନାହିଁ। ଚରଖା ତ ମୋ ସମ୍ବଳ ରହିଲା।" ଏମିତି ଆଉରି କେତେ ଗପ ସିଏ ମୋତେ ଶିଖେଇଥିଲେ। ସିଏ ଭାବିଥିଲେ, ମୁଁ ବୋଧହୁଏ ତାଙ୍କରି ପରି ଲେକ୍‌ଚର୍ ଦେଇ ବୁଲିବି। ପରେ, ଯେତେବେଳେ ସିଏ ବୁଝିଲେ, ଯେ, ମୋ ହାତରେ ଏସବୁ କିଛି ହବ ନାଇଁ, ଏସବୁ କେବଳ ପାଉଁଶରେ ଘିଅ ଢ଼ାଳିବା ସାଙ୍ଗେ ସମାନ, ସେ ମୋ ଉପରୁ ଆଶା ଛାଡ଼ିଦେଲେ। ମୁଁ ମଧ ହାଲ୍ ଛାଡ଼ି ବଞ୍ଚିଲି। ତୁମେ ସବୁ ଛାଡ଼ିଛୁଡ଼ି ଏ ବାଟରେ ଆସିଚ, ଭଲ କରିଚ, ବେଶ୍ କରିଚ, ମୁଁ ତ ସେଥିପାଇଁ ବାରଣ କରିନାହିଁ। ସାରା ଜୀବନ ମୋତେ କଷ୍ଟ ସହିବା ପାଇଁ ପଡ଼ିବ, ସେଥିପାଇଁ ମୁଁ ମଧ ତିଆର୍। ଜେଲ୍ ଯିବାକୁ କହିଲ, ଆସିଲି। ତା ବୋଲି ହାଟ ମଝିରେ "ପ୍ୟାରେ ଭାଇୟୋ" ସିଏ ମୋ ଦ୍ୱାରା ହବ ନାଇଁ। ତୁମ ଆଶ୍ରମର ସଂସାର ଚଳେଇବା, ପିଲାଙ୍କୁ ମଣିଷ କରିବା, ସିଏ ତ ପୁଣି ଗୋଟାଏ କାମ!

ରାମଗଡ଼ କଂଗ୍ରେସ ପୂର୍ବରୁ, ତୁମ କଥାରେ ପଡ଼ି, ବାଉନ୍‌ଖାମାକୁ ଯାଇଁ କି ଅପ୍ରସ୍ତୁତ! —ପାଟ୍‌ନାରୁ ଚିଠି ଆସିଲା, ଜଲ୍‌ଦି କେତେଜଣ ସ୍ୱେଚ୍ଛାସେବିକା ପଠାଅ। ଜୋର୍ ତାଗ୍‌ଦା। ଏବଠୁ ତମ ମାନଙ୍କୁ ଟ୍ରେନିଙ୍ଗ୍ ଦବା ପାଇଁ ପଡ଼ିବ, ନଇଲେ କଂଗ୍ରେସ ଅଧିବେଶନ ବେଳକୁ ସେମାନେ ତିଆର ହୋଇ ପାରିବେ ନାହିଁ। ମହାରାଷ୍ଟ୍ରରୁ ଜଣେ ଭଦ୍ରମହିଳା ଆସି ରାମଗଡ଼ରେ ବସି ରହିଚନ୍ତି, ସ୍ୱେଚ୍ଛାସେବିକା ମାନଙ୍କୁ ଟ୍ରେନିଙ୍ଗ୍ ଦେବା ପାଇଁ। ରାଜ୍ୟ ଗଲା। ମାନ ଇଜ୍ଜତ୍ ଗଲା। ଜିଲ୍ଲାର ଇଜ୍ଜତ୍ ଆଉ ରହିବ ନାଇଁ। ଜେଲ୍ ଯିବା ପରି ସ୍ତ୍ରୀଲୋକ ସାରା ଜିଲ୍ଲାରେ କହିବାକୁ ଗଲେ ପାଞ୍ଚଜଣ—ମୁଁ, ହରଦାର ଦୁବେଇନ୍, ବହୁରିଆଜୀ, ବୁଢ଼ୀ ହିୟାଧାନ, କାଙ୍ଗାର ସାର୍‌ଲା ଦେବୀ, ଆଉ ଚୋପଡ଼ାର ଖାଦ୍ରି ଦୁନିସା; ତାଙ୍କର ପୁଣି ଆଖିରେ ପରଳ ମାଡ଼ିଯିବାରୁ କେତେ ବର୍ଷ ହେଲା ସିଏ ଆଉ ଘରୁ ବାହାରୁ ନାହାନ୍ତି। ସରସ୍ୱତୀ ଏଥର ଆସିଚି... ସେତେବେଳେ ମତେ ହୁକୁମ୍ ହେଲା, କୋଡ଼ହା ଥାନାର ସବୁ କଂଗ୍ରେସ କର୍ମୀଙ୍କ ଘର ଘର ଯାଅ। ସେମାନଙ୍କ ଘରର ସ୍ତ୍ରୀଲୋକମାନଙ୍କ ଠାରୁ ଜୋର୍ କରି ସ୍ୱେଚ୍ଛାସେବିକା ପ୍ରତିଜ୍ଞାପତ୍ରରେ ଦସ୍ତଖତ କରେଇ ଆଣିବାକୁ ପଡ଼ିବ। ପୁରୁଷଲୋକେ କେବଳ ଗଲେ ହେବ ନାଇଁ। ତୁମ ମାନଙ୍କୁ ମଧ ଯିବା ପାଇଁ ପଡ଼ିବ। ...ଯୋଉମାନେ ଯିବେ, ସେମାନେ ଫାଙ୍କି ଦେଇ, ବିନା ପଇସାରେ କଂଗ୍ରେସ ଦେଖିପାରିବେ, ବୟସର କୌଣସି ବନ୍ଧନ ନାହିଁ, ବୟସ ବେଶୀ ହୋଇଥିଲେ ସେମାନଙ୍କୁ ଖୁବ୍ ହାଲୁକା କାମ ଦିଆଯିବ, ଅନ୍ୟ ସ୍ୱେଚ୍ଛାସେବକ ମାନଙ୍କର ପିଲାଛୁଆ ସମ୍ଭାଳିବା, ଭଣ୍ଡାର ଚାବି ରଖିବା, କିମ୍ବା ସେଇପରି ସବୁ କାମ! ଏଇପରି କେତେ ଛୋଟ ଛୋଟ ଉପଦେଶ ସିଏ ଯିବାବେଳେ ମୋତେ ଦେଇଗଲେ। ଭଲ୍ୟୁଣ୍ଟିଅର୍ ମିସ୍ତ୍ରୀ ମୋତେ ତ ଶଗଡ଼ରେ ବସାଇ ବାଉନ୍‌ଖାମା ନେଇ ଆସିଲା। ଖରାବେଳ, ପଡ଼ାର ସବୁ ମାଇପେ ଝା—ଜୀଙ୍କ ଘର ଅଗଣାରେ ରୁଣ୍ଡ ହୋଇଚନ୍ତି। ମୁଁ ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା କରୁଚି—କଂଗ୍ରେସ ସ୍ୱେଚ୍ଛାସେବିକା ହେବା କଥା। ସମସ୍ତେ ମୋତେ ନାନା ରକମ କଥା ପଚାରୁଛନ୍ତି—ଜୋତା ନ ପିନ୍ଧିଲେ ଚଳିବ କି ନାଇଁ, ଘୋଡ଼ା ଚଢ଼ିବା ଦରକାର କି ନୁହେଁ,

ସିନ୍ଦୁର ଲଗାଇବା ଆଉ ରବିବାର ପାଳିବା ବାରଣ କି ନୁହେଁ, ଆଉରି କେତେ ପ୍ରକାରର ଅବାନ୍ତର ପ୍ରଶ୍ନ। ତା'ପରେ କେତେଜଣ ରାଜି ହେଲେ—ଅବଶ୍ୟ ଯଦି ସେମାନଙ୍କ ପୁରୁଷମାନଙ୍କର କୌଣସି ଆପତ୍ତି ନଥାଏ, ସେଇ ସର୍ତ୍ତରେ। ସେଇଠୁ ଧାଇଁଲି ଘରର ମୁରବୀ ମାନଙ୍କ ପାଖକୁ। ସମସ୍ତଙ୍କ ସାଙ୍ଗରେ ମୋଟାମୋଟି ଭାବରେ ଆଗରୁ ଜଣାଶୁଣା ଥିଲା। ଅନେକ ଥର ସେମାନେ ଆସି ଆଶ୍ରମରେ ରହିଚନ୍ତି। ସେମାନେ ସୁଦ୍ଧା ପ୍ରଥମେ ଥଙ୍ଗ ଥଙ୍ଗ ହେଉଥିଲେ, ପରେ ଜଣେ ଯେମିତି ରାଜି ହୋଇଗଲା, ସମସ୍ତେ ସେଇଠୁ ରାଜି ହୋଇଗଲେ। ମୁଁ ପ୍ରତିଜ୍ଞାପତ୍ର ଗୁଡ଼ାକୁ ଧରି ଘର ଭିତରକୁ ଆସିଲି, ସେଥିରେ ଦସ୍ତଖତ୍ କରାଇବା ପାଇଁ। କାଳି ଆସିଲା, କଲମ ଆସିଲା, କେତେଜଣ ଦସ୍ତଖତ ଟିପସହି ଦେଲେ। ଝା—ଜୀଙ୍କ ଝିଅ ଶକୁନ୍ତଳା, ଫାରମ୍‌ରେ ଦସ୍ତଖତ କରିବା ଆଗରୁ କାଗଜଟାକୁ ଜୋର୍‌ରେ ପଢ଼ିଗଲା— ''ମେଁ ଦେଶ୍‌କା ବାସ୍ତେ ହର୍ ତର୍‌ହିକୀ କୁର୍ବାନୀକେ ଲିୟେ ତୟାର୍ ହୁଁ।'' (''ମୁଁ ଦେଶ ପାଇଁ ସବୁପ୍ରକାର ତ୍ୟାଗ କରିବାକୁ ପ୍ରସ୍ତୁତ ଅଛି।'') ''ଆଁ ! କୁର୍ବାନୀ କଣ ? ଏଇଟା ତ ଠିକ୍ ବୁଝି ପାରିଲୁ ନାହିଁ। ଆଚ୍ଛା, ବଙ୍ଗାଳୀ ମାଇଜୀ ଦେଶ ପାଇଁ ସବୁ ରକମର କୁର୍ବାନୀ କରିବୁ, ଏ କଥାଟା ଲେଖେଇ ନେବା ତାଙ୍କର କ'ଣ ଠିକ୍ ହେଲା ?'' ପ୍ରଥମେ ସମସ୍ତେ ଥଣ୍ଡା ଥିଲେ। ବେଲ୍‌ଗରାମିୟାର ନାନୀ ପ୍ରଥମେ ଟିକିଏ ରାଗିଯାଇଁ ମୋତେ କହିଲେ, ''ଆମେ ମହାତ୍ମାଜୀ ଫହାତ୍ମାଜୀ ବୁଝୁ ନାଇଁ। ଇଏ ତୁମର କେମିତି କଥା ? ତୁମେ ସବୁ ମୁସଲମାନ୍ ହବାକୁ ଚାହୁଁଚ ତ ହୁଅ, ଆମ ଜାତି ନେଇ ଟଣା ଟଣି କାହିଁକି ? ଏଇଥିପାଇଁ ତୁମେ ଆଶ୍ରମରୁ ଏତେ ବାଟ ଧାଇଁ ଆସିଚ ?'' ସମସ୍ତେ ମତେ ଝୁଣି ପକାଇଲେ। ମତେ ବି'ଏ କଥାର କୌଣସି ଜବାବ ଜୁଟିଲା ନାଇଁ। ସତରେ ତ ଏଥିରେ କୁର୍ବାନୀ କଥା ଲେଖା ରହିବ କାହିଁକି ? ଆସିବା ଆଗରୁ ସିଏ ଏତେ କଥା ବୁଝେଇଲେ, ଆଉ ଏଇ କଥାଟା ବୁଝେଇ ପାରିଲେ ନାହିଁ ? ବୋଧହୁଏ ହିନ୍ଦୁଙ୍କ ପାଇଁ ପ୍ରତିଜ୍ଞାପତ୍ର ବଦଳରେ ମୁସଲମାନଙ୍କ ପ୍ରତିଜ୍ଞାପତ୍ର ଆସିଯାଇଚି। ସେତେବେଳକୁ ମୋ ଦେହରୁ ଗୋଟାପଣେ ଝାଳ ବୋହିଗଲାଣି। ସେମାନଙ୍କୁ ବୁଝେଇଲି, ମୁଁ ତ ଆଉ ହିନ୍ଦୀ ଜାଣେ ନାଇଁ, ବୋଧହୁଏ କାଗଜ ବଦଳି ଯାଇଥିବ। ସେମାନଙ୍କ ରାଗ ତଥାପି କଣ କମିଲା ? ତା'ପରେ ବାହାରକୁ ଆସି ଝା—ଜୀଙ୍କୁ କହିଲି, ''ଅନ୍ୟ ପ୍ରତିଜ୍ଞାପତ୍ର ଆଣି ଆଉ ଦିନେ ଆସିବା ପାଇଁ ପଡ଼ିବ।'' ଝା—ଜୀ ପ୍ରତିଜ୍ଞାପତ୍ର ପଢ଼ି ତ ହସି ହସି ବେଦମ୍। ସିଏ କହିଲେ, ''ଇଏ ତ ଠିକ୍ ଲେଖାଯାଇଚି। ହିନ୍ଦୀରେ କୁର୍ବାନୀ ମାନେ ତ୍ୟାଗ।'' ଦେଖିଲ ଇଏ କେମିତି କଥା ? କୁର୍ବାନୀ କୋଉଠି, ତ୍ୟାଗ କୋଉଠି ? ମୁଁ କଣ ଏତେ କଥା ବୁଝିଚି ? ମୁଁ ସିନା ନ ଜାଣିଲି, ଏତେ ମାଇପେ ଥିଲେ; କେହି ଜାଣି ପାରିଲେ ନାହିଁ ? ଯୋଉମାନଙ୍କ ପାଇଁ ଲେଖା, ସେମାନେ ତ ବୁଝିଲେ ନାଇଁ, ତେବେ କି ଲେଖିବା ଦରକାର ? ସେ ଦିନର କାମ ତ କୌଣସିମତେ ଶେଷ ହେଲା। ମୁଁ ଆଶ୍ରମକୁ ଫେରିଆସି କହିଲି, ''ଏଇ ରହିଲା ତମ କାଗଜ ! ଆଉ ଯଦି କୋଉ କଂଗ୍ରେସ କାମରେ ବାହାରକୁ ଯାଇଚି ! ଏ କାମ ପାଦରେ ଶତକୋଟୀ ଦଣ୍ଡବତ !'' ନୀଲୁ ଏଥିପାଇଁ ମୋତେ କେତେ ଥଟ୍ଟା କରେ।

ସତ୍ୟାବତୀଜୀଙ୍କ ଛୁଆଟା କାନ୍ଦୁଚି—''ବାଙ୍ଗାଜୀ, ବାଙ୍ଗାଜୀ।'' ମତେ ଡାକେ ବାଙ୍ଗାଜୀ। ମତେ ଭାରି ଆଦରି ଯାଇଚି। ଦିନରାତି ମୋ ପାଖେ ପାଖେ ନସରପସର

ହେଉଥିବ—ମତଲବ କୋଳକୁ ଆସି ବସିବ। ଖୁବ୍ ଦୁଷ୍ଟାମୀ କଲେ, କଥା ନ ଶୁଣିଲେ, ତା ମା' ତାକୁ ମୋ ପାଖରେ ଛାଡ଼ି ଦେଇଯାଏ। ମୋ କୋଳକୁ ଆସିବା ମାତ୍ରେ ଚୁପ୍ ଚାପ୍। ଛୁଆଟାକୁ ନେଇ ଆସିଲେ ହୁଅନ୍ତା। ମନ୍‌ଚିୟା କେତେବେଳୁ ଶୋଇ ପଡ଼ିଲାଣି। ଅବିକା ସିଏତ ଉଠିବ ନାଇଁ। ଡିଉଟୀ ଅବିକା ଗଲ୍‌କଚ୍ଚୀର। ସେଇଟାକୁ ବି ତ ଦେଖୁଚି, ପଙ୍ଖା ହାତରେ ଧରି, ପାଖରେ ବସି ଡୁଳାଉଚି। ସାରାଦିନ "ଡାଲିରୁ ଖୁଦବଛା" କମାଣ୍ଡରେ କାମ କରି ସିଏ ଥକି ପଡ଼ିଚି। ସାରା ରାତି ସିଏ କଣ ଆଉ ଚେଇଁ ପାରିବ? ଜେଲ୍‌କୁ ଆସିଚି ବୋଲି, ଘରେ ତ ଆଉ ନିଦକୁ ରଖି ଦେଇ ଆସି ନାହିଁ! କ'ଣ ବା ଦୋଷ କରିଥିଲା ? ଲକ୍ଷ୍ମୀଛଡ଼ା ସ୍ୱାମୀର ଅତ୍ୟାଚାରରେ ଜର୍ଜରିତ ହୋଇ, ସିଏ ଯାଇଥିଲା ଆତ୍ମହତ୍ୟା କରିବା ପାଇଁ। ଖୁରରେ ନିଜ ବେକଟାକୁ ନିଜେ କେମିତି କାଟିଥିଲା, ଭାବିଲେ ଦେହ ଶୀତେଇ ଉଠେ। ଏବେ ସୁଦ୍ଧା ତା ବେକକୁ ଅନାଇଁ ହୁଏ ନାହିଁ। ଘା ଟା କେବେଠୁ ଶୁଖିଗଲାଣି। କିନ୍ତୁ କଣ୍ଠନଳୀଟା ଏତେ ଖଣ୍ଡେ ଆଁ କରି ରହିଛି। ନଳୀ ଭିତରଟା ଦେଖା ଯାଉଚି। ଏଇ କଟା ଅଂଶଟା ଉପରେ ଚବିଶ ଘଣ୍ଟା ଖଣ୍ଡେ ଗାମୁଛା ବାନ୍ଧି ରଖିଥାଏ। ଗାମୁଛା ନ ବାନ୍ଧିଲେ, କଥା କହିବା ବେଳେ ଫୁସ୍ ଫୁସ୍ କରି ତା ଭିତରୁ ହାୱା ବାହାରି ଯାଏ, ଖାଇବା ବେଳେ ତା ଭିତରୁ ଖାଇବା ଜିନିଷ ବାହାରି ଆସେ। ଗାମୁଛା ବନ୍ଧା ଥାଇ ବି, ପାଣି ପିଇବା ବେଳେ ଗାମୁଛାଟା ଅଳ୍ପ ଓଦା ହୋଇଯାଏ। ପୋଡ଼ାକପାଳୀର କପାଳ! ମରିଥିଲେ ନିଜେ ବଞ୍ଚିଥାନ୍ତା, ସ୍ୱାମୀଟା ବି ଶାନ୍ତିରେ ରହିଥାନ୍ତା! ହେଲେ ସିଏ ମଲା ନାହିଁ କି କିଛି ହେଲା ନାହିଁ। ମଝିରେ କେବଳ ଆତ୍ମହତ୍ୟା ଚେଷ୍ଟା ପାଇଁ ବର୍ଷେ ଜେଲ ଭୋଗିବା ସାର ହେଲା। କ'ଣ ଯେ ଏମାନଙ୍କ ଆଇନ! ନିଜ ପ୍ରାଣ ଉପରେ ବି ଅଧିକାର ନାଇଁ! ଯିଏ ମରିବାକୁ ଚାହେଁନା ତାକୁ ଦିଅନ୍ତି ଫାଶୀ; ଆଉ ଯିଏ ବଞ୍ଚିବାକୁ ଚାହେଁନା, ତାକୁ ନେଇ ଆସନ୍ତି ଜେଲ୍‌କୁ।

ଛୁଆଟା ରଡ଼ି ଛାଡ଼ି ଚିତ୍କାର କରୁଚି। ଛୁଆଟାର ଗଳା ଫାଟିଗଲା ;— ତା ମା'ର କି ଅକଲ୍ କୁହତ! ଆହା, ଛୁଆଟା ଦିନସାରା ଆଜି ମୋ ପାଖକୁ ଆସି ପାରି ନାହିଁ। ସତ୍ୟାବତୀଜୀ କହୁଛି— "ଲାଡ଼ଲୀ ବାଙ୍ଗାଜୀକେ ପାଶ୍ ଯ୍ୟାଉନ୍ କୀ"— ବାଙ୍ଗାଜୀ ପାଖକୁ ଯିବୁ କି ଲାଡ଼୍‌ଲୀ — "ବାଙ୍ଗାଜୀ ଦିହ ଆଜି ପରା ଖରାପ! କାଲି ସକାଳେ ଯିବୁ। ଦିହ ଖରାପ ଥିଲେ କାହାପାଖକୁ ଯାଉ ନାଁ କଣ?" ପିଲାଟା ଅଳ୍ପସମୟ ଚୁପ୍ ରହି କଥାଗୁଡ଼ା ବୁଝିବା ପାଇଁ ଚେଷ୍ଟା କରୁଚି। ତା'ପରେ ପୁଣି ଆରମ୍ଭ ହେଲା କାନ୍ଦ। "ବାଙ୍ଗାଜୀ....."। ସତ୍ୟାବତୀ ପିଲାଟା ଉପରେ ରାଗିଗଲା। "ହେଇ ଦେଖ ସେଠି ଗଲକଚ୍ଚି ବସିଚି। ଧରି ନେଇଯିବ।" ପିଲାଟା ଚୁପ୍ ହୋଇଗଲା। ବୋଧହୁଏ ଭୟରେ। ପୁଣି ଆରମ୍ଭ ହେଲା ରାହାଧରା ଚିତ୍କାର— "ବାଙ୍ଗୀଜୀ—ଇ"... ବାବାରେ, କି ଜିଦ୍ ଏ ପିଲାଟାର। ଏଇ ମେଞ୍ଚଡ଼ ପିଲାଟାର ଏତେ ଜିଦ୍। —ଠୋ ଠୋ କରି ସତ୍ୟାବତୀ ପିଲାଟାକୁ ମାରୁଚି। ମା'ଟାର କଣ ଟିକିଏ ଦୟାମାୟା ନାହିଁ? ଗଲକଚ୍ଚି, ହେ ଗଲକଚ୍ଚି, ଲାଡ଼୍‌ଲୀକୁ, ଜଲ୍‌ଦି ଏଠିକୁ ନେଇଆ'ତ! ଗଲକଚ୍ଚି ଭଙ୍ଗା ଭଙ୍ଗା କଣ୍ଠରେ ଉତ୍ତର ଦେଲା, "ସେ ପିଲା ମୋ ପାଖକୁ ଆସିବ ନାଁ କଣ?" ଗଲକଚ୍ଚି ଟା କି କୋଢ଼ି। ନିଦ ମାଡୁଚି, ଉଠିବାକୁ ଇଚ୍ଛା ନାହିଁ—ଗୋଟାଏ ପେଖନା ବାହାରିଲା। ମୁଁ ଗଲକଚ୍ଚିକୁ ଡାକିବା ଶୁଣି, ବହୁରିଆଜୀ, କମ୍‌ଲା ସମସ୍ତେ ଆସି ପଚାରିଲେ..." କଣ କହୁଚନ୍ତି? ପାଣି ପିଇବେ

କି ?'' ଏଇରେ ! କାହିଁକି ମରିବା ପାଇଁ ଗଳକଟିକୁ ଡାକିଲି ? ଏମାନେ ସମସ୍ତେ ଚୁପ୍ ହୋଇ ଚେଇଁ ବସିଚନ୍ତି; ସେ କଥା କଣ ଜାଣିଚି ? ସତରେ ତ ଗଳକଟିକୁ ଦେଖିଲେ ଡରରେ ପିଲାଟା କାଠ ହୋଇଯାଏ ! ଲୁସି ଜମାଦାରାଣୀ ପାଖରୁ ଆମ ୱାର୍ଡ଼ର ସମସ୍ତେ ଲୁଗାକଚା ସାବୁନ୍ ବଦଳ ଦେଇ ମଝିରେ ମଝିରେ ବିଡ଼ି ନିଅନ୍ତି। ଆଉ ଗଳକଟିକୁ ସେଇ ବିଡ଼ି ଟାଣିବାକୁ ଦେଇ, ସମସ୍ତେ ମଜା ଦେଖନ୍ତି ! କଟା ଗଳା ଭିତରୁ କେମିତି ଧୂଆଁ ବାହାରୁଚି ! ଗଳକଟିକୁ ଚାରିଖଣ୍ଡ ବିଡ଼ି ଦେଲେ, ସିଏ ଥରେ ବେକରୁ ଗାମୁଛା ଫିଟେଇ ଧୂଆଁ ବାହାର କରି ଦେଖାଇବ ! ଲାଙ୍ଗଲୀ କିନ୍ତୁ ଏ ଦୃଶ୍ୟ ଦେଖିଲେ ଭୟରେ ନେଳୀ ପଡ଼ିଯାଏ। ଆଉ ମତେ କୁଣ୍ଡାଇ ଧରେ। ଆରେ ସିଏ ତ ପିଲା, ଅନେକ ବଡ଼ ମଣିଷ ସୁଦ୍ଧା ସେ ଦୃଶ୍ୟ ଦେଖିଲେ, ଭୟରେ ଥରିଯିବେ।

ମୋ ଠୁ କୌଣସି ଉତ୍ତର ନ ପାଇ ବହୁରିଆଜୀ ଗଳକଟିର ତୁଳା ଭଙ୍ଗାଇ ପଚାରିଲେ ...'' ବଙ୍ଗାଳୀ ମାଇଜୀ କଣ କହୁଥିଲେ ସେ ?''

''ମାଇଜୀ କହୁଥିଲା ଲାଙ୍ଗ୍‌ଲୀକୁ ଆଣିବା ପାଇଁ।''

''ସେ କଥା କଣ କହିବା ପାଇଁ ପଡ଼ିବ ! ମୁଁ ନେଇ ଆସୁଚି ତାକୁ। ତୁ ଏଠି ରହିଲେ ସେ ପିଲା ଏଠିକି ଆସି ବି କାନ୍ଦିବ ! ଲାଙ୍ଗ୍‌ଲୀ ଶୋଇ ପଡ଼ିଲେ, ଏଠି ଆସି ପୁଣି ବସିବୁ।''

ଗଳକଟି ନିଃଶ୍ୱାସ ପକାଇ ଯେମିତି ବଞ୍ଚିଲା। ବହୁରିଆଜି ପିଲାଟାକୁ ଆଣି ମତେ ଦେଇଗଲେ। ଲାଙ୍ଗ୍‌ଲୀ ମୋ ବେକକୁ କୁଣ୍ଢେଇ ଧରିଲା। ଶୋଇବୁ, ଶୋଇପଡ଼, ମୁଁ ବିଞ୍ଚି ଦଉଚି। ରାତି ଅଧରେ ସୁନା ପିଲାମାନେ ଚେଇଁ ରହନ୍ତି ନାଁ କଣ ? ଲାଙ୍ଗ୍‌ଲୀ ମୋ କଥା କେମିତି ମାନେ କେଜାଣି ! କୁଆଡ଼େ ଗଲା କାନ୍ଦ, କୁଆଡ଼େ ଗଲା ଜିଦ୍, ଲାଙ୍ଗ୍‌ଲୀ ମୋ ଛାତି ଉପରେ ମୁହଁ ମାଡ଼ି ଶୋଇ ପଡ଼ିଲା। ସେଇ ଶୋଇବା ଅବସ୍ଥାରେ ନର୍ମଦା ବେନ୍ ଦେଇଥିବା ଗୋଟାଏ ଫୁଲ ମୁଁ ତା ହାତରେ ଗୁଞ୍ଜି ଦେଲି। ଆଉ କହିଲି କାଲି ସକାଳେ, ଆଉରି ଫୁଲ ଦେବି। ହାତରୁ ସିଏ ଫୁଲଟା ଫିଙ୍ଗି ଦେଲା। ତାର ଅବିକା ଫୁଲ ଦରକାର ନାଇଁ, କିଛି ଦରକାର ନାଇଁ। ସିଏ ଯାହା ଚାହୁଁଥିଲା, ତା ପାଇଛି। ଟିକିଏ ନ ବିଞ୍ଚିଲେ ମଶାଗୁଡ଼ା ପୁଣି ଝୁଣି ପକାଇବେ। ଏତେ ବେଳ ଯାଏ, ସେ ସାହସ କରି ପାରୁ ନଥିଲା—କାଳେ ମୁଁ ପୁଣି ରାଗିଯିବି ! ଆଚ୍ଛା ଏ ପିଲାଟା ମୋତେ ଭଲପାଏ ବୋଲି ସତ୍ୟାବତୀ ମୋ ଉପରେ କ'ଣ ବିରକ୍ତ ହୁଏ ? ସେପରି ତ ମନେ ହୁଏ ନାଇଁ। ତା' ହେଲେ ଜିତେନ୍ ମା–ଦିଦିଙ୍କ ଉପରେ ମୁଁ ବିରକ୍ତ ହୁଏ କାହିଁକି ? ମୋ ଅପେକ୍ଷା ସତ୍ୟାବତୀଜୀଙ୍କ ମନଟା ତାହେଲେ ଅନେକ ଭଲ କହିବା ପାଇଁ ପଡ଼ିବ। ମିଛରେ କଣ ନର୍ମଦା ବେନ୍ ମତେ ଶୁଣାଇ ଶୁଣାଇ ଅହିଂସାର ନୀତି ଝାଡ଼େ ? ବହୁରିଆଜି ବି ଲାଡ଼ଲୀଟାକୁ ଭାରି ଭଲପାଏ। ତା ଛୋଟ ଝିଅ ଲଜ୍ଜ୍ୟା ଆଉ ଲାଡ୍‌ଲୀ ଖୁବ୍ ସାଙ୍ଗ ଥିଲେ ତ ! ଲଜ୍ଜାର ବୟସ ଥିଲା ପାଞ୍ଚ ଖଣ୍ଡେ। କିନ୍ତୁ ମା'କୁ ଛାଡ଼ି ସେ ରହି ପାରେ ନାହିଁ। ଗିରଫ ହେବା ପରେ ବହୁରିଆଜୀର ଇଚ୍ଛା ଥିଲା, ଲଜ୍ଜ୍ୟା ଯେପରି ତା' ଚାଚୀ ପାଖରେ ରହେ। ସେ ଝିଅ କିନ୍ତୁ କୌଣସିମତେ ମା' କାନି ଛାଡ଼ିବ ନାଇଁ। ମହା ମୁସ୍କିଲ୍। ଏଣେ ତିନି ବର୍ଷରୁ ଉପର ଝିଅକୁ ଜେଲ୍ ଭିତରକୁ ଆଣିବାର ଉପାୟ ନାହିଁ। ଦାରୋଗା ବି କହିଲା, ପିଲାଟାକୁ ଛାଡ଼ି ଆସନ୍ତୁ। ଦାରୋଗା ସାଙ୍ଗରେ ସେତେବେଳେ ଲାଗିଲା ବହୁରିଆଜୀର ଝଗଡ଼ା।

କହିଲା, ''କିଏ କହୁଚି ଆ ବୟସ ତିନି ବର୍ଷରୁ ବେଶୀ ? ମାପି ଦେଖ । ଦେଢ଼ ହାତ ଉଞ୍ଚ ଝିଅର ବୟସ କେବେ ପାଞ୍ଚବର୍ଷ ହୋଇପାରେ ? ତାକୁ ସାଙ୍ଗରେ ନେବା ପାଇଁ ନ ଦେଲେ, ଦେଖିବି କେମିତି ନେବ ମୋତେ ! ସ୍ୱରାଜ ଭଲ୍ୟାଣ୍ଟିଅର୍ ମାନଙ୍କୁ ଲଗେଇ ତମକୁ ଗିରଫ କରିନେବି !'' ଦାରୋଗା ସାହେବ ଭାବିଲେ ଏସବୁ ଜଞ୍ଜାଳରେ ଦରକାର କଣ ? ଲଜ୍ୟା ସହିତ ତାକୁ ଆଣି ଜେଲ୍‌ରେ ପୁରେଇଲେ । ଦିନରାତି ଲଜ୍ୟା ଆଉ ଲାଙ୍ଗ୍‌ଲୀ ଏକା ସାଙ୍ଗରେ ଖେଳନ୍ତି । ଖେଳ ଆଉ କଣ ? — ଲଜ୍ୟାଟା ଲାଙ୍ଗ୍‌ଲୀକୁ କୋଳରେ କାଖରେ ଧରି ବୁଲେ । ଏଠି ତ ଆଉ ବେଶୀ ସାଙ୍ଗ ସାଥୀ ନାହାନ୍ତି । ଖେଳିବାକୁ ହେଲେ, ଅନ୍ୟ ୱାର୍ଡ଼ର୍ ଛୋଟ ଲୋକମାନଙ୍କର ଖରାପ ପୁଅଝିଅଙ୍କ ସାଙ୍ଗରେ ଖେଳିବା ପାଇଁ ପଡ଼ିବ । ସେମାନଙ୍କଠି ପୁଣି ନାନା ପ୍ରକାର ଖରାପ ରୋଗ ! ଚବିଶଘଣ୍ଟା ନିଜ ନିଜ ଭିତରେ ଗାଳିଗୁଲଜ ହୁଅନ୍ତି । ସେମାନଙ୍କ ସାଙ୍ଗରେ କଣ ଆମ ପୁଅଝିଅଙ୍କୁ ଛାଡ଼ି ଦେଇପାରେ ? ସେଥିପାଇଁ ଆମେ ସମସ୍ତେ ଅଷ୍ଟପ୍ରହର ସେମାନଙ୍କୁ ଆଖି ନଜର୍‌ରେ ରଖୁଥିଲୁ । ଆହାରେ ! ଝିଅଟା କେଇଦିନ ରକ୍ତ ଆମାଶୟ ଭୋଗି ମରିଗଲା ! ମା'ର ପ୍ରାଣ ତ ! ବହୁରିଆଙ୍କୀର କି ଦୁଃଖ, କି କନ୍ଦାକଟା ! ଛାତି ପିଟି ହୁଏ — ଆଉ କହେ, ତାକୁ ଯଦି ସାଙ୍ଗରେ ଆଣି ନଥାନ୍ତି, ତା'ହେଲେ ଲଜ୍ୟାର ମୋର ଏ ଦଶା ହୋଇନଥାନ୍ତା ! ଲାଙ୍ଗ୍‌ଲୀଟା ବି ଲଜ୍ୟା ମରିବା ପରଠୁ ଦିନୁ ଦିନ ଶୁଖି ଯାଉଚି । ଜେଲ୍‌ରୁ ପିଲାଟା ଅଧସେର ଦୁଧ ପାଏ । ସିଏ ପୁଣି ଜେଲ୍ — ଦୁଧ । ଲହୁଣୀ କାଢ଼ି, ମଇଁଷୀ ଦୁଧରେ ପାଣି ମିଶାଇ କଣ୍ଟ୍ରାକ୍ଟର୍ ନେଇଆସେ । ତା'ପରେ ଗେଟ୍‌ରେ, ଗୋଦାମରେ, ୱାର୍ଡ଼ରେ ଯେତେ ଜାଗା ଦୁଧ ଦେଇ ଆସେ, ସବୁଠି ୱାର୍ଡ଼ର୍ ମେଟ୍, ପହରା, କୟଦୀ ସମସ୍ତେ ସେଥିରୁ ଗିଲାସେ ଗିଲାସେ ଦୁଧ ନେଇ, କଞ୍ଚା ଢ଼କ୍ ଢ଼କ୍ କରି ପିଇଯାନ୍ତି । ଇଏ ଏକା ଥରେ ବନ୍ଧା ନିୟମ । ଏଥିରେ ଲୁଚାଛପା କିଛି ନାହିଁ । କେବଳ ଗୋଟାଏ ବାଧ୍ୟବାଧକତା ଅଛି, ଯିଏ ଗିଲାସେ ଦୁଧ ନେବ, ତାକୁ ମେହେନତ୍ କରି ଡ୍ରମରୁ ଗିଲାସେ ମାପର ପାଣି ଆଣି ଦୁଧରେ ମିଶାଇବାକୁ ପଡ଼ିବ । ସେ ଦୁଧ ଏଠି ଆସି ପହଞ୍ଚିବା ବେଳକୁ, ଏପରି ଜିନିଷ ହୋଇଥାଏ ଯେ, ତାକୁ ପିଇ ପିଲା ଛୁଆ ଆଉ ବଞ୍ଚି ପାରନ୍ତି ନାହିଁ । ଛୋଟ ପିଲାମାନଙ୍କୁ ଜେଲ୍‌ରୁ ନାଁ ଦିଅନ୍ତି ଜାମା କପଡ଼ା, ନାଁ ଦିଅନ୍ତି ଖାଇବା ଜିନିଷ । ସେମାନେ ବୋଧହୁଏ ଭାବନ୍ତି, ଯେଉଁମାନେ ଦୁଧ ଛାଡ଼ା ଅନ୍ୟ ଜିନିଷ ଖାଇ ଶିଖିଚନ୍ତି, ମା ସାଙ୍ଗରେ ସେମାନଙ୍କର ଆସିବା ଦରକାର କଣ ? ସୁନ୍ଦର, ପରିଷ୍କାର ଉତ୍ତର . . . .

ଆହା ପିଲାର ପେଟଟା ଏକା ଥରେ ଲାଗି ଯାଉଚି । କାଇଁକି, ରାତିରେ ମା ଛୁଆକୁ ଖୁଆଇ ନାହିଁ ନାଁ କଣ ? ମୋ ଖାଇବା ତ ମୁଣ୍ଡ ପାଖରେ ରଖିଦେଇ ଯାଇଚି । ଖାଇବାକୁ କିଛି ଦେବି ନାଁ କଣ ? ନାଁ ଥାଉ, ସେସବୁ ଖାଇ ସିଏ ପୁଣି ବେମାର ପଡ଼ିବ, ସେତେବେଳେ ତା ଝାମେଲା ସମ୍ଭାଳୁ ସମ୍ଭାଳୁ ତା' ମା' ଅତିଷ୍ଠ ହୋଇ ପଡ଼ିବ । କି ନରମ ଦେହ ! ବିଲୁ ଛୋଟ ଥିବା ବେଳେ, ଏମିତି କୋଳରେ ଶୋଉଥିଲା । ଶ୍ୱଶୁରଙ୍କ କୋଳରେ ବସାଇ, ସେଇ ଫଟୋଟା ଯେତେବେଳେ ଉଠା ଯାଇଥିଲା, ସେତେବେଳେ ସେ ପ୍ରାୟ ଏଡ଼ିକି ବଡ଼ ଥିଲା । ସିଏ କୌଣସି ମତେ ଚୁପ୍ ହୋଇ ବସିବ ନାହିଁ । ଦୂରରୁ ମୁଁ ତାକୁ ଖଣ୍ଡେ ମିଶ୍ରି ଦେଖାଇଲି । ସେଇ ମିଶ୍ରି ଖଣ୍ଡକ ଦେଖି, ସିଏ ଯେତେବେଳେ ଆନନ୍ଦରେ ମସ୍‌ଗୁଲ୍, ଦିଅର ନିତାଇ ସେତିକିବେଳେ ତା ଫଟୋଟା ଉଠାଇନେଲେ । ସିଏ

କଣ ଆଜିକା କଥା ? ବେମାରୀ ପରେ କି ରୋଗା ହୋଇଯାଇଥିଲା । ଚବିଶ ଘଣ୍ଟା ଖାଲି ଖାଇବି, ଖାଇବି– ତା ବୋଲି କେଁ କେଁ ହୋଇ କାନ୍ଦିବା ଅଭ୍ୟାସ ତା'ର ନଥିଲା । ମୁଁ ତାକୁ ହୁଏତ ତକ୍ତପୋଷ ଉପରେ ବସାଇ ଭଣ୍ଡାରଘର କି ରନ୍ଧାଘରେ କୌଣସି କାମରେ ଅଟକି ଯାଇଚି, ସେ ଆଡୁ ଫେରି ଦେଖେ ଆଖି ଲୁହରେ ପୁଅର ଛାତି ଓଦା ହୋଇ ଯାଇଛି । ତଳ ଓଠଟା ଟିକିଏ ପଦାକୁ ବାହାରି ପଡ଼ି କମ୍ପି କମ୍ପି ଉଠୁଚି । ମୋତେ ଦେଖି ପୁଅର କି ଅଭିମାନ !'' ଆସିବାରେ ମୋର ଡ଼େରି ହେଲା ବୋଲି କାନ୍ଦୁଚୁ ? ମରି ଯାଏଟି – ବିଲୁ ମୋର ସୁନା ପିଲା !'' ଏଇଆ କହି ତା' ମୁଣ୍ଡ ଛାତି ଉପରକୁ ଟାଣି ଆଣେ ! ସାଙ୍ଗେ ସାଙ୍ଗେ ପୁଅ ମୋର ଥଣ୍ଡା– ମଝିରେ ମଝିରେ ଖାଲି କୋହର ଶବ୍ଦ । ଏବେ ବି ଯେପରି ସେଇ କୋହର ଗରମ ନିଃଶ୍ୱାସ, ରହି ରହି ଗଳା ପାଖରେ ଲାଗି ଯାଉଚି । ଲାଙ୍ଗ୍‌ଲୀ, ତୁ ପିଲାଦିନର ମୋର ସେଇ ବିଲୁ ନାଁ କଣ ? ତୋ ନରମ ଦେହଟାକୁ ସେମିତି ଦଳି, ଚିପି ଦେବି ନାଁ କଣ ? ନାଁ, ଏମାନେ ସମସ୍ତେ ଦେଖୁଚନ୍ତି । ପୁଣି କାଳେ କଣ ମନେ କରିବେ ! ବିଲୁକୁ ଯଦି ଏମିତି ଥରେ ପା'ନ୍ତି, ତାହେଲେ ଛାତି ଉପରେ ଟାଣି ଧରନ୍ତି । ଯେତେ ଅଳ୍ପ ସମୟ ପାଇଁ ହେଉ ପଛେ, ଛାତିଟାତ ଟିକିଏ ଶୀତଳ ହୁଅନ୍ତା । ଦୁହେଁ ଏକା ସାଙ୍ଗରେ କାନ୍ଦି ଟିକିଏ ଶାନ୍ତି ମଧ୍ୟ ପାନ୍ତୁ । ଶେଷ ସମୟରେ ପାଖରେ ଟିକିଏ ରହିବି, ଭଗବାନ ଏ ଉପାୟ ମଧ୍ୟ ରଖିଲେ ନାହିଁ । ଚାରିପଟେ ଲୁହା ଗରାଦ ଆଉ ତାଲା । ଯୁଦ୍ଧରେ ଶୁଣିଚି, ଅନେକ ଲୁହା ଦରକାର ପଡ଼େ । ବିଲୁ ଥରେ ଗପୁଥିଲା, ଯୁଦ୍ଧ ବେଳେ, କୋଉଠି କୁଆଡ଼େ ଗୀର୍ଜାର ଘଣ୍ଟା ତରଳାଇ ଲୁହା କମାଣ ତିଆରି କରାଯାଇଥିଲା । ଜେଲ୍‌ର ଏଇ ଗଦା ଗଦା ଲୁହା ଉପରେ ସେମାନଙ୍କ ନଜର କ'ଣ ପଡ଼ି ନାହିଁ ? ଏତେ ଗୁଡ଼ାଏ ଦଗ୍ଧ ଛାତିର ତପ୍ତ ନିଃଶ୍ୱାସ ଯମର ସିଂହାସନକୁ ସୁଦ୍ଧା ଯେ ଟଳେଇ ଦେଇପାରେ !

ବହୁରିଆଜୀ, ଆଚ୍ଛା ସତ କରି କହିଲ – ''ଭଗବାନ ମୋ ପ୍ରତି କଣ ଅବିଚାର କରି ନାହାନ୍ତି ?''

ବହୁରିଆଜୀ ମୋ ମୁହଁକୁ ବଲବଲ କରି ଚାହିଁଲା । ଏପରି ପ୍ରଶ୍ନ ପାଇଁ ସେ ଯେପରି ପ୍ରସ୍ତୁତ ନଥିଲା । ସେ ମୋ କଥାର କୌଣସି ଉତ୍ତର ଦେଲା ନାହିଁ । ନୈନା ଦେବୀ ଆଡ଼େ ଚାହିଁ ତାକୁ କଣ ଯେପରି ଇସାରା ଦେଲା । ତା'ପରେ ମୋ ମୁଣ୍ଡବାଳ ଗୁଡ଼ାକ ଭିତରେ ଆସ୍ତେ ଆସ୍ତେ ଆଙ୍ଗୁଠି ଚଳାଇ ଜୋର୍‌ରେ ଜୋର୍‌ରେ ପଙ୍ଖା ବୁଲାଇବାକୁ ଆରମ୍ଭ କଲା । ତମକୁ ହଠାତ୍ କଥାଟା ପଚାରି ଦେଇଥିଲି ସତ; କିନ୍ତୁ ତାର ଜବାବ୍ ଚାହିଁ ନାହିଁ; କିମ୍ବା ଆଶା ମଧ୍ୟ କରି ନାହିଁ ।

ଲାଙ୍ଗ୍‌ଲୀଟା କେତେବେଳୁ ଶୋଇ ପଡ଼ିଲାଣି । ପିଲା ଏଡ଼ିକି ଟିକିଏ କିନ୍ତୁ ତା ଘୁଙ୍ଗୁଡ଼ି ଠିକ୍ ବଡ଼ ମଣିଷଙ୍କ ପରି । ଆହା ରେ ! ଗୋଟାଏ କଡ଼ ମାଡ଼ି ଶୋଇଛି, ଆଉ ଅଣ୍ଟାର ରୂପା ଚକ୍‌ତି ଗୁଡ଼ା ଯେମିତି ପେଟର କଅଁଳ ଚମଡ଼ା ଭିତରେ ବସି ଯାଇଚି । ଅଣ୍ଟା ସୁତାରେ ଗୁଡ଼ାଏ ରୂପା ଚକ୍‌ତି ଝୁଲିଥାଏ । ସତ୍ୟାବତୀଜୀର ଧାରଣା, ଏହା କୁଆଡ଼େ ଖୁବ୍ ସୁନ୍ଦର ଦିଶେ । କେତେଥର କହିଲିଣି, ଏଇଟା ଜେଲ୍‌ଖାନା, ଏଥିରେ ହଜାରେ ରକମ ସ୍ୱଭାବର ଲୋକ ଥାନ୍ତି, ରୂପା ଲୋଭରେ ଛୁଆଟାକୁ କୋଉଦିନ କଣ କରିଦେବେ, ସେତେବେଳେ କାନ୍ଦି କାନ୍ଦି ଆଉ ଦିନ ସରିବ ନାହିଁ । ସେକଥା ସତ୍ୟାବତୀଜୀ କଣ

ଶୁଣିବ ? ସେଇ ଅଣ୍ଟା ସୁତାରେ କେତେ କଣ ମନ୍ତ୍ରମାଦୁଲି ଅଛି କିଏ ଜାଣେ ? .....

ବିଲୁ ପିଲା ବେଳେ, ତା' କପାଳ ଉପରେ ବାଳ ଗୁଡ଼ାକରେ ଗୋଟାଏ ବେଣୀ ପକାଇ ଦେଉଥିଲି । ରୋଗିଣା ଥିଲା ତ — ଖାଇଲେ ପେଟଟା ଗଣେଶ ପେଟ ପରି ଫୁଲି ଯାଉଥିଲା । ତାକୁ ଭୁଲାଇବା ପାଇଁ ଖାଇବା ପରେ କହୁଥିଲି, "ବାସ୍, ଏଥର ହୋଇଗଲା — ଏଥର ଉଠିପଡ଼ । ବା — ବା — ରେ !" ବିଲୁ ସେଉଠୁ ନିଜ ପେଟକୁ ଚାହିଁ କହେ, "ବାତାବି — ବାତାବି କରିଦିଅ ।" କେବେ ଥରେ ତା ପେଟରେ ହାତ ବୁଲେଇ କହିଥିଲି "ବାତାବି ଉପ୍ପରାଶି ! ବାତାବି ଉପ୍ପରାଶି ! ସବୁ ଠିକ୍ ହୋଇଯିବ — ବିଲୁ ବାବୁର ଆଉ ବେମାର ହେବ ନାଇଁ ।" ସେଇ କଥା ସିଏ ମନେ ରଖିଚି । ସେଥିପାଇଁ ପ୍ରତିଦିନ ଭାତ ଖାଇବା ପରେ, ତା ପେଟରେ ହାତ ବୁଲେଇ "ବାତାବି" କରିଦେବାକୁ ପଡ଼େ । ତା'ପରେ ପିଢ଼ା ଉପରୁ ଉଠିବା ବେଳେ, ଆଣ୍ଠୁ ଉପରେ ଭରା ଦେଇ କହିବ, "ବାବାରେ" ! ପୁରାପୁରି ବୁଢ଼ାଳିଆ ଭାବ — ଉଠିବା ପାଇଁ ପ୍ରକୃତରେ ଯେପରି କଷ୍ଟ ହେଉଚି ।

କେତେ ଦିନର କେତେ ଛୋଟ ଛୋଟ ଘଟଣା, ଗୋଟିକ ପରେ ଗୋଟିଏ ହୋଇ ମନେ ପଡ଼ିଯାଉଚି । ବିଲୁ ଏତେ କଷ୍ଟ କରି ତତେ ମଣିଷ କରିଥିଲି — ଏମିତି ଫାଙ୍କି ଦେଇ ଚାଲି ଯିବୁ ? ମୋ କଥା ମନେ ପକାଇ ଶେଷ ମୁହୂର୍ତ୍ତରେ ତୁ ଯେମିତି ମନ ଦୁଃଖ ନ କରୁ । ଏମିତି ତ ତୋ ଦୁଃଖଯନ୍ତ୍ରଣାର ବୋଝ ମୁଁ ଟିକେ ହେଲେ ହାଲୁକା କରି ପାରିଲି ନାହିଁ । ଅବିକା ତା' ମନରେ କି ଝଡ଼ଝଞ୍ଜା ବହି ଯାଉଥିବ, ତା କଣ ମୁଁ ବୁଝେ ନାଁ ? ତା' ଉପରେ ମୋ କଥା ମନେ ପକାଇ ତୋର ଦୁଃଖବୋଝ ଯଦି ବଢ଼େ, ତାହେଲେ ମୋ ଦୁଃଖର ଆଉ ସୀମା ରହିବ ନାହିଁ । ତୁ ବରଂ ଅବିକା ଧରିନେ ଯେ, ତୋ ମା ତତେ ଟିକିଏ ହେଲେ ବି କେବେ ଭଲ ପାଉ ନଥିଲା !

ନୈନାଦେବୀ, ବହୁରିଆଜୀଙ୍କ ସାଙ୍ଗରେ ଗପ କରୁଛନ୍ତି — କଣ୍ଠସ୍ୱରଟା ଟିକିଏ ଗରମ — "ଭଗବାନଙ୍କୁ ତା'ହେଲେ, ଆ' ଭିତରକୁ ଟାଣୁଚ କାହିଁକି ? ସଜା ଦେଲା ସରକାର, ଆଉ ଇଏ ଦୋଷ ଦେଉଚନ୍ତି ଭଗବାନଙ୍କୁ ! ଗୋଟାଏ ଗପ ଅଛି— ଜଣେ ବ୍ରାହ୍ମଣର ଗୋଟାଏ ଘୋଡ଼ା ଥିଲା । ବ୍ରାହ୍ମଣର ପଡ଼ୋଶୀ ଗୋଟାଏ ଧୋବା । ବ୍ରାହ୍ମଣ ପଣ୍ଡିତେ ପୂଜା କରିବାକୁ ବସିବା ମାତ୍ରେ, ଗଧଟା ବିକଟ ଚିତ୍କାର ଆରମ୍ଭ କରିଦିଏ । ପଣ୍ଡିତେ ଦିନେ ରାଗିମାଗି ପ୍ରାର୍ଥନା କଲେ— "ଭଗବାନ୍, ଏ ଗଧଟା ତମକୁ ପୂଜା କରେଇ ଦେବ ନାହିଁ । ତୁମକୁ ଡାକିବା ମାତ୍ରେ ସେଇଟା ବାଧା ଦେଉଚି । ତାକୁ ତମେ ମାରି ପକାଅ ।" କେତେ ଦିନ ପରେ ବ୍ରାହ୍ମଣର ଘୋଡ଼ା ମଲା । ବ୍ରାହ୍ମଣ ସେଉଠୁ ଭଗବାନଙ୍କୁ କହିଲେ, "ଏତେଦିନ ଭଗବାନ ଭୁଲ୍ କଲ । ଗଧ କୋଉଟା ଆଉ କୋଉଟା ଘୋଡ଼ା ଚିହ୍ନି ପାରିଲ ନାହିଁ ?" — ଇଏ ହେଇଛି ସେଇପରି କଥା । ଭଗବାନଙ୍କ ସହିତ ଏହାର କି ସମ୍ବନ୍ଧ ?"

ନାକ ନ ଚିପି ନିଃଶ୍ୱାସ ବନ୍ଦ କରାଯାଇପାରେ । କିନ୍ତୁ କାନରେ ଆଙ୍ଗୁଠି ନ ଦେଇ ଶୁଣିବା ବନ୍ଦ କରାଯାଇପାରେ ନାଁ କାହିଁକି ? ବର୍ତ୍ତମାନ କାନରେ ଆଙ୍ଗୁଠି ଦେବା ଭଲ ଦେଖାଯିବ ନାହିଁ । ସମସ୍ତେ ଚାହିଁଚନ୍ତି । ... ସେ ବିଷମୁହିଁକି ମୁଁ ଚିହ୍ନେନାଁ ? ବହୁରିଆଜୀ ସାଙ୍ଗରେ କଣ ସବୁ ସିଏ ଗପୁଚି । କିଛି ସମୟ ଆଗରୁ ରାଗି କରି ତାକୁ କଣ କହିଥିଲି, ସେଇ ବିଷ ବର୍ତ୍ତମାନ ସିଏ ଝାଡୁଚି । ସେ କଣ ମୋହଲାହିଜା ରଖି କଥା କହିବା ଝିଅ ?

ରାତିଟାଏ ସୁଦ୍ଧା ସତାର୍ ହେଲା ନାହିଁ। ଆଜି ରାତିଟା ପାଇଁ ସିଏ ମୋତେ ମାଫ୍ କରି ପାରିଲା ନାହିଁ! ତୁ ତ ପୁଣି ପୁଅର ମା! କୋଉଠୁ ଶୁଣା କଥା, ତାର ନାଁ ଅଛି ମୁଣ୍ଡ ନାଁ ଅଛି ଗଣ୍ଡି! ସେଇ ସବୁ ଗପି ମନେ କରିବ, ଖୁବ୍ ପାଣ୍ଡିତ୍ୟ ଦେଖେଇଲି। ଏ କ'ଣ, ନୈନା ଦେବୀ, ଆରି ଭିତରେ ଚୁପ୍ ହୋଇଗଲା ଯେ! ବୋଧହୁଏ ବହୁରିଆଜି ପାଖରୁ ପ୍ରଶ୍ରୟ ପାଇଲା ନାହିଁ!

ବିଲୁ ନୀଳଲୁଙ୍କର ପିଲାଦିନ କଥା ଖାଲି ମନେ ପଡୁଚି କାହିଁକି? ସେମାନେ ମୋ ପାଖରେ ସେଇ ପିଲା ରହିଯାଇଚନ୍ତି!

ଦି'ଜଣଯାକ ବିଛଣାରେ ଶୋଇଚନ୍ତି। କାମଦାମ ସାରି ଘର ଭିତରକୁ ଆସି ମୁଁ ପଚାରିଲି "କ୍ୟା ବଚ୍‌କନ୍ ଔର୍ ଛଚ୍‌କନ୍ ଘୁମ୍‌ତେ ହୋ?" ବିଲୁ ବଚ୍‌କନ୍ ଆଉ ନୀଲୁ ଛଚ୍‌କନ୍। ସେ ଦୁହେଁ ହୋ–ହୋ ହସି ଉଠନ୍ତି। ନୀଲୁ କହେ, "ମା'କୁ କେତେଥର କହିଚି, ହିନ୍ଦୀରେ ଘୁମ୍‌ତେ ହୋ ମାନେ ଶୋଇଚ ହୁଏ ନାହିଁ, ତା' ମାନେ ହେଉଚି ବୁଲୁଚ୍। ସେ କଥା କିନ୍ତୁ ମା'ର ମନେ ରହିବ ନାହିଁ।" ବିଲୁ କହେ, "ବୋକା ପିଲାଟା! ମା ତ ଜାଣି ବୁଝି ଇଚ୍ଛା କରି କହୁଚନ୍ତି–ଆମକୁ ହସେଇବା ପାଇଁ।" ... ଏଡ଼ିକି ଟିକିଏ ଟିକିଏ ପିଲା, ଦି'ଜଣ କିପରି ଗମ୍ଭୀର ହୋଇ ପଣ୍ଡିତଙ୍କ ପରି କଥାବାର୍ତ୍ତା କରନ୍ତି! ସେଇ ସମୟରେ ସେମାନେ ଯଦି ଗାନ୍ଧିଜୀଙ୍କ ବାଟରେ ଆସି ନଥାନ୍ତେ! ଆସିବା ନ ଆସିବାର ନିଷ୍ପତ୍ତି କଣ ସେମାନଙ୍କ ଉପରେ ଥିଲା? ସିଏ ତ କର୍ତ୍ତାଙ୍କ ଇଚ୍ଛାରେ କର୍ମ। ଅବିକା ଥରେ ଯଦି ବିଲୁ ବାପାଙ୍କୁ ପାଖରେ ପା'ନ୍ତି, ତାହେଲେ ଆଚ୍ଛା କରି ଶୁଣାଇ ଦିଅନ୍ତି, ଦେଖ ବାପ ହୋଇ ପୁଅକୁ କୋଉ ବାଟରେ ଆଣିଚ! ସାରା ଜୀବନଟା ମୋର ଏକ ଭାବରେ କଟିଗଲା। ନିଜେ ଦିନେ ଶାନ୍ତି ପାଇଲି ନାହିଁ, କି ପିଲା ମାନଙ୍କୁ ଦିନେ ହସ–ଖୁସି ଫୁର୍ତ୍ତିରେ ରଖି ପାରିଲି ନାହିଁ। ସାରା ଜୀବନ, ଉଦୟାସ୍ତ ହାଡ଼ଭଙ୍ଗା ଖଟଣି ଖଟିଲି କଣ ଏଇଥିପାଇଁ? ପିଲାମାନେ ଛୋଟ ଛୋଟ ଥିବା ବେଳେ ଥରେ ଥରେ ଭାବିଚି, ସେମାନଙ୍କୁ ଟାଣି ଓଟାରି ବଡ଼ କରି ଦିଅନ୍ତି କି! ବଡ଼ ହୋଇ ସେମାନେ ନିଜ ବାଟ ନିଜେ ବାଛି ନେବେ–ପୁଅ ପିଲାଙ୍କର ଆଉ ଭାବନା କଣ? ତା'ପରେ ସେମାନେ ଘର ସଂସାର କରିବେ। ସେ କଥା ଭାବିଲେ ବି ଶାନ୍ତି! କିନ୍ତୁ ହେଲା କଣ? ବଡ଼ ପୁଅଟାକୁ ତ ପଢ଼େଇଲ ନାହିଁ। ଆରଟାର ମନ ବି ଏଇ ଆଡ଼କୁ। ଏଥର ଜେଲ୍‌ରୁ ଖଲାସ ହୁଏ–ନୀଳୁକୁ ଏ ବାଟରେ ଛାଡ଼ିଚି ତ ଦେଖିବ! ସାନଭାଇ ପାଖରେ ଛାଞ୍ଚୁଣୀ ଗୋଇଠା ଖାଉ ପଛେ, ତାକୁ ସେଇଠିକି ପଠେଇ ଦେବି। ସେ ନିଶ୍ଚୟ କିଛି ଗୋଟାଏ ରୋଜଗାରର ପନ୍ଥା କରିଦେବ। ମୋତେ ବାହା ହୋଇ ଆଣିଥିଲ, ମୁଁ ତୁମ ଆଶ୍ରମ ହୋଟେଲ୍‌ରେ ଦାସୀ ଚାକରଣୀରୁ ହୀନ ହୋଇ ସୁଦ୍ଧା, ଚଳାଇଯିବି ଚିରଦିନ। ତା' ବୋଲି ମୋ ପୁଅକୁ ମୁଁ ଆ' ଭିତରେ ରଖିବି? ମୁହଁ ବୁଜି ଅନେକ ସହ୍ୟ କରିଚି, ଆଉ ନୁହେଁ। ମୋର ସହ୍ୟ କରିବାର ଦାମ୍ କଡ଼ା କ୍ରାନ୍ତିରେ ମେଣ୍ଟାଇ ଦେଇଚ। ତମର ହୁକୁମ୍, ତମର ସଉକ୍ ଗାନ୍ଧିଜୀଙ୍କ ସେବା କରିବା। ମୋ କଥା, ପିଲାଙ୍କ କଥା ଦିନେ ଭାବିଚ୍? ଦିନେ ଦିନେ ତମର ଗୋଟାଏ ଗୋଟାଏ ନୂଆ ହୁକୁମ୍। ଦିନା କେତେ ଖାଲି ସୋଲା ଖାଇ ରହିଲ। ଦିନା କେତେ ବଥୁଆ ଶାଗ। ଦିନାକେତେ ଖାଇଲ, ଖାଲି ବିଲାତିବାଇଗଣ ସରବତ୍। କଞ୍ଚା ପୋଟଳ ଖାଇ, ସେଥର କି ବେମାରିରେ ପଡ଼ିଲ! ଥରେ ହୁକୁମ୍ ହେଲା ବିଲାତି ବାଇଗଣ,

ସେମିତି ଗୋଟା କରି ପୂରା ଦେବ! ଗାନ୍ଧିଜୀ କହିଚନ୍ତି, କାମୁଡ଼ି କାମୁଡ଼ି ଖାଇବା କୁଆଡ଼େ ଭଲ, କାଟିବାକୁ ଗଲେ ମିଛରେ ସମୟ ନଷ୍ଟ। ଗାନ୍ଧିଜୀଙ୍କ ଆଶ୍ରମରେ କୁଆଡ଼େ ଏଇ ନିୟମ ଜାରି ହୋଇଚି। ଆମ ଆଶ୍ରମରେ ବି ଚଳିଲା ସେଇ ନିୟମ! ମା'ଲୋ! କଥା ନାଇଁ, ବାର୍ତ୍ତା ନାଇଁ ଦିନେ ହୁକୁମ୍ ହେଲା; ସେ ନିୟମ ଆଉ ଚଳିବ ନାଇଁ। ସେବାଗ୍ରାମ ଆଶ୍ରମରେ ବିଲାତି ବାଇଗଣ ଖାଇବା ନିୟମ ବଦଳି ଯାଇଚି। ମହାଦେବ ଦେଶାଇ କାଗଜରେ ଲେଖିଚନ୍ତି ଯେ, ଗାନ୍ଧିଜୀଙ୍କ ମତରେ ଗୋଟା ବିଲାତି ବାଇଗଣ ଖାଇବା ଠିକ୍ ନୁହେଁ। କାମୁଡ଼ିଲା ମାତ୍ରେ, ବିଲାତି ବାଇଗଣ ରସ, ଲୁଗାପଟାରେ ଛିଟିକି ପଡ଼େ। —ଆଉରି ସବୁ କଣ କୁଆଡ଼େ କଥା ଅଛି! ଆମକୁ ବି ଏଣିକି ସେଇଆ କରିବାକୁ ପଡ଼ିବ। ଏତେଦିନ ବିଲାତି ବାଇଗଣ କାମୁଡ଼ିବା ବେଳେ, ଆଖି ବୁଜି ରହୁଥିଲେ ନାଁ କଣ? ... ଦିନ ଭିତରେ ଭାତ ଛଡ଼ା ଆଉ ପାଞ୍ଚଟା ଜିନିଷ ଖାଇବି, ଗଣି ଗଣି ପାଞ୍ଚଟା। ଛଅଟା ଖାଇଲେ, ମହାଭାରତ ଅଶୁଦ୍ଧ ହୋଇଯିବ! ଗୁଆଘିଅ ନହେଲେ ଖାଇବି ନାଇଁ। —ହେଲେ, ଏଆଡ଼େ କଣ ଗୁଆଘିଅ ମିଳେ? ପଦେ ପଦେ ଜଳେଇ ପୋଡ଼େଇ ମାରିବେ! ଗାନ୍ଧିଜୀଙ୍କ ବାଟରେ ଆସି ଇଏ ହେଲା ନା କଣ? ତା' ଆଗରୁ କଣ ହେଉଥିଲା? ଚାବିଟା ରହିବ ନିଜ ଅଣ୍ଟାରେ—ଇସ୍କୁଲ୍ ଯିବା ବେଳେ ଗୋଟାଏ ଟଙ୍କା ମୋତେ ଧରାଇ ଦିଆଯିବ, ବଜାର ଖରଚ୍ ପାଇଁ! ମୋତେ ଚାବିଟା ଦେଇଗଲେ ସବୁ ଟଙ୍କା ପଇସା ମୁଁ ଖାଇଯାନ୍ତି ନାଁ କଣ? ନାଁ ତୁମ ଭଣ୍ଡାର ଉଜୁଡ଼ାଇ ମୋ ବାପଘରକୁ ସବୁ ପଠାଇ ଦିଅନ୍ତି? କଣ ଭାବନ୍ତି, କିଏ ଜାଣେ? ସେ କଥା କୌଣସି ଦିନ ପଚାରି ନାହିଁ, ଜାଣିବାର ପ୍ରବୃତ୍ତି ବି ନଥିଲା... ଛୋଟ ଲୋକମାନଙ୍କ ପାଖରେ ସେଦିନ କି ଅପମାନ ନ ସହିବାକୁ ପଡ଼ିଲା। ତେଲିଘର ବୋହୂ ଦିନେ ସକାଳେ ସ୍କୁଲ୍ କ୍ୱାର୍ଟର୍‌କୁ ତେଲ ବିକ୍ରୀ କରିବା ପାଇଁ ଆସିଚି। ଦୋକାନ ତେଲ ଭଲ ନୁହେଁ। ସେଇଥିପାଇଁ ତ ତେଲି ବୋହୂକୁ ଘର ଭିତରକୁ ଡାକି ତା ପାଖରୁ ଟଙ୍କାକର ତେଲ କିଣିଲି, କହିଲି ଦାଣ୍ଡଘରୁ ବାବୁଙ୍କ ପାଖରୁ ଟଙ୍କା ନେଇଯିବୁ। ମା'ଲୋ! ଟିକିକ ପରେ ତେଲିଘର ବୋହୂ ସେଆଡୁ ଆସି ମୋ ଉପରେ କି ତମ୍ବିତୋଫାନ ନକଲା! —ଦିଅ ତେଲ ଫେରେଇ ଦିଅ, ମିଛରେ ମୋ ବେଳ ବିଗାଡ଼ିଲ! ବାବୁ କହିଲା, ତେଲ ଦେବା ପାଇଁ ତତେ କିଏ କହିଲା? ଅପମାନରେ ମୋ ମୁଣ୍ଡ କଟିଗଲା! ସେସବୁ କଥା ଗୋଟି ଗୋଟି ହୋଇ ମନରେ ଗୁଚ୍ଛା ହୋଇ ରହିଚି। ... ତୁମେ ଦେଶର ସ୍ୱାଧୀନତା ପାଇଁ ସବୁ ଛାଡ଼ିଚ ସତ—କିନ୍ତୁ ମୋତେ ତ ଟିକିଏ ହେଲେ ସ୍ୱାଧୀନତା ଦେଇନାଁ। କେତେଥର ଭାବିଚି, ପିଲାମାନେ ବଡ଼ ହେଲେ, ସେମାନଙ୍କୁ ଦିନେ ଏକଥା କହିବି! ହେଲେ କହିବି କହିବି ବୋଲି, କହି ପାରି ନାହିଁ। ପିଲାଙ୍କ ଆଗରେ ଏ କଥାସବୁ କଣ କୁହାଯାଏ? ତୁମ କଥା ଉପରେ କୌଣସି ଦିନ ଊଁ ଚୁଁ କରି ନାହିଁ। କେବଳ ପିଲାଙ୍କ ମୁହଁକୁ ଚାହିଁ ପଡ଼ିରହିଚି ଏତେ ଦିନ। ମୋ ନିଜର ଯା ହୋଇଚି ତ ହୋଇଚି। ସେଥିପାଇଁ ଟିକିଏ ହେଲେ ଅନୁଶୋଚନା ନାହିଁ। କିନ୍ତୁ ତମରି ପାଇଁ ମୋ ପୁଅର ଏ ଦଶା ହେଲା! ମୋ ସଂସାର ଛାରଖାର ହୋଇଗଲା। ତମରି ପାଇଁ, ମୋ ନିଜ ପେଟର ଭାଇ, ଯାହା ଘରେ ବାହାରର କେତେ ପିଲା ରହି ପଢୁଚନ୍ତି, ସିଏ ତାର ନିଜ ଭଣଜାମାନଙ୍କୁ ପଚାରେ ନାହିଁ। ବୀରେନ୍ ମା ସୁଦ୍ଧା ଦିନେ ଆସି, କେତେ କଥା ଶୁଣେଇଗଲା, କେତେ ମୁହଁ ଛିଞ୍ଚାଡ଼ିଲା। ବଙ୍ଗାଳୀ ବୋଲି ତା ଡ଼ିଷ୍ଟ୍ରିକ୍ଟ ବୋର୍ଡ଼୍ ଚାକିରୀଟା କୁଆଡ଼େ କଂଗ୍ରେସ

ଖାଇଚି। ମୋ ମୁହଁ ଉପରେ କହିଗଲା—ମାଷ୍ଟର ନାଁ ପାଉଁଶ! ଗଧ ଏମ୍.ଏ. ନେତାଗିରି କରିବା ପାଇଁ ବଙ୍ଗାଳୀଙ୍କ ମୁହଁରେ ଚୂନକାଳୀ ବୋଳି, କଂଗ୍ରେସରେ ମିଶିଚି। ଅବିକା ମୋର ଏମିତି ହୋଇଚି ଯେ—ଯୁଆଡ଼େ ଅନାଉଚି, ସେ ଆଡ଼େ ଅନ୍ଧାର!

ଗାନ୍ଧିଜୀ, ତୁମେ ମୋର ଇଏ କଣ କଲ? ତୁମେ ଆମକୁ ଏକାଥରେ ଦାଣ୍ଡର ଭିକାରୀ କରି ଛାଡ଼ିଚ଼। ପ୍ରକୃତରେ ଭିକାରୀ। ମାସ ଶେଷକୁ ତୁମେ ହାତ ଟେକି କିଛି ଦେଲେ, ଆମେ ଦି'ଟା ଖାଇବାକୁ ପାଇବୁ! ନିଜ ଠାକୁର ଦେବତା ଛାଡ଼ି ତମକୁ ପୂଜା କରିଛି, ତୁମ ପାଇଁ ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନ ସବୁ ଛାଡ଼ିଚି, ହସିବା ଭୁଲିଯାଇଚି। ତା'ର ପ୍ରତିଦାନ ତୁମେ ଖୁବ୍ ଦେଲ! ତୁମ ବାଟରେ ଗଲେ, ସ୍ୱାମୀ ସ୍ତ୍ରୀଙ୍କ ମନର ମେଳ ହୁଏ ନାଁ, ବାପ ପୁଅଙ୍କ ମଧ୍ୟରେ ସ୍ନେହର ସମ୍ପର୍କ ରହେନା, ଭାଇ ଭାଇର ଶତ୍ରୁ ହୋଇ ଠିଆହୁଏ, ଗୃହ ବିଚ୍ଛେଦରେ ସଂସାର ଛାରଖାର ହୋଇଯାଏ। ନିଜ ଇଷ୍ଟମନ୍ତ୍ର ଛାଡ଼ି, ସନ୍ଧ୍ୟାରେ ତମରି ନାମ ଜପିଛି। କେତେ ବର୍ଷ ପୂର୍ବେ ଆମ ଆଶ୍ରମର ଯୋଉ ଜାଗାଟିରେ ତମେ ବସିଥିଲ, ସେଠି ପ୍ରତି ସନ୍ଧ୍ୟାରେ ପ୍ରଦୀପ ଜାଳିଛି, ଦିନକ ପାଇଁ ସୁଦ୍ଧା ଚରଖା କାଟିବା ଛାଡ଼ି ନାହିଁ, ଏସବୁ କଣ ଏଇଥିପାଇଁ? ମେହେନ୍ତରକୁ ହରିଜନ କହିଛି, ତାର ଲଙ୍ଗଳା ପିଲାଟାକୁ ନୀଳୁ ବିଲୁ ସାଙ୍ଗରେ ରୋଷେଇ ଘର ବାରଣ୍ଡାରେ ବସାଇ ଖୁଆଇଚି— ଗାଁ ଲୋକେ ଟାପରା କରିଛନ୍ତି। ହେଲେ ତା'ର ଫଳ କଣ ହେଲା? ଦୁର୍ଗାମା' ତ ଠିକ୍ କହିଥିଲା, ସ୍ୱଦେଶୀ କାମ କରିବାକୁ ଚାହୁଁଚ଼ ତ' କର, କିନ୍ତୁ ଏସବୁ କର ନାହିଁ। ଠାକୁର ଦେବତା ମାନଙ୍କୁ ଘାଣ୍ଟିବା ଭଲ ନୁହେଁ। ସେତେବେଳେ ତମ ମୁହଁକୁ ଚାହିଁ ସେମାନଙ୍କ କଥାରେ କାନ ଦେଇନାହିଁ। ଆଜି ମର୍ମେ ମର୍ମେ ବୁଝିଚି। ଆଜି ଦୁର୍ଗାମା, ଖେଦୀମା, କି ଜିତେନ୍‌ର ମା—ଦିଦି ଥିଲେ, ସେମାନଙ୍କୁ କୁଣ୍ଡାଇ ଧରି କାନ୍ଦି, ମନଟାକୁ ଟିକିଏ ହାଲୁକା କରି ପାରିଥାନ୍ତି। ମହାତ୍ମାଜୀ ନାଁ ପାଉଁଶ! ସନ୍ନ୍ୟାସୀ ପରି ତାଙ୍କର ଚେହେରା ନାଁ କଣ? ଉଃ! କଣ କଲି ଏତେ ଦିନ? ଦୁନିଆ ସାରା ଲୋକ ମିଶି ମୋର କଣ କରିଚନ୍ତି! ମନଜ୍ୱାଳାରେ ନିଜ ମାଉଁସ ଛିଣ୍ଡାଇ ଖାଇବା ପାଇଁ ମନ ହେଉଚି। ମୁଣ୍ଡ ପିଟି ମରି ପାରନ୍ତି କି! ଆଉ ନୁହେଁ—ଚରଖାଟାକୁ ଅବିକା କାଢ଼ି ଫିଙ୍ଗି ଦେବି। —ଟୁକ୍‌ରା ଟୁକ୍‌ରା କରି ଭାଙ୍ଗି ପକାଇବି। ଟେବୁଲ୍ ଉପରେ ରଖିଥିଲି ନାଁ?

ଚରଖାଟା ଆଣିବା ପାଇଁ ଉଠି ବସିଲି। ଉଠି କ'ଣ ପାରୁଚି? ମୁଣ୍ଡର ବାଁ ପାଖରେ ଯେମିତି ମହଣେ ଓଜନର ଲୁହା ଭର୍ତ୍ତି! ମୁଣ୍ଡଟାକୁ କିଏ ଯେମିତି ତକିଆ ଉପରେ ମାଡ଼ି ଧରିଚି। ବହୁରିଆଜୀ, କମ୍‌ଲା ଦେବୀ ହାଁ—ହାଁ କରି ଉଠିଲେ।

"ଉଠିଲ କାହିଁକି ବଙ୍ଗାଳୀ ମାଈ? କଣ ଖୋଜୁଚ? ଚାରିଆଡ଼କୁ ଏମିତି ଚାହୁଁଚ଼ କାହିଁକି? ଶୋଇପଡ଼!

ସମସ୍ତେ ମିଶି ଜୋର୍ କରି ମୋତେ ପୁଣି ବିଛଣାରେ ଶୁଆଇ ଦେଲେ। କଣ ଖୋଜୁଥିଲି, ସେମାନଙ୍କୁ ଆଉ କହିଲି ନାହିଁ। ସେମାନେ ତା'ହେଲେ, ଭାବିବେ, ମୋ ମୁଣ୍ଡ ଖରାପ ହୋଇ ଗଲାଣି। ଅବିକା କଣ ଭାବୁଚନ୍ତି, କିଏ ଜାଣେ? ମୁଣ୍ଡରେ ଇଉଡ଼ିକୋଲନ୍ ଘଷୁଛନ୍ତି। ୱାର୍ଡ଼ସାରା ଲୋକେ ଜଣ ଜଣ ହୋଇ ଆସି, ବିଛଣା ପାଖରେ ଜୁଟିଲେଣି ଦେଖୁଚି। ଗଳକଟିଟା ଗଣଗଣିଆ ସ୍ୱରରେ ଲୁସି ଜମାଦାରାଣୀକୁ ଡାକି କଣ ସବୁ କହୁଚି। ବୋଧହୁଏ ମୋ'ରି କଥା। ସେଇଟା ଅବିକା ପୁଣି ପାଟିଗୋଳ କରି ହାସପାତାଳକୁ ଖବର ଦେଲେ

ଅନର୍ଥ ବଢ଼ିବ। ସତ୍ୟାବତୀ ଆସ୍ତେ ଆସ୍ତେ ମୋ ପାଖରୁ ନିଦରେ ଶୋଇ ପଡ଼ିଥିବା ଲାଙ୍ଗୁଳୀକୁ ନିଜ କୋଳକୁ ଟେକି ନେଲା। ତା' ଛୁଆଟାକୁ ମୁଁ କଣ କରି ପକେଇବି ବୋଲି ସିଏ ଭାବିଲା ନାଁ କଣ? ହଉ, ଯାହା ଭଲ ବୁଝୁଚୁ କର। ତୁ ହେଲୁ ତାର ମା। ତା'ର ଭଲମନ୍ଦ ତୁ ଯେତେ ବୁଝିବୁ, ମୁଁ କଣ ଆଉ ସେତେ ବୁଝି ପାରିବି? ସମସ୍ତେ ଚୁପ୍ ହୋଇ ମତେ ଘେରି ବସିଛନ୍ତି – ଛୁଞ୍ଚିଟାଏ ତଳେ ପଡ଼ିଲେ ତା'ର ଶବ୍ଦ ଶୁଣାଯିବ। ହାତ ପଙ୍ଖାଟାରୁ କେବଳ ଗୋଟାଏ ଏକଟଣା ଶବ୍ଦ ବାହାରୁଚି। ... ଗୋଟାଏ ଗୋବର ପୋକ ଉଡୁଚି। ଶବ୍ଦ ହେଉଛି ଭୋଁ–ଓ। ଠକ୍ କରି ଚଟାଣ ଉପରେ ପଡ଼ିଗଲା। ପୁଣି ଉଡୁଚି, ପୁଣି କୋଉଠି ଧକ୍କା ଖାଇ ପଡ଼ିଗଲା। ଏବେ ବି ଉଡ଼ି ନାହିଁ। – ଏବେ ବି ନୁହେଁ – ଏବେ ବି ନୁହେଁ। ଏଇଥର ଯେମିତି ଉଡ଼ିବ, ଏକ – ଦୁଇ – ତିନି କରି ଗଣିବି। ଦଶ ଗଣିବା ଆଗରୁ ଯଦି ପଡ଼ିଯାଏ ତା'ହେଲେ ବିଲୁ କୌଣସି ମତେ ଆଉ ବଞ୍ଚିବ ନାହିଁ। ଆଉ ପୋକଟା ପଡ଼ିବା ଆଗରୁ ଯଦି ଦଶ ଗଣି ପାରିଥାଏ, ତା'ହେଲେ ଯେମିତି କରି ହେଉ, ଭଗବାନ ବିଲୁକୁ ନିଶ୍ଚୟ ବଞ୍ଚାଇବେ। ଶୀଘ୍ର ଶୀଘ୍ର ଗଣିବାକୁ ପଡ଼ିବ, ଯେତେ ଶୀଘ୍ର ପାରେ। ଏଇ ଉଡ଼ିଲା – ଏକ ଦୁଇ ତିନି ଚାରି ପାଞ୍ଚ ଛଅ ସାତ – ଏଇ ଯାଃ! ପୋକଟା ପଡ଼ିଗଲା। ଇଏ କଣ କଲ ଭଗବାନ! ଯାହା ବି ଟିକିଏ ଆଶା ଥିଲା, ସେଥିରେ ତୁମେ ବାଦ ସାଧିଲ? ଯାଃ – ଏସବୁ ମନଗଢ଼ା ଖିଆଲର କଣ କିଛି ଅର୍ଥ ଅଛି? ନିଜେ ଭାଙ୍ଗେ, ନିଜେ ଗଢ଼େ। ପୋକଟା ସମ୍ବନ୍ଧରେ ମୁଁ ଯାହା ଭାବିଥିଲି, ତା' ଆଦୌ ଠିକ୍ ନୁହେଁ। ସବୁ ଭଗବାନଙ୍କ ବରାଦ୍। ସେଇ ଭଗବାନଙ୍କୁ ମୁଁ ଏତେ ଦିନ କି ହୀନସ୍ତା ନ କରିଚି। ମା ପୂର୍ଣ୍ଣେଶ୍ୱରୀ, ମୋର ସବୁ ଦୋଷ ତ୍ରୁଟି କ୍ଷମା କର ମା'। ତମରି ଦୟାରୁ ତ, ବିଲୁକୁ କୋଳରେ ପାଇଥିଲି। ତମରି ନାଁରେ ତ ବିଲୁର ନାଁ ରଖିଥିଲି ପୂର୍ଣ୍ଣ! ଘରେ ସମସ୍ତେ ତମ ମହାପ୍ରସାଦ ଖାଇବା ଛାଡ଼ି ଦେଇଛନ୍ତି ବୋଲି ତୁମେ କଣ ମୋ ଉପରେ କୋପ କରିଚ? ବିଲୁ ବେମାରୀ ପଡ଼ିଲାବେଳେ ଯୋଉ ମାନସିକ କରିଥିଲି, ସେ ପୂଜା ପୂର୍ଣ୍ଣେଶ୍ୱରୀଙ୍କ ପାଖରେ ଦେଇଚି ତ? ମନେ ତ ପଡୁ ନାଇଁ! ଭୁଲି ଯାଇଚି ନାଁ କଣ? ଗୋଟାଏ ସାମାନ୍ୟ ଭୁଲ୍‌ରୁ କି କାଣ୍ଡ ହୋଇଗଲା! ମା ପୂର୍ଣ୍ଣେଶ୍ୱରୀ, ତୁମେ କାହିଁକି ଏକଥା ଆଗରୁ ମୋ ମନେ ପକାଇ ଦେଲ ନାହିଁ! ନାଁ, ପୂଜା ନିଶ୍ଚୟ ଦିଆଯାଇଥିଲା। ତା'ହେଲେ ଏମିତି ହେଲା କାହିଁକି? ମା, ତୁମେ ତ ଦେବୀ, ବିଲୁ ତ ଏକରକମ ତମରି ପୁଅ। ତାକୁ ଏଥରଟା ବଞ୍ଚେଇ ଦିଅ। ତମ ପାଖରେ ମୁଁ ଆଉ ଦିନେ କୌଣସି ଦୋଷ କରିବି ନାହିଁ। ମୁଁ, ଆଉ ଗାନ୍ଧିଜୀଙ୍କୁ ତମ ଠାରୁ ବଡ଼ ବିଚାରିବି ନାହିଁ।

ବିଲୁ ଜନ୍ମ ହେବା ବେଳେ, ବରହମ୍‌ଥାନ୍‌ରେ ଯୋଉ ଇଟା ଖଣ୍ଡକ ବାନ୍ଧିଥିଲି, ସେଇଟା ଫିଟା ଯାଇଥିଲା ତ? ହଁ, ମୁଁ ଆଉ ଜିତେନ୍ - ମା ଦିହି ଯାଇଥିଲୁ। ସେଥର ଲୋଟା ପଡ଼ି ମୋ ପାଦର ବୁଢ଼ା ଆଙ୍ଗୁଠିଟା ଛେଚି ହୋଇ ଯାଇଥିଲା। ସେତିକି ବେଳେ ଭୁଲ୍ କରି ପକେଇଚି। କୋଉ ଇଟାଖଣ୍ଡ ଫିଟେଇବାକୁ ଯାଇଁ, କୋଉଟା ଫିଟେଇ ପକାଇଚି। ଠିକ୍ - ଠିକ୍ - ଏତେ ଇଟା ଭିତରେ ଚିହ୍ନିବାର କଣ କୁ' ଅଛି?

ସେଇ ସରସ୍ୱତୀ ଘର ପାଖରେ, ଓସ୍ତ ଗଛ ମୂଳେ,, ବିଜେ ହୋଇଚନ୍ତି ସିନ୍ଦୁରବୋଳା 'ଡିହଓ୍ୱାର୍' - ହଦିଭାରତ ଗାଁର ଗ୍ରାମଦେବତୀ। ସେ ଗାଁର ଡ଼ିହି (ଗ୍ରାମସୀମା) ପହରା ଦିଅନ୍ତି। ସେଠାରେ ସମସ୍ତେ ମାଟିଘୋଡ଼ା ପୂଜା ଦିଅନ୍ତି। ସରସ୍ୱତୀମା' ମୋତେ କହୁଥିଲା, ଯେତେବେଳେ କଲେରା କି ଅନାବୃଷ୍ଟି ହୁଏ, ସେତେବେଳେ ଘୋଡ଼ା ଚଢ଼ି, ଷାଠିଏ ହାତ

ଉଚ୍ଚ ଡିହଓୟାର୍ ଠାକୁର ଗାଁ ପହରା ଦିଅନ୍ତି। ରାତିଅଧରେ ଗାଁ ଚଉକୀଦାର କେତେଥର କୁଆଡ଼େ ଦେଖିଚି। ସରସ୍ୱତୀ ମା' ମୁହଁ ଉପରେ, କିଛି କହି ନାହିଁ। କିନ୍ତୁ ମନେ ମନେ ହସିଚି। ଷାଠିଏ ହାତ ଉଞ୍ଚା ଠାକୁର ବିଶ୍ୱାସ କରି ପାରି ନାହିଁ। ଷାଠିଏ ହାତ ଉଞ୍ଚା ଠାକୁରର ମୁଠୁଣିଏ ଉଞ୍ଚା ଘୋଡ଼ା ? ଏକଥା କଣ ସମ୍ଭବ ? ଡ଼ିହଓୟାର୍ ଠାକୁର ମୋର ସେତେବେଳେର ମନକଥା ନିଶ୍ଚୟ ଜାଣିଥିଲେ। ସେଥିପାଇଁ ରାଗରେ ସେ ମୋ କପାଳ ଏମିତି କଲେ କିମ୍ବା ହୁଏତ ତାଙ୍କ ଗାଁ ଝିଅ ସରସ୍ୱତୀ ସାଙ୍ଗରେ ବିଲୁକୁ ବାହା ଦେଇ ନାହିଁ ବୋଲି, ସିଏ ମୋର ଏଇ ଦଶା କରିଚନ୍ତି। ଡ଼ିହଓୟାର୍ ଠାକୁର, ଆଜି ମୋର ବିଲୁକୁ ବଞ୍ଚେଇ ଦିଅ। ତା'ପରେ ତମର ଯେପରି ଖୁସୀ ସେପରି କର ! . . . ତୁମେମାନେ କୋପ କଲେ, ମୋ ପରି ସାମାନ୍ୟ ମଣିଷର ଦିନ କେମିତି କଟିବ କୁହ !

ଏଇ ! ଏଇ ! ମୋଟରହର୍ଣ୍ଣ ଶବ୍ଦ ହେଲା ! —ତା'ହେଲେ ମୋର ବିଲୁ–

ସେଇ କଟ୍‌ଟୂଗନ୍ଧ ସବୁଜ ଶିଶିଟା ମୋ ନାକ ପାଖରେ ଧରିଚନ୍ତି ବୋଧହୁଏ। . . .

# ଜେଲ୍ – ଗେଟ୍

## (ନୀଲୁ)

ଜେଲ୍ ଫାଟକ ସାମ୍ନା ଗାଡ଼ି ବାରଣ୍ଡାତଳେ, ୱାର୍ଡ଼ର୍ ନିହାଲ୍ ସିଂହ ସାଙ୍ଗରେ ଆସି ଠିଆ ହେଲି। ଫାଟକ ବାହାରେ ସଶସ୍ତ୍ର ପ୍ରହରୀ। ଫାଟକ ଭିତରେ ଜଳୁଚି ଉଜ୍ଜ୍ୱଳ ଆଲୋକ। ଭିତରେ ଆଲୁଅ ତଳେ ସୁବାଦାର ସାହେବ ଡ଼େସ୍କ ପାଖରେ ଗୋଟାଏ ଉଞ୍ଚା ଟୁଲ୍ ଉପରେ ବସିଚନ୍ତି। ନିହାଲ୍ ସିଂହଙ୍କ ନିର୍ଦ୍ଦେଶ ଅନୁସାରେ ଗାଡ଼ି ବାରଣ୍ଡା ସାମ୍ନାର ଅନୁଚ୍ଚ ପାଚେରୀ ଉପରେ ବସି ପଡ଼ିଲି।

''ବାବୁ କମ୍ବଳ – ଉମ୍ବଲ୍ ସାଥ୍ ନହୀଁ ଲାୟେ ନାଁ ?''

ଉତ୍ତର ଦେଲି, 'ନାଁ'।

ସେ ନିଜ ଫାଟକ ଭିତରେ ସୁବାଦାର୍ ପାଖରୁ, ଗରାଦ ଭିତର ଦେଇ ତିନି ଚାରିଖଣ୍ଡ କମ୍ବଳ ଯୋଗାଡ଼ କରି ଆଣିଲା। ସେ ଗୁଡ଼ିକୁ ଏଇ ପାଚେରୀ ଉପରେ ବହଳିଆ କରି ବିଛାଇ, କୌଣସି ମତେ, କାମଟା ସାରିଦେବା ପରି, ଥରେ ସେଥିରୁ ଧୂଳି ଝାଡ଼ିବାର ଚେଷ୍ଟା କଲା।

ମୋତେ କହିଲା, ''ବାବୁ, ବୈଠଲ୍ ଯାୟ !''

ତା'ପରେ ଗେଟ୍ ସେଣ୍ଟ୍ରି ଆଉ ସୁବାଦାର୍ ସାହେବଙ୍କୁ ଅନୁଚ୍ଚ କଣ୍ଠରେ ବୁଝାଇ ଦେଲା, ବଡ଼ି ଭୋର୍‌ରେ ଯାହାଙ୍କର ଫାଶୀ ହେବ, ଇଏ ତାଙ୍କର ସାନଭାଇ। କହୁଚନ୍ତି, ଏଇଠି ରାତିସାରା ବସି ରହିବେ। ଆଙ୍କୁ ଯେପରି କେହି ବିରକ୍ତ ନକରନ୍ତି। ଦେଖିଲି, ସୁବାଦାର୍ କଥାଟାକୁ ଭଲ ଭାବରେ ଗ୍ରହଣ କଲେ ନାହିଁ। ଜେଲ୍ ଭିତରର ମାଲିକ୍ ହେଡ୍ ୱାର୍ଡ଼ର୍ ଆଉ ଗେଟ୍ ବାହାରେ ଦଣ୍ଡମୁଣ୍ଡର କର୍ତ୍ତା ସୁବାଦାର୍ ସାହେବ। ଜେଲ୍ ଭିତରକୁ କିଏ ଆସିଲା, କିଏ ଗଲା, – ଏମାନଙ୍କ ଟଙ୍କାକଉଡ଼ି, ଜିନିଷପତ୍ର, ସର୍ଚ୍ଚ, ବଜାରସଉଦା, ଠିକାଦାର୍, ଏ ସବୁର ସର୍ବମୟ କର୍ତ୍ତା ସୁବାଦାର୍ ସାହେବ। ଏଇ ମହାମାନ୍ୟ ସୁବାଦାର୍ ସାହେବଙ୍କ ନିକଟରେ କାହିଁକି ଜଣେ ସାମାନ୍ୟ ୱାର୍ଡ଼ର୍ ଏଇ ଯୁକ୍ତିହୀନ ପ୍ରାର୍ଥନା କରୁଚି ? ଏହା ଭିତରେ ନିଶ୍ଚୟ କିଛି ଗୋଟାଏ ମତଲବ୍ ରହିଛି।

ସୁବାଦାର୍ ପଚାରିଲେ . . . ତୁମକୁ କେତେ ଦେଇଚି ? ନେହାଲ୍ ସିଂହ କିଛି ଦିନ ଧରି ମୋ ଠୁ ଟଙ୍କା ଖାଇ ଆସୁଥିଲେ। ପ୍ରତ୍ୟହ ଆସି, ମୋ ପାଖରେ ହିସାବ ଦିଏ, ''ଆଜି ଏଇ ଏଇ ଜିନିଷ ଆପଣଙ୍କ ଭାଇଯାଜୀଙ୍କୁ ଖାଇବା ପାଇଁ ଦେଇଚି। ଜେଲ୍ ଭିତରକୁ ଲୁଚେଇ ନେଇ ଯିବା ସୋଜା କଥା ହେଇଚି ନାଁ କଣ ? ସୁବାଦାର୍‌ଟା ଯେମିତି

ଗୋଟାଏ ବାଘ। ପ୍ରତ୍ୟେକଟି ଜିନିଷ ଭିତରକୁ ନେବା ପାଇଁ ହେଲେ, ତାକୁ ଗୋଟିଏ କରି ଟଙ୍କା ଲାଞ୍ଚ ଦେବାକୁ ପଡ଼େ। ସେ ଦରମା ପାଏ ବାଉନ ଟଙ୍କା, କିନ୍ତୁ ଉପୁରି ରୋଜଗାର କରେ ତାର ଚାରିଗୁଣ। ପୂରା ମିଲିଟାରୀ ମିଜାଜ୍—ଯୁଦ୍ଧକୁ ଯାଇଥିଲା ତ! ଏଇପରି ନାନା ଅବାନ୍ତର କଥା କହିବା ପରେ, ୱାର୍ଡ଼ର୍ ମୁର୍କି ମୁର୍କି ହସେ, ଆଉ କହେ, ''ହଜୁର୍‌ମାନେ ମା ବାପ! ହଜୁର୍ ମାନଙ୍କ ଭରସାରେ ତ ''ବାଲ୍‌ବଚା'' ଛାଡ଼ି ଏଇ ଦୂର ଦେଶକୁ ପେଟ 'ଧନ୍ଦା'ରେ ଆସିଚି।'' ଏମିତି ଭାବରେ ସେ ମୋ ପାଖରୁ ଟଙ୍କାଟିଏ ଆଦାୟ କରେ।

ସୁବାଦାର୍ ଓ ନେହାଲ୍ ସିଂହ, ଦୁହିଁଙ୍କର ମୋତେ ସୂଚନାରେ ବୁଝାଇବା ପାଇଁ ଇଚ୍ଛା ଥିଲା ଯେ, ଏଠି ରହିବା ପାଇଁ ହେଲେ ସାମାନ୍ୟ କିଛି ଖର୍ଚ୍ଚ ଦରକାର। ତା'ନହେଲେ, ସେମାନେ ଏତେ ଜୋର୍‌ରେ ଜୋର୍‌ରେ କଥା କହନ୍ତେ କାହିଁକି? ସେମାନେ ଗୋଟାଏ ମତ୍‌ଲବ୍‌ରେ ମୋତେ ଶୁଣାଇ ଶୁଣାଇ କଥା କହୁଚନ୍ତି।

ସୁବାଦାରକୁ ନେହାଲ୍ ସିଂହ ଉତ୍ତର ଦେଲା, ''ଦେବ ଆଉ କଣ? 'ବେଟା କରିଆ'* (ପୁଅ ନାଁରେ ରାଣ ପକାଉଚି) କରି କହୁଚି, କିଛି ଦେଇ ନାହିଁ। ସାହେବ ଆଙ୍କୁ ଲାଶ୍ ନେଇଯିବା ପାଇଁ ହୁକୁମ୍ ଦେଇଚନ୍ତି।''

''ଲାଶ୍ ନେବାର ହୁକୁମ୍ ଦେଇଚି ତ ଦେଇଚି। ଏଠି ବସିବା ପାଇଁ ତ ଆଉ ହୁକୁମ୍ ଦେଇ ନାହିଁ। ବାହାର ଲୋକ ଏଠି ରହିବା ପାଇଁ ଦାୟିତ୍ୱ ମୁଁ ନେଇ ପାରିବି ନାହିଁ।''

ସୁବାଦାର୍ ଗଡ଼ଗଡ଼ କରି ଆଉରି କେତେ କଣ କହି ଯାଉଥିଲା। ମୁଁ ନେହାଲ ସିଂହକୁ ଡାକି, ତା ହାତରେ ଟଙ୍କାଟିଏ ଗୁଞ୍ଜି ଦେଲି। ତା'ପରେ ଏ ସମ୍ବନ୍ଧରେ ଆଉ କୌଣସି ଉଚ୍ଚବାଚ ହେଲା ନାହିଁ। ଭାଗବଣ୍ଟା ପରେ ହେବ।

ସୁବାଦାର୍ ସେଣ୍ଟ୍ରିକୁ କହିଦେଲା—''ଏଇ ବାବୁଙ୍କୁ କେହି ଯେମିତି ବିରକ୍ତ ନକରନ୍ତି। 'ଦଫା'** (ୱାର୍ଡ଼ର ମାନେ ଦଳେ ଯିବା ପରେ ଆଉ ଦଳେ ଆସିବା।) ବଦଳି ବେଳେ ପ୍ରତ୍ୟେକ ଦଫା ନୂଆ ଦଫାକୁ ଏଇ କଥା କହିଦେବେ।''

ନେହାଲ୍ ସିଂହ ଯିବାବେଳେ ନମସ୍କାର କରି କହିଗଲା 'ପରଣାମ୍'। ଏ ଆଡ଼େ 'ନମସ୍କାର' କଥାଟିର ପ୍ରଚଳନ ନାହିଁ। ତା ପରିବର୍ତ୍ତେ ପାତ୍ରାପାତ୍ର ନିର୍ବିଚାରରେ ବ୍ୟବହୃତ ହୁଏ 'ପ୍ରଣାମ'। ଆମର ସୁଦ୍ଧା ଏ ଅଞ୍ଚଳରେ ରହି ରହି, ଏମିତି କେତେ କଥା କହିବା ଅଭ୍ୟାସ ହୋଇଗଲାଣି।

...ଶିଶିରର ସେଇ ଚିଠି ଖଣ୍ଡର ଭାଷା ଏବେ ବି ମନେ ଅଛି। ଶିଶିର ଆମ ଆଗରୁ ଜେଲ୍‌ରୁ ଖଲାସ ହୋଇଥିଲା। ଆମେ ଜେଲ୍ ଭିତରେ ସବୁବେଳେ କଥାବାର୍ତ୍ତା ହେଉଥିଲୁ ଯେ, ଯିଏ ଜେଲ୍‌ରୁ ମୁକୁଳିଯାଏ ସିଏ ଆଉ ଜେଲ୍ ଭିତର ଲୋକଙ୍କର କୌଣସି ଖବରଅନ୍ତର ନିଏ ନାହିଁ। ପ୍ରକୃତରେ ସବୁ କ୍ଷେତ୍ରରେ ପ୍ରାୟ ସେଇଆ ଦେଖାଯାଏ। ଯେଉଁମାନଙ୍କର ଜୀବନ, ମାସ ପରେ ମାସ, ବର୍ଷ ପରେ ବର୍ଷ, ଜେଲ୍ ଭିତରେ ସନ୍ତୁଳି ହୋଇ ହୋଇ ଦଗ୍ଧ ହୋଇଯାଏ, ଯେଉଁମାନଙ୍କର ଉଦ୍ଦାମ ଜୀବନୀଶକ୍ତିକୁ ନିୟମର ନିଗଡ଼ ଭିତରେ ପଙ୍ଗୁ କରି ଦିଆଯାଏ, ଯେଉଁମାନଙ୍କର ଜୀବନ ସ୍ୱଚ୍ଛନ୍ଦ ବିକାଶର ଅବକାଶ ପାଏ ନାହିଁ ବାହାରକୁ ସେମାନଙ୍କର ଖବର ଅନ୍ତର ପଠାଇବା ପାଇଁ କେତେ ବିଷୟବସ୍ତୁ ନିୟମିତ

ପୁଞ୍ଜୀଭୂତ ହୁଏ । ଏପରି ପ୍ରୟୋଜନ କିନ୍ତୁ ସରକାରୀ ନିୟମ ଶୃଙ୍ଖଳା ଭିତରେ ମେଣ୍ଟାଇବାର ସୁବିଧା ନାହିଁ। ସେଥିପାଇଁ ନୂଆ ରାଜବନ୍ଦୀ ଜେଲକୁ ଆସିଲେ, ଅନ୍ଧକାର ଯକ୍ଷପୁରୀ ଭିତରକୁ କ୍ଷୀଣ ଆଲୋକ ଆସିବାର ଗବାକ୍ଷ ଯେପରି ଫିଟି ଯାଏ। ବାହାର କର୍ମବହୁଳ ସଂସାରର ଶତ ମଧୁର ସମ୍ବନ୍ଧରୁ ବିଚ୍ଛିନ୍ନ କରି, ଯେଉଁ ବନ୍ଦୀକୁ ଅଣା ଯାଇଚି, ତାହା ସହିତ ସମ୍ବନ୍ଧ ସ୍ଥାପନର ବିଫଳ ଚେଷ୍ଟା କରାଯାଏ, ଯେଉଁ ବନ୍ଦୀ ମୁକ୍ତିଲାଭ କରୁଚି, ତା'ରି ମାଧ୍ୟମରେ। ଜେଲ୍–ଯନ୍ତ୍ରର 'ସେଫ୍‌ଟୀ–ଭଲ୍‌ଭ୍' ସଦ୍ୟୋମୁକ୍ତ ରାଜବନ୍ଦୀ। ସେ, ଜେଲ୍ ଭିତରର ଶତ ବ୍ୟର୍ଥତାର, ଅପାର ନିଷ୍ଫଳ ଆକ୍ରୋଶର, ଅପରିମିତ ଅଶ୍ରୁବେଦନା ଓ ଦୁର୍ନିବାର ଆକାଂକ୍ଷାର ସାମୟିକ ନିର୍ଗମନ ପଥ। ...ଜେଲ୍‌ରୁ ବାହାରିବା ବେଳେ, କେତେ ଲେଖିବା କଥା, କେତେ ଇଣ୍ଟରଭ୍ୟୁ କରିବା କଥା, କେତେ କାମ କରିଦେବା ପ୍ରତିଜ୍ଞା, କେତେ ପ୍ରକାରର ଫରମାସ–ବିଦାୟ ନେଇ ଯିବା ଦିନର ଫୁଲମାଳା, ବିଦାୟ ବେଳର ଘଟା, ପ୍ରଣାମ, ନମସ୍କାର, ଆଦାବ୍, ଆଲିଙ୍ଗନ୍ ଅଯାଚିତ ଆଳାପର ବାହୁଲ୍ୟ, ଦରଜା ପର୍ଯ୍ୟନ୍ତ ପ୍ରାୟ ଶୋଭାଯାତ୍ରା ପରି ଆଡ଼ମ୍ବରରେ ବଳାଇ ଦେବା – ଏସବୁ ପ୍ରତ୍ୟେକଟି କଥା, ଜେଲ୍‌ର ଗତାନୁଗତିକତାର ଅଙ୍ଗ ହେଲେ ବି, କେଉଁଥିରେ ଆନ୍ତରିକତାର ଅଭାବ ନାଇଁ। ତା'ପରେ କଣ ? ତା'ପରେ କଣ ହେବ, ସେ କଥା ଆଖି ବୁଜି ବି କହି ଦିଆଯାଇପାରେ। ଡାକବିଭାଗ କର୍ତ୍ତୃପକ୍ଷ କହି ଦେଇ ପାରନ୍ତି, ଦେଶର ଅନ୍ଦାଜ କେତେ ଲୋକ, ଆସନ୍ତା ବର୍ଷ ଠିକଣା ନଲେଖି ଡାକବାକ୍‌ସରେ ଚିଠି ପକାଇବେ। ଆଉ ରାଜବନ୍ଦୀମାନେ କହି ଦେଇ ପାରନ୍ତି, ମୁକୁଳିଥିବା ବନ୍ଦୀ ଗେଟ୍ ବାହାରକୁ ଯିବା ପରେ ଜେଲ୍ ଭିତର ଲୋକଙ୍କ କଥା ଭୁଲିଯିବ। ...ଆମମାନଙ୍କୁ ଭୁଲ୍ ପ୍ରମାଣିତ କରିବା ପାଇଁ, ଶିଶିର ଜେଲ୍ ବାହାରୁ ଦାଦାକୁ ଚିଠି ଲେଖିଛି। ଚିଠିର କେତେଟା ଧାଡ଼ି ଦାଦା ଅଣ୍ଡରଲାଇନ୍ କରି ଦେଇଥିଲା। ଏବେ ବି ମନେ ଅଛି। "ଅଧିକାଂଶଙ୍କ ପର୍ଯ୍ୟାୟରେ ମୋତେ ପକାଇବ ନାହିଁ। ଜେଲ୍‌ରୁ ମୁକୁଳିବାର ସାତ ଦିନ ଭିତରେ ଚିଠି ଦେଉଚି। ଅମୁକ, ଅମୁକ, ଅମୁକଙ୍କୁ ମୋର ପ୍ରଣାମ ଜଣାଇଦେବ।"

...ହର୍‌ଦାର ଦୁବେଜୀଙ୍କ ସ୍ତ୍ରୀ, ବୁଢ଼ୀ ସେ ବି ମୋତେ ପ୍ରଣାମ କରେ। ଅଥଚ ଦାଦାକୁ କହେ 'ଧରମବେଟା'। ଗରିବଲୋକ। କିନ୍ତୁ ସେଦିନ ଦେଖାହେବା– ବେଳେ, କାନିଗଣ୍ଠିରୁ ତିନୋଟି ଟଙ୍କା ବାହାର କରି ଦେଲା–ଦୁଇ ଆଖିରେ ତାର ଲୁହ। ମନେ ହେଲା ଦୁବେଜୀଙ୍କୁ ଲୁଚାଇ ଯେପରି ଟଙ୍କା ଦେଉଚି। କାହିଁକି, ଜାଣେ ନାଁ...

ମୋକଦ୍ଦମା ଚାଲିଥିବା ବେଳେ, ଭୟ ଓ ଉତ୍କଣ୍ଠାର ସହିତ ମୋତେ କହିଥିଲେ, ଟଙ୍କା ପଇସା ଦରକାର ହେଲେ, ସେ କିଛି ଯୋଗାଡ଼ କରି ଦେଇ ପାରିବେ। ଦୁବେଜୀ ଅବ୍‌ଶୋଷ କରିଥିଲେ, "ଭଗବାନ ନାରାଜ ବୋଲି ମୋତେ ଆଉ ମୋ ସ୍ତ୍ରୀକୁ ପୋଲିସ ଧରିଲା ନାହିଁ। ନଇଲେ ମୁଁ ବି ତ 'ଜୁଲୁସେ ଶରୀକ୍'* ('ଶୋଭାଯାତ୍ରାରେ ଯୋଗ ଦେଇଥିଲି।') ହୋଇଥିଲି। ମୋ ହାତରେ ଥିଲା ସବୁଠାରୁ ବଡ଼ 'ତିରଙ୍ଗା'* (ତ୍ରିରଙ୍ଗ ପତାକା)। ମୋତେ ଜେଲ୍ ବାହାରେ ରଖିବା ଯଦି ଭଗବାନଙ୍କର ମତ୍‌ଲବ୍, ତା'ହେଲେ 'କଂଗ୍ରେସୀକେ ନାତେ'* (କଂଗ୍ରେସ ସଭ୍ୟ ହୋଇଥିବାରୁ) ବିଲୁବାବୁଙ୍କ ମୋକଦ୍ଦମାର ତଦ୍‌ବିର୍ କରି, ମୋ ନିଜର 'ଫର୍ଜ୍ ଅଦା'* (କର୍ତ୍ତବ୍ୟ ସମ୍ପାଦନ) କରିବା ଉଚିତ।" ମୁଁ ଟଙ୍କା ନେବାକୁ ଅସ୍ୱୀକାର କଲି। ଦୁବେଜୀ ମୋ ଆଚରଣରୁ ବୁଝିଲେ ଯେ, ମୁଁ

ଦାଦାର ମୋକଦ୍ଦମା ଡ଼ିଫେଣ୍ଡ୍ କରିବାକୁ ଚାହେଁ ନାହିଁ। ମୁଁ ମଧ୍ୟ ମନା କରିଦେଇଥିଲି; କାରଣ ଜେଠେଇମା' କୋଉଠୁ କେଜାଣି ମୋକଦ୍ଦମା ଖର୍ଚ୍ଚ ପାଇଁ ମୋତେ ତିନିଶହ ଟଙ୍କା ଦେଇଥିଲେ। ଜେଠେଇମା' କେବଳ କହିଥିଲେ, ''ହରେନ୍ ବାବୁ ଓକିଲକୁ ଦେଇଦେବୁ।'' ଟଙ୍କା ଦେବା ବେଳେ ଜେଠେଇମା'ଙ୍କ ମୁହଁର ଭାବ, ଠିକ୍ ଦୁବେଜୀଙ୍କ ସ୍ତ୍ରୀଙ୍କ ପରି। ତା'ପରଠାରୁ ଦୁବେଜୀ ନିଜେ ଓକିଲ ଘରକୁ ଯିବା ଆସିବା କରୁଥିଲେ।

ଘୋଡ଼ା ପିଠିରେ ଦୁବେଜୀ। ନାଲି ଘୋଡ଼ାଟା ଟିକିଏ ଛୋଟେଇ ଛୋଟେଇ ଚାଲିଚି। ଘୋଡ଼ାରୁ ଓହ୍ଲାଇ ଦୁବେଜୀ ଘୋଡ଼ା ପିଠିରେ ଗୋଟାଏ ଚାପୁଡ଼ା ମାରିଲେ। ପିଠିରୁ ଅଖା ଗୁଡ଼ାକ କାଢ଼ି ଘୋଡ଼ାଟାକୁ ହରେନ୍ ବାବୁଙ୍କ ଗେଟ୍ ବାହାରେ ଇଉକାଲିପଟାସ୍ ଗଛରେ ବାନ୍ଧିଲେ। ମୁଁ ଅବଶ୍ୟ ଜେଠେଇମା' ଦେଇଥିବା ଟଙ୍କା ହରେନ୍‌ବାବୁଙ୍କୁ ଦେଇଥିଲି। ସେ ବାପାଙ୍କ ବନ୍ଧୁ। କିନ୍ତୁ ଜେଠେଇମା'ଙ୍କ ଟଙ୍କା ପାଇବା ସତ୍ତ୍ୱେ ବି, ଦୁବେଜୀଙ୍କ ପାଖରୁ ପୁଣି ଟଙ୍କା ନେବା ପାଇଁ ସେ ଇତସ୍ତତଃ କରିନଥିଲେ।

ତା'ପରେ ଦୁବେଜୀଙ୍କ ସ୍ତ୍ରୀ ନିଜକଥା କହି ପକାଇଲେ। ''ମୋ ସ୍ୱାମୀତ 'ବେଟା' ମୋକଦ୍ଦମାର ଯଥେଷ୍ଟ 'ପୈରବୀ' (ତଦ୍‌ବିର୍) କରୁଛନ୍ତି। ଆଖି ବୁଜି ପଇସା ଖର୍ଚ୍ଚ କରୁଚନ୍ତି। କିନ୍ତୁ ଫଳ କଣ ହେଲା ? ଅସଲ କଥା, ପୁଲିସ ଯାହା ପକ୍ଷରେ, ମୋକଦ୍ଦମାରେ ତା'ରି ଜିତ୍। ତୁମ କଥା କୁଆଡ଼େ ପୁଲିସ ଶୁଣେ। କଲେକ୍ଟର୍ ସାହେବ ଶୁଣୁଚି, ତମମାନଙ୍କ ସାଙ୍ଗରେ 'ସଲାଇ' ନ କରି କିଛି କରନ୍ତି ନାହଁ। ତମରି ଦଳର ନୋଖେଲାଲ୍ ଦେଖନା, ହର୍‌ଦାବଜାରର ଦୋକାନୀମାନଙ୍କୁ ହନ୍ତସନ୍ତ କରି ମାରୁଚି। କିନ୍ତୁ ଦାରୋଗା ବାବୁ ତା' ହାତ ମୁଠାରେ। ସରକାର ଶୁଣୁଚି ତମ ଦଳର ଲୋକମାନଙ୍କୁ ଦରମା ଦେଉଚନ୍ତି। ସେତେବେଳେ ଯାଇଁ ବୁଝିଲି ଦୁବେଜୀଙ୍କୁ ଲୁଚାଇ ଟଙ୍କା ଦେବାର ମତ୍‌ଲବ୍। ବିଲୁବାବୁ ତାଙ୍କର 'ଧର୍ମବେଟା' ତା' ପାଇଁ ନିଜର ସରଳ ବୁଦ୍ଧିରେ ଯାହା କର୍ତ୍ତବ୍ୟ ମନେ କରିଛନ୍ତି, ତାହା କରିବା ପାଇଁ ଇତସ୍ତତଃ କରିନାହାନ୍ତି। ମୋତେ ସେମାନେ ଭାବନ୍ତି, ମୁଁ ପୋଲିଲ୍ ଲୋକ। ସେମାନଙ୍କୁ ବା କାହିଁକି ଦୋଷ ଦେବି ? ଦେଶସାରା ଲୋକେ ତ ସେଇଆ ଭାବୁଚନ୍ତି। ସରଳମନା ଦୁବେରନ୍ କେବଳ ପୂର୍ବ ପରିଚୟ ଦାବିରେ ମୋ ମୁହଁ ଉପରେ କଥାଟା ସିଧା କହିଦେଲା ସିନା। ଇଚ୍ଛା ହେଉଥିଲା ଟଙ୍କା ତିନିଟା ତାଙ୍କ ମୁହଁ ଉପରକୁ ଫିଙ୍ଗି ଦେବା ପାଇଁ; କିନ୍ତୁ କହିଲି ''ମୋକଦ୍ଦମା ରାୟ ତ ବାହାରି ଯାଇଛି। ଟଙ୍କା ଆଉ କ'ଣ ହେବ ?'' —କିନ୍ତୁ ଲକ୍ଷ୍ୟ କଲି, ତାଙ୍କର ପ୍ରତ୍ୟୟ ହେଉ ନଥିଲା ଯେ, କଲେକ୍ଟର୍ ବା ଲାଟ୍‌ସାହେବ, ଆଉ କିଛି କରି ପାରିବେ ନାହିଁ। ତାଙ୍କ ନୈରାଶ୍ୟପୀଡ଼ିତ ମୁହଁ ଆଡ଼େ ଚାହିଁ ମନେ ହେଲା, ଟଙ୍କାଟା ମୋର ନେବା ଉଚିତ୍। କହିଲି, ''ଆଚ୍ଛା, ଦିଅ ଟଙ୍କାଟା।'' ଏକ ସନ୍ତାନହୀନ ନାରୀର ପରସନ୍ତାନ ବାତ୍ସଲ୍ୟର ଆବେଗ ଆଗରେ ମୋର ଯୁକ୍ତି ଆଉ ସିଦ୍ଧାନ୍ତ ମୁଣ୍ଡ ନୋଇଁଦେଲା। କିନ୍ତୁ ମୋକଦ୍ଦମାରେ ସାକ୍ଷ୍ୟ ଦେବା ବେଳେ, ନିଜ ରାଜନୈତିକ principle କୁ ଟିକିଏ ନମନୀୟ କରି ଦେଇଥିଲେ, କି କ୍ଷତି ହୋଇଥାନ୍ତା ? ସେତେବେଳେ ମୁଁ ଯେପରି ସାଧାରଣ ମଣିଷ ନଥିଲି। ସେତେବେଳେ ଜନମତ ବିରୁଦ୍ଧରେ, ପରିଚିତ ଅପରିଚିତ ସମସ୍ତଙ୍କ ବିରୁଦ୍ଧରେ ମୋର ଏକାକି ମୁଣ୍ଡ ଉଠାଇ ଠିଆ ହେବା କଥା, ନିନ୍ଦୁକ ଓ ବିରୋଧୀ ମାନଙ୍କୁ ମୋର principle ଦେଖାଇବା କଥା, ରାଜନୈତିକ ମତବାଦର କଥା ଛାଡ଼ି ଦେଲେ ବି, ସେତେବେଳେ ସେଠାରେ ବୋଧହୁଏ ମୋର ବ୍ୟକ୍ତିଗତ ଜିଦ୍‌ର

ପ୍ରଶ୍ନ ଆସି ଯାଇଥିଲା। ମୋ ଉପରେ ଚାପ ଦେଇ, ମୋ ମତ ବଦଳାଇ ଦେବେ, ଏପରି ନମନୀୟ ରାଜନୈତିକ ମତ ମୁଁ ପୋଷଣ କରେ ନାହିଁ। ଲୋକେ କ'ଣ ମୋ ମନ ଭିତରର କଥା ବୁଝିଛନ୍ତି ? ଦୁବେଜୀଙ୍କ ସ୍ତ୍ରୀ ମୋ ସମ୍ବନ୍ଧରେ ଯାହା ଭାବିଛନ୍ତି, ସାଧାରଣ ଲୋକେ ହୁଏତ ତା ଅପେକ୍ଷା ଆଉରି ଖରାପ ଧାରଣା ପୋଷଣ କରନ୍ତି। ହୁଏତ କାହିଁକି, ନିଶ୍ଚୟ କରନ୍ତି। ନିତି ପ୍ରତି ତ ଏହାର ପ୍ରତ୍ୟକ୍ଷ ପ୍ରମାଣ ଦେଖୁଛି। ସେଦିନ ଫୁଟ୍‌ବଲ୍ ପଡ଼ିଆ ଧାରରେ ବସି ଯେଉଁ ଛାତ୍ରଦଳ ସିଗାରେଟ୍ ଟାଣୁଥିଲେ, ମୁଁ ସେମାନଙ୍କ ପାଖ ଦେଇ ସାଇକେଲ୍‌ରେ ଚାଲିଯିବା ବେଳେ, ବେଶ୍ ବଡ଼ପାଟିରେ ସେମାନଙ୍କ ଗଳାଖଙ୍କାର ମାରିବା ଶୁଣିଚି। ପଡ଼ାର ପୁଅଝିଅମାନେ ବିସ୍ମିତ, କୌତୂହଳୀ ଦୃଷ୍ଟିରେ ମୋ ଆଡ଼େ ଚାହିଁବା ଦେଖିଛି। ବାଲ୍ୟବନ୍ଧୁ ସୌରୀନ୍ ଅପରିଚିତ ପରି ମୁହଁ ବୁଲାଇ ଚାଲିଯିବା ପାଇଁ କୁଣ୍ଠିତ ହୋଇନାହିଁ। ହତ୍ୟା କରିବାର ଭୟ ଦେଖାଇ ବେନାମୀ ଚିଠି ପାଇଛି। କି ଯୁକ୍ତିହୀନ ଚିଠି। ପ୍ରଥମେ, କିପରି ଉଚ୍ଚମନା ପିତାର ପୁତ୍ର ତାହା ସ୍ମରଣ କରାଇ ଦେଇ, ଶେଷ ଲାଇନ୍‌ରେ ମୋର ପିତୃତ୍ୱ ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରିଛନ୍ତି। ଜେଠେଇମା' ଓ ନ'ଦି ପର୍ଯ୍ୟନ୍ତ ନିହାତି ପ୍ରୟୋଜନ ନଥିଲେ, କଥା କହନ୍ତି ନାହିଁ। ଜଣେ ଡ଼ିଷ୍ଟ୍ରିକ୍ଟବୋର୍ଡ଼ ମେମ୍ବର୍ ଅନ୍ୟ ଜଣେ ମେମ୍ବର୍‌କୁ କହିବା ଶୁଣିଚି, ଦୁଇ ଭାଇ ସହଦେଓର ଭଉଣୀ ସହିତ ପ୍ରେମରେ ପଡ଼ିଥିଲେ। ସେଥିପାଇଁ ଇର୍ଷାରେ କୁଆଡ଼େ ମୁଁ ଭାଇ ବିରୁଦ୍ଧରେ ସାକ୍ଷ୍ୟ ଦେଇଚି। ନହେଲେ ଫାଶୀ ମୋକଦ୍ଦମାରେ କିଏ ନିଜ ଭାଇ ବିରୁଦ୍ଧରେ ସାକ୍ଷ୍ୟ ଦେଇପାରେ ? ସରସ୍ୱତୀ ସମ୍ପର୍କରେ ଏପରି ଭାବରେ ମୁଁ ତ କେବେ ଭାବି ନାହିଁ! ଆଉ ଦାଦା ଆଡୁ ମଧ୍ୟ ଏପରି କେବେ କିଛି ଲକ୍ଷ୍ୟ କରି ନାହିଁ, ଯୋଉଥିରୁ ବୁଝା ପଡ଼ିବି ଯେ, ଦାଦା ତାକୁ ଭଲପାଏ। କିନ୍ତୁ ଲୋକଙ୍କ ମୁହଁ ବନ୍ଦ କରିବ କିଏ ?

...ଜେଲ୍‌ରେ ଦାଦାର ମୋକଦ୍ଦମା ଚାଲିଥିବା ବେଳେ, ମୁଁ ସାକ୍ଷୀ ଦେବା ଦିନ, ଜେଲ୍ ବାହାରେ କି ଭିଡ଼! ଜେଲ୍ ଭିତରେ ମୋକଦ୍ଦମା ଚାଲିଛି। ଖୋଲା ଇଜ୍‌ଲାସ୍‌ରେ ଏପରି ମାରତ୍ମକ ଆସାମୀର ବିଚାର କିପରି କରାଯାଇ ପାରିବ ? କେଇଜଣ ଚୌକୀଦାର, ଦଫାଦାର, କନେଷ୍ଟବଳ ଓ ଦାରୋଗା ସାକ୍ଷୀଙ୍କ ସହିତ, ଗେଟ୍‌ରେ ପୁଲିସ ଭ୍ୟାନ୍‌ରୁ ଓହ୍ଲାଇଲି। ଜନତା ଆଡ଼େ ଚାହିଁପାରୁ ନାହିଁ, କିନ୍ତୁ ଜନତାର ଅନୁଯୋଗ ଓ ଭର୍ତ୍ସନାପୂର୍ଣ୍ଣ ଦୃଷ୍ଟି ଅନୁଭବ କରି ପାରୁଛି। ଜନତାର ବିକ୍ଷୋଭକୁ ମୁଁ ଭ୍ରୂକ୍ଷେପ କରେ ନାହିଁ, ଏଇପରି ଭାବ ଦେଖାଇବା ପାଇଁ, ଥରେ ଜୋର୍ କରି ମୁଣ୍ଡ ଉଠାଇ ଏଆଡ଼େ ଚାହିଁଲି। ବୋଧହୁଏ ମାନସିକ ଚାଞ୍ଚଲ୍ୟ ହେତୁ, କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିର ମୁହଁ ଆଡ଼କୁ ମନୋବିଶ୍ଳେଷଣ ଦୃଷ୍ଟିରେ ଚାହିଁବାର କ୍ଷମତା ମୋର ନଥିଲା। ଚିଡ଼ିଆଖାନାରେ ବନ୍ୟଜନ୍ତୁଙ୍କୁ ଯେଉଁ ଦୃଷ୍ଟିରେ ଦେଖନ୍ତି, ସେଦିନ ଜେଲ୍‌ଓ୍ୱାର୍ଡ଼ରମାନେ ସେଇ ଦୃଷ୍ଟିରେ ମୋ ଆଡ଼େ ଚାହିଁଛନ୍ତି, ଜଜ୍ ସାହେବ ଅନାଇଛନ୍ତି ସପ୍ରଶଂସ ଦୃଷ୍ଟିରେ। କେବଳ ଜେଲ୍‌ର ପୁରୁଣା କୟଦୀମାନଙ୍କ ଆଖିରେ ଦେଖିଚି, ଉଦାସୀନତାର ଭାବ। ଆଉ କାହାରି ଆଖିରେ ସେପରି ଔଦାସୀନ୍ୟ ଲକ୍ଷ୍ୟ କରି ନାହିଁ। ଜେଲ୍‌ର ରାଜବନ୍ଦୀ ମାନଙ୍କ ସହିତ, ସେତେବେଳେ ସାକ୍ଷାତ ହୋଇନାହିଁ, ସାକ୍ଷାତ ହୋଇଥିଲେ, ସେମାନଙ୍କ ଦୃଷ୍ଟି କିପରି ଉଗ୍ର, ହିଂସ୍ର ହୋଇଥାନ୍ତା, ତାହା ବେଶ୍ ଅନୁଭବ କରି ପାରୁଛି। ଏ ମୋକଦ୍ଦମାରେ ଦାଦା ସହିତ ଆଉ ଦୁଇଜଣ ଆସାମୀ ଥିଲେ – ସୁରଜ୍‌ଦେଓ ଆଉ ହରିଶ୍ଚନ୍ଦ୍ରର୍। ମୁଁ ଇଜାହାର୍ ଦେବାକୁ ଉଠିବା ମାତ୍ରେ, କାଠଗଡ଼ା ଭିତରୁ ହରିଶଚନ୍ଦର୍

ଚିତ୍କାର କରି ଉଠିଲା 'ଛି! ଛି! ଛି! ଛି!' ତାର ଚିତ୍କାର ଶୁଣି ମୁଁ ସେଇ ଆଡ଼େ ଫେରି ଚାହିଁଲି। ତା' ଆଖିରୁ ଫୁଟି ବାହାରୁଥିଲା ଘୃଣାର ଫୁଲ୍‌କୀ! ତାର ତୀକ୍ଷ୍ଣସ୍ୱର ଭିତରେ ଯେତେ ତୀବ୍ର ବ୍ୟଙ୍ଗ ଥିଲା, ନିଷ୍ଫଳ ଆକ୍ରୋଶ ଥିଲା ତା ଅପେକ୍ଷା ବେଶୀ! ...ଥରେ ଆଶ୍ରମରେ ଗୋଟାଏ ଧଣ୍ଡସାପ ଚିମୁଟାରେ ଧରି ଦାଦା ପାଖକୁ ଆଣିଥିଲି। ଦାଦା ସେତେବେଳେ ବଗିଚାରେ କାମ କରୁଥିଲା। ସାପର ଧଳାପେଟଟା ଦେଖି, ଦାଦା ଆଖିରେ ମୁହଁରେ ଯେଉଁ ଭାବ ଫୁଟି ଉଠିଥିଲା, —ସେଇ ଭାବ ଲକ୍ଷ୍ୟ କଲି ସୁରଜ୍‌ଦେଓଙ୍କ ମୁହଁରେ। ତୀବ୍ର ଘୃଣାରେ ସେ ମୋ ଆଡୁ ମୁହଁ ଫେରାଇ ନେବାକୁ ଚାହେଁ। ଆଉ ଦାଦା—କାଠଗଡ଼ା ଭିତରେ ଖଣ୍ଡେ କମ୍ବଳ ପକାଇ ବସିଚି, ଖଣ୍ଡେ ନାଲିଆମଲାଟ ବହି ପରି ଦୃଷ୍ଟି ନିବଦ୍ଧ। ମୁହଁଟା ସମ୍ପୂର୍ଣ ବ୍ୟଞ୍ଜନାହୀନ। ମୋର ମନେ ହେଲା, ଏହା ପ୍ରକୃତ ଅଭିନିବେଶ ନୁହେଁ, ଇଚ୍ଛାକୃତ ଦୃଷ୍ଟି ସଂଯୋଗ ମାତ୍ର। ତା'ପରେ ହରିଶଚନ୍ଦ୍ରର ସମ୍ପର୍କରେ, ଜଜ୍‌ସାହେବଙ୍କ ପାଖରେ ସରକାରୀ ଓକିଲ୍‌ଙ୍କ ନାଲିସ୍—ହାକିମଙ୍କ କ୍ରୋଧ ଆଉ ହରେନ୍ ବାବୁଙ୍କ ଆଡ଼େ ଚାହିଁ ବିରକ୍ତି ପ୍ରକାଶ—ହରେନ୍ ବାବୁଙ୍କ ଉଦ୍‌ବେଗ ଓ ଥରେ କାଶି ତାହାକୁ ଦମନ କରିବାର ପ୍ରୟାସ—ଆସିଷ୍ଟାଣ୍ଟ ଜେଲର୍ 'ଅନ୍ ଡ୍ୟୁଟୀ' ଓ ଦାରୋଗାଙ୍କର ଚାଞ୍ଚଲ୍ୟ, କୋର୍ଟରୁମ୍ ହୋଇ ନଥିଲେ, ସେମାନେ ଅବିକା ଆସାମୀର ମଜା ବାହାର କରି ଦେଇଥାନ୍ତେ—ଦୁଇ ଜଣଙ୍କ ଭିତରେ ଏଇପରି ଅର୍ଥସୂଚକ ଦୃଷ୍ଟି ବିନିମୟ—ସେଇ ସବୁ ଛବି ଆଖି ଆଗରେ ଭାସି ଉଠୁଛି। ହରିଶଚନ୍ଦର୍ ହତାଶ ହୋଇ ପଡ଼ିଚି—କହୁଚି "କିୟା କରୋଗେ? ଫାଁଶୀ ସେ ଭି କୁଛ ବେଶୀ ଦୋଗୋ କ୍ୟା?" ୱାର୍ଡ଼ର୍ ଓ ପୋଲିସ୍ ଆସାମୀର କାଠଗଡ଼ା ବେଢ଼ିଗଲେ। ହରିଶଚନ୍ଦ୍ରର୍ ସେଇ କାଠଗଡ଼ା ଭିତରୁ ମୋତେ ତୀବ୍ର କଣ୍ଠରେ କହିଲା... "କୁତ୍ତା କାଁହାକା!" ଜଜ୍‌ସାହେବ ଚଷମା ପୋଛୁଚନ୍ତି। ପେଷ୍କାର୍ ଆସନ ଛାଡ଼ି ହରିଶ୍‌ଚନ୍ଦର୍‌କୁ କ'ଣ କହିବା ପାଇଁ ଗଲା। ଦାଦା ହରିଶଚନ୍ଦର ଆଡ଼େ ଚାହିଁଲା। ଚାରିଆଖି ଏକାଠି ହୋଇଗଲା। ଦାଦା ଆଖିର ଦୃଷ୍ଟି ମିନତିଭରା—କହିବାକୁ ଚାହେଁ, ହରିଶଚନ୍ଦର୍ ସେତିକି ଥାଉ, ଗୋଟାଏ scene ହୋଇଗଲା ଯେ! ହରିଶଚନ୍ଦର୍ ଚୁପ୍ ରହିଲା। ଇଜଲାସ୍‌ର କାମ ପୁଣି ଆରମ୍ଭ ହେଲା।...

ଗେଟ୍‌ଟୀ ବିଛା ରାସ୍ତାରେ ଏକା ସାଙ୍ଗରେ ଅନେକ ଗୁଡ଼ାଏ ଜୋତାର ଶବ୍ଦ ଶୁଭୁଛି। ଅନ୍ଧାରରେ ରାସ୍ତା ଆଡ଼ଟା ଦେଖାଯାଉ ନାହିଁ। ଦୂରରୁ କେବଳ ଦେଖାଯାଉଚି, ୱାର୍ଡ଼ର୍ ମାନଙ୍କର ଲମ୍ବା ବାରାକ୍‌ବାରଣ୍ଡାରେ କଳା ସେଡ୍ ଦିଆ ଆଲୁଅ। ବାରାକ୍‌ରେ ୱାର୍ଡ଼ର୍‌ମାନଙ୍କର ଢୋଲକ ଖଞ୍ଜଣୀ ମାଡ଼ ସାଙ୍ଗରେ କୀର୍ତ୍ତନ ଚାଲିଛି—ତାହାର ଉଗ୍ର ସ୍ୱର କାନରେ ପଡୁଛି। ଭାସି ଆସୁଚି, କହିହେବ ନାହିଁ, କାନପର୍ଦ୍ଦା ଉପରେ ରୀତିମତ ଆଘାତ କରୁଛି। କିନ୍ତୁ ସେ ବିକଟ ଶବ୍ଦକୁ ସୁଦ୍ଧା ବୁଡ଼ାଇ, କ୍ରମେ ନିକଟତର ହୋଇ ଆସୁଥିବା ଜୋତାଶବ୍ଦ ଜେଲ୍‌ଗେଟ୍ ପାଖରେ ପହଞ୍ଚିଲା। ଦଳେ ୱାର୍ଡ଼ର୍ ଆସୁଛନ୍ତି। ଅଧିକାଂଶଙ୍କ ପାଦରେ ହଳଦିଆ ରଙ୍ଗର କାବୁଲି ସାଣ୍ଡାଲ୍। ଦୁଇଜଣଙ୍କ ପାଦରେ ପୁରୁଣା ବୁଟ୍। ଯୁଦ୍ଧ ପାଇଁ ଆଉ ବୁଟ୍ ଜୋତା ମିଳୁନାହିଁ ବୋଧହୁଏ।

ଜେଲ୍‌ଗେଟ୍‌ର ଦୋତାଲାରେ ୱାର୍ଡ଼ର୍ ଏଗାରଟା ବାଜିବାର ଘଣ୍ଟା ପିଟିଲା। ଏକ ସଙ୍ଗରେ ଢ଼ଂ ଢ଼ଂ କରି ଦୁଇଟି କରି ପାଞ୍ଚଥର, ତାପରେ ଆଉରି ଥରେ। ଆରି ଭିତରେ କେତେବେଳେ ଦୁଇ ଘଣ୍ଟା ବିତି ଗଲାଣି। କେତେବେଳେ ଦଶଟା ବାଜିଗଲା, ଜାଣି ପାରି

ନାହିଁ। ଗେଟ୍ ସାମ୍ନାରେ ୱାର୍ଡ଼ର୍ ଦଳ କୌତୁହଳୀ ଦୃଷ୍ଟିରେ ମୋତେ ଚାହିଁ ଦେଖୁଚନ୍ତି। ଇଏ ପୁଣି—କିଏ—ଆସିଲା, ଏଇ ଭଙ୍ଗିରେ। ଜଣେ ପଚାରିଲା, ମୋ ପାଖରେ ଦିଆସିଲି ଅଛି କି ନାହିଁ। ମୁଁ ଉତ୍ତର ଦେଲି 'ନାହିଁ'। ଇତି ମଧ୍ୟରେ ଭିତର ୱାର୍ଡ଼୍‌ଗେଟର ତାଲା ଖୋଲିଗଲା। ୱାର୍ଡ଼ରମାନେ କୋଳାହଳ କରି ଭିତରେ ପଶିଲେ। ଖାତାରେ ନାଁ ଲେଖା ହେଲା।

ଗେଟ୍ ୱାର୍ଡ଼ର ହସି ହସି ପଚାରିଲା, ''କିଛି ନାଜାୟେଜ୍ (ଆଇନବିରୁଦ୍ଧ ଜିନିଷ) ଭିତରକୁ ନେଇ ଯାଉ ନାହଁ ତ ?''

ଜଣେ ଉତ୍ତର ଦେଲା, ''ହଜୁର ସର୍ଚ୍ଚ କିଆ ଯାୟ।''

ସୁବାଦାର୍ କହିଲା . . . ''ତାପରେ ମୁଁ ଘରକୁ ଯାଇଁ ପୁଣି ଥରେ ଗାଧାଏ, ଆଉ କଣ ? ତମମାନଙ୍କୁ ମୁଁ ଚିହ୍ନିଛି। ତମେ ମାନେ ତ ଆଉ ବର୍ଦ୍ଦି ପକେଟ୍‌ରେ ଜିନିଷ ରଖ ନାହିଁ।''

ରେଜିଷ୍ଟର୍‌ରେ ନାଁ ଲେଖା ହେଲା। ଜେଲ୍ ଭିତରର ଲୁହା କବାଟ ଫିଟିଲା। ଅବଶ୍ୟ ପୁରାପୁରି ନୁହେଁ, ଗୋଟାଏ ପାଖ କବାଟର ଛୋଟ ଜଳାକବାଟ ଟି ମାତ୍ର ଖୋଲିଲା। ଭିତରେ ଜମାଟ ବନ୍ଧା ଅନ୍ଧାର। ଜଣେ ଜଣେ କରି, ନୂଆ ଦଳର ୱାର୍ଡ଼ର୍‌ମାନେ ଜଣକ ବ୍ୟତୀତ ଅନ୍ୟ ସମସ୍ତେ ପାସେଜ୍‌ର ଉଜ୍ଜ୍ୱଳ ଆଲୋକରୁ ଜେଲ୍ ଭିତରର ଅନ୍ଧାର ଭିତରେ ମିଳେଇ ଗଲେ। ଗେଟ୍ ଜମାଦାର କବାଟ ବନ୍ଦ କରି ତାଲା ପକାଇଲା — ପ୍ରକାଣ୍ଡ ଗୋଟାଏ ରିଙ୍ଗ୍‌ରେ ଶତାଧିକ ଚାବି। ତାଲା ବନ୍ଦ କରିବା ପରେ, ଅନ୍ୟମନସ୍କ ଭାବରେ ଥରେ ତାଲାଟାକୁ ଜୋର୍‌ରେ ଟାଣି ଦେଖିଲା, ଠିକ୍ ପଡ଼ିଚି କି ନାଇଁ। ଟାଣିବାଟା ଗୋଟାଏ reflex action ପରି ମନେହେଲା। ତା'ପରେ ମୋ ପଟର ଫାଟକ ସାମ୍ନାରେ ଆସି ସେ ଠିଆ ହେଲା। ଗେଟ୍ ବାହାରେ ବନ୍ଧୁକଧାରୀ ସେଣ୍ଟ୍ରି ବଦଳ ହେଲା। ଆଗ ସେଣ୍ଟ୍ରିଟି ଥିଲା ଗମ୍ଭୀର ପ୍ରକୃତିର, ଏଇଟିର କିନ୍ତୁ ଅନ୍ୟରୂପ। ଭିତର ପଟର ଜମାଦାର୍ ବାହାର ସେଣ୍ଟ୍ରି ପାଖରୁ ଖଇନି ମାଗିଲା; ତା ପରେ ଦୁହିଁଙ୍କ ଭିତରେ ଅନୁଚ୍ଚ କଣ୍ଠରେ ଚାଲିଲା କଥାବାର୍ତ୍ତା। ବୋଧହୁଏ ମୋରି କଥା। ଗେଟ୍ ଭିତରେ ନୂଆ ଦଳର ଯେଉଁ ୱାର୍ଡ଼ର୍‌ଟି ରହିଯାଇଚି, ସୁବାଦାର ସାହେବଙ୍କ ସଙ୍ଗରେ ସେ ଗପ ଜୋଡ଼ି ଦେଇଚି। ସୁବାଦାର୍ ଉଞ୍ଚା ଟୁଲ୍ ଉପରେ ବସି, ଖଣ୍ଡେ ଖାତା ହଲାଇ, ହାୱା ଖାଉଚି। ବୋଧହୁଏ ଲେଣଦେଣର କିଛି ବ୍ୟାପାର, କିମ୍ବା କୌଣସି ଜିନିଷ ହୁଏତ ଜେଲ୍ ଗୋଦାମରୁ ଚୋରୀ କରି ବାହାରକୁ ନେଇ ଯିବା ପାଇଁ ପଡ଼ିବ। କୌଣସି ଜିନିଷ ଚୋରୀ କରି ବାହାରକୁ ନେଇଯିବା ଜଣକ ଦ୍ୱାରା ସମ୍ଭବ ନୁହେଁ। ଜେଲ୍‌ର ଶାସନତନ୍ତ୍ର ଏପରି ଯେ, ଶୃଙ୍ଖଳର ସବୁ ବଳୟ, ସବୁ ଏକାଠି ନହେବା ପର୍ଯ୍ୟନ୍ତ ଚୋରି — ଯୋଜନା ସଫଳ ହୋଇ ପାରିବ ନାହିଁ। ଖାଅ, କିନ୍ତୁ ମିଳିମିଶି ଖାଅ। ଛୋଟକୁ ଉପେକ୍ଷା କରିବାର ଉପାୟ ନାହିଁ।

ଢ଼ଂ ଢ଼ଂ କରି କଲେକ୍ଟରୀ ଟାୱାର୍ — କ୍ଲକ୍‌ରେ ଏଗାରଟା ବିଜିଲା। ସବୁଠି ଜେଲ୍‌ଘଡ଼ି ଦେଖିଚି, ମିନିଟ ପନ୍ଦର ଫାଷ୍ଟ ଥାଏ। — ଜେଲ୍ ସାମନାରେ ସଡ଼କ। ତା କଡ଼େ କଡ଼େ କର୍ମଚାରୀ ମାନଙ୍କର କ୍ୱାର୍ଟର। ପର୍ଦ୍ଦାଢ଼ଙ୍କା ଝରକା ଗୁଡ଼ାକ ଭିତରେ ଦେଇ କୋଉଠି କୋଉଠି ଅସ୍ପଷ୍ଟ ଆଲୋକ ଦେଖା ଯାଉଛି। ତା'ରି ଭିତରେ ଗୋଟାଏ ସ୍ଥାନରେ, ଅନ୍ଧାର ଭିତରେ ଆଲୋକର ଗୋଟାଏ ଚତୁଷ୍କୋଣ ହଠାତ୍ ଝଲକି ଉଠିଲା— ଗୋଟାଏ କ୍ୱାର୍ଟର୍‌ର ଦରଜା

ଫିଟିଲା । ଆଲୋକରଶ୍ମି ବାହାରେ ଆସି ପଡ଼ିଛି ସରଳରେଖାରେ, ଗୋଟିଏ ଆଲୋକିତ ଟ୍ରାପିଜିଅମ୍, ଚୌକାଠ ପାଖର ପାହୁଟି ଛୋଟ । ରେଲଲାଇନ୍‌ର ଦୁଇଟି ସମାନ୍ତରାଳ ରେଖା, ଦିଗନ୍ତ ଆଡ଼େ ଯେପରି ନିକଟରେ ହେବାକୁ ଚେଷ୍ଟା କରେ, ସେଇପରି । ଗୋଟିଏ ମୂର୍ତ୍ତି ଦରଜା ଭିତର ଦେଇ ବାହାରକୁ ଆସିଲା, ଆଉ ଦ୍ୱିତୀୟ ମୂର୍ତ୍ତିଟି ଦରଜା ବନ୍ଦ କଲା । ସେମାନଙ୍କ ଗୃହସ୍ଥଳିର ଆଲୋକ କାହିଁକି ଜେଲ – ଇଲାକାର ନିବିଡ଼ ଅନ୍ଧାକାର ଦୂର କରିବାର ଚେଷ୍ଟା କରନ୍ତା ! ଦରଜାଟା ଯେପରି ସେଇ ଆଲୋକକୁ ନିଜ କ୍ଷେତ୍ରରେ ସୀମାବଦ୍ଧ ରଖିବାର ଯନ୍ତ୍ରମାତ୍ର ! ...ଲୁଙ୍ଗିପରିହିତ ଡ଼ାକ୍ତରବାବୁ ଗେଟ୍ ପାଖରେ ପହଞ୍ଚିଲେ । ଦେହରେ ଗଳେଇଚ଼ନ୍ତି ଖଣ୍ଡେ ଗେଞ୍ଜୀ । ପାନ ଚୋବାଉଚ଼ନ୍ତି... ଗାଲରେ ପାନ ଜାକିଲେ ସତରେ କଣ କାନ୍‌ସର ହୁଏ ? କାନ୍ଧ ଉପରେ ସାର୍ଟ, ଖାକୀ ହାଫପାଣ୍ଟ୍ ଆଉ ବୋଧହୁଏ ଖଣ୍ଡେ ଦୁଇଖଣ୍ଡ ଜାମା । ଚାଲିବା ବେଳେ, ପାଦ ଦୁଇଟା ଆଗକୁ ଛାଟି ଛାଟି ପକାନ୍ତି । ସେଣ୍ଟ୍ରି ଖଟ୍ କରି ଆଟେନ୍‌ସନ୍'ରେ ଠିଆ ହେଲା । ....ଏମାନଙ୍କ କାବୁଲୀ ସ୍ଲିପର କେତେଦିନ ବା ରହିବ ? ସେଣ୍ଟ୍ରି ସଲାମ୍ ମାରିଲା । ଭିତରର ଓ୍ୱାର୍ଡ଼ର୍ ଆଦବ୍ କରି ଗେଟ୍ ତାଲା ଖୋଲିଲେ । ଡ଼ାକ୍ତର ବାବୁ ସଲାମ – ବିନିମୟ ଇଙ୍ଗିତରେ ମୁଣ୍ଡ ହଲାଇ ଭିତରେ ପଶିଲେ । ଗେଟ୍‌ତାଲା ବନ୍ଦ ହେଲା । ସୁବାଦାର ସାହେବ୍ ଟୁଲ ଉପରେ ବସି ଡ଼ାକ୍ତରବାବୁଙ୍କୁ ପଚାରିଲେ, "କାନ୍ଧ ଉପରେ ଏ ପୋଷାକଗୁଡ଼ା କୋଉଥି ପାଇଁ ?

ଡ଼ାକ୍ତରବାବୁ କହିଲେ, "ଡ଼ିଉଟୀ ତ ହାସପାତାଳରେ । କିନ୍ତୁ କିଏ ଜାଣେ, ଭୋର ରାତିରେ ସାହେବ୍ ହାକିମ ସମସ୍ତେ ଆସିବେ । ସେତେବେଳେ ଯଦି କିଛି ଦରକାର ପଡ଼ିଯାଏ ! ସେତେବେଳେ ତ ଆଉ ଲୁଙ୍ଗି ପିନ୍ଧି ସାହେବଙ୍କ ଆଗକୁ ଆସି ପାରିବି ନାହିଁ ! ଅବଶ୍ୟ ଫାଶୀବେଳର ଡ଼ିଉଟୀ ବଡ଼ ଡ଼ାକ୍ତରବାବୁଙ୍କର, ମୋର ନୁହେଁ । କିନ୍ତୁ କିଏ ଜାଣିଚ଼ି ଦରକାର କଥାତ କହିହେବ ନାହିଁ । ପୁଣି ଯୋଉ ଗରମ ପଡ଼ିଚ଼ି ।"

ଡ଼ାକ୍ତରବାବୁଙ୍କ କଥାବାର୍ତ୍ତାରେ ଟିକିଏ ଆବ୍‌ଦାରିଆ ଭାବ । ଦେଖିଲି, ଡ଼ାକ୍ତରବାବୁ ସୁବାଦାରଙ୍କୁ ବେଶ୍ ସମ୍ମାନ ଦେଖାଇ କଥାବାର୍ତ୍ତା କରନ୍ତି । ତା'ର କାରଣ ଅଛି । ସୁବାଦାର୍ ନାରାଜ୍ ହେଲେ, ଜେଲ୍‌ର ଖାଣ୍ଟି ଗରମ ଦୁଧ ନ ପାଇ, ପିଲାମାନେ ରୋଗିଣା ହୋଇଯିବେ । ହାସପାତାଳର ବରାଦୀ ମାଂସର ସାମାନ୍ୟ ଅଂଶ ସୁଦ୍ଧା ଡ଼ାକ୍ତରବାବୁଙ୍କ ଘରେ ପହଞ୍ଚିବ ନାହିଁ । କିରୋସିନ୍ ତେଲ ହୁଏତ ଅଣ୍ଟାରୁ ପଇସା ଖର୍ଚ୍ଚ କରି ବଜାରରୁ କିଣିବା ପାଇଁ ପଡ଼ିବ । ଏହାଛଡ଼ା ଆଉରି ବି କେତେ ଜିନିଷ, ଯାହାକୁ ସେମାନେ ବେତନର ଅଙ୍ଗ ବୋଲି ମନେ କରନ୍ତି, କାଲିଠୁ ହୁଏତ ବନ୍ଦ ହୋଇଯିବ । ହାସପାତାଳର ନେଟ୍ ମସାରୀ, ବିଛଣା ଚ଼ଦର ଶିମିଳୀ ତୁଳା, ଚ଼ିନି, ପୁରୁଣା ଚାଉଳ ପ୍ରଭୃତି କେତେ ଜିନିଷ, ଏମାନଙ୍କର ଦରକାର । ସକାଳେ ଯେଉଁ 'ଗ୍ୟାଙ୍ଗ୍' ବାହାର କମାଣ୍ଡରେ କାମ କରନ୍ତି, ସେମାନଙ୍କ ଭିତରୁ ଜଣେ ହୁଏତ ପ୍ରଥମ ଗେଟରୁ ବାହାରିବା ବେଳେ, ଫୁଲ ଚାଙ୍ଗୁଡ଼ିରେ ଡ଼ାକ୍ତର ଗୃହୀଣୀଙ୍କ ପାଇଁ ପୂଜା ଫୁଲ ନେଇଆସେ । ଫୁଲ ସାଙ୍ଗରେ ଥାଏ ଗୋଟିଏ କଞ୍ଚାବେଲ ଓ କେତୋଟି କାଗିଜି ଲେମ୍ବୁ । ପିଲାଛୁଆଏ ପ୍ରତିଦିନ ବେଲପୋଡ଼ା ଖା'ନ୍ତି କିନା ! ...ଆଉ ଡ଼ାକ୍ତରବାବୁ, – ସିଏ ତ ବୋଧହୁଏ ଜେଲ୍‌ରେ ଚାକିରୀ କରୁ କରୁ ଚିକିତ୍ସାଶାସ୍ତ୍ର ଭୁଲିଯାଇଚ଼ନ୍ତି । ପ୍ରତ୍ୟହ ସେଇ ଗତାନୁଗତିକ କାମ – ହିସାବ, ନାଁ, ଫାଇଲ୍, ଦପ୍ତର, ଓଜନ ନେବା, ରିଟର୍ଣ୍ଣ ପଠାଇବା, ସାହେବଙ୍କ ପଛେ ପଛେ 'ଫାଇଲରେ' ଘୁରିବା, ହାସପାତାଳ ମେଟରୁ ଆରମ୍ଭ କରି ସମସ୍ତଙ୍କ

ମନ ଜଗି ଚ଼ଲିବା– ଆ ଭିତରେ ଡ଼ାକ୍ତରୀ ପାଇଁ ଅବକାଶ କାହିଁ? ଜେଲ୍‌ରେ ସେଥର ଡ଼ାକ୍ତରବାବୁ ମୋ ହାତରେ ଗୋଟାଏ ରିଟର୍ଣ୍ଣ ଲେଖାଇଥିଲେ। ଡ଼ାକ୍ତରବାବୁଙ୍କ ନାମ ଥିଲା ବୋଧହୁଏ ନରେନ୍ ବାବୁ। ରିଟର୍ଣ୍ଣ ବିଭିନ୍ନ ବିଷୟ ଭିତରେ ଥିଲା Spleenie index। ତାକୁ କେମିତି ହିସାବ କରନ୍ତି, ମୋତେ ଜଣା ନଥିଲା। ଡ଼ାକ୍ତର ବାବୁଙ୍କୁ ପଚାରିଲି। ସେ ମଧ୍ୟ ଜାଣନ୍ତି ନାହିଁ– କହିଲେ "ଅବିକା ଥାଉ; ଗତବର୍ଷର ରିଟର୍ଣ୍ଣ ଦେଖି, ମୁଁ ଅନ୍ଦାଜରେ ବସାଇ ଦେବି।"

ଜେଲ୍‌ଗେଟ ଭିତରେ ପଶିଲେ, ଡ଼ାହାଣ ପଟ କାନ୍ଥରେ ଆଖିରେ ପଡ଼େ, ଗୋଟିଏ ବ୍ଲାକ୍‌ବୋର୍ଡ଼। –ଷ୍ଟେସନ୍‌ମାନଙ୍କରେ ଚାରିକୋଣିଆ ପଟା ଉପରେ ଯେପରି ଟାଇମ୍‌ଟେବୁଲ୍ ମଡ଼ା ହୋଇଥାଏ, ସେଇପରି। ତା ଉପରେ ଲେଖାଅଛି– ଏ ଜେଲ୍‌ରେ କେତେ କୟଦୀଙ୍କ ପାଇଁ ସ୍ଥାନ ହୋଇପାରେ, ଆଜି ଅଛନ୍ତି କେତେ କୟଦୀ, ସେମାନଙ୍କ ଭିତରେ ଅଣ୍ଡର୍–ଟ୍ରାଏଲ୍ କେତେ! ସବାତଳେ ଲେଖାଯାଏ, କର୍ତ୍ତବ୍ୟରତ ଡ଼ାକ୍ତରଙ୍କ ନାମ।

ଡ଼ାକ୍ତରବାବୁ ଖଣ୍ଡେ ଖଡ଼ି ଧରି, ବୋର୍ଡ଼ ଉପରେ ନିଜ ନାଁ ଲେଖିଲେ, ଆଉ ତା ପାଖରେ ଲେଖିଦେଲେ, ରାତି ନ'ଟାରୁ ସେ ଡ଼ିଉଟୀ କରୁଛନ୍ତି। ତା'ପରେ ଡ଼ାକ୍ତରବାବୁ ମୁରୁକି ହସି କହିଲେ,, "ଅଫିସ୍ ଘରେ ଫ୍ୟାନ ଅଛି, ଆପଣଙ୍କର ଏଠି ଫ୍ୟାନ୍ ନାହିଁ।"

ସୁବାଦାର ସାହେବ୍ ଉତ୍ତର ଦେଲେ "ତକ୍‌ଦୀର" (ଭାଗ୍ୟ) –ନିଜ କପାଳଟି ଦେଖାଇଦେଲେ। କପାଳ ଉପରେ ବେଶ୍ ଗୋଟାଏ ମୋଟା ଶିରା, ଏତେ ଦୂରକୁ ସୁଦ୍ଧା ଦେଖାଯାଉଛି। ଜିତେନ୍‌ଦା'ର ବ୍ରତ ବେଳେ, ଜେଠେଇମା'ଙ୍କ ବିଛଣାରେ ଶୋଇ ଜଣେ ଗରୀବ ତନ୍ତୀର ଗପ ଶୁଣିଥିଲି। ତା କପାଳରେ ଥିଲା, ରାଜଟୀକାର ସୁଲକ୍ଷଣ। ତା'ପରେ କିଛି ଦିନ ଧରି ଯାହାକୁ ଦେଖିଲି, ତାର କପାଳକୁ ଭଲଭାବରେ ଲକ୍ଷ୍ୟ କଲି, ସେଇପରି ସୁଲକ୍ଷଣ ଦେଖିବା ପାଇଁ। ଦିନେ ମୁଁ ଆଉ ଦାଦା, ଆଙ୍ଗୁଠିରେ କପାଳ ଘଷି ଘଷି ପ୍ରାୟ ମଳିଚ଼ମ ଉଠାଇ ଦେଇଥିଲୁ। କପାଳରେ ଠିକ୍ ତିଳକ କାଟିବା ପରି ଦାଗ ପଡ଼ି ଯାଇଥିଲା। ମା'ର ଗାଳି ଆଳି ସାଇପଡ଼ିଶାଙ୍କ ଥଟ୍ଟା ଟାପରାରେ ଆମେ କେତେଦିନ ଘରୁ ବାହାରି ପାରିନଥିଲୁ।...

ଦରଜା ଫିଟିଲା। ଡ଼ାକ୍ତରବାବୁ ଭିତରକୁ ଆସିଲେ। ଭିତରର ଖୋଲା ଦରଜା ବାଟେ ଗୁଡ଼ାଏ ଜୋତା ଶବ୍ଦ ଶୁଭୁଚ଼ି। ଜେଲ୍ ଭିତରୁ ଦଳେ ଲୋକ ବୋଧହୁଏ ମାର୍ଚ୍ଚ କରି ଗେଟ୍ ଆଡ଼କୁ ଆସୁଛନ୍ତି। ଦରଜା ପୁଣି ବନ୍ଦ ହେଲା। କିନ୍ତୁ ମୁହୂର୍ତ୍ତ କେତେଟା ଭିତରେ ଦରଜା ମଝିରେ ଛ'ଇଞ୍ଚ ଚ଼ଉଡ଼ାର ଜଳାକବାଟି ଫିଟିଗଲା ଓ ଭିତରୁ ଜଣେ ଭୋଜପୁରୀ ଭାଷାରେ ଦରଜା ଖୋଲିବା ପାଇଁ କହିଲା। ଦରଜା ଡ଼ାଲା ପୁଣି ଖୋଲିଲା। ୱାର୍ଡ଼ର୍ ମାନଙ୍କର କ୍ଲାନ୍ତି ନାହିଁ। ଏଇତ ଡ଼ାକ୍ତରବାବୁ ଭିତରକୁ ଯିବା ବେଳେ, ସେମାନେ ଦରଜା ଖୋଲିଥିଲେ। ସେତିକିବେଳେ ପାଦଶବ୍ଦରୁ ସେମାନେ ତ ବୁଝିଥିବେ, କିଏ ଆସୁଚ଼ନ୍ତି। ସେତିକିବେଳେ ଆଉ କିଛି ବେଳ, ଦରଜା ଖୋଲା ରଖିଥିଲେ କଣ ଚ଼ଳିନଥାନ୍ତା? ଏମାନେ ଯେ ଯନ୍ତ୍ରଚାଳିତ ପରି କାମ କରି ଯାନ୍ତି; ତାହା କେବଳ ଜେଲ୍ ନିୟମ ମାନି ନା ନିଜ ଅଭ୍ୟାସବଶତଃ! ଦରଜା ଖୋଲିବାର ନିୟମସବୁ ମଧ୍ୟ ଅଦ୍‌ଭୁତ! –ଜେଲ୍‌ଗେଟ୍ ମଝିରେ ଦୁଇଟି ଫାଟକ। ଗୋଟିଏ, ମୁଁ ଯୋଉଠି ବସିଛି ତା' ସାମ୍‌ନାକୁ, ଆଉ ଗୋଟିଏ ଏଇ ଗେଟ୍ ଠାରୁ ଦଶ, ପନ୍ଦର ହାତ ଭିତରେ। ଦୁଇ ଫାଟକର ମଝି ପାସେଜ୍‌ଟି ଗୋଟିଏ ବଡ଼ ହଲ୍ ପରି ଘର।

ଜେଲ ଭିତରର କର୍ମକେନ୍ଦ୍ର 'ଗୁମ୍‌ଟି' ଆଉ ଜେଲ୍ ବାହାରର କର୍ମକେନ୍ଦ୍ର ଏଇ 'ପାସେଜ'। ହୁଏତ ଚାରିଟା ଶଗଡ଼ ଜେଲ୍ ଭିତରକୁ ଇଟା ନେଇ ଯିବ। ଓ୍ୱାର୍ଡ଼ର ସାମନା ଦରଜାଟା ପ୍ରଥମେ ଫିଟାଇ, ଦୁଇଟା ଶଗଡ଼ ଏଇ ହଲ୍ ଘର ଭିତରକୁ ଛାଡ଼ିବ। ତାପରେ ଦରଜା ବନ୍ଦ କରିଦେବ। ତାପରେ ଭିତର ଦରଜା ଖୋଲି, ଶଗଡ଼ ଦୁଇଖଣ୍ଡକୁ ଛାଡ଼ିବ, ଭିତର ଦରଜା ପୁଣି ବନ୍ଦ କରିବ, ପୁଣି ଆସିବ, ସାମନା ଦରଜା ଫିଟିବ ବାକି ଦୁଇଖଣ୍ଡ ଶଗଡ଼ ଛାଡ଼ିବା ପାଇଁ। ଏକା ସାଙ୍ଗରେ ଦୁଇଟା ଫାଟକ ଖୋଲି, ଚାରିଟା ଯାକ ଶଗଡ଼ ଛାଡ଼ିଦେଲେ, ମହାଭାରତ ଯେପରି ଅଶୁଦ୍ଧ ହୋଇଯାନ୍ତା !

ଓ୍ୱାର୍ଡ଼ରମାନେ ଭିତରେ ପାଟିଗୋଳ କରୁଛନ୍ତି। ଜଣେ ଓ୍ୱାର୍ଡ଼ରକୁ ପଚାରିବି ନାଁ କଣ; ଫାଶୀ–ସେଲ୍‌ରେ କାହାର ଡ଼ିଉଟୀ ଥିଲା ? ତା'ଠୁ ଜଣା ପଡ଼ିପାରେ, ଦାଦା ବର୍ତ୍ତମାନ କଣ କରୁଚି ! ହୁଏତ ଥଙ୍ଗା କରିବ; ହୁଏତ ସିଏ ମୋ ସାକ୍ଷୀ ଦେବାକଥା ଜାଣିଚି !

ସମସ୍ତେ ବାରାକ୍‌କୁ ଫେରିଯିବା ପାଇଁ ବ୍ୟସ୍ତ, ରାତି ଅନେକ ହେଲାଣି। ଗୋଟିଏ ରେଜିଷ୍ଟର୍‌ରେ ନାଁ ଲେଖା ହେଲା। ଜଣେ ଓ୍ୱାର୍ଡ଼ର୍ ଡ଼େକ ତଳେ ହାତ ପୂରାଇ ସୁବାଦାରକୁ କଣ ଯେପରି ଦେଲା– ଉଦ୍ଦେଶ୍ୟ ଅନ୍ୟ କେହି ଯେପରି ଦେଖି ନପାରନ୍ତି। ଜଣ ଜଣ ହୋଇ ସମସ୍ତେ ବାହାରକୁ ଆସୁଚନ୍ତି। ସେମାନଙ୍କ ଭିତରୁ ଗୋରାରଙ୍ଗର ଜଣେ ଅଳ୍ପବୟସ୍କ ଓ୍ୱାର୍ଡ଼ରକୁ ସୁବାଦାର ପାଖକୁ ଡ଼ାକି ତାର ପଗଡ଼ି ଖୋଲିବା ପାଇଁ କହିଲା। ସୁବାଦାର ତାର ଅଣ୍ଟା ହାଫପାଣ୍ଟ ପ୍ରଭୃତି ସର୍ଚ୍ଚ କଲା। ସର୍ଚ୍ଚରେ କିଛି କିନ୍ତୁ ମିଳିଲା ନାହିଁ। ଓ୍ୱାର୍ଡ଼ର ବାହାରି ଯିବା ବେଳେ, ରାଗରେ ଗର୍ ଗର୍ ହୋଇ କହିଲା– ''ମୋ'ରି ଉପରେ ଯେମିତି ଆକ୍ରୋଶ ! ସୁବାଦାର୍‌ର ଧାରଣା, ମୁଁ ହେଡ଼୍‌ଓ୍ୱାର୍ଡ଼ର୍ ଦଳର ଲୋକ। ନିଜ ନିଜ ଭିତରେ 'ମୋଚକା ଲଢ଼େଇ' ଆଉ ଆମକୁ ନେଇ ଯେତେ ଟଣାଟଣି ! ରହ, ଜେଲର ସାବେଙ୍କୁ କହି ଯଦି ଏହାର ବିହିତ ନକରିଚି ! ସେଥିରେ ମୋର ଚାକିରୀ ଯାଉ ଅବା ରହୁ, ମୁଁ ପରୱା କରେ ନାହିଁ।''

...ପ୍ରାର୍ଥନାଗୀତର ରାହାଧରା ଚିତ୍କାର ଶୁଣାଯାଉଚି। ପଦେ କଥା ସୁଦ୍ଧା ବୁଝା ପଡୁ ନାହିଁ। ମଝିରେ ମଝିରେ କେବଳ ''ରାମା ହୋ ରାମା !'' ପିଲାଦିନେ ଗୋଟିଏ କବିତା ପଢ଼ିଥିଲି, ସେଥିରେ ଗୋଟିଏ ଲାଇନ୍ ଥିଲା। ''ଦରୋୟାନ୍– ରାମା ହେ''। କବିତାଟି ମନେ ପଡୁ ନାହିଁ– ତାର ପ୍ରଥମ ଲାଇନ୍ ଥିଲା, ''ଭୋରହେଲା, ସୁନାମଣି ଉଠ''– ଏଇ ଧରଣର କିଛି।

...ଜିତେନ୍‌ଦା – ଜେଠେଇମା'ର ବଡ଼ ପୁଅ – ଥରେ ଜେଠେଇମା ବାକ୍‌ସରୁ ଟଙ୍କା ଚୋରି କରି ଅନେକ ଗୁଡ଼ିଏ ଗପବହି ମଗାଇଥିଲା। କଲିକତାରୁ ପାର୍ସଲ୍ ଆସିବା ପରେ, ଘରେ ଏ କଥାଟା ଜଣା ପଡ଼ିଲା। ସେତେବେଳେ ଜିତେନ୍‌ଦା ଘରୁ ପଳାଇ ଆସି ଆମ ଆଶ୍ରମରେ ଦୁଇଦିନ ରହିଥିଲା। ଜେଠା କହିଲେ, ତାକୁ ଆଉ ଘରେ ପୂରାଇବି ନାହିଁ। ସେଇ ପାର୍ସଲରୁ ଦୁଇଖଣ୍ଡି ବହି, ଜେଠେଇମା ଆମ ଦୁଇ ଭାଇଙ୍କୁ ଦେଇଥିଲେ– ତା'ରି ଭିତରେ ଖଣ୍ଡକରେ ଏଇ କବିତା ଥିଲା। ଜିତେନ୍‌ଦା କେତେଥର ପଇସା ଚୋରି କରି ଏହିପରି ପାର୍ସଲ୍ ମଗାଇଚି, ତା'ର ଇୟତ୍ତା ନାହିଁ। ବ୍ୟାଡ଼ମିଣ୍ଟନ ସେଟ୍, କ୍ୟାରମ୍ ବୋର୍ଡ଼, ଫୁଟବଲ୍ ପମ୍ପ, କେତେ ରକମର ଜିନିଷ ସିଏ ଯେ ମଗାଉ ଥିଲେ, ତା'ର କଣ ହିସାବ ଅଛି ? ଗୋଟାଏ ଗୋଟାଏ ଖେଳରେ ଅଳ୍ପଦିନ ପାଇଁ ଉତ୍ସାହ ରହେ। କୌଣସି ଖେଳ

କିନ୍ତୁ ତୁଳନୀୟ ଭାବରେ ସୁଦ୍ଧା ଖେଳି ପାରନ୍ତି ନାହିଁ। ...ସେଇ ଜିତେନ୍‌ଦା ଆଜି କି ଗମ୍ଭୀର ପ୍ରକୃତିର ଲୋକ ! ଠିକାଦାରୀରୁ କେତେ ପଇସା ଉପାର୍ଜନ କରନ୍ତି, ଆମେ ଅର୍ଥାତ ଯେଉଁ ସବୁ ଗରିବ କର୍ମୀ ରାଜନୈତିକ କ୍ଷେତ୍ରରେ ରହିଛୁ; ସେମାନଙ୍କୁ ବେଶ୍ କୃପା ଓ ବାତ୍ସଲ୍ୟର ଦୃଷ୍ଟିରେ ଦେଖନ୍ତି। କିଏ ତାଙ୍କୁ ବୁଝାଇବ ଯେ, ଆମେ ଚେଷ୍ଟା କଲେ, ତାଙ୍କଠୁ ମଧ୍ୟ ଅଧିକ ଅର୍ଥ ଉପାର୍ଜନ କରିପାରନ୍ତୁ... Nothing Succeds Like Succeeds.

ଭିତର ଦରଜା ଛୋଟ ଜଳାକବାଟଟି ଖୋଲିଗଲା। ୱାର୍ଡ଼ରକୁ କିଏ କଣ କହିଲା ପରା ! ଅନ୍ଧାରରେ ଲୋକଟାର ମୁହଁ ଦେଖାଗଲା ନାହିଁ। ଆଲିବାବାର ଗୁମ୍ଫା... ଚ଼ି ଚ଼ିଙ୍ଗ୍ ଫାଙ୍କ୍। ଆଲିବାବାର ଗୁହା ରାଶି ରାଶି ଧନରତ୍ନ ବ୍ୟତୀତ ଆଉ କ'ଣ ଦେଇ ପାରନ୍ତା ? କିନ୍ତୁ ଏଇ ଫାଟକ ଫିଟିଲେ, କେତେ ଜୀବନ୍ମୃତ ଲୋକ, ପ୍ରକୃତରେ ବଞ୍ଚି ଉଠି ପାରନ୍ତେ !

...ଜେଲ୍‌ର ସବୁଟା କେବଳ ପାଚ଼େରୀ ନୁହେଁ। ତା' ଭିତରେ ବି ପ୍ରଚୁର ଖାଲି ଜାଗା ଅଛି, ଯୋଉଠି ମୁକ୍ତ ପବନ ମିଳିପାରେ। ଅନ୍ତତଃ ସାଧାରଣ ଗୃହସ୍ଥ ଘରର ଅପଣା ଅପେକ୍ଷା ଜେଲ୍ ଅଗଣା ଅନେକ ବଡ଼। କିନ୍ତୁ ହେଲେ କ'ଣ ହେବ ? ସାରା ବାତାବରଣ ବିଷାଦପୂର୍ଣ୍ଣ, ପ୍ରାଣହୀନ, କଠୋର ଓ କ୍ଳେଦାକ୍ତ। ଆବ୍‌ହାୱାଟା କିପରି ଭାରି ଭାରି... ଅଲିଭାର ଲଜ୍, ଲେଡ଼ବେଟାର୍, କୋନାନ୍ ଡ଼ୟେଲ, ଏମାନେ କଣ ମାନସିକ ଅବସ୍ଥା ସମ୍ବନ୍ଧରେ ଠିକ୍ କଥା କହିଛନ୍ତି ? ଗଭୀର ଚିନ୍ତନ ଓ ମାନସିକ ଆଲୋଡ଼ନ ସମୟରେ ଆମେ କଣ ଚିନ୍ତାମୂର୍ତ୍ତିଗୁଡ଼ିକୁ ଏଇ ସ୍ଥାନରେ ଛାଡ଼ିଦେଉ ? ଆମ ଚିନ୍ତାସମଷ୍ଟି କଣ ପିଆଜ ପରି ଯେ, ସେଥିରୁ ଗୋଟିଏ ଗୋଟିଏ କୋଳା ଆଉ ପାଖୁଡ଼ା ଆମେ ଛଡ଼ାଇ ପାରିବୁ ?— କୋଉଟା ମୋଟ ତ କୋଉଟା ସରୁ। ସତରେ କଣ କୌଣସି ଭଙ୍ଗା ପୁରୁଣା ଘର ଭିତରକୁ ପଶିଲା ବେଳେ, ଦେହ ଶୀତେଇ ଉଠେ ? ...

ଯିଏ ଭିତରୁ ଆସିଲେ, ସିଏ ହାସପାତାଳର କମ୍ପାଉଣ୍ଡର। ଭଦ୍ରଲୋକ ବେଶ୍ ସୌଖୀନ୍। ହାତରେ ଗୋଟିଏ ହାରିକେନ୍ ଲଣ୍ଠନ୍। ସାପ ଭୟରେ ନାଁ କ'ଣ ? —ଅସଲ କଥା, ସିଏ ଜେଲ୍ ଭିତରକୁ ଆସିବା ବେଳେ, ଲଣ୍ଠନଟା ଖାଲି ନେଇ ଆସନ୍ତି, ଆଉ ଘରକୁ ଫେରିବା ବେଳେ ସେଇଟିକୁ କିରୋସିନ୍ ତେଲରେ ଭର୍ତ୍ତି କରି ନେଇଯାନ୍ତି। ଏ କଥା ସମସ୍ତେ ଜାଣନ୍ତି, ସମସ୍ତେ ବୁଝନ୍ତି, କେହି କିଛି କହନ୍ତି ନାହିଁ। ଏପରି ଧରଣର ଛୋଟ ଛୋଟ ପ୍ରାପ୍ୟ ଗୁଡ଼ିକୁ ସେମାନେ ଉପୁରି ପାଉଣା ବୋଲି ମନେ କରନ୍ତି ନାହିଁ।— ଏହା ଯେପରି ସେମାନଙ୍କ ବେତନର ଅଙ୍ଗୀଭୂତ। ଦରମା ହୁଏତ ପଚ଼ିଶ ଟଙ୍କା। କିନ୍ତୁ ଲୁଗା ପଟା ଜାମା ଜୋତାରେ କିପରି ସେମାନେ ଏତେ ପଇସା ଖରଚ଼ କରନ୍ତି ?— ଡ଼ାକ୍ତର ସାଙ୍ଗରେ ନିଶ୍ଚୟ ପାଉଣାରେ ଭାଗବଣ୍ଟା ଅଛି।

"କମ୍ପାଉଣ୍ଡର ସାହେବଙ୍କର ଆଜି ବଡ଼ ଡ଼େରି ହୋଇଗଲା ଦେଖୁଚ଼ି।"— ସୁବାଦାର୍ ସହାନୁଭୂତିମିଶା କଣ୍ଠରେ କହିଲେ।

"ହଁ ସୁବାଦାର ସାହେବ ଏଇ ଜେଲ୍ ଚାକିରୀ କରି, କି ଭୁଲ୍ କାମ ମୁଁ ନ କରିଚ଼ି ! ଗୋଟାଏ ମିନିଟ୍ ସୁଦ୍ଧା ଛୁଟୀ ନାହିଁ। ସେଇ ଭୋର ସକାଳେ ଆସିଥିଲି, ଅବିକା ରାତି ବାରଟା ହେଲା। ଦି'ପହରେ ଘରକୁ ଯାଇଁ କେବଳ ଖାଇ ଆସିଚ଼ି। ସିନ୍‌ହେସର ବାବୁଙ୍କର ନ'ଟା ବେଳେ ହାସପାତାଳ ଡ଼ିଉଟୀକୁ ଆସିବା କଥା। ଆସିଲେ ଅବିକା। ରାତି ବାରଟାରେ ଖାଇ, ପିଇ, ପାନ ଚୋବାଇ ଚୋବାଇ।"

ତା'ପରେ ଗୋଟାଏ ଅଶ୍ଳୀଳ ଗାଳି ଉଚ୍ଚାରଣ କଲେ। ନିଜ ଭାଗ୍ୟକୁ, ସିନ୍‌ହେସର ବାବୁଙ୍କ ନା ଜାମା ଭିତରେ ଯୋଉ ପୋକଟି ପଶିଚ଼ି ତାକୁ, କାହାକୁ ଗାଳି ଦେଲେ ଠିକ୍ ବୁଝା ପଡ଼ିଲା ନାହିଁ। ସେତିକିବେଳେ ବୁଝିଲି ଯେ, ଅଳ୍ପ ଆଗେ ଯୋଉ ଡ଼ାକ୍ତରବାବୁଟି ଜେଲ୍ ଭିତରକୁ ଗଲେ, ତାଙ୍କ ନାଁ ସିଂହେଶ୍ୱର ବାବୁ। ... ଜାମା ଭିତରୁ ପୋକଟା କାଢୁଛନ୍ତି। ମୁଖଭଙ୍ଗୀ ଦେଖିଲେ ହସ ମାଡ଼େ।

କମ୍ପାଉଣ୍ଡର୍ ସାହେବ, ନିଜ ସୁଖଦୁଃଖ କଥା ଗପି ଚାଲିଛନ୍ତି। ମିତ୍ର ସାହେବଙ୍କ ନାଇଟ୍ ଡ଼ିଉଟୀ ଥିଲେ ଭଲ। ସିଏ ଯୋଉଦିନ ଆସନ୍ତି, ଠିକ୍ ନ'ଟା ବେଳେ ଆସନ୍ତି, ନ ହେଲେ ଆଦୌ ଆସନ୍ତି ନାହିଁ।'' ଦୁହେଁ ଆଖି ଠରାଠରି ହୋଇ ହସିଲେ।

''ଏସବୁ ଜେଲର୍ ସାହବ ଜାଣିଚ଼ି। ଜେଲର ସାହେବ କେତେ ଥର ରାତିରେ ଡ଼ିଉଟୀ ଦେଲାବେଳେ ଦେଖିଚ଼ି, ହାସପାତାଳରେ ଡ଼ାକ୍ତର ଘର ଖାଲି। ଆଉ ଆଖିରେ ନ ଦେଖିଲେ ବି, ଜେଲରେ କୌଣସି ଖବର ତ ଛପି ରହେ ନାହିଁ। ଆଗ ସାହେବ ଥିବା ବେଳେ, ଦିନେ ଧରାପଡ଼ି କୈଫିୟତ୍ ଦେଇଥିଲା, କଣ କରାଯିବ, କୁହନ୍ତୁ। ହାସପାତାଳ ଆଉ ୱାର୍ଡ଼ରେ ଯୋଉ ଘରେ ଡ଼ିଉଟୀ ଡ଼ାକ୍ତର ଶୁଏ, ତାର ଦରଜା ନାହିଁ। ରାତିରେ କିଏ ଆସି କାଳେ ମାରପିଟ କରିବ, ସେଇ ଭୟରେ ସେଠି ଶୁଏନା।'' ସେ ସାହେବ ଥିଲା ମହା ଘୁ ଘୁ। ସେ କହିଲା, ରାତିରେ ତ କୟଦୀମାନେ ବନ୍ଦ ଥାନ୍ତି। ମାରପିଟ କରିବ କିଏ ? ଡ଼ାକ୍ତର ଜବାବ ଦେଇଥିଲା, ଯେଉଁ ମେଟ୍‌ମାନେ ରାତିରେ ୱାର୍ଡ଼ ଡ଼ିଉଟି ଦିଅନ୍ତି, ସେମାନେ ତ ଆଉ ବନ୍ଦ ନଥାନ୍ତି। ଏ ଘଟଣା ଆଗରୁ ଥରେ ଜେଲ୍– ମ୍ୟୁଟିନି ହୋଇଯାଇଥିଲା। ସାହେବ ତେଣୁ ଆଉ ବେଶୀ କିଛି କହି ପାରିଲା ନାହିଁ।– କିନ୍ତୁ ଏବେ ? ମୋଜାଫର– ପୁରର କେତେଜଣ ପଲିଟିକାଲ୍ ପ୍ରିଜନର୍ ପଳାଇଯିବା ପର ଠାରୁ, ମେଟ୍‌ମାନଙ୍କ ଡ଼ିଉଟୀ ବନ୍ଦ କରି ଦିଆଯାଇଛି। ମେଟ୍‌ମାନେ କୁଆଡ଼େ ସେମାନଙ୍କୁ ପଳାଇବାରେ ସାହାଯ୍ୟ କରନ୍ତି। ...ଏବେ ତ ସେ କୈଫିୟତ୍ ଆଉ ଚ଼ଳିବ ନାହିଁ। ଏଥର ବୋଧହୁଏ ଆଉ ଗୋଟାଏ କଣ ନୂଆ ଛଟା କାଢ଼ିବ! ଆଚ୍ଛା ଇୟାର୍ ଖଣ୍ଡେ ସିଗାରେଟ୍ ଖୁଆ ତ ଦେଖି! ଭାରି ଥକି ପଡ଼ିଚ଼ି। ହାତଗୋଡ଼ ଯେମିତି ଭାଙ୍ଗି ପଡୁଚ଼ି।''

ସୁବାଦାର୍ ସାହେବ୍ ସିଗାରେଟ୍ କାଢ଼ିଲେ। କମ୍ପାଉଣ୍ଡର ସାହେବ ସେଥିରେ ନିଆଁ ଲଗାଇଦେଲେ। ତା'ପରେ ଅପେକ୍ଷାକୃତ ଅନୁଚ୍ଚ କଣ୍ଠରେ କଣ ସବୁ କଥାବାର୍ତ୍ତା ହେଲା। କମ୍ପାଉଣ୍ଡର ସାହେବ, ଲଣ୍ଠନ୍ ବତୀଟା ଟିକିଏ ତେଜି ଦେଇ ଲଣ୍ଠନଟା ଉଠାଇ ଧରିଲେ। ତା'ପରେ ଅଧାଜଳା ସିଗାରେଟ୍‌ରେ ଗୋଟାଏ ଜୋର ଟାଣ ଦେଇ, ସୁବାଦାରଙ୍କ ହାତରେ ଧରାଇଦେଲେ। ଗେଟ୍‌ରୁ ବାହାରିଯିବା ବେଳେ କହିଲେ, ''ସେଥିପାଇଁ ଭାବ ନାହିଁ। ମୁଁ ଦେଇଦେବି।'' ଏତେବେଳଯାଏ କି କଥାବାର୍ତ୍ତା ହେଉଥିଲା ? କ'ଣ ଦେଇ ଦେବେ ? ଇଂଜେକସନ୍ ନୁହେଁ ତ ? ସୁବାଦାର ସାହେବ ଓ କମ୍ପାଉଣ୍ଡର ବାବୁ, ଦୁହିଙ୍କ ଭିତରେ ବେଶ୍ ଅନ୍ତରଙ୍ଗତା ଅଛି, ଦେଖୁଚ଼ି। ଗେଟ୍ ବାହାରକୁ ଆସି, କମ୍ପାଉଣ୍ଡର ବାବୁ ସୁବାଦାରଙ୍କୁ କହିଲେ–

''ତୁମେ ତ ଆଜି ଏଇଠି ଶୋଇବ।''

''ହଁ, ଅଫିସ ଘରେ ବିଛଣା ପକେଇ ଦେଇଚ଼ି। ଏଥର ଶୋଇବାକୁ ଯିବି।'' କମ୍ପାଉଣ୍ଡର ସାହେବଙ୍କ ମୁଣ୍ଡପଛରେ ବାଳଗୁଡ଼ା କି ଲମ୍ବା। ଅଧିକାଂଶ ଧଳା ପଡ଼ିଗଲାଣି।

ସେ କେତେ କୟଦୀଙ୍କ ଫାଶୀ ଦେଖିଚ଼ନ୍ତି। ରାତି ପାହାନ୍ତାରେ ଫାଶୀଚ଼ିନ୍ତା, ତାଙ୍କ ମନକୁ ଆଲୋଡ଼ିତ କରେ ନାଇଁ। ଯେତେ କମ୍ପାଉଣ୍ଡର, ସମସ୍ତେ କଣ ପଛବାଳ ଲମ୍ବ ରଖନ୍ତି ?

...ସେଇ ହରିଶ୍ କମ୍ପାଉଣ୍ଡର। ମୁଣ୍ଡରେ ଅଧାବାବୁରୀ ବାଳ। ସେ ମାଧବବାବୁଙ୍କ ଘର ପାଇଁ ଓଷଦ ତିଆରି କରୁଛନ୍ତି। ସନ୍ଦେହ—ବିକାରଗ୍ରସ୍ତ ମାଧବବାବୁ ଠିଆ ହୋଇଚ଼ନ୍ତି, ଠିକ୍ ପଛରେ– ଭାଗମାପ ଠିକ୍ ହେଉଚ଼ି କି ନାହିଁ ଦେଖିବା ପାଇଁ। କିଛି କ୍ଷଣ ପରେ ବିରକ୍ତ ଓ ଅଧୈର୍ଯ୍ୟ ହୋଇ, ସେ ହରିଶ୍‌ର ମୁଣ୍ଡବାଳ ଗୁଡ଼ାକୁ ଖପ୍ କରି ମୁଠା ଭିତରେ ଧରି, ମୁଣ୍ଡଟାକୁ ହଲାଇ ଦେଲେ। କହିଲେ, ''ବାଳ ଛୋଟ କରି କାଟି ପାରୁ ନାଁ ? ପଛରୁ ତମ ଓଷଦ ତିଆରି କିଛି ଦେଖାଯାଉନାହିଁ।'' ....ମୁଁ ଦାଦା ଆଉ ମା'ଙ୍କ ପାଖରେ ଏ କଥା ଗପିଲି। ସେମାନଙ୍କର କି ହସ! ହସ ଚାପିବା ପାଇଁ ବ୍ୟର୍ଥ ଚେ଼ଷ୍ଟା କରି, ମା କହିଲେ, ''ମା ଲୋ ମା! ସବୁ କଣ ତୋ ନଜରରେ ପଡ଼େ? ...ମା ହସିଲେ, ତାଙ୍କ ଆଖିରେ ପାଣି ଜକେଇଯାଏ। ଆଉ ଦାଦା ହସିବା ବେଳେ, କୌଣସି ଶବ୍ଦ ହୁଏ ନାହିଁ; ବାଁ ଗାଲରେ ଗୋଟାଏ ଜାଗା କେବଳ ଟୋଲେଇ ଉଠେ। ଆଖି ଦୁଇଟା ଅଧା ବୁଜି ହୋଇଯାଏ। ଦାଦାର ହସିଲା ହସିଲା ମୁହଁ ଆଖି ଆଗରେ ଭାସି ଉଠୁଛି।...

ଆଲୋକଶିଖାଟି କ୍ରମେ ଦୂରେଇ ଯାଉଚ଼ି। ଏପାଖ ସେପାଖ ହଲୁଚ଼ି। କମ୍ପାଉଣ୍ଡର ବାବୁଙ୍କ ଲଣ୍ଠନ୍। କମ୍ପାଉଣ୍ଡର ବାବୁ କଣ ଏତେ ହଲି ହଲି ଚାଲନ୍ତି ? ଗରିଲାମାନେ ଏମିତି ଚାଲନ୍ତି। ନିକଟରେ ଥିବା ବେଳେ ଏତେଟା ଲକ୍ଷ୍ୟ କରି ନାହିଁ। ଏତେ ଦୂରକୁ ଯାଉଚ଼ନ୍ତି କାହିଁକି? ବୋଧହୁଏ ସରକାରୀ କ୍ୱାର୍ଟର୍ ପାଇନାହାନ୍ତି। ଦୂରରୁ ହାରିକେନ୍ ଲଣ୍ଠନ୍ ଶିଖା ଆଉ ପ୍ରଦୀପ ଶିଖା ଭିତରେ କୌଣସି ତଫାତ୍ ବୁଝାପଡ଼େ ନାହିଁ।

...ରାଣୀପାତ୍ରାରେ ଗୋଟାଏ 'କିସାନ' କେସ୍ ତଦାରଖ୍ କରି ଫେରିବା ବାଟରେ ମୁଁ ଦାଦା ଆଉ ସହଦେବ ଖୁବ୍ କ୍ଳାନ୍ତ ହୋଇ ପଡ଼ି ଥିଲୁ। ଅନ୍ଧାର ରାତିରେ ମିଞ୍ଜି ମିଞ୍ଜି ଆଲୁଅ ଦେଖି ରାତିଟା କଟାଇବା ପାଇଁ, ସେଇଠାକୁ ଯିବାକୁ ସ୍ଥିର କଲୁ। ଜୁଳୁଜୁଳିଆ ପୋକ ପରି ମୃଦୁ ଆଲୁଅ—କ୍ରମେ ପାଖକୁ ଯାଇଁ ଦେଖିଲୁ ଗୋଟିଏ ଡ଼ିବ୍ ଲଣ୍ଠନ୍‌ର ଶିଖା। ଲଣ୍ଠନ୍‌ଟା ପୁରୁଣା, କଳଙ୍କିଲଗା।

...'ମହାତ୍ମା' ମାନଙ୍କ ପାଇଁ ଖଟିଆ, କମ୍ବଳ, ତକିଆ ଆସିଲା। 'ଭଲ୍ୟୁଣ୍ଟିଅର' ସହଦେଓ ପାଇଁ ଖଣ୍ଡେ ଖଣ୍ଡେ ମଶିଣା ଚ଼ଟାଣ ଉପରେ ପଡ଼ିଲା। ଖଟିଆ ପଡ଼ିଲା ଘର ବାହାରେ ଗୋଟାଏ ଦୋଚାଲା ଘରେ। ଘରେ କାନ୍ଥ ବା ବେଡ଼ା ନାହିଁ। ଏ ଆଡ଼େ ଏହାକୁ 'ହାଓ୍ୱାଟୁଙ୍ଗୀ' କହନ୍ତି। କମ୍ବଳ ଉପରେ ମଇଳା ଚାଦର ଆଉ ତେଲଚ଼ିକିଟା ତକିଆ ଦେଖି, ମୋତେ ଘୃଣା ଲାଗୁଚ଼ି। —ସେଥିରେ ଭରି ରହିଛି ହୁଏତ କେତେ ରୋଗର ଜୀବାଣୁ। ମୁଁ ସେସବୁ ଖଟିଆରୁ ଘୁଞ୍ଚାଇ ଦେଇ ଖାଲି କମ୍ବଳ ଉପରେ ବସିଲି– କମ୍ବଳ ଉପରର ମଇଳା ଆଖିରେ ପଡ଼େ ନାହିଁ ବୋଲି ମନରେ ଟିକିଏ ତୃପ୍ତି। ଯେଉଁ ଲୋକଟି ଚୂଡ଼ା ଦହି ପରିବେଷଣ କଲା, ତାର ଆଖି ଧରିଚ଼ି। ଦାଦା ତା'ରି ହାତରୁ ଚୂଡ଼ା ଦହି ଖାଇ, ପରମ ନିଶ୍ଚିନ୍ତରେ ଏଇ ବିଛଣାରେ ତକିଆ ମୁଣ୍ଡ ତଳେ ଦେଇ ଶୋଇ ପଡ଼ିଲା।.. ଭାଗ୍ୟବାଦିତା, ଦାଦାର ମନୋବୃତ୍ତିରେ ସବୁଦିନେ ଲକ୍ଷ୍ୟ କରି ଆସିଛି। ପାରିପାର୍ଶ୍ୱିକ ପରିସ୍ଥିତି ସହିତ ନିଜକୁ ଖାପ୍ ଖୁଆଇ ଚ଼ଳିବାର କ୍ଷମତା ତାର ଅଦ୍‌ଭୁତ। ଏ ବିଷୟରେ କଥା ଉଠିଲେ, ସେ କହିବ, ଯଦି କୌଣସି ମୂଳ ସିଦ୍ଧାନ୍ତରେ ଆଘାତ ନ ଲାଗେ, ତା'ହେଲେ ନିଜର ସୌଜନ୍ୟ

ବିସର୍ଜନ ଦେବାର ପ୍ରୟୋଜନ କଣ ? ତାର ଆତ୍ମକେନ୍ଦ୍ରିକ ମନ, ନିଜକୁ ଚିନ୍ତା ଭିତରେ ବୁଡ଼ାଇ ରଖିବାକୁ ଚାହେଁ। ସବୁ ପ୍ରଶ୍ନ ସେ ନିଜ ଦୃଷ୍ଟିକୋଣରୁ ଚିନ୍ତା କରେ, ମନେ ମନେ ସବୁ କଥା ତନ୍ନତନ୍ନ ବିଶ୍ଲେଷଣ କରେ, ଯେ କୌଣସି ସୂକ୍ଷ୍ମ କଥା, ମୋ ଠାରୁ ଭଲ ବୁଝେ, କିନ୍ତୁ ବ୍ୟାବହାରିକ କ୍ଷେତ୍ରରେ, ବ୍ୟକ୍ତିଗତ ଜୀବନରେ ତାର ଆଚରଣ ଯୁକ୍ତି ସହିତ ସାମଞ୍ଜସ୍ୟ ରଖେ ନାହିଁ। ଯେଉଁ କଥା ଶୁଣିଲେ ମୋର ସାରା ଦେହ ରାଗରେ ଜଳିଉଠେ, ହୁଏତ ମୁରୁକି ମୁରୁକି ହସି, ଗୋଟାଏ ସଂକ୍ଷିପ୍ତ ଉତ୍ତର ଦେଇ ସେ ତାହାକୁ ସହ୍ୟ କରିଯାଏ। ସେ ଏକ ନୀଳକଣ୍ଠ। ତାଠାରେ ସାହସର ଅଭାବ ନାହିଁ, ଭୟରେ କୌଣସି ସମୀଚୀନ କରଣୀୟ କାର୍ଯ୍ୟ ସେ ଛାଡ଼ିଦେବା ମୁଁ ଏ ପର୍ଯ୍ୟନ୍ତ ତାଠାରେ ଲକ୍ଷ୍ୟ କରିନାହିଁ। ତା'ର ରକ୍ତ ଯେପରି ଆଦୌ ତାତେ ନାହିଁ। ବୁଦ୍ଧିଶକ୍ତିର ତୀକ୍ଷ୍ଣତା ଓ ଅନୁଭୂତିର ତୀବ୍ରତା ସତ୍ତ୍ୱେ ଆବେଗର ଉଗ୍ରତା ଓ ପ୍ରାଣଶକ୍ତିର ପ୍ରଚଣ୍ଡତା ତା ଭିତରେ ନାହିଁ। ପ୍ରତି ପଦକ୍ଷେପ ତା'ର ମପାଚୁପା। ଖସଡ଼ା ବାଟରେ ସେ ଯେପରି ଅତି ସାବଧାନରେ ପାଦ ଚିପି ଚିପି ବାଟ ଚାଲୁଚି।

...ଥ୍ରୀ–ଲେଗ୍‌ଡ୍‌–ରେସ୍ ବେଳେ ଦାଦା ଭାରି ସଙ୍କୁଚିତ ଭାବରେ ପାଦ ପକାଏ। ଥରେ କୁମାର ସାହେବଙ୍କ ମେଳା ଉପଲକ୍ଷେ ମୁଁ ଆଉ ଦାଦା, ପିଲାଙ୍କର ସ୍ପୋର୍ଟସ୍‌ରେ ଥ୍ରୀ–ଲେଗ୍‌ଡ୍‌–ରେସ୍ କରିଥିଲୁ। ଆମେ ଅନେକ ପଛରେ ପଡ଼ି ଜିତି ପାରି ନଥିଲୁ। ଏ 'ଆଇଟେମ୍' ଶେଷ ହେବା ପରେ, ଦୁଃଖ ଆଉ ରାଗରେ ଦାଦାକୁ କହିଥିଲି, ''ତତେ ସାଙ୍ଗରେ ଧରି ଦଉଡ଼ିବା, ବେକରେ ଗୋଟାଏ ବିରାଟ ଢୋଲ ଝୁଲାଇ ଦଉଡ଼ିବା ସଙ୍ଗେ ସମାନ।'' ଦାଦା ଉତ୍ତର ଦେଇଥିଲା, ''ମୁଁ ତ ଆଗରୁ କହିଥିଲି, ତୁ ସ୍ପୋର୍ଟସ୍‌ରେ ସବୁଥର ଫାଷ୍ଟ ହଉ। ମତେ ମିଛରେ ଟଣାଟଣି କଲୁ। ପାନ୍ନା ସାଙ୍ଗରେ ମିଶିଥିଲେ ତ ପାରିଥାନ୍ତୁ। ଦାଦା ଏପରି ଲଜ୍ଜିତ ଓ ଅପ୍ରତିଭ ହେବା, ମୁଁ ଆଉ କେବେ ଦେଖି ନଥିଲି। 1943 ଆଉ 1922–ଏକୋଇଶ ବର୍ଷ ଆଗର ଘଟଣା। ...ଦାଦାର ଝାଳଭିଜା, କ୍ଲାନ୍ତ ମୁହଁ–ନୁଖୁରା ବାଳ ସବୁ ଧୂଳିରେ ଭରି ଯାଇଛି। ଅଣନିଃଶ୍ୱାସୀ ହୋଇ ଦାଦା, କୁଞ୍ଚକାନିରେ ପାଦରୁ ଧୂଳି ଝାଡ଼ିବାକୁ ଲାଗିଲା। ମୋ ମନ ଖରାପ ହୋଇଗଲା। ଅନ୍ୟ ପ୍ରତିଯୋଗିତାରେ ମିଳିଥିବା ପ୍ରାଇଜ୍ ଗୁଡ଼ିକ ମା'କୁ ଦେଖାଇ ଆନନ୍ଦ ପାଇଲି ନାହିଁ। ଦାଦା ନିଜେ ସେ ଗୁଡ଼ା ମା'କୁ ଦେଖାଇଲା। ପରଦିନ ବନ୍ଧୁବାନ୍ଧବ ମାନଙ୍କୁ ମଧ ଦେଖାଇଲା। ମା'କୁ କହିଲା–''ନୀଲୁ ପାଖରୁ ଶୁଣ, ରୋଜାରିଓ ସାହେବର କୀର୍ତ୍ତି– ମୁଁ ତ ଭଲ କହି ପାରିବି ନାହିଁ।'' ବୁଝିଲି ଦାଦା, ମୋ ମନୋଭାବ ବୁଝି ପାରିଚି। ତାର ତୀକ୍ଷ୍ଣ ଦରଦୀ ଦୃଷ୍ଟି ମନର ଅନ୍ତଃସ୍ଥଳ ପର୍ଯ୍ୟନ୍ତ ଭେଦିପାରେ। ଦାଦା ମୋ ମନକୁ ହାଲୁକା କରିବା ପାଇଁ ଚେଷ୍ଟା କରୁଛି। ମୋ ଆଡୁ ପ୍ରାୟଶ୍ଚିତ କରିବା ଉଚିତ ଥିଲା। ...ରୋଜାରିଓ ସାହେବର କୀର୍ତ୍ତି କହିବା ପାଇଁ ପଡ଼ିଲା। ରୋଜାରିଓ, କୁମାର ସାହେବଙ୍କ ମ୍ୟାନେଜର୍। ତାଙ୍କରି ତତ୍ତ୍ୱାବଧାନରେ ସ୍ପୋର୍ଟସ୍ ପରିଚାଳିତ ହୁଏ। ଶହେ ଗଜ ଦଉଡ଼ରେ ଖୋକନ୍‌ଦା'କୁ କେହି ପାରନ୍ତି ନାହିଁ। ତାର ଭଲ ନାଁ କ୍ରୀଡ଼ାରୀରଞ୍ଜନ ଦତ୍ତ। ସେ ଫାଷ୍ଟ୍ ହୋଇଥିଲା; ମୁଁ ସେକେଣ୍ଡ୍। ପିଲାମାନଙ୍କ ସ୍ପୋର୍ଟସ୍‌ରେ ଜାମାରେ ନମ୍ବର ଦିଆ ଯାଏ ନାହିଁ। ଲକ୍ଷ୍ୟସ୍ଥାନରେ ପହଞ୍ଚିବା ପରେ, ରୋଜାରିଓ ସାହେବ ସମସ୍ତଙ୍କୁ ପଚାରି ଖଣ୍ଡେ କାଗଜରେ ନାଁ ଲେଖୁଥିଲା। ଖୋକନ୍‌ଦା'ଙ୍କୁ ସେ ନାଁ ପଚାରିଲା। ଚାରିପାଖେ ଭିଡ଼, କୋଳାହଳ। ପ୍ରତ୍ୟେକ ପ୍ରତିଯୋଗିତା ଶେଷରେ ଏଇପରି ହୋଇଥାଏ।

ଖୋକନ୍‌ଦା ତା ନିଜ ନାଁ କହିଲା । ସାହେବ, ଦୁଇ ତିନିଥର ପଚାରି ସୁଦ୍ଧା, ତା’ ନାଁକୁ ବୋଧହୁଏ ଠିକ୍‌ ଧରି ପାରିଲା ନାହିଁ । ତା ତଳକୁ ମୋ ନାଁ ଲେଖାଥିଲା । ମୋ ପରେ ସାହେବ ଆଉ ଦୁଇ ଜଣଙ୍କ ନାଁ ଲେଖିଲା । ପ୍ରାଇଜ୍‌ ଦେବା ବେଳକୁ ଦେଖେ, ମୁଁ ପାଇଚି ଫାଷ୍ଟ୍‌ ପ୍ରାଇଜ୍‌ । ଖୋକନ୍‌ଦାର ଆଖି ଲୁହଛଳଛଳ ହୋଇଗଲା । ତା ନାଁ ପ୍ରାଇଜ୍‌–ତାଲିକାରେ ନାହିଁ । ଜିତେନ୍‌ଦା ତାକୁ ଥଟ୍ଟା କରି କହିଲା, ‘‘କ୍ରୀଙ୍କାରୀରଞ୍ଜନ ଦତ୍ତ ସାହେବ କଣ ଲେଖି ପାରିବ ? ବାପ ମା ଦେଇଥିବା ନାଁ ପାଇଁ, ତୁମ ପ୍ରାଇଜ୍‌ଟା ଗଲା । କାଲି ସକାଳେ କୁମାର ସାହେବ ପାଖକୁ ଯାଅ ।’’ ଭାବିଥିଲି, ମା ଏ କଥା ଶୁଣି ହସିବେ । କିନ୍ତୁ ଫଳ ହେଲା ଓଲଟା । ମୋତେ ପ୍ରାଇଜ୍‌ ମିଳିଥିବା ଟି’ ପଟ୍‌ଟିକୁ ପରଦିନ ଖୋକନ୍‌ଦାକୁ ଦେଇ ଆସିବା ପାଇଁ ପଡ଼ିଲା । ମୋ ପ୍ରାଇଜ୍‌ଟା ଏଇ ପରି ବାଟମାରଣା ହେଲା । ରୋଜାରିଓ ସାହେବଙ୍କୁ ଦେଖିଲେ, ଏବେ ବି ମୋର ସେଇ ଦୁଃଖ କଥା ମନେ ପଡ଼େ ।

ଦାଦା କିନ୍ତୁ ଆଉ କେବେ ମୋ ପାର୍ଟନର୍‌ ହୋଇ ଖେଳିବା ପାଇଁ ରାଜି ହୋଇନାହିଁ । କୌଣସି ନା କୌଣସି ଆଳରେ ଏଡ଼ାଇ ଯିବାର ଚେଷ୍ଟା କରିଛି । ଖେଳାଖେଳିରେ ଦାଦାର କେବେ ସଉକ୍‌ ନଥିଲା । ବ୍ୟାଡ଼ମିଣ୍ଟନ୍‌ ଛଡ଼ା ଅନ୍ୟ କୌଣସି ଖେଳ ସେ ଖେଳି ପାରେ ନାହିଁ । ପ୍ରୀତି, ସୌଜନ୍ୟ ଓ ନମନୀୟତା ଭିତରେ ତା’ର ଅସୀମ ଦୃଢ଼ତା । ଗୋଟାଏ ଜାଗାରେ ପହଞ୍ଚିଲା ପରେ ହଠାତ୍‌ ତା’ର ଆଉ ପତ୍ତା ମିଳେ ନାହିଁ– ଏତେ ନିକଟରେ ଥିବା ସତ୍ତ୍ୱେ, ଯେପରି ବିଚ୍ଛିନ୍ନ, ସ୍ୱତନ୍ତ୍ର । ତାର ସେଇ ଅଭିମାନ ଏକୋଇଶ ବର୍ଷ ଭିତରେ ଶତ ଚେଷ୍ଟା ସତ୍ତ୍ୱେ ମୁଁ ଭାଙ୍ଗି ପାରିନାହିଁ ।

ବାରାକ୍‌ରେ ପ୍ରାର୍ଥନା ଏବେ ବି ଚାଲିଛି । କୋଳାହଳରୁ ମନେ ହେଉଚି, ସଂକୀର୍ତ୍ତନ ବେଶ୍‌ ଜମି ଉଠିଛି । ଅବିକା ଆଉ ‘ସୀୟାରାମା’ର ନାମ କୀର୍ତ୍ତନ ହେଉନାହିଁ । ବର୍ତ୍ତମାନ କେବଳ ଗୋଟିଏମାତ୍ର ଏକଟଣା ଧ୍ୱନି ଶୁଣା ଯାଉଛି– ‘‘ନାରାୟଣା ନାରାୟଣା ନା–ରା–ୟ–ଣ–ଆ . . . ’’ । ଏଇ ପରି ଧ୍ୱନି ପରେ ସାଧାରଣତଃ ଏମାନଙ୍କର ସଂକୀର୍ତ୍ତନ ଶେଷ ହୋଇଥାଏ । . . . ଗୋରା ସାହେବ ସୁପରିଟେଣ୍ଡେଣ୍ଟ ତା କ୍ୱାର୍ଟର୍‌ ପାଖରେ ଏଇ ବିକଟ ଚିତ୍କାର କିପରି ବରଦାସ୍ତ କରେ ? ସେ ବୋଧହୁଏ ୱାର୍ଡ଼ର୍‌ ମାନଙ୍କୁ ରଗାଇବା ପାଇଁ ଚହେଁନା । ସେମାନଙ୍କ ଆନ୍ତରିକ ସହଯୋଗ ବିନା ଜେଲ୍‌ଶାସନ ଯେ ଦଣ୍ଡେ ଚଳି ପାରିବ ନାହିଁ ।

ଅନେକ ଦିନର କଥା ହେଲାଣି । ରୋଗା, ଖିଟ୍‌ ଖିଟିଆ ଜଜ୍‌ ସ୍ମିଲାର ସାହେବ ଆଡ଼ପାଗଳା ପ୍ରକୃତିର ଲୋକ ଥିଲେ । ପ୍ରତ୍ୟହ ବ୍ୟାୟାମ ପାଇଁ କୁରାଢ଼ୀରେ କାଠ ଚିରୁଥିଲେ . . . ଜର୍ମାନ୍‌ ସମ୍ରାଟ କାଇଜର୍‌ଙ୍କର ବି ଏଇ ପାଗଳାମୀ ଥିଲା । . . . . ଫଜ୍‌ଲୋ ମିଆଁ ନାଜୀର୍‌ ଜଜ୍‌ ସାହେବଙ୍କୁ କାଠଗଣ୍ଡି ଯୋଗାଇ ଯୋଗାଇ ଅସ୍ଥିର । ବଜ୍‌ରଙ୍ଗପ୍ରସାଦ ଓକିଲଙ୍କ ଝିଅ ବିବାହ ବେଳେ, ସ୍ମିଲାର ସାହେବ କି କାଣ୍ଡ ନକଲେ ! ରାତିରେ, ବାହାଘର ବାଜଣା ଯେତେବେଳେ ଚରମକୁ ଉଠିଛି, ସେତିକିବେଳେ ସାହେବଙ୍କର ଖିଆଲ୍‌ ହେଲା, ତାଙ୍କ ଶାନ୍ତିରେ ବ୍ୟାଘାତ ହେଉଛି । ସଙ୍ଗେ ସଙ୍ଗେ ଖଣ୍ଡେ ଲାଠି ଆଉ ‘ବୁଲ୍‌ସ୍‌ଆଇ’ ଲଣ୍ଠନ୍‌ ହାତରେ ଧରି, ବଜରଙ୍ଗ୍‌ ବାବୁଙ୍କ ଘରେ ଯାଇଁ ହାଜର । ସେଠି କୌଣସି କଥାବାର୍ତ୍ତା ନକରି, ଲାଠିରେ ଢୋଲଚମଡ଼ାକୁ ଫୁଟାଇ ଦେଲେ । ପରଦିନ ବଜରଙ୍ଗ୍‌ ବାବୁ ଜଜ୍‌ ସାହେବଙ୍କ ନାଁରେ ଦାୟର୍‌ କଲେ ମୋକଦ୍ଦମା । କିଛି ଦିନ ପରେ ଆପୋଷରେ ମୋକଦ୍ଦମା ନିଷ୍ପତ୍ତି

ହୋଇଗଲା । ମୁଣ୍ଡ ଥଣ୍ଡା ପଡ଼ିବାରୁ ଓକିଲ ସାହେବ ବୁଝିଲେ, ଓକିଲାତି କରି ଯେତେବେଳେ ଖାଇବାକୁ ପଡ଼ିବ, ଜଜ୍‌ସାହେବଙ୍କ ସାଙ୍ଗରେ ଝଗଡ଼ା କରି ଆଉ ଲାଭ କଣ ? ଆତ୍ମୀୟ ସ୍ୱଜନ ମାନଙ୍କ ଆଗରେ ଅପମାନ ଯାହା ହେବାର ତ ହୋଇଗଲା । କଥା ଯେତେ ବଢ଼ାଇବ, ସେତେ ବଢ଼ିବ ।

ଆମ ଦେଶଲୋକଙ୍କୁ ବା କି ଦୋଷ ଦେବି ? ସବୁ ଦେଶଲୋକେ ସମାନ । ସାହେବ ମାନେ ମଧ ଆମରି ପରି time-server, ଯୁଆଡ଼କୁ ବର୍ଷା, ସେଆଡ଼କୁ ଛତା । ଏଇ କଂଗ୍ରେସ–ମିନିଷ୍ଟ୍ରୀ ବେଳେ, ଜିଲ୍ଲା–ମାଜିଷ୍ଟ୍ରେଟ୍ ଭାର୍ଣନ୍ ସାହେବ, ଉପରେ ପଡ଼ି ଆସି, ଆମ ଆଶ୍ରମରେ ଡ଼ାଲିଭାତ ଖାଇଯାଉଥିଲେ । ମିସେସ୍ ଭାର୍ଣନ୍ କିନ୍ତୁ ହାତରେ ଭାତ ଖାଇବା ବେଳେ, ଭାତ ଗୁଣ୍ଡା ଠିକ୍ ଭାବରେ ମୁହଁରେ ଦେଇ ପାରୁ ନଥିଲେ । ଚାମୁଚ୍‌ରେ ଯେପରି ଭାତ ନିଅନ୍ତି, ଠିକ୍ ସେଇପରି ଭାବରେ ଆଙ୍ଗୁଠିରେ ଭାତ ଉଠାଉଥିଲେ । ଆଉ ଠିକ୍ ଚାମୁଚ୍ ପରି ମୁହଁ ଭିତରେ ଆଙ୍ଗୁଠି ପୁରାଇଥିଲେ । ମୁହଁଯାକ ଡ଼ାଲିଭାତ ବୋଳି ହୋଇଯାଉଥିଲା । . . . କୌଣସି ନା କୌଣସି ବାହାନାରେ ଭାର୍ଣନ୍ ସାହେବ, ଯେତେବେଳେ ନାଇଁ ସେତେବେଳେ ଦେଖା କରିବା ପାଇଁ ଆସନ୍ତି । ଖଦଡ଼ ଓ ଗାନ୍ଧୀଟୋପି ପ୍ରତି କି ଖାତିର୍ । ସାହେବଙ୍କ ଝିଅ ନେଉଳଟିଏ ପୋଷିଥିଲା । ‘‘ଘରେ ନେଉଳଟା ଭାରି ହଇରାଣ କରୁଛି, ତୁମେ ଯଦି ଆଶ୍ରମରେ ରଖିବ, ତା’ହେଲେ ଏଇଠି ଛାଡ଼ି ଦିଅନ୍ତି ।’’ ଏଇଆ କହି ଦାଦାକୁ ନେଉଳଟି ପୋଷିବା ପାଇଁ ଦେଇଥିଲା । ତା ପରଠୁ ଏଇ ନେଉଳ ଦେଖିବା ବାହାନାରେ ସ୍ତ୍ରୀ କନ୍ୟା ସହିତ କଲେକ୍ଟର୍ ସାହେବ ସମୟ ନାହିଁ, ଅସମୟ ନାହିଁ, ଯେତେବେଳେ ନାଇଁ ସେତେବେଳେ ଆସି ହାଜର୍ ! ତଙ୍କ ଝିଅ କୁଆଡ଼େ ରିକିକୁ ଦେଖିବା ପାଇଁ ଚହେଁ । ତା’ପରେ ରିକିକୁ ନେଇ ପିଲାଙ୍କ ପରି କେତେ ଆଦର, କେତେ ଚିତ୍କାର !

ଚିନ୍ତାର ସୂଅ ଛିନ୍ନ କରି, ଅନ୍ଧକାର ଓ ନିସ୍ତବ୍ଧତା ବିଦୀର୍ଣ୍ଣ କରି, ବାତାବାରଣ କମ୍ପିତ କରି ବାରଟା ବେଳର ଘଣ୍ଟା ବାଜିଲା । ଡାକ୍ତରଙ୍କ କ୍ୱାର୍ଟର୍‌ର ଗୋଟାଏ କୁକୁର ଭୋ ଭୋ ହୋଇ ବୋବେଇଲା–ସୁଖତନ୍ଦ୍ରା ତାର ଭାଙ୍ଗିଗଲା ବୋଧହୁଏ । ‘‘ହୋ–ଓହେ’ . . . ଏଇ ବିକଟ ଚିତ୍କାର ସହିତ ଖଞ୍ଜଣୀ, ଝାଞ୍ଜ, ଢୋଲକୀ ସମ୍ବଳିତ ଓ୍ୱାର୍ଡ଼ର୍ ମାନଙ୍କର କୀର୍ତ୍ତନ ବନ୍ଦ ହୋଇଗଲା । ଏମାନେ ଘଡ଼ି ଧରି ବାରଟା ପର୍ଯ୍ୟନ୍ତ କୀର୍ତ୍ତନ କରନ୍ତି ନାଁ କଣ ? ପୂର୍ବରୁ କିପରି ସମୟ ଠିକଣା କରନ୍ତି ? . . . ଖାକି କନାର ଅଧାହାତ ଭିତରେ ଜୋଡ଼ାଏ ହାତ, ଅଧହାତ ବ୍ୟାସର ଝାଞ୍ଜ ବଜେଇ ଚାଲିଛି । ବାଁହାତ ମଣିବନ୍ଧରେ ଗୋଟାଏ ଶସ୍ତା ରିଷ୍ଟ୍‌ୱାଚ୍ ଓ ତା’ର ଉପର ଅଂଶରେ ନେଳୀ ନାଲି ଚିତାରେ ଉକୁଟା ହୋଇଛି ଗୋଟିଏ ନାରୀ ମୂର୍ତ୍ତି ।

ବାବାଙ୍କ କୀର୍ତ୍ତନ ଠିକ୍ ଆଠଟାରେ ଶେଷ ହୁଏ । ମହାତ୍ମାଜୀଙ୍କର ପ୍ରିୟ ଭଜନଟି ‘‘ରଘୁପତି ରଘବ ରାଜାରାମ୍ ପତିତ ପାବନ ସୀତାରାମ୍’’ ସବାଶେଷରେ ବୋଲାଯାଏ । ଆଶ୍ରମରେ ଯେଉଁ କଂଗ୍ରେସକର୍ମୀମାନେ ଥାନ୍ତି, ସମସ୍ତେ କୀର୍ତ୍ତନରେ ଯୋଗଦାନ କରନ୍ତି । ସମସ୍ତେ ଭାବନ୍ତି, ବାବା ଏଥିରେ ଖୁସୀ ହେବେ । ସତରେ, ବାବାଙ୍କ କୀର୍ତ୍ତନ ଝୁଙ୍କ ଜେଲ୍‌ରେ ସମସ୍ତେ ଜାଣନ୍ତି . . . ମିଟିଙ୍ଗ୍ ଘରେ କୀର୍ତ୍ତନ ବସେ । ସିମେଣ୍ଟ୍ ଚଟାଣ, ମାଟି କାନ୍ଥ, ଛଣ ଛପର ଚାଳ, ମା’ ନିଜ ହାତରେ କାନ୍ଥକୁ ଲିପି ପୋଛିଚନ୍ତି–ମଝିରେ ମଝିରେ ଛୋଟ ଝରକା, ସେଥିରେ କବାଟ ନାହିଁ । କାନ୍ଥସାରା ଏଠି ସେଠି ରାଜନୈତିକ ନେତା ମାନଙ୍କର

ଛବି। ଗୋଟାଏ ପାଖରେ କଂଗ୍ରେସ ପତାକା କ୍ରୁଶ ଆକାରରେ କାନ୍ଥରେ ମରାଯାଇଛି। ତା' ଉପରେ ନାଲି ସାଲୁ ଉପରେ ଧଳା ତୁଳାରେ ନାଗରୀରେ ଲେଖା ହୋଇଛି ''ସ୍ୱାଗତମ୍‌''। ତା ତଳକୁ ଗାନ୍ଧିଜୀଙ୍କର ଖଣ୍ଡେ ବଡ଼ ଛବି। ଘରର ପୂର୍ବ ଓ ଉତ୍ତରକୋଣ ଟିକିଏ ଅପରିଷ୍କାର। କସ୍‌ଟିକ୍‌ ସୋଡ଼ା, ଲୁହା କଡ଼େଇ ଆଉ ଲୁଗାଧୁଆ ସାବୁନ୍‌ ତିଆରି ଅନ୍ୟାନ୍ୟ ସରଞ୍ଜାମରେ ଭର୍ତ୍ତି କାଠଚକ ଲାଗିଥିବା ଗୋଟିଏ ବଡ଼ ସିନ୍ଧୁକ ଏଇ ପାଖଟାରେ ଥାଏ। ଫୁଲକାହାର ନନ୍ଦଲାଲ୍‌ ତେଓ୍ୱାରୀ ଏଇ ସିନ୍ଧୁକଟି କଂଗ୍ରେସ କମିଟୀକୁ ଦାନ କରିଥିଲା। ଘରର ଅନ୍ୟ କୋଣରେ ଗୋଟାଏ ଧୁନ୍‌କୀ ତାର ଆଡ଼କାଠରୁ ଝୁଲୁଥାଏ ଗୋଟାଏ ଧନୁକ। ଦିନବେଳା ତୁଳା ଭିଣିବା ବେଳେ ତା ସହିତ ଧନୁକ୍‌ଟିକୁ ବାନ୍ଧି ଦିଆଯାଏ। ...ଆଶ୍ରମର କୀର୍ତ୍ତନ ଆରମ୍ଭ ହେଲା। ''ଦେଶେର ଛେଲେ ଗାନ୍ଧିଜୀକେ ଚିନଲି ନାଁରେ ଜାନ୍‌ଲିନାଁ... ବାବା ଏଇ ଗୀତଟିକୁ ନିଜେ ରଚନା କରିଥିଲେ। ମା ଧୂପଦାନି ଧରି ମିଟିଙ୍ଗ୍‌ ଘର ଭିତରକୁ ଆସନ୍ତି ଗାନ୍ଧିଜୀଙ୍କ ଚିତ୍ରପଟରେ ଗୋଟିଏ ଫୁଲମାଳ ଦେଇ, ତା ସାମ୍‌ନାରେ ଧୂପଦାନିଟା ରଖି ଗୋଟିଏ କୋଣରେ ମା ଅଲଗା ହୋଇ ବସନ୍ତି। ବାବା ଲଣ୍ଠନ୍‌ କମାଇ ଦେଇ ସୁର ଧରିଲେ। ସହଦେଓ ପ୍ରଭୃତି ସମସ୍ତେ ବିକୃତ ଉଚ୍ଚାରଣରେ ଏଇ ବଙ୍ଗଳା କୀର୍ତ୍ତନ ବୋଲୁଛନ୍ତି। ଗୀତ ଶେଷ ହେବା ମାତ୍ରେ ସାଷ୍ଟାଙ୍ଗ ପ୍ରଣାମ କରି ମା ଉଠିଯାନ୍ତି। ଏତେ ଗୁଡ଼ିଏ ଲୋକଙ୍କର ଖାଇବା ପିଇବା ବ୍ୟବସ୍ଥା ତାଙ୍କୁ କରିବା ପାଇଁ ପଡ଼ିବ। କୀର୍ତ୍ତନରେ ବସି ରହିଲେ ରାନ୍ଧିବ କିଏ ? ମୁଁ ଆଉ ଦାଦା ଦୁହେଁ, ପିଲାଦିନେ କୀର୍ତ୍ତନରେ ବସୁଥିଲୁ। ବ୍ରତ ହେବା ପରେ ମଧ୍ୟ କେତେ ବର୍ଷ ବସିଥିଲୁ। ...ଦାଦା କୀର୍ତ୍ତନ ବନ୍ଦ କରିବାର କେତେଦିନ ପରେ ମୁଁ ମଧ୍ୟ କୀର୍ତ୍ତନକୁ ଯିବା ବନ୍ଦ କରି ଦେଲି। ଏଥିପାଇଁ ମା'ର କି କାନ୍ଦ! ''ତୁମେମାନେ କୀର୍ତ୍ତନକୁ ନ ଆସିଲେ, ସିଏ ଦୁଃଖ କରନ୍ତି। ତୁମ ମନ ନ କର ପଛେ, ତାଙ୍କ କଥା ଭାବି କୀର୍ତ୍ତନରେ ବସୁନା କାହିଁକି ?'' ଦାଦା କୌଣସି ଉତ୍ତର ଦିଏ ନାହିଁ। ଦାଦା ଘରେ କୀର୍ତ୍ତନ କରେ ନାହିଁ; କିନ୍ତୁ କଂଗ୍ରେସ କାର୍ଯ୍ୟକ୍ରମରେ ଗାଁକୁ ଗଲେ, ବଡ଼ ବଡ଼ ଗାଁର ଗ୍ରାମବାସୀମାନେ ଆମ ମନ ବିନୋଦନ ପାଇଁ କୀର୍ତ୍ତନର ବନ୍ଦୋବସ୍ତ କରନ୍ତି। ବାବାଙ୍କ ପାଇଁ ସେମାନେ ଏପରି କରିବାରେ ଅଭ୍ୟସ୍ତ। ସେଥିପାଇଁ ମାଷ୍ଟରସାହେବଙ୍କ ପୁଅମାନଙ୍କ ପାଇଁ ମଧ୍ୟ ସେମାନେ ଏଇ 'ଖାତିରଦାରୀ' କରନ୍ତି। ଏ କୀର୍ତ୍ତନରେ କିନ୍ତୁ ଦାଦା କେବେ ବିରକ୍ତି ପ୍ରକାଶ କରେ ନାହିଁ। ମୁଁ ଅସ୍ୱସ୍ତି ପ୍ରକାଶ କଲେ, ମତେ ଧୈର୍ଯ୍ୟ ଧରିବା ପାଇଁ ଠାରି ଦିଏ।

ଥରେ–ବାଇସୀ ଥାନାର ଖାଗ୍‌ଡ଼ା ହାଟରେ ମିଟିଙ୍ଗ ହେବ। ସେ ପର୍ଯ୍ୟନ୍ତ ଲୋକ ଆସି ନାହାନ୍ତି। ସହଦେଓ କଂଗ୍ରେସ ପତାକାଟି ମାଟିରେ ପୋତି 'ଇନ୍‌କିଲାବ୍‌ ଜିନ୍ଦାବାଦ୍‌,' ଗାନ୍ଧିଜୀ କା ଜୟ' କେତେଥର କହି ସାରିଲାଣି। ନାଗରା ଦେବା, ଘଣ୍ଟା ପିଟିବା ପ୍ରଭୃତି, ଗାଁ ହାଟରେ ଲୋକ ଏକାଠି କରିବାର ଯେତେ କୌଶଳ ଅଛି, ସବୁ ପ୍ରୟୋଗ କରାଯାଇସାରିଲାଣି ; କିନ୍ତୁ ଲୋକ ଆସୁନାହାନ୍ତି। ସେଉଠୁ ସ୍ଥାନୀୟ କଂଗ୍ରେସ କର୍ମୀ ରାମଦତ୍ତ ମଣ୍ଡଳ, ଗୋପାଳ ମାନଙ୍କର କୀର୍ତ୍ତନିଆ ଦଳ ଡାକି ଆଣିଲା। ସାଙ୍ଗରେ ସିଙ୍ଗଲ୍‌ ରିଡ଼ର ଗୋଟିଏ ହାରମୋନିୟମ୍‌। ଦଶ ମିନିଟ ଭିତରେ ହାଟସାରା ଲୋକ୍‌ ସେଠି ଜମିଗଲେ। ତା'ପରେ ଆମେ ଶୀଘ୍ର ଶୀଘ୍ର ବକ୍ତୃତା ସାରିଦେଲୁ। ଲୋକେ ହାଟକାମରେ ବ୍ୟସ୍ତ। ଯାଦୁ ମଲମ୍‌ କାନଭାସରର ବକ୍ତୃତା ଆଉ ମହାତ୍ମାଜୀଙ୍କ ଚେଲାଙ୍କ ବକ୍ତୃତା ଭିତରେ ସେମାନେ କୌଣସି ତଫାତ୍‌ ଦେଖି ପାରନ୍ତି ନାହିଁ। ହାଟକୁ ଆସିଚନ୍ତି ଯେତେବେଳେ, ସବୁ ରକମର

ତାମସା ଭିତରେ ମହାତ୍ମାଜୀଙ୍କ ତାମ୍‌ସା ମଧ୍ୟ ସେମାନେ ଦୁଇ ମିନିଟ୍ ଦେଖିଯିବେ । ସେମାନଙ୍କ ଭିତରୁ କେହି କେହି ତ ମହାତ୍ମାଜୀଙ୍କ 'ଦର୍ଶନ', 'ନିମକ୍ ସତ୍ୟାଗ୍ରହ' ଆଗରୁ କରି ସାରିଛନ୍ତି– ସେମାନେ ପୁଣି ଏଇ ଅର୍ବାଚୀନ 'ଚେଲାଙ୍କ ମୁହଁରୁ କି ନୂଆ କଥା ଶୁଣିବେ ?– କଣ ସବୁ କହନ୍ତି, ପନ୍ଦର ଅଣା କଥାତ ବୁଝା ପଡ଼େ ନାହିଁ । ଆମ ପାଇଁ ଗୋରୁ ମଇଁଷି ପଡ଼ିଆରେ ଚରାଇବା ବ୍ୟବସ୍ଥା କରନ୍ତୁ, ଖଜଣା କମାଇ ଦିଅନ୍ତୁ, ତହସିଲ୍‌ଦାର୍ ପଞ୍ଚର ମଇଁଷି ଯେଉଁ ସବୁ କ୍ଷେତ ଉଜାଡ଼ କରୁଚି, ତା ବନ୍ଦ କରନ୍ତୁ– ତେବେ ସିନା ବୁଝା ପଡ଼ିବ ! ସେକଥା ନାଇଁ ଖାଲି ମେମ୍ବର ଚାନ୍ଦା ନେବାର ଫନ୍ଦି । ମିନିଷ୍ଟ୍ରୀ 'ଗଦ୍ଦିପର' ବସି ବାକିଆ ଖଜଣା ପାଇଁ ଆଇନ୍ କରୁଛି । ହାଟରେ ଭାଷଣ ଦେଇଗଲେ, ଦରଖାସ୍ତରେ କାହାକୁ ଚାରିଅଣାରୁ ବେଶୀ ଖର୍ଚ୍ଚ ପଡ଼ିବ ନାହିଁ । ଖରଚ୍ ପଡ଼ିଲା ତାର କୋଡ଼ିଏ ଗୁଣ । ଅଧେ ଲୋକଙ୍କ ଦରଖାସ୍ତ ତ ଖାରଜ୍ ହୋଇଗଲା । ମହାତ୍ମାଜୀଙ୍କ ଚେଲା ପୁଣ୍ୟଦେଓଜୀଙ୍କୁ କେତେ ଗୁଡ଼ିଏ ଦରଖାସ୍ତ ଦେଇଥିଲି ତଦ୍‌ବିର୍ କରିବା ପାଇଁ । ସେ ମଧ୍ୟ ଦରଖାସ୍ତ ପିଛା ଆଠଅଣା 'ମେହେନ୍‌ତାନା' ପାରିଶ୍ରମିକ ନେଇଥିଲେ । ମାଷ୍ଟର୍ ସାହେବ ଅଛନ୍ତି ବୋଲି ଏ ଜିଲ୍ଲାରେ କିଛି କଂଗ୍ରେସ କାର୍ଯ୍ୟ ହୁଏ । ନହେଲେ, ଏମାନଙ୍କ ଭିତରୁ ଅଧେ ଲୋକ ତ 'ଠକ' । . . . ସତରେ ତ କଂଗ୍ରେସ ସଙ୍ଗଠନ ପୁରାପୁରି ଧନୀ, କିଶାନ୍ ମାନଙ୍କ ହାତରେ । ଜମିଦାରର ଶୋଷଣରୁ ସେମାନେ ମୁକ୍ତ ହେବା ପାଇଁ ଚାହାନ୍ତି, କିନ୍ତୁ ନିଜେ ସେମାନଙ୍କ ସୀମିତ କ୍ଷେତ୍ରରେ 'ଆଧିୟାଦାର୍' 'ବାଟାଇଦାର' ବା ନିଃସମ୍ବଳ କ୍ଷେତ ମଜୁରିଆ ମାନଙ୍କ ଉପରେ ଶୋଷଣ ବନ୍ଦ କରିବାକୁ ଚାହାନ୍ତି ନାହିଁ । କଂଗ୍ରେସ ମିନିଷ୍ଟ୍ରୀ ବେଳେ, ନିଃସ୍ୱ ରୟତ ମାନଙ୍କ ପାଇଁ ଯେତେ ଯେତେ ଆଇନ୍ ପାସ୍ ହୋଇଥିଲା, ଏମାନେ କୂଟକୌଶଳରେ ସବୁ ଗୁଡ଼ିକୁ ଅକାମୀ ମରି ଦେଇଛନ୍ତି । ସହଦେଓ ପରି କଂଗ୍ରେସକର୍ମୀ ବି, ଅଧିୟାଦାର ମାନଙ୍କର କାୟେମୀ ସ୍ୱତ୍ୱ ଲୋପ କରିବା ପାଇଁ 'ବନ୍ଦୋବସ୍ତ'ର ମିଛ ଦଲିଲ ତିଆରି କରିଛି ।

. . . ଦହିଭାତ ଗାଁର ସେଇ ପ୍ରୌଢ଼ା ସ୍ତ୍ରୀ ଲୋକଟି, କଂଗ୍ରେସ ଅଫିସକୁ ପ୍ରାୟ ଆସେ– ଗଳାରେ ଗୋଟାଏ, ବଡ଼ ଗଳଗଣ୍ଡ– ସବୁଥର କାନ୍ଦେ ଆଉ ଦାଦାକୁ କହେ, ''ତୁମ ଛଡ଼ା ଆଉ କେହିତ ଏହାର ପ୍ରତିକାର କରି ପାରିବେ ନାହିଁ । ଆକାଶରେ ଚନ୍ଦ୍ର ସୂର୍ଯ୍ୟ ଥାଉଁ ଥାଉଁ ମୋ ଉପରେ ଏଇ ଜୁଲୁମ୍ ? ସହଦେଓ ଭାଇ କପିଳଦେଓ ମୋର ସବୁ ଜମି ମାରିନେବାକୁ ବସିଚି । ଜମି ପ୍ରାୟ ପଚାଶ ବିଘା । ତା ଘରପାଖ ଜମି କିନା ! ସେଇ ଜମିରେ 'ମାନ୍ଦାଣ' (ତମାଖୁ) ଚମତ୍କାର ହେବ । ସେଇଥିପାଇଁ ଜମି ଉପରେ ଆଖି । 'ପୁରୁଖ' ଥିଲା ତେଲୀ । ସିଏ ବଞ୍ଚି ଥାଉଁ ଥାଉଁ ଜୁଆନ୍ ପୁଅ ମରିଗଲା । 'ପୁତହୁ' ସେତେବେଳକୁ ଗର୍ଭରେ ପିଲା ଧରିଛି । ବର୍ଷକ ଭିତରେ ମୋର 'ପୁରୁଖ' ଚାଲିଗଲା । ତା'ପରେ ଗଲା 'ପୁତହୁ' । ବର୍ଷେ ନ ପୂରୁଣୁ ସାନ ନାତିଟିର 'ବାଇ ଉଖର୍ ଗିୟା' । ଆଈ କୋଡ଼ରେ ସେ ଚବିଶ୍ ଘଣ୍ଟା ଥାଏ । କେତେ ଓଷଦ, କେତେ ଚିକିତ୍ସା ହେଲା । କାଳେ କାଟିବ ବୋଲି ମୋ ଧନକୁ 'ସୁଇ' ଦିଆଇ ଦେଇ ନାହିଁ । ଦେଇଥିଲେ କେଜାଣି ବଞ୍ଚିଥାନ୍ତା । ତାକୁ ଆଉ ଧରି ରଖି ପାରିଲି ନାହିଁ । ଆମ ଗାଁର ଗୋରେ ଗଉଡ଼ ପୁଅ, ଏହାର କିଛି ଦିନ ପରେ ମଲା । କପିଳଦେଓ ତହୁଁ ପଞ୍ଚାୟତି କରି ମୋ ଉପରେ 'ଇଲ୍‌ଜାମ୍' ଲଗାଇଲା ଯେ, ମୁଁ ଡ଼ାଆଣୀ । ଆଗେ ନିଜ ବଂଶକୁ ଖାଇ, ଏବେ ଗୋରେଲାଲ୍ ପୁଅକୁ ବାଣ ମାରି, ତାକୁ

ବି ଶେଷ କଲା । ଆରେ ବେକୁବ୍‌ ଏତିକି ବୁଝିଲୁ ନାଇଁ; ମୁଁ ତ ସ୍ୱାମୀ, ପୁଅ, ନାତି ପୁତି ସବୁ ଖାଇ ବସିଚି; ମୋ ପେଟରେ ଆଉ ଜାଗା କାହିଁ? ତା'ପରେ ମୋତେ ଗାଁରୁ ତଡ଼ିବା ପାଇଁ, ଦିନେ ରାତିରେ ରାଧୋ, ଶନିଚ୍ଚର ଆଉ ଛେଦି; କପିଲଦେଓ କଥାରେ ପଡ଼ି ମୋ ଘର ଜାଳି ପୋଡ଼ି ପାଉଁଶ କରିଦେଲେ । ମୁଠାଏ ଧାନ ପର୍ଯ୍ୟନ୍ତ ରଖି ପାରିଲି ନାହିଁ । ହେଲେ, ମୋ ଭିଟାମାଟି ମୁଁ ଛାଡୁ ନାଇଁ । ଶୁଣୁଚି, କପିଲଦେଓ କୁଆଡ଼େ ମୋ ଉପରେ କଚ୍ଚିରୀରେ ଡ଼ିଗ୍ରୀ କରିଛି; ଜମି ନେବା ପାଇଁ । ମୁଁ କ'ଣ ପିଲା ହେଇଚି ଏଇ କଥାଟାକୁ ବିଶ୍ୱାସ କରିଯିବି ? ଜମି ରହିବ ଦହିଭାତ ଗାଁରେ, ଆଉ ଡ଼ିଗିରୀ କରିବ ପୂର୍ଣ୍ଣିୟାରେ ? ଏମିତି କେବେ ହୁଏ ନାଁ କଣ ?– ଏଇ ପରି ଅନର୍ଗଳ ଗପିଯାଏ, ଆଉ ମଝିରେ ମଝିରେ ତଳେ ଠକ୍‌ ଠକ୍‌ କରି ମୁଣ୍ଡ କୋଡ଼ି କଇଁ କଇଁ ହୋଇ କାନ୍ଦେ । ସେ କହେ ମାଷ୍ଟର୍‌ ସାହେବଙ୍କର ତ ବେଳ ନାହିଁ, ନଇଲେ ତାଙ୍କୁ ଥରେ ଦହିଭାତ ଗାଁକୁ ନେଇଯାନ୍ତି । ତେଣୁ ବିଲୁବାବୁ ଛଡ଼ା ତାର କୁଆଡ଼େ ଅନ୍ୟ ଗତି ନାହିଁ । ଦାଦା ଆଉ ମୁଁ କେତେ ଚେଷ୍ଟା କରିଛୁ; କିନ୍ତୁ କପିଲଦେଓର ଏ ଅନ୍ୟାୟର ପ୍ରତିକାର କରି ପାରି ନାହୁଁ । ଆମେ ଦହିଭାତ ଗାଁକୁ ଆସିଲେ କପିଲଦେଓ ପୁରୀ– ତରକାରୀ ଖୁଆଏ, କିନ୍ତୁ ଅସଲ କଥା ପଡ଼ିଲେ ତାକୁ ଏଡ଼ାଇ ଦିଏ । ବୁଲେଇ ବଙ୍କେଇ କହେ, ସିଏ ବି ତ ମହାତ୍ମାଜୀଙ୍କ ଭକ୍ତ, ଜିଲ୍ଲା–କଂଗ୍ରେସ–କମିଟୀ ମେମ୍ବର୍‌, ଆଶ୍ରମ ଛୁଆଣି ପାଇଁ, ସେଇତ ପ୍ରତିବର୍ଷ ଛଣ ଯୋଗାଏ । ଗୋଟିଏ ଭାଇ ପୁଣି ସିଏ କଂଗ୍ରେସକୁ ଦାନ କରିଛି । ଅସଲ କଥା, ବଡ଼ ଏକାନ୍ନବର୍ତ୍ତୀ ପରିବାରରେ ସମସ୍ତଙ୍କର ଜମିବାଡ଼ି ବୁଝିବା ଦରକାର ପଡ଼େ ନାହିଁ । ଘରର ଅନ୍ନ ଧ୍ୱଂସ କରି, ଗାଁରେ ଅଡ୍‌ଡ଼ା ମାରିବା ଅପେକ୍ଷା ଜଣେ ଅଧେ କଂଗ୍ରେସରେ ମିଶିବା ଭଲ । କଂଗ୍ରେସ ସଙ୍ଗଠନରୁ ଯେତିକି ସୁବିଧା ପାଇବା ସମ୍ଭବ, ଏହି 'ଦାନ' ଦ୍ୱାରା ତାହା ସୁନିଶ୍ଚିତ ହୋଇଯାଏ । ପୁଣି ଭାଇ ଯଦି କଂଗ୍ରେସ କର୍ତ୍ତୃପକ୍ଷଙ୍କ ମନ ରଖି ଚ଼ଲେ; ତା'ହେଲେ ଡ଼ିଷ୍ଟ୍ରିକ୍ଟବୋର୍ଡ଼ର ମେମ୍ବର ପର୍ଯ୍ୟନ୍ତ ହୋଇ ଯାଇପାରେ । ଆଉ କିହାତି ଯଦି କୌଣସି କଥାରେ କଂଗ୍ରେସ ଧନୀ ଚାଷୀମାନଙ୍କ ଉପରେ ଚାପ ଦିଏ, ତା'ହେଲେ ତାକୁ ସହିଗଲେ ଚ଼ଳିବ । ଶେଷ ପର୍ଯ୍ୟନ୍ତ, ନୈତିକ ପ୍ରଭାବ ବ୍ୟତୀତ, କଂଗ୍ରେସର ତ ଆଉ ଅନ୍ୟ କିଛି ନାହିଁ ।

ପରେ ଦିନେ, ଏଇ ତେଲିଘରବୋହୂ ଦାଦାକୁ ରାଗ ଆଉ ଦୁଃଖରେ କହିଲା, ''ଦାରୋଗା ସାହେବଙ୍କୁ କପିଲଦେଓ କିଣି ନେଇଚି ଜାଣ ; ତମକୁ ବି କିଣି ନେଇଚି ? ତା'ପରେ ଆଉରି କେତେ କଣ କହିଥାନ୍ତା; ହଠାତ୍‌ ସହଦେଓ ପହଞ୍ଚିଯିବାରୁ ସେ ଚୁପ୍‌ ହୋଇଗଲା । ଶତ୍ରୁତା ଥାଉ ପଛେ, ସହଦେଓ ଭୂଇଁଆର୍‌– ବ୍ରାହ୍ମଣ–ଉଚ୍ଚ ଜାତି । ଗ୍ରାମର ଗଣ୍ୟମାନ୍ୟ ଲୋକ । ତା ଆଗରେ ସାମାନ୍ୟ ତେଲିଘର ବୋହୂ ଜୋର୍‌ରେ କଥା କହିବ କେମିତି ? ଆଉ ସହଦେଓକୁ ଆମେ ଏ ସମ୍ବନ୍ଧରେ କିଛି କହିଲେ ସେ ଉତ୍ତର ଦିଏ, ''କପିଲଦେଓ ଭାଇୟା ମାଲିକ୍‌ ; ମୁଁ ଏ କଥା କ'ଣ ଜାଣିଚି ?''

ମୋର ମନ ହେଉଥିଲା, ସହଦେଓ ବେକରେ ଧକ୍କା ଦେଇ କଂଗ୍ରେସ ଆଶ୍ରମରୁ ବାହାର କରିଦେବା ପାଇଁ । ଯା'ପରେ ଅନେକ ଦିନ ପର୍ଯ୍ୟନ୍ତ, ତା ସହିତ କଥାବାର୍ତ୍ତା ବନ୍ଦ କରି ଦେଇଥିଲି । ଦାଦା ମୋତେ କେବଳ କହିଥିଲା, ''ତା'ଉପରେ ରାଗ କରି କଣ ହେବ ? ସଂଗଠନ ମୂଳରେ ଯେ ରହିଛି ଭୁଲ୍‌''

1930 ଏବଂ 1932 ସାଲ ଆନ୍ଦୋଳନରେ କାମ୍ପ ଜେଲ୍‌ରେ ଥିବା ବେଳେ, ଆମ ରାଜନୈତିକ ଦୃଷ୍ଟିଭଙ୍ଗୀର ବ୍ୟର୍ଥତାର କଥା ଆମେ ଅନୁଭବ କରିଚୁ। ଜେଲ୍ ଭିତରେ ଏଇ କଥା ନେଇ କେତେ ଆଲୋଚ଼ନା, ବାଦାନୁବାଦ, ମନୋମାଳିନ୍ୟ ହୋଇ ଯାଇଚ଼ି। ଯେଉଁମାନେ ପ୍ରକାଶ୍ୟରେ ଏକଥା କହନ୍ତି ନାହିଁ, ସେମାନଙ୍କ ମୁହଁରେ ବି ନୈରାଶ୍ୟର ଭାବ ସୁସ୍ପଷ୍ଟ। ସେଇ ବୀଜ ଏତେ ଦିନେ ଅଙ୍କୁରିତ ହେଲା। ତେଲିଘର ବୋହୂର ଘଟଣା ସେ ସୁପ୍ତ ବୀଜରେ ତାପ ଓ ଜଳ ସିଞ୍ଚନ କରିଗଲା। ସେ ସ୍ତ୍ରୀ ଲୋକଟି ଏବେ ସୁଦ୍ଧା ତା ସ୍ୱାମୀର ଭିଟାମାଟି କାମୁଡ଼ି ପଡ଼ି ରହିଚ଼ି କି ନାହିଁ ଜାଣେନା, କିନ୍ତୁ ତା ଆଖିଲୁହରେ ଆମ ମନରୁ ସବୁ ଦ୍ୱିଧା, ସନ୍ଦେହ ଭାସି ଯାଇଥିଲା। ହୃଦୟବନ୍ଦରର ଅର୍ଦ୍ଧଜାଗରିତ ଆକାଂକ୍ଷା, ଯେପରି ଗବାକ୍ଷ ବାଟେ ଉଷ୍ୟାର ପ୍ରଥମ ଆଲୋକ ଦେଖି ପାରିଥିଲା! ତା'ପରେ ମୁଁ ଆଉ ଦାଦା ଏକ ପାର୍ଟିରେ ରହି, କି ଉତ୍ସାହରେ କାମ କରିଛୁ! ସିଏ କେବଳ ସହକର୍ମୀ ନୁହେଁ, କମ୍‌ରେଡ଼୍ ନୁହେଁ, ସିଏ ଯେ ମୋର ଦାଦା! କେତେ ସୁଖଦୁଃଖର ସ୍ମୃତିବିଜଡ଼ିତ ଗୋଟିଏ ସୂତ୍ରରେ ଗୁନ୍ଥା ଆମ ଜୀବନ! କେଉଁଥିରେ ମୋର ଭଲ ହେବ, କେଉଁଥିରେ ମୋର ଟିକିଏ ଆନନ୍ଦ ହେବ, ସବୁବେଳେ ତା ମନରେ ସେଇ ଚ଼ିନ୍ତା . . . ନିଜେ କଲେଜରେ ପଢ଼ି ପାରି ନାହିଁ ବୋଲି ଦାଦା ମନରେ କମ୍ ଦୁଃଖ ନଥିଲା। ଆର୍ଥକୋଏକ୍—ରିଲିଫ୍ କାମ ବାବଦରେ 'ଆଲାଉନସ୍' ଟଙ୍କା ଦାଦା ମୋ କଲେଜପଢ଼ାରେ ଖର୍ଚ୍ଚ କରିଥିଲା। ମୋ ଭିତରେ ସେ ତାର ମନସାଧ ମେଣ୍ଟାଇଛି। ରିଲିଫ କାମ ଶେଷ ହେବା ପରେ, ଜିନିଷ ପତ୍ର ନିଲାମ ହେଲା ବେଳେ, ଦାଦା ମୋତେ ଖଣ୍ଡେ ସାଇକେଲ୍ ଦେଇଛି। ଏସବୁ ତ ତୁଚ୍ଛ ଜିନିଷ। ଦାଦାର ଭଲପାଇବା ପ୍ରସଙ୍ଗରେ ଏସବୁ କଥା ଉଠାଇବା, ତା'ର ଭଲ ପାଇବାକୁ ଛୋଟ କରିଦିଏ ସିନା! ମୋ ମୁଣ୍ଡ ବିନ୍ଧିଲେ, ଦାଦା ବ୍ୟସ୍ତ ହୋଇ ପଡ଼େ। ଜେଲରେ 'ଏଡୋୟାର' କରି ସେ ଗୁଡ଼ ପାଏ, କିନ୍ତୁ ନିଜେ ସେ ଗୁଡ଼ ସେ ଖାଏନା । କାହିଁକି ନା ଦାଦା ଜାଣେ, ଭାତ ଖାଇବା ପରେ ଟିକିଏ ମିଠା ନ ଖାଇଲେ, ମୋର ମନେହୁଏ ଖାଇବାଟା ଯେପରି ଅସଂପୂର୍ଣ୍ଣ ରହିଗଲା। ଜେଲ୍‌ରେ ନିୟମିତ ଭାବରେ ସେ ମୋର ଜାମା ଆଉ ଜଂଘିଆ ସଫାକରି କାଚ଼ି ଦିଏ। ବାଧା ଦେଲେ କହେ, ''ଆଉ ତୋର ଅଭ୍ୟାସ ନାହିଁ।'' ମୁଁ ବି ଆଉ ଜୋର୍ କରେ ନାହିଁ। ମନେହୁଏ ଦାଦା ମୋ ପାଇଁ ଏସବୁ କରିଦେବ, ଏତ ମୋର ନ୍ୟାଯ୍ୟ ଦାବୀ— ଏଥିରେ ଅସ୍ୱାଭାବିକତା କିଛି ନାହିଁ।

କିନ୍ତୁ . . . କିନ୍ତୁ ମୋ ଉପରେ ଦାଦାର କଣ ଦାବି ନାହିଁ? ଥାଇପାରେ। ଥାଇପାରେ କାହିଁକି, ଅଛି! ତାର ସ୍ଥାନ ରାଜନୀତି କ୍ଷେତ୍ରର ବାହାରେ। ରାଜନୀତି କ୍ଷେତ୍ରରେ ମୁଁ ନୀଲୁ, ଆଉ ସିଏ ଦାଦା ନୁହେଁ। ଏଠି ବ୍ୟକ୍ତିଗତ ପ୍ରଶ୍ନ ବାଦ୍ ଦେଇ, ଯୁକ୍ତିର କଷଟି ପଥରରେ ପ୍ରତ୍ୟେକ କାର୍ଯ୍ୟ ପଦ୍ଧତି ପରୀକ୍ଷା କରିବା ପାଇଁ ପଡ଼ିବ। ମୋ ପାର୍ଟି ଦୃଷ୍ଟିକୋଣରୁ ସବୁ ଧର୍ମ ବିଚାର କରିବାକୁ ହେବ। . . . ଦୁନିଆ ମୋ ବିଷୟରେ ଯାହା ଇଚ୍ଛା ଭାବୁ ପଛେ, ଦାଦା ମୋ ମନୋଭାବ ଠିକ୍ ବୁଝି ପାରିବ; ସେଠି ଯେ ସଂକୀର୍ଣ୍ଣତାର ଲେଶ ମାତ୍ର ନାହିଁ।

. . . 1940 ସାଲରେ ଦାଦା ଆଉ ମୁଁ ଗିରଫ ହେବା ବେଳେ, ଆମେ ଦୁହେଁ ସି.ଏସ୍.ପି.ର ମେମ୍ବର୍। କିନ୍ତୁ ଜେଲ୍ ଭିତରେ ମାସ କେଇଟାରେ କି ପରିବର୍ତ୍ତନ ହୋଇଗଲା।

...ସେଇ ୱାର୍ଡ଼ର ପଣସ ଗଛ ମୂଳେ ଚ଼ନ୍ଦ୍ରଦେଓ ସହିତ ପ୍ରଥମ ଆଳାପ–ତା'ଠୁ ବହି ଆଣିବା–ପଣସ ଗଛ ମୂଳେ କମ୍ବଳ ବିଛାଇ ଲେକ୍‌ଚ଼ର କ୍ଲାସ୍– ସବୁ ଆଖି ଆଗରେ ଭାସି ଉଠୁଛି.... ତାର ଅକାଟ୍ୟ ଯୁକ୍ତି ଆଗରେ ମୁଣ୍ଡ ନୋଇଁବାକୁ ପଡ଼ିଲା। ମନେ ହେଲା, ଆଖି ଆଗରୁ ଯବନିକା ଘୁଞ୍ଚି ଯାଇଛି– ଦାଦାର ପକ୍ଷଛାୟା ତଳେ ରହି, ଯେଉଁ ଭଙ୍ଗିରେ ରାଜନୀତି କ୍ଷେତ୍ର ପର୍ଯ୍ୟବେକ୍ଷଣ କରୁଥିଲି, ତାହା ରୁଗ୍‌ଣ, କାମଳଗ୍ରସ୍ତ, ଭ୍ରାନ୍ତ। ତାହା ସୁବିଧାବାଦୀ ନିମ୍ନ ମଧ୍ୟବିତ୍ତଶ୍ରେଣୀର ଭାବପ୍ରବଣତାର ଉଚ୍ଛ୍ୱାସ ମାତ୍ର। ପ୍ରକୃତ ସର୍ବହରାର ସାର୍ବଲୌକିକ ଉଦ୍ଦାମତାର ସ୍ଥାନ ସେଠାରେ ନାହିଁ–ଜାତୀୟତାର ଊର୍ଦ୍ଧ୍ୱକୁ ଉଠି ପର୍ଯ୍ୟବେକ୍ଷଣ କରିବାର କ୍ଷମତା ସେମାନଙ୍କର ନାହିଁ। ଚ଼ନ୍ଦ୍ରାଦେଓ ଦଳରେ ଯୋଗ ଦେବା ପୂର୍ବରୁ ଭାବିଥିଲି, ଦାଦା ସହିତ ଆଲୋଚ଼ନା କରିବି। କିନ୍ତୁ କହିବି ବୋଲି ତାକୁ କଥାଟା ଆଉ କେବେ କହି ପାରି ନାହିଁ। ମୁଖ୍ୟତଃ ସଙ୍କୋଚ଼ ବଶତଃ, ଆଉ ଗୌଣତଃ ଭୟ ଥିଲା ଯେ, ତାର ଯୁକ୍ତିର ଉତ୍ତର ଦେଇ ପାରିବି ନାହିଁ। ଅଥଚ଼ ମନେ ମନେ ବରାବର ଅନୁଭବ କରୁଥିଲି, ଦାଦାର ଯୁକ୍ତି ତ୍ରୁଟୀପୂର୍ଣ୍ଣ। ପ୍ରତିଯୁକ୍ତିର ଉତ୍ତର ଚ଼ନ୍ଦ୍ରଦେଓ ଠାରୁ ଶୁଣି, ପୁଣି ଦାଦାକୁ ଯଦି କହି ପାରୁଥାନ୍ତି, ତା'ହେଲେ ହୁଅନ୍ତା। ଶେଷରେ ଦିନେ ଦାଦାକୁ ନ ଜଣାଇଁ ନୂଆ ଦଳରେ ଯୋଗ ଦେଲି। ଆଉ ପଚାରିବି ବା କାହିଁକି ? ରାଜନୀତି କ୍ଷେତ୍ରରେ ନାବାଳକତ୍ୱ କଣ ଚ଼ିରଦିନ ରହିବ ? ସେଇ ଦିନୁ ଆମ ଭିତରେ ଦୁର୍ଲଂଘ୍ୟ ବ୍ୟବଧାନ ଗଢ଼ି ଉଠିଲା, ତାହା ଆଜି ସୁଦ୍ଧା ରହିଯାଇଛି... ରାଜନୈତିକ କର୍ମୀର ଜୀବନ ତାର ପାର୍ଟି ଭିତରେ– ପାର୍ଟି ବାହାରର ଅସ୍ତିତ୍ୱତାକୁ ଏକା ଥରେ ଲୁପ୍ତ କରିଦେବାକୁ ପଡ଼ିବ। ଏହା ପର ଠାରୁ ମୁଁ ଦାଦାକୁ ଏଡ଼ାଇ ଏଡ଼ାଇ ଚ଼ଳିବାର ଚ଼େଷ୍ଟା କରିଛି। ନିହାତି ବ୍ୟକ୍ତିଗତ କଥା ଛଡ଼ା, ତାକୁ ଅନ୍ୟ କୌଣସି କଥା କୁହେ ନାହିଁ। ମୋର ସର୍ବଦା ଭୟ ଯେ, ପାର୍ଟି ଲୋକେ ପୁଣି କଣ ମନେ କରିବେ। ଦାଦା ପୁଣି ଗୋଟିଏ ପ୍ରତିଦ୍ୱନ୍ଦୀ ଦଳର ନାମ୍‌ଯାଦା କର୍ମୀ। ତା ସହିତ ଅନ୍ତରଙ୍ଗତା ମୋ ପାର୍ଟିର ଲୋକେ ଆଦୌ ପସନ୍ଦ କରିବେ ନାହିଁ। ମୋତେ ହୁଏତ କିଛି କହିବେ ନାହିଁ; କିନ୍ତୁ ସେମାନେ ନିଜ ନିଜ ଭିତରେ ଏ ସମ୍ବନ୍ଧରେ ନିଶ୍ଚୟ ଆଲୋଚ଼ନା କରିବେ। ଏଇ ଦୁଇ ଦଳ ଛଡ଼ା ସେଠାରେ ଆଉରି କେତୋଟି ରାଜନୈତିକ ଉପଦଳର କର୍ମୀମାନେ ମଧ୍ୟ ଥିଲେ। ପ୍ରତ୍ୟେକ ଦଳର ବିଶ୍ୱାସ ଯେ, ସେମାନଙ୍କ ଦଳ ଭିତରେ ଅନ୍ୟ ଦଳର ଚ଼ର ରହିଯାଇଛନ୍ତି। ଆଉ ପ୍ରକୃତ କଥା, ଯେତେ ଗୁପ୍ତ ରଖିବାକୁ ଚ଼େଷ୍ଟା କର, ଗୋଟିଏ ଦଳର କଥା, ଅନ୍ୟ ଦଳର ଲୋକେ ନିଶ୍ଚୟ ଜାଣି ପାରିବେ। ଜେଲ୍‌ରେ କାନ୍ଥର ସୁଦ୍ଧା କାନ ଅଛି।

ଦାଦା ବି ମୋର ସଙ୍କୋଚ଼ ଦେଖି, ମୋତେ ଏଡ଼ାଇ ଚାଲେ। ପାର୍ଟି–କ୍ଲାସରୁ ଫେରି ନିୟମିତ ଦେଖେ, ମୋର ବିଛଣା ଝଡ଼ା ହୋଇଛି, ସେଇ ପରିଚ୍ଛନ୍ନ ବିଛଣାରେ ଦାଦାର ଦରଦୀ ହାତର ସ୍ପର୍ଶ ଅନୁଭବ କରେ। ଯେଉଁଦିନ ମା କିମ୍ବା ବାବାଙ୍କ ଠାରୁ ଚ଼ିଠି ଆସେ–ମୁଁ ପଢ଼ି ସାରି ଦାଦା ବିଛଣା ଉପରେ ରଖିଦିଏ। "କାହା ଚ଼ିଠି ? ମା'ର ?" ଉତ୍ତର ଦିଏ... 'ହଁ'। ଦାଦା ଚ଼ିଠି ପଢୁଚ଼ି– "ସକାଳେ ଖାଲି ପେଟରେ ଚା ଖାଇବ ନାହିଁ। ମଝିରେ ମଝିରେ ତ୍ରିଫଳା ଆଉ ଇସପ୍‌ଗୁଲ୍ ଖାଇବ। ପୋଡ଼ାବେଲ ବନ୍ଦୋବସ୍ତ କରି ପାରିଲେ, ସବୁଠୁ ଭଲ। ମୋର ଭାରି ଡ଼ର–ଜେଲ୍‌ରେ ପ୍ରତ୍ୟେକଥର ତୁମ ମାନଙ୍କର ଆମାଶା ହୁଏ। ସିକିଉରିଟୀ ବନ୍ଦୀ ମାନଙ୍କ ପାଇଁ ଏସବୁ ଜିନିଷ ଯୋଗାଡ଼ କରିବା ତ କଠିନ ନୁହେଁ।

ଟଙ୍କା ଦରକାର ଥିଲେ, ଲେଖିବା ପାଇଁ ଲଜ୍ୟା କରିବ ନାହିଁ। ଯେମିତି ହେଉ, ପଠେଇ ଦେବି।''– ''ମା'ର କଥା'' କହି ଦାଦା ମୁରୁକି ମୁରୁକି ହସେ। ବାଁ ଗାଲରେ ପୁଣି ସେଇ ଟୋଲ। ...କେତେ କଥା ପ୍ରାଣ ଖୋଲି କହିବା ପାଇଁ ଇଚ୍ଛା ହୁଏ। ଆଗେ ମା ସମ୍ବନ୍ଧରେ କେତେ ଗପ ହେଉଥିଲା। ଏବେ ସଂକ୍ଷେପରେ ଉତ୍ତର ଦେଲି, ''ହଁ''। ମନ ଭିତରେ ଗୋଳେଇ ଘାଣ୍ଟି ହେଉଚି କେତେ କଥା; କିନ୍ତୁ ସଙ୍କୋଚର ଶୀତକାକରର ଜମି ଯେପରି ଗୋଟା ବାନ୍ଧି ଯାଇଚି। ...ପିଲାଦିନେ ମୁଁ ଆଉ ଦାଦା ଗୋଟାଏ ରେଜେଇ ଭିତରେ ଶୋଇଚୁ। ରାତି ଚାରିଟାରୁ ଗପ ଆରମ୍ଭ ହୋଇଚି– ଗପର ଆଉ ଶେଷ ନାହିଁ। ...ବର୍ତ୍ତମାନ ସଂକ୍ଷେପରେ 'ହଁ' କହିଦେଲାପରେ ମନେ ହେଲା, ଆଉ କଥା ଯୋଗାଡ ନାହିଁ। କଥା ଶେଷ ହୋଇଯିବାର ଅସ୍ୱସ୍ତି ଆଖିରେ ମୁହଁରେ ଫୁଟି ଉଠେ। ତାକୁ ଘୋଡ଼େଇବା ପାଇଁ କିଛି ଗୋଟାଏ କାମର ବାହାନା କରି, ସେଠୁ ଉଠି ଆସିବା ପାଇଁ ପଡ଼େ।

...ତା ପରେ ଦେଉଳୀକୁ ସେଇ ଟ୍ରାନ୍ସଫର୍ ହେବା ଦିନ ଆମ ଭିତରୁ ମାତ୍ର କେତେଜଣଙ୍କୁ ଦେଉଳୀ ପଠା ଯାଉଥିଲା। ଦାଦା ସେମାନଙ୍କ ଭିତରେ ନଥିଲା। ଯିବା ଦିନ୍ ଦାଦା ମୋର ବାକ୍ସ ସଜାଡ଼ି ଦେଲା। ବାକ୍ସ ତଳେ ରଖିଦେଲା ଖଣ୍ଡେ ତାଳପତ୍ର ପଙ୍ଖା। ପଙ୍ଖାରେ ମା'ଙ୍କ ହାତ ସିଆଁ ଝାଲର୍। ସେଥିରେ ଗୋଟିଏ ଜାଗାରେ ଲେଖା, 'ନୀଳୁ' ବିଲୁ, ପିଲ୍‌ପିଲୁ'। କେଉଁ ମୁହୂର୍ତ୍ତରେ ମା'ର କଣ ହୋଇଥିଲା, କଣ ଭାବି 'ପିଲ୍‌ପିଲୁ' ଲେଖିଥିଲା ଜାଣେ ନାହିଁ। ...ନିଜ ଫାଉଣ୍ଟେନ ପେନ୍‌ଟି ଦାଦା ମୋ ପକେଟ୍‌ରେ ଗୁଞ୍ଜି ଦେଲା। ଏବେ ବି ମୋ ପକେଟରେ ସେଇ କଲମ ଟି ରହିଚି।

''ବାବୁ ସାହେବ ସୋ ଗୟେ କିୟା ?'' (ଶୋଇ ପଡ଼ିଲେଣି ନାଁ କଣ ?) ଦେଖିଲି ସୁବେଦାର ସାହେବ ପାଖକୁ ଆସି ଠିଆ ହୋଇଚନ୍ତି। ''ନାଁ, କାହିଁକି ?''

...ସିଏ ଡ଼ିଉଟୀ ଛାଡ଼ି ବାହାରକୁ ଆସିଲା କାହିଁକି ?

''ଆପଣଙ୍କ ଡ଼ିଉଟୀ ଶେଷ ହେଲା ପରା ?''

''ହଁ– ନାଁ ମୋର ତ ରାତିରେ ଡ଼ିଉଟୀ ଥାଏ ନା। ରାତି ଭୋର ବେଳକୁ ଅଫିସର୍ ଟଫିସର୍ ମାନେ ଆସିବା କଥା। ସେଥିପାଇଁ ଭାବିଲି ଆଜି ଏଇଠି ଶୋଇ ପଡ଼ିବି। ଏହା ଆଗ ଫାଶୀଦିନ ରାତିରେ, ସାହେବ ରାଉଣ୍ଡରେ ଆସିଥିଲା। ଫାଶୀମଞ୍ଚ ଚାରିପଟେ ବଡ଼ ବଡ଼ ଆଲୁଅ ଲଗାଇ, ଦିନ ପରି କରି ରଖା ଯାଏ, ଆଉ ଚାରିଜଣ ଓ୍ୱାର୍ଡ଼ର୍ ସେଠି ପହରା ଦିଅନ୍ତି। ଶଳା ଜେଲଖାନା କଥା, କେତେ ରକମର କୟଦୀ, କେତେ ରକମର ଓ୍ୱାର୍ଡ଼ର ଅଛନ୍ତି। କେହି ପଇସା ଖାଇ, ଫାଶୀମଞ୍ଚରେ ଯଦି କିଛି ଗୋଲମାଲ କରି ଦେଇଥାଏ, ତା'ହେଲେ ହୁଏତ କାମ ଆଗରୁ ସେଇଟା ଧରା ପଡ଼ିବ ନାଇଁ। ସେଇଥିପାଇଁ ତ ଏତେ ସତର୍କତା ! ଗୋଟାଏ ଫାଶୀରେ ଗୋଳମାଳ ହେଲେ, ସାହେବ ଠାରୁ ଆରମ୍ଭ କରି ଓ୍ୱାର୍ଡ଼ର ପର୍ଯ୍ୟନ୍ତ ସମସ୍ତଙ୍କ ଚାକିରୀରେ 'ଦୁକ୍‌ସ' (କଳାଦାଗ) ପଡ଼ିଯିବ। ଏସବୁ ବିଷୟରେ ପୁରା ଦାୟିତ୍ୱ ରହିବା ଉଚିତ ଭିତରର ହେଡ଼ ଜମାଦାର ଉପରେ। କିନ୍ତୁ ସେ ନବାବ୍‌ପୁଅ, ସାହେବକୁ କଣ ବୁଝାଇ ଦେଇଚି ଜାଣେ, ସାହେବ ମୋ ଉପରେ ଭାରି ଖପ୍‌ପା। ସାହେବ ନୂଆ ଏଇ 'ଡ଼ିପାଟ୍‌ମେ' ଆସିଛି। ଜେଲ୍ ନିୟମ କାନୁନ୍ ନାଁ କିଛି ବୁଝିଚି ନା କିଛି ଜାଣିଚି ! ଏମତି କେତେ ସାହେବ, ଲଢ଼େଇ ବେଳେ ଦେଖିଚି।

କେତେ ମେମ୍‌ସାହେବଙ୍କ ହାତରୁ ସନ୍ତରା (କମଲାଲେମ୍ବୁ) ଖାଇଚି। ଅବିକା କଣ ନା, ପେଟ ଦାୟରେ, ବିନା ଦୋଷରେ ଗାଳି ମନ୍ଦ ସହିବାକୁ ପଡୁଚି।

ସୁବେଦାର ସାହେବ ମୋତେ ହୁଏତ କିଛି କହିବ; ସେଥିପାଇଁ ତାର ଗୌରଚନ୍ଦ୍ରିକା କରୁଚି।

ପଚାରିଲି, "ତା'ହେଲେ ଆପଣ ଏବେ ଯାଉଛନ୍ତି କୁଆଡ଼େ?"

"ଯୋଉ ମଶା, ସେଥିରେ ଶୋଇବାର କଣ ଜୁ, ଅଛି? ବିଛଣାଟା ଅଫିସ ଘରେ ପକେଇ ଦେଇଚି। କିନ୍ତୁ ଭାରି ଗରମ। ଆପଣଙ୍କୁ ବି ତ ମଶା ନିଶ୍ଚୟ କାମୁଡୁଥିବେ। ସେଥିପାଇଁ ଭାବିଲି ଯାଏ ଘରୁ ମୁନ୍ଦାଏ ଚା ପିଇ ଆସେ। ଯୁଦ୍ଧକୁ ଯାଇ ଏ ବଦ୍‌ଅଭ୍ୟାସଟା ହୋଇଚି। ଆପଣ ଆସୁ ନାହାନ୍ତି? ରାତିସାରା ଏଠି ମଶା କାମୁଡ଼ାରେ ପଡ଼ି ରହିବା କି ଦରକାର? ନୋଖେ ସିଂ ପିଲା ପରିବାର ନେଇ ରହେନା। ତାରି କ୍ୱାର୍ଟର୍‌ରେ ଆପଣ ରାତିଟା କଟାଇ ଦେବେ। ଆପଣଙ୍କ ମାନସିକ ଯନ୍ତ୍ରଣା ତ ଆମେ କମେଇ ପାରିବୁ ନାହିଁ; କିନ୍ତୁ ତା ବୋଲି ଆପଣ ମାନଙ୍କର ଯେତେଟା ସେବା କରିପାରୁ, ତା କରିବୁ ନାହିଁ କାହିଁକି? ଆମର ତ ପୁଣି ବାଳବଚା ଅଛନ୍ତି। ଆମେ ତ ବିଲାଏତ୍‌ର ମଣିଷ ନୋହୁଁ।

ମୁଁ ଉତ୍ତର ଦେଲି– "ଥାଉ, ଥାଉ– ବେଶ୍‌ ଅଛି। ମଶା ସେମିତି ବେଶୀ ନାହାନ୍ତି ତ! ଏ ରାତିରେ ପୁଣି କୁଆଡ଼େ ଦୌଡ଼ାଦୌଡ଼ି କରିବି?"

ତାର ଭଦ୍ର ବ୍ୟବହାର ମୋତେ ଅଭିଭୂତ କରିଦେଲା। ମୋର ମୃଦୁ ଆପତ୍ତି ଅଗ୍ରାହ୍ୟ କରି ଏକରକମ ଜୋର୍‌ କରି ସେ ମୋତେ ଉଠାଇ ନେଲା। ମୁଁ କମ୍ବଳଗୁଡ଼ାକ ଗୋଟାଉଥିଲି। ସୁବେଦାର କହିଲା... "ଥାଉ, ଥାଉ, ମୋତେ ବି କିଛି ବିଛଣା ଦିଅନ୍ତୁ। ଦୁଇଜଣ ମିଶି ଭାଗାଭାଗୀ କରି ନିଆଯାଉ।"

ମୁଁ ଉତ୍ତର ଦେଲି.... "କଣ ଏମିତି ଭାରି ହୋଇଚି କି?" ଚାରିଖଣ୍ଡ କମ୍ବଳରୁ ସେ ଉଠାଇଲା ତିନିଖଣ୍ଡ ମୁଁ ନେଲି ଖଣ୍ଡେ। ସେ କହିଲା, "ଏଇତ ପାଖରେ କ୍ୱାର୍ଟର୍‌।"

ରାସ୍ତା ଡ଼େଇଁ, ଡ଼ାକ୍ତର ମାନଙ୍କର କ୍ୱାର୍ଟର୍‌ ପାରି ହୋଇ ୱାର୍ଡ଼ର ମାନଙ୍କର କ୍ୱାର୍ଟର ଆଗରେ ଆସି ଠିଆ ହେଲି। କ୍ୱାର୍ଟର୍‌ ବେଶୀ ନାହିଁ। କେବଳ ସିନିଅର୍‌ ୱାର୍ଡ଼ର ମାନେ କ୍ୱାର୍ଟର ପାଆନ୍ତି। ବାକି ସମସ୍ତେ ରହନ୍ତି, ବଡ଼ ବାରାକ୍‌ରେ। ଗୋଟାଏ ଦରଜା ସାମନାକୁ ଯାଇଁ ଧକ୍କା ମାରି ସୁବେଦାର ସାହେବ କହିଲେ, "ଆରେ ଏଇ ଯେ ଦେଖୁଚି ତାଲା ବନ୍ଦ। ବାବୁ, ମୁଁ ଏକାବେଳକେ ଭୁଲି ଯାଇଥିଲି। ନୋଖେଲାଲ୍‌ ଏବେ ଡ଼ିଉଟୀରେ। ମିଛଟାରେ ଆପଣଙ୍କୁ କଷ୍ଟ ଦେଲି।"

ମୁଁ କହିଲି, "କଣ ହେଲା ସେଉଠୁ? ମୁଁ ଫେରିଯାଉଚି। କେତେ ବା ବାଟ?"

"ଠିଆ ହୁଅନ୍ତୁ– ମୁଁ ଆଲୁଅ ନେଇ ଆସେ।"

"ନା– ନା ଥାଉ, ଆଲୁଅ ଦରକାର ନାହିଁ। ...ନୈଶ ସ୍ତବ୍‌ଧତା ଭାଙ୍ଗି ଗୋଟାଏ ଫଟା କର୍କଶ ସ୍ୱର ଶୁଭିଲା। ଦୂରତ୍ୱ କର୍କଶତାରୁ କିଛିଟା ଉଣା କରି, ସ୍ୱରକୁ ମଧୁର କରିବାର ଚେଷ୍ଟା କରୁଛି। ଜେଲ୍‌ ଭିତରର ଆୱାଜ୍‌। ବୋଧହୁଏ ୱାର୍ଡ଼ର ମାନଙ୍କର ଦଳବଦଳ ହେଉଚି। ଠିକ୍‌ ଗେଟ୍‌ ସାମନାରେ ବସି, ଦୁଇ ଘଣ୍ଟା ପୁର୍ବେ, ଦଫା–ବଦଳି ବେଳେ

ଏହା ତ ଶୁଣି ପାରି ନଥିଲି। ବର୍ତ୍ତମାନ ଗେଟ୍ ଠାରୁ ଅଳ୍ପ ଦୂରରେ ଅଛି ବୋଲି ଏଇ ଶବ୍ଦ ଶୁଣିବାକୁ ପାଇଲି। ଗେଟ୍ ଟା କଣ Sound proof?

ପୁଣି ଜେଲ୍‌ଗେଟକୁ ଫେରି ଆସି ପୂର୍ବ ଜାଗାରେ କମ୍ବଳ ବିଛାଇଲି। ଖଣ୍ଡିଏ ମାତ୍ର କମ୍ବଳ। ବାକି ତିନିଖଣ୍ଡ ସୁବେଦାର ସାହେବଙ୍କ ପାଖରେ ରହିଗଲା। ଏଇଥିପାଇଁ କଣ ସୁବେଦାର ସାହେବଙ୍କର ଏତେ ସହୃଦୟତା? ଏଇଥିପାଇଁ କ'ଣ ରାତି ଅଧରେ ତାଙ୍କର ଘରକୁ ଯିବା ପାଇଁ ମନ ବଳିଲା? ଯଦି କେହି ଖଣ୍ଡେ କମ୍ବଳ ଜେଲ୍‌ରୁ ବାହାରକୁ ଚାଲାଣ କରିବାକୁ ଚାହେଁ, ତାକୁ ଅନ୍ୟ ତିନିଖଣ୍ଡ କମ୍ବଳ ଅନ୍ୟ ସହକର୍ମୀ ମାନଙ୍କୁ ଦେବା ପାଇଁ ପଡ଼ିବ। ଜେଲ୍ ଜିନିଷ ବାହାରକୁ ଚାଲାଣ କରିବାର ଏହାଇ ପ୍ରଚ୍ଳିତ ନିୟମ। ତା ନ ହେଲେ ଧରା ପଡ଼ିଯିବାର ସମ୍ଭାବନା। ତେଣୁ ଏପରି ଅନାୟାସରେ ତିନିଖଣ୍ଡ କମ୍ବଳ ଘରକୁ ନେଇ ଯିବାର ଲୋଭ ସମ୍ବରଣ କରିବା ସୁବେଦାର ସାହେବଙ୍କ ପକ୍ଷରେ ଅସମ୍ଭବ। ତା ଉପରେ ଅବିକା ପୁଣି ଯୁଦ୍ଧବଜାର!...

ପୁଣି ପୂର୍ବସ୍ଥାନରେ ଆସି ବସିଲି। ରାଷ୍ଟ୍ରର ବିରାଟ ପେଷଣଯନ୍ତ୍ର ଗୁଡ଼ିକ ମଧ୍ୟରେ ଜେଲ୍‌ର ସ୍ଥାନ ନଗଣ୍ୟ ନୁହେଁ। ଚକ ଭିତରେ ଚକ— ତା'ରି ଭିତରୁ ଗୋଟିକର ସାମନାରେ ବସିଚି। ଜେଲ୍‌ଗେଟ୍—ବଡ଼ କଠୋର ଆଉ ପ୍ରାଣହୀନ। ସବୁ ନିୟମିତ ରୁଟିନ୍ ପରି ଚାଲିଛି, ଘଡ଼ି କଣ୍ଟା ପରି। ଘଡ଼ି ଭିତରେ ଯେପରି ଘାଟି ଜାଗା ମାନଙ୍କରେ ଜୁଏଲ୍ ବସା ଯାଇଥାଏ, ଏଇ ପେଷଣଚକ୍ରରେ ସେଇପରି ଦୁଇଟି ହୀରକଖଣ୍ଡ; ଗେଟ୍‌ରେ ସୁବେଦାର୍ ଆଉ ଭିତରେ ସେଣ୍ଟ୍ରାଲ୍—ଟାୱାର୍‌ର ହେଡ୍—ୱାର୍ଡ଼ର!

ଏଇ ଚାରି ପାଞ୍ଚ ଘଣ୍ଟା ଭିତରେ ଜେଲ୍‌ଗେଟର ବୈଚିତ୍ର୍ୟହୀନତା ଅସହ୍ୟ ଲାଗିଲାଣି। ଅନ୍ଧାରରେ ୱାର୍ଡ଼ର୍ ମାନଙ୍କର କ୍ୱାର୍ଟର୍ ଆଡୁ ବୁଲି ଆସି, ସେଥିରୁ ଯେପରି ଟିକିଏ ମୁକ୍ତି ପାଇ ବଞ୍ଚିଲି। ...ପୁଣି ସେଇ ୱାର୍ଡ଼ର ଦଳ—ଘଡ଼ି କଣ୍ଟାଧରି ଦରଜା ଖୋଲିବା ଓ ବନ୍ଦ କରିବାର ପୁନରାବୃତ୍ତି। ...ଗେଟ୍‌ରେ ୱାର୍ଡ଼ର୍ ନରଖି, ଯନ୍ତ୍ର ସାହାଯ୍ୟରେ ଏଇ ସବୁ କାମ ଚଳାଇଲେ କ'ଣ ହୁଅନ୍ତା? ଯେଉଁଠି ଗୋଟିଏ ସମାନ କାର୍ଯ୍ୟର ପୁନରାବୃତ୍ତି, ସେଠାରେ ଯନ୍ତ୍ରର ସାହାଯ୍ୟ ନେବା ନିଶ୍ଚୟ ସମ୍ଭବ ଓ ସମୀଚିନ।

ଗେଟ୍‌ର ଉପର ମହଲାରୁ ଜଣେ ୱାର୍ଡ଼ର୍ ଶିଡ଼ିରେ ଓହ୍ଲାଇ ଆସୁଚି। ଗେଟ୍ ଦୋତାଲାରେ ଜେଲର୍ ସାହେବଙ୍କ କ୍ୱାର୍ଟର୍। ତା ସାମନାରେ, ଖୋଲା ବାରଣ୍ଡାରେ, ବନ୍ଧୁକଧାରୀ ୱାର୍ଡ଼ର ଘଣ୍ଟା ବଜାଏ— ଶୀତ, ଗ୍ରୀଷ୍ମ, ବର୍ଷା, ଦିନ—ରାତି। ପ୍ରତି ଘଣ୍ଟାରେ ଘଣ୍ଟା ବାଜିବା ରହିଚି, ତା ଛଡ଼ା ସାହେବ ଆସିଲେ ଥରେ ଘଣ୍ଟା ପିଟେ, କେହି ଗଣ୍ୟ ମାନ୍ୟ ଅତିଥି ଆସିଲେ, ଦୁଇଥର। ଏହା ବୋଧହୁଏ ଭିତରେ ସମସ୍ତଙ୍କୁ ସାବଧାନ କରିଦେବା ଓ ନିଜ ନିଜର ଖିଲାପ୍ ଘୋଡ଼େଇବା ଲାଗି ପର୍ଯ୍ୟାପ୍ତ ସମୟ ଦେବା ପାଇଁ ଉଦ୍ଦିଷ୍ଟ। ଏହା ଉପରେ ଅଛି ମଝିରେ ମଝିରେ 'ପାଗଳୀ' ଘଣ୍ଟା। ସେତେବେଳେ ତ ଘଣ୍ଟା ବାଜିବାରେ ବିରାମ ନଥାଏ। ସେତେବେଳେ ଦୂରର ଠିକ୍ ରବିବାରିଆ ଗୀର୍ଜାର ଘଣ୍ଟା ଶବ୍ଦ ପରି ଶୁଣାଯାଏ। ...ଗୀର୍ଜା ନିଜ ଦଳ ସମ୍ଭାଳିବାରେ ବ୍ୟସ୍ତ ଏବଂ 'ପାଗଳୀ' ଗୋଟିଏ ଶ୍ରେଣୀର ସ୍ୱାର୍ଥରକ୍ଷାରେ ନିୟୋଜିତ।...

ଘଣ୍ଟାପିଟାଳି ୱାର୍ଡ଼ର୍ ଦୁଇ ଘଣ୍ଟା କାଳ ଏତେ ବଡ଼ ଗୋଟାଏ ଦାୟିତ୍ୱପୂର୍ଣ୍ଣ କାମ ଶେଷ କରି, ସଗର୍ବରେ ଗେଟ୍ ସାମନାରେ ଚାଲି ଯାଉଥିଲା ; ଗେଟ୍ ବାହାରର ସେଣ୍ଟ୍ରି

ପଚାରିଲା, ''ତୁମର ଭାଇ ଏତେ ଡ଼େରି କାହିଁକି ? ନୂଆ ଦଫା ୱାର୍ଡ଼ର୍ ତ ଅନେକ ବେଳୁ ଉପରକୁ ଗଲେଣି ।''

''ଆଉ ଇୟାର କହୁଚ଼ କାହିଁକି ? ଡ଼ିଉଟୀ ଆରମ୍ଭ କଲା ବେଳେ, ଆଗ ୱାର୍ଡ଼ର୍ କହିଗଲା, ଗୋଟାକ ବେଳେ, ଜେଲର୍ ସାହେବକୁ ଡ଼ାକି ଦେବା ପାଇଁ। ଭାବିଲି ଜେଲର୍ ସାହେବ ବୋଧହୁଏ ରାଉଣ୍ଡରେ ବାହାରିବେ କିନ୍ତୁ ଏବେ ଯାଇଁ ଦୁଆର ମୁହଁରେ ଡ଼ାକିବାରୁ ସାହେବ ଏକା ବେଳକେ ଖପ୍ପା। କହୁଚ଼ି କଣ ନା— ଚିତ୍କାର କରୁଚ଼ କାହିଁକି ? ବଡ଼ ହାକିମ—ଯାହା ଇଚ୍ଛା କଲେ ବି ଶୋଭା ପାଇବ। ପ୍ରଥମେ ତ ଭାରି ଗରମ ହୋଇଗଲା, ତା'ପରେ ହୁକୁମ୍ ଦେଲା, ନୂଆ ୱାର୍ଡ଼ର୍‌କୁ ତାଗିଦ୍ କରିଦେବା ପାଇଁ, ଯେପରି ତିନିଟା ବେଳେ ତାଙ୍କୁ ଡ଼ାକି ଉଠାଇ ଦିଏ। ଏ ୱାର୍ଡ଼ର୍ ଯଦି ନ ଡ଼ାକନ୍ତା, ତା'ହେଲେ ବେଶ୍ ହୁଅନ୍ତା। ସାହେବ ନିଜେ ଆସି ୱାର୍ଡ଼ର୍‌କୁ ଡ଼ାକନ୍ତା। ତା'ହେଲେ ମଜା ବାହାରିଯାନ୍ତା!

ଗେଟ୍‌ର ସେଣ୍ଟ୍ରି କହିଲା, ''ରୁହ, ଯାଉଚ଼ କୋଉଠିକି ? ଟିକିଏ ଖଇନୀ ଖାଇଯାଅ।''

''ନା ଭାଇ ଅବିକା ଯାଇଁ ଶୋଇବି। ଏତେ ରାତିରେ ଖଇନୀ ଖାଇବି କଣ ?''

ଏହା କହିବା ସତ୍ତ୍ୱେ ଖଇନୀ ପାଇଁ ସେ ଠିଆ ହୋଇଥାଏ। ମୁଣ୍ଡରୁ ସେ ପଗଡ଼ି ଖୋଲି ପକାଇଲା— ବୋଧହୁଏ ଗରମରେ। ମୁଣ୍ଡ ବେଶ୍ ଚ଼ନ୍ଦା।

ଗେଟ୍‌ର ସେଣ୍ଟ୍ରି କହିଲା— ''ମୁଣ୍ଡରେ ଟୋପେ ଟୋପେ ଥଣ୍ଡା ତେଲ ମାଲିସ୍ କରିବ। ମୁଣ୍ଡ ଥଣ୍ଡା ରହିବ। ଜମାଦାର ସାହେବ ତେଲଟା ଛାଡ଼ି ଯାଇଚ଼ି। ବୋଧହୁଏ ବି ଡ଼ିଭିଜନ—କୟଦୀଙ୍କର ହେବ। ନିଶ୍ଚୟ ଠିକାଦାର ସାହେବଙ୍କ ନଜ୍‌ରନା। ଚ଼ନ୍ଦା ଜାଗାରେ ମାଲିସ୍ କର। ବାଳ ଉଠିଲେ, ଚ଼ନ୍ଦା ଜାଗାକୁ ମଶା ଆଉ କାମୁଡ଼ିବ ନାହିଁ।''

ମୁଁ କିନ୍ତୁ ଏ ଲୋକ ମୁଣ୍ଡରେ ଚ଼ନ୍ଦା ଆଶା କରି ନଥିଲି।... ମେରୀ ଷ୍ଟୁଆର୍ଟ୍‌ଙ୍କ କେଶଦାମର ସୁଖ୍ୟାତି ଥିଲା ଦେଶ ବିଦେଶରେ। ବଧ୍ୟ ଭୂମିକୁ ନେବା ପରେ ଲୋକେ ଯାଇଁ ଜାଣିଲେ ଯେ, ଏ କେଶ ରାଶି ତାଙ୍କ ନିଜର ନୁହେଁ, ସେ ପର୍‌ଚୁଲା ବ୍ୟବହାର କରୁଥିଲେ।... କୋଉ ପୁଲିସ କନେଷ୍ଟବଲ୍‌ର ଚ଼ନ୍ଦାମୁଣ୍ଡ କେବେ ଦେଖିଥିବା ପରି ମନେ ପଡ଼େ ନାହିଁ। ସେମାନଙ୍କ ମୁଣ୍ଡରେ ରହିବ ପଗଡ଼ି ଆଉ ସନ୍ୟାସୀ ମାନଙ୍କ ମୁଣ୍ଡରେ ଜଟ।....

—ମୁଁ ଆଉ ଦାଦା, ଥରେ ସେଇ ଜମିଦାର ଅଘୌରୀ ସିଂଙ୍କ ବୈଠକଖାନାକୁ ଯାଇଥିଲୁ, ତାଙ୍କ ମାନେଜର୍ ଚ଼ିଠି ଲେଖିଥିଲେ ଦେଖା କରିବା ପାଇଁ।... ଧୂର୍ତ୍ତ ସାଁତାଳ ମାଝୀ ନିଜ ଜମି ଜମିଦାର କବଳରୁ ରକ୍ଷା କରିବା ପାଇଁ ମହାତ୍ମାଜୀଙ୍କୁ ଦାନ କରି ଦେଇଚ଼ି। ଜମିଦାରଙ୍କ ମେଲଣ ପଡ଼ିଆକୁ ଲାଗିଚ଼ି ଜମିଟା। ନାରୀଦେହର ରୂପ ଲାବଣ୍ୟ ପଣ୍ୟ ବିକ୍ରୀ ପାଇଁ ମେଳାରେ ଯେଉଁ ହାଟ ବସେ, ସେଥିପାଇଁ ତମ୍ବୁ ସବୁ ଖଟାଯାଏ ଏଇ ଜମି ପାଖରେ— ଧାଡ଼ି ଧାଡ଼ି ହୋଇ। ଏଇ କ୍ରମବର୍ଦ୍ଧିଷ୍ଣୁ ମେଳା ପାଇଁ ଜାଗା ଅଣ୍ଟୁ ନଥିଲା। ସେଥିପାଇଁ ଜମିଦାରଙ୍କ ଆଖି ପଡ଼ିଥିଲା ଏଇ

ଜମି ଉପରେ। ମାଝୀର ଯୋଜନା– ମହାତ୍ମାଜୀଙ୍କ ଲୋକମାନେ ଜମିଦାର ସାଙ୍ଗରେ ଲଢ଼ନ୍ତୁ; ତା'ପରେ ସେମାନଙ୍କୁ ଜମି ନ ଦେଲେ ଚଳିବ। ପ୍ରଥମେ ତା'ର ଏଇ ଅଭିସନ୍ଧି ଆମେ ବୁଝି ପାରି ନଥିଲୁ। ବାବା ମଧ୍ୟ କହୁଥିଲେ– କି ଦରକାର ଆମର ସେ ଜମିରେ? ମୁଁ ଚିଠି ଲେଖିଥିଲି ମ୍ୟାନେଜରଙ୍କ ପାଖକୁ। ତାର ଉତ୍ତରରେ ଏଇ ଆମନ୍ତ୍ରଣ। ବୈଠକଖାନା ଭିତରକୁ ଆସି ଅଘୋରୀ ସିଂକୁ ପ୍ରଥମେ ତ ଚିହ୍ନି ପାରିଲୁ ନାହିଁ। ତାଙ୍କ ମୁଣ୍ଡରେ ଟୋପି ନାହିଁ– ଚନ୍ଦାମୁଣ୍ଡଟା ଚକ୍ ଚକ୍ କରୁଛି। ପଛରେ ଚୁଟୀ ପାଖରେ ଗୋଛାଏ ଲମ୍ବାବାଳ। ସେଇଆକୁ spiral ପରି ବୁଲାଇ ବୁଲାଇ, ବ୍ରିଲିଆଣ୍ଟାଇନ୍ ଦେଇ ମୁଣ୍ଡ ସାମ୍ନାକୁ ଖଞ୍ଜି ଦିଆଯାଇଛି। ...ଚନ୍ଦା ମୁଣ୍ଡିଆ ମାନଙ୍କର ସତରେ କଣ ଅନେକ ଟଙ୍କା ହୁଏ? ...ମ୍ୟାଥମେଟିକସ୍ ଟିଚ୍ର ରାମେଶ୍ୱର ବାବୁ ଜ୍ୟାମିତି ପଢ଼ାଉଚନ୍ତି। ମୁଣ୍ଡ ମଝିଟା ଚ଼ନ୍ଦା। ବ୍ଲାକ୍‌ବୋର୍ଡ଼ରେ ଲେଖିଲେ 'ଟେକ୍ ଓ ଦି ମିଡ଼ଲ୍ ପଏଣ୍ଟ।' କ୍ଲାସ୍ ସାରା ସମସ୍ତେ ହସି ଉଠିଲେ। ...ଏଇଥିପାଇଁ କଣ ପୂର୍ବେ ପରଚୁଲା ବ୍ୟବହାର କରିବାର ପ୍ରଥା ଥିଲା? ଅଘୋରୀ ସିଂ ମ୍ୟାନେଜରକୁ ଇଂରାଜୀରେ କଣ କହିଲେ। ମ୍ୟାନେଜର୍ ସାହେବ ପଚାରିଲେ... "ଆପଣମାନେ କଣ ମାଷ୍ଟର ସାହେବଙ୍କ ପୁଅ? କଂଗ୍ରେସ ଭଲେଣ୍ଟିଅର୍ ମାନେ ମାଝୀର ଏଇ ଜମି ଉପରେ ଚାଳି ଉଠାଇଚ଼ନ୍ତି। ଶୁଣୁଚ଼ି ଏ ପାଖ ତମ୍ବୁ ଗୁଡ଼ାକୁ ବୟକଟ୍ ପାଇଁ ପିକେଟିଙ୍ଗ କରିବେ। କାଲି ରାତିରେ ଜାଣନ୍ତି ତ, ପୁଲିସ ଦୁଇ ଜଣ ଭଲେଣ୍ଟିଅରଙ୍କୁ ଧରିଚ଼ି, ରାତି ଅଧରେ ଏଇ ତମ୍ବୁରୁ ବାହାରିବା ପାଇଁ। ମେଳାରେ ପୁଲିସର ନିୟମ ବୋଧହୁଏ ଜାଣନ୍ତି। ବାହାରିବ ତ ବାରଟା ଆଗରୁ, ନୋହିଲେ ଭୋର, ବଡ଼ିସକାଳେ, କେଉଁ ମାନଙ୍କ ପାଲରେ ପଡ଼ିଚ଼ନ୍ତି ଆପଣମାନେ? ପୁଣି କାହା ପକ୍ଷରେ, କାହାର ହୋଇ ଆପଣମାନେ ଲଢୁଚ଼ନ୍ତି? ଏଇ ମାଝୀକୁ ଦୁଇ ଚାଳି ବିଘା ଜମି, ଅନ୍ୟ ଜାଗାରେ ଦେଇଦେଲେ ସିଏ ତ ଆମ ପକ୍ଷକୁ ଚାଲି ଆସିବ। କଂଗ୍ରେସ ପାଇଁ ମୋଟା ଚାନ୍ଦା ଚାହାନ୍ତି, ଦେଇପାରେ; କିନ୍ତୁ ଜାଣିବୁଝି ଏସବୁ ଗୋଳମାଳ ଯଦି ମୁଣ୍ଡ ଉପରକୁ ନିଅନ୍ତି ତା'ହେଲେ..."

"ଆଦାବ୍ ବାବୁ ସାହେବ।"

ଘଣ୍ଟାପିଟାଳି ସିପାହୀ ବାହାରକୁ ଯିବାବେଳେ ମୋତେ ଆଦାବ୍ କରୁଚ଼ି କାହିଁକି?

ସେ କହିଲା "ପଅରଦିନ ଦି'ପହରେ ଫାଶୀସେଲ୍‌ରେ ମୋର ଡ଼ିଉଟୀ ଥିଲା। ଦେଖିଲି ବାବୁ ଖବରକାଗଜ ପଢୁଚ଼ନ୍ତି।"– ଲୋକଟି ନିଜ ଆଡୁ ଦାଦା ଖବର ଦେବା ପାଇଁ ଆସିଚ଼ି। ଅନେକବେଳୁ ଇଚ୍ଛା ହେଉଥିଲା, ଏଇ ୱାର୍ଡ଼ର୍‌ମାନଙ୍କୁ ଦାଦା କଥା ପଚାରିବା ପାଇଁ। ପ୍ରତି ୱାର୍ଡ଼ର ଦଳ, ଡ଼ିଉଟୀ ଶେଷରେ ବାହାରିବା ବେଳେ, ସେମାନଙ୍କ ଭିତରୁ କାହାର ଫାଶୀ ସେଲ୍‌ରେ ଡ଼ିଉଟୀ ଥିଲା, ପଚାରିବା ପାଇଁ ଭାବୁଥିଲି। କିନ୍ତୁ ଛନ୍ଦି ଛନ୍ଦି ଲାଗିବାରୁ ସେମାନଙ୍କୁ ପଚାରି ପାରି ନଥିଲି। ଏମାନେ ସମସ୍ତେ ହୁଏତ ମୋର ସାକ୍ଷୀ ଦେବା କଥା ଜାଣନ୍ତି– ଜେଲ୍‌ରେ ମୋକଦ୍ଦମାର ଶୁଣାଣି ହୋଇଥିଲା ତ! କିଏ ଜାଣେ, ଏମାନେ ମୋ ସମ୍ବନ୍ଧରେ କଣ ଭାବୁଚ଼ନ୍ତି?...

ଦାଦା ସମ୍ବନ୍ଧରେ ଖବର ମିଳିବାର ଏଇ ଅପ୍ରତ୍ୟାଶିତ ସୁଯୋଗରେ ଖୁବ୍ ଆନନ୍ଦ ହେଲି। ୱାର୍ଡ଼ରକୁ କେତେ କଥା ଖୋଳି ତାଡ଼ି ପଚାରିଲି। ନେହାଲ୍ ସିଂ ମାରଫତ୍‌ରେ ଯେଉଁ ସବୁ ଖବର ପାଇଥିଲି, ତାକୁ ଗୋଟି ଗୋଟି କରି ମିଳାଇ ଦେଖିଲି। ଖାଇବାର କିଛି ଅଲଗା ବ୍ୟବସ୍ଥା ହୋଇଚ଼ି କି ନାହିଁ, ଜଣା ପଡ଼ିଲା ନାହିଁ। ନେହାଲ ସିଂ ତା'ହେଲେ କଣ

ଟଙ୍କା ଗୁଡ଼ା ସବୁ ନିଜେ ଖାଇଚ଼ି ? ଦାଦା ପାଇଁ କଣ କିଛି ବନ୍ଦୋବସ୍ତ କରି ନାହିଁ ? ବାବୁଜୀ କେତେବେଳେ ୱାର୍ଡ଼ ଭିତରେ ପଦଚାରଣା କରନ୍ତି, କେତେବେଳେ ଉଠନ୍ତି, କେତେବେଳେ ଗାଧାନ୍ତି, କେତେବେଳେ ଶୁଅନ୍ତି, ୱାର୍ଡ଼ର ସବୁ ଖବର ଦେଲା । କିନ୍ତୁ ମନେ ହେଲା, ଅଧିକାଂଶ କଥା ଯେପରି ଅନ୍ଦାଜ ମାରି କହୁଚ଼ି । ପ୍ରକୃତରେ ସେ ନିଜେ ବିଶେଷ କିଛି ଦେଖି ନାହିଁ । ଦିନେ କୁଆଡ଼େ ସେ ଦେଖିଥିଲା ଯେ ବାବୁଜୀ ବିରାଡ଼ିକୁ ଦହି ଖୁଆଉ ଥିଲେ । ହେଇ ବି ପାରେ । ସତମିଛ କଥା ବାର ଗପ ଶୁଣିବା ପାଇଁ ବେଶ୍ ଭଲ ଲାଗେ । ଅନ୍ତତଃ ଏଇ ଟିକିକ ସତ ଯେ, ସେ ଦାଦାକୁ ଦେଖିଚ଼ି । . . . ୱାର୍ଡ଼ରଟି ଚାଲିଗଲା । ପାଦରେ ପଟି ବା ମୋଜା ନାଇଁ— ଯୋଉ ଗରମ । ଖାକି ହାଫପାଣ୍ଟ ତଳେ ପାଦ ଦୁଇଟା ଧନୁ ପରି ବଙ୍କା ମନେ ହେଉଚ଼ି ।

. . . ଚ଼ୀନାମ୍ୟାନ୍‌ର ପାଦ । . . . ଦୈତ୍ୟର ଛାୟା ଯେଉଁଠି ଶେଷ ହୋଇଛି, ସେଇଠି ଦୁଇଟି ଚ଼ଳମାନ ପାଦ । ଅନ୍ଧକାର— ଗେଟ୍‌ର ଝଲକାଏ ଆଲୋକରେ ଆଲୋକିତ ପିଚୁ ରାସ୍ତାର ଗୋଟାଏ ଟୁକ୍‌ରା—ଅନ୍ଧାରବୋଳା କାଛ—ଗେଟ୍‌ର ଗରାଦ—ଗେଟ୍ ଭିତରେ ଦୃଷ୍ଟି ପୁଣି ନିବଦ୍ଧ ହେଲା । ଆଃ ବାହାରେ ଏହା ଅପେକ୍ଷା କେତେ ଗୁଣ ବିସ୍ତୃତ ଅନ୍ଧକାର ଓ ଯୋଜନବ୍ୟାପୀ ତାରକାଖଚ଼ିତ ଆକାଶ ରହିଚ଼ି । ମୋର ମନ ଓ ଦୃଷ୍ଟିକୁ ତାହା ଆକୃଷ୍ଟ କରି ପାରେ ନାହିଁ । . . . ଗେଟ୍ ଭିତରେ ପଶିଲେ, ମଝିରେ ହଲ୍‌ଘର ଦକ୍ଷିଣକୁ ଜେଲ୍ ଅଫିସ, ବାଁ ପଟରେ ଜେଲର୍ ଓ ସୁପରିଟେଣ୍ଡେଣ୍ଟ ଦୁଇଜଣଙ୍କ ବସିବା ଘର । ଅଫିସ୍‌ର ବାହାରପଟ ଗରାଦ ଗୁଡ଼ାକ ଉପରେ ଲୁହା ତାର ଦିଆ ଯାଇଛି । କୟଦୀ ମାନଙ୍କର ଆତ୍ମୀୟ ସ୍ୱଜନ ଆସିଲେ ଏଇ ତାରାଘେରା ଗରାଦ ବାହାରେ ଠିଆ ହୁଅନ୍ତି । ଆଶ୍ଚର୍ଯ୍ୟ ଏଇ ଜେଲ୍‌ର ବ୍ୟବସ୍ଥା । ସାକ୍ଷାତକାରୀ ମାନଙ୍କୁ ଖରା ଓ ବର୍ଷାରୁ ଆଶ୍ରୟ ଦେବା ପାଇଁ ଏହା ଉପରେ ଗୋଟାଏ ଆଚ୍ଛାଦନ ପର୍ଯ୍ୟନ୍ତ ନାହିଁ ।— କାଳେ କୌଣସି ଜିନିଷ ଆଦାନ ପ୍ରଦାନର ଚ଼େଷ୍ଟା ହୋଇପାରେ, ସେଥିପାଇଁ ତାର ଜାଲ ବେଢ଼ା ଯାଇଚ଼ି । ଅନଭିଜ୍ଞ ସାକ୍ଷାତକାରୀମାନେ ବିସ୍ତର ଖର୍ଚ୍ଚ ଓ ପରିଶ୍ରମ ସ୍ୱୀକାର କରି, ଜେଲ୍ ଗେଟ୍‌ରେ ଦ ଆସି ପହଞ୍ଚନ୍ତି; ତା'ପରେ ଦରଖାସ୍ତ କରିବାର ହାଙ୍ଗାମା ଆଉ ଦରଖାସ୍ତ ମଂଜୁରୀ ପାଇଁ ପଇସା ଖର୍ଚ୍ଚର କୂଳକିନାରା ଖୋଜି ପା'ନ୍ତି ନାହିଁ । ଏଇ ଦୁସ୍ତର ସମୁଦ୍ର ପାର ହୋଇ, ଘଣ୍ଟା ପରେ ଘଣ୍ଟା ଅପେକ୍ଷା କରି, ଯେତେବେଳେ ମାତ୍ର କେତୋଟି ମିନିଟ୍ ପାଇଁ, ଗରାଦ ସେ ପଟ କୟଦୀପୋଷାକ ପରିହିତ, ଗୋଟିଏ ରୁକ୍ଷକେଶ ଶୀର୍ଣ୍ଣମୂର୍ତ୍ତି ଦେଖିବାକୁ ପା'ନ୍ତି, ସେତେବେଳେ ଏହା ଯେ ଜଣେ ଅତି ପରିଚ଼ିତ, ପ୍ରିୟଜନର ମୂର୍ତ୍ତି— ତାହା ଭାବିବା ପାଇଁ ସମୟ ଲାଗେ । ସାଧାରଣ ମେଟ୍ ଓ ୱାର୍ଡ଼ର୍‌ମାନେ ଏମାନଙ୍କ ଉପରେ ଅକାରଣରେ ବର୍ଷଣ କରନ୍ତି, ଅପମାନ ! କୟଦୀ ପୋଷାକ, ଖାକୀ ଉର୍ଦ୍ଦୀ ଓ ପଗଡ଼ୀ, ଗରାଦ, ତାଲା ସି. ଆଇ. ଡ଼ି. ସବୁମିଶି ପରିସ୍ଥିତିଟା ଏପରି ହୋଇଉଠେ ଯେ ଏଠାରେ କୂଳକିନାରା ନ ପାଇବାଟାଇ ଆଶ୍ଚର୍ଯ୍ୟ । ଅବାନ୍ତର ଦୁଇ ଚାରିଟା କଥା ପରେ ଶୁଣାଯାଏ, ସମୟ ହୋଇଗଲାଣି । ସାକ୍ଷାତ୍‌କାରୀର ଆଖି ଆଗରେ, କିଛି କ୍ଷଣ ପରେ ଭାସି ଉଠେ ପ୍ରିୟ ପରିଜନର ଦୁଇଟି ମୂର୍ତ୍ତି— ଗୋଟିଏ ଗରାଦ ପାଖକୁ ଆସିବା ବେଳର, ଉଦଗ୍ରୀବ ସଲ୍ଲଜ ଅପ୍ରତିଭ; ଆଉ ଗୋଟିଏ ଯିବା ବେଳର—କରୁଣ, ଅସହାୟ, ଆଶାହୀନ । ସେତେବେଳେ ଚ଼େଷ୍ଟା କରି ମୁହଁରେ ହସ ଫୁଟାଇବାର ବ୍ୟର୍ଥ ପ୍ରଚ଼େଷ୍ଟା, ଛାତିଫଟା କାନ୍ଦଣା ଅପେକ୍ଷା ଅଧିକ ମର୍ମନ୍ତୁଦ ମନେ ହୁଏ ।

...1933 ରେ ବାବାଙ୍କ ସହିତ ଦେଖା କରିବା ପାଇଁ ହଜାରୀବାଗ୍ ଜେଲକୁ ଯାଇଚ୍ଚି । ଜେଠେଇମା' ସାଙ୍ଗରେ ଗୋଟାଏ ଟିଫିନ୍ କ୍ୟାରିଅର୍ ଭର୍ତ୍ତି କରି ବାବାଙ୍କ ପାଇଁ ଖାଇବା ଜିନିଷ ତିଆରି କରି ଦେଇଛନ୍ତି– ଯାଇଁ ଶୁଣିଲି, ସେଦିନ ଅପରଡ଼ିଭିଜନ କୟଦୀ ମାନଙ୍କର ସାକ୍ଷାତର ବାରି ନୁହେଁ, 'ସି' କ୍ଲାସ୍ କୟଦୀ ମାନଙ୍କର ସାକ୍ଷାତର ବାରି । କେତେଜଣ ସାକ୍ଷାତକାରୀ, ଷ୍ଟେସନ୍ ଟିକେଟ ଘର ସାମନାରେ ଯେମିତି ଠେଲାପେଲା ହୁଅନ୍ତି, ଠିକ୍ ସେଇପରି ହେଉଚ୍ଛନ୍ତି । ଗରାଦ ଭିତରେ ବି କେତେଗୁଡ଼ିଏ କୟଦୀ– ଖିଡ଼କୀ ଗରାଦ ପାଖକୁ ଆସିବା ପାଇଁ ଠେଲାପେଲା ହେଉଚ୍ଛନ୍ତି । ହଟଗୋଳ ଭିତରେ କିଏ କଣ କହୁଚ୍ଛି, କାହାକୁ କହୁଚ୍ଛି, ବୁଝିବା ଅସମ୍ଭବ । ଜଣେ ପ୍ରୌଢ଼ ସ୍ତ୍ରୀଲୋକ ହାଉହାଉ ହୋଇ କାନ୍ଦୁଚ୍ଛି ଓ କାନ୍ଦିଲା ବେଳେ, ଗାଉଁଲି ଭାଷାରେ କଣ ସବୁ କହି ଯାଉଚ୍ଛି, ତା'ର ଗୋଟାଏ ଅକ୍ଷର ସୁଦ୍ଧା ତା ପୁଅ ବୁଝି ପାରୁଚ୍ଛି କି ନାହିଁ, ସନ୍ଦେହ । ଜଣେ ବୁଢ଼ା କେଇଟା ପିଜୁଳି ଆଉ ଠୁଙ୍ଗାଏ ତେଲଭଜା ଫୁଲୁରୀ ଆଣିଚ୍ଛି, ତା ପୁଅକୁ ସେତକ ଦେବା ପାଇଁ, ସିଏ ୱାର୍ଡ଼ରକୁ ଖୋସାମୋଦ୍ କରୁଚ୍ଛି । ୱାର୍ଡ଼ର୍ ଦର ବଢ଼ାଉଚ୍ଛି– "ଡ଼ାକ୍ତର ସାହେବ ମଂଜୁର୍ ନକଲେ, ଦେବି କେମିତି ? ସି-କ୍ଲାସ କୟଦୀ ମାନଙ୍କ ପାଇଁ ବାହରୁ ଜିନିଷ ନେବାର ହୁକୁମ୍ ନାଇଁ । 'ସି' କ୍ଲାସ କୟଦୀକୁ ଖାଇବା ଜିନିଷ ଦେବା ପାଇଁ ହେଲେ, ମୋତେ ଗୋଟାଏ ଟଙ୍କା ଦେବା ପାଇଁ ପଡ଼ିବ, ଡ଼ାକ୍ତର ସାହେବଙ୍କ ମଂଜୁରୀ ପାଇଁ ଆଉ ଗୋଟାଏ ଟଙ୍କା । ମୋ ଚାକିରୀରେ କାଳେ ଗୋଳମାଳ ହୋଇପାରେ– ଏ ସବୁ କାମ ବିନା ପଇସାରେ ମୁଁ କରିବି କାହିଁକି ?" ଅନେକ କାକୁତି ମିନତି ପରେ ଗୋଟାଏ ଟଙ୍କାରେ ରଫା ହେଲା । ଏହା ବୋଧହୁଏ ଦରିଦ୍ର ବୁଢ଼ାଟିର ଗୋଟିଏ ବର୍ଷର ସଞ୍ଚୟ । ଟଙ୍କାଟିକୁ ସିପାହୀଜୀ ପଗଡ଼ି ଭିତରେ ଗୁଞ୍ଜି ଦେଲା । କିନ୍ତୁ ଏଇ ଫୁଲୁରୀ ଠୁଙ୍ଗା ଯଥାସ୍ଥାନରେ ପହଞ୍ଚିବ କି ନାଇଁ, କିଏ ଜାଣେ ?

ଗେଟ୍‌ର ବାଁପାଖ କାନ୍ଥରେ ଗୋଟାଏ କାଚ଼ଫ୍ରେମ୍ ଭିତରେ, ନୋଟିସ୍–ବୋର୍ଡ଼ । ତା ଭିତରେ କଳାପଟା ଉପରେ ଗୁଡ଼ିଏ ଧଳା କାଗଜ ଅଣ୍ଟା ଯାଇଛି । କି ସବୁ ନୋଟିସ, ମୁଁ ଜାଣେ ନା । ଅନ୍ୟ ଜେଲ୍‌ରେ ତ ଦେଖିଚ୍ଛି, କେବଳ ଜେଲ–କମିଟୀ ମେମ୍ବର ମାନଙ୍କର ନାଁ ଲେଖାଥାଏ । ଏତ ନୋଟିସ୍ ! ଆଇ. ଜି. ବୋଧହୁଏ ନିକଟରେ ଶୀଘ୍ର ଜେଲ ଭିଜିଟ୍‌ରେ ଆସୁଚ୍ଛନ୍ତି । ନୋଟିସ୍‌ବୋର୍ଡ଼ ତଳେ, ଟେଲିଫୋନ୍ ରିସିଭର୍ । ଏହାର ପଶ୍ଚିମ ପାଖକୁ ଲାଗି, ଗୋଟିଏ ଓଜନ କରିବା ଯନ୍ତ୍ର– ରେଳ ଷ୍ଟେସନ୍‌ରେ ଯେପରି ଥାଏ । ଠିକ୍ ଗେଟ୍ ଭିତରେ ଦେଇ, ମଧ୍ୟ ଯାଇଚ୍ଛି ଗୋଟିଏ ରେଳ-ଲାଇନ୍ । ନାରୋଗଜ ଲାଇନ୍‌ର ସମାନ ଚ଼ଉଡ଼ା ... ଡ଼ି. ଏଚ୍. ଆର୍‌ର କିଷଣଗଞ୍ଜ ଲାଇନ୍‌ରେ ଥରେ ଛୋଟ ଇଞ୍ଜିନ ସହିତ ଗୋଟିଏ ଶଗଡ଼ ଧକ୍କା କରିଥିଲା । ଠୁଙ୍ଗୀପଡ଼ା ପାଖରେ ଗାଡ଼ି ଡିରେଲ୍ଡ଼୍ ହୋଇଗଲା । ଜେଲ୍ ଫାକ୍ଟରୀର ଜିନିଷପତ୍ର ବୋଝେଇ ଟ୍ରଲୀ ଏଇ ଲାଇନ୍ ଉପରେ ଯାଏ । ଲୁହା ଲାଇନ୍ କଡ଼େ କଡ଼େ, ଜାଗାଏ ଜାଗାଏ ଗୋବର ପଡ଼ିଛି । ବୋଧହୁଏ ଶଗଡ଼ ଗାଡ଼ୀ ଯାଇଛି । ସାହେବ ଓ ହାକିମ ଆସିବେ ବୋଲି ଦେଖୁଛି ସମସ୍ତେ ସନ୍ତ୍ରସ୍ତ । କିନ୍ତୁ ଗୋବର ସଫା କରିବା କଥାଟା କାହାର ମନେ ପଡୁନାହିଁ । ହୁଏତ ମନେ ଅଛି; କିନ୍ତୁ ସକାଳେ କୟଦୀ ମାନେ ନ ଆସିବା ପର୍ଯ୍ୟନ୍ତ ପରିଷ୍କାର କରିବ କିଏ ? ମହାମାନ୍ୟ ୱାର୍ଡ଼ର ସାହେବମାନେ ଏଇ ହେୟ କାମ କରିବାକୁ ଯିବେ କାହିଁକି ? ରେଳ-ଲାଇନ୍ ନୋଟିସ-ବୋର୍ଡ଼, ଓଜନ-ଯନ୍ତ୍ର, ଟେଲିଫୋନ ପଥରବନ୍ଧା

ଚ୍‌ଟାଣ, ସବୁ ମିଶି ଗୋଟିଏ ରେଳଷ୍ଟେସନ୍ ମନେ ପକାଇ ଦେଉଛି । ମନେ ହେଉଛି ଗାଡ଼ି ଅପେକ୍ଷାରେ ପ୍ଲାଟଫର୍ମ ଉପରେ କମ୍ବଳ ବିଛାଇ ବସିଛି । . . .

. . . ସୌରୀନ୍‌କୁ କହିଛି, ରାମକୃଷ୍ଣ ମିଶନ୍‌ର ସତ୍କାର ସମିତିକୁ ଖବର ଦେବା ପାଇଁ– ସମସ୍ତେ ଯେପରି ଖଡ଼ିଆବାଗ ଘାଟରେ ଉପସ୍ଥିତ ହୁଅନ୍ତି । ଛୋଟ ସହର, ଅଧିକାଂଶ ଲୋକ କୌଣସି ନା କୌଣସି ଭାବରେ ଗଭର୍ଣ୍ଣମେଣ୍ଟ ସହିତ ସଂଶ୍ଳିଷ୍ଟ– ଓକିଲ୍‌, ମୁକ୍ତିଆର୍‌, କିରାଣି; ଗଭର୍ଣ୍ଣମେଣ୍ଟର ଉପସ୍ଥିତ ମନୋଭାବ ବୁଝି, ସେମାନେ ସମସ୍ତଙ୍କୁ ଚଳିବା ପାଇଁ ପଡ଼େ । ସେମାନେ ଯଦି ନ ଆସନ୍ତି ? ପୁଲିସ ଭୟରେ ନ ଆସି ମଧ୍ୟ ପାରନ୍ତି । ତା' ହେଲେ ? ତାହେଲେ ଜେଲ୍‌ଲୋକେ ଦାହକାର୍ଯ୍ୟ କରିବେ । ଏମାନେ ସମସ୍ତଙ୍କ ପାଇଁ ପାଞ୍ଚଟି ଟଙ୍କା ଆଉ ମୋଟର ଲରୀ ଦିଅନ୍ତି । ସୌରୀନ୍‌ର ମତଲବ ଅଛି ପ୍ରସେସନ୍ କରିବ । ଗୁରୁବାର ଦିନ କଲେକ୍‌ଟର୍ ସାହେବଙ୍କ ସହିତ ଦେଖା କରିବା ପାଇଁ ଯାଇଥିଲି । କଲେକ୍‌ଟର୍ ସାହେବ୍ ମୋତେ ମୃତଦେହ ଦେବା ପାଇଁ ରାଜି ହୋଇଥିଲେ ଯେ, କୌଣସି ପ୍ରସେସନ୍ ଯେପରି ନହୁଏ । ଲୋକେ ତା'ହେଲେ ଜାଣି ପାରିବେ ନାହିଁ । ଶୁଣି ପାରିବେ ନାହଁ । ଶ୍ମଶାନ ଘାଟରେ ଯଦି ସମସ୍ତେ ଏକାଠି ହୁଅନ୍ତି–ଯେତେ ବଡ଼ ଭିଡ଼ ହେଉନା କାହିଁକି ସେଥିରେ କିଛି ଯାଏ ଆସେ ନାହିଁ– ତା'ହେଲେ ମୋ କଥା ରହିବ । କିନ୍ତୁ ମନା କରିବି କାହାକୁ ? ଝୋଟକଳ ଇଉନିଅନ୍‌ର ସେକ୍ରେଟାରୀ ଦାଦା, ରିକ୍ସାଚାଳକ ମାନଙ୍କ ୟୁନିଅନ୍‌ର ପ୍ରେସିଡ଼େଣ୍ଟ ଦାଦା– ଏଇ ସବୁ ୟୁନିଅନ୍‌ର ସଭ୍ୟ ମାନଙ୍କୁ ବାଧା ଦେବ କିଏ ? କଲେକ୍‌ଟର୍ ସାହେବ ପାଖରେ କ'ଣ କଥା ଦେଇଚି, ନ ଦେଇଚି, ସେଇଟା କଣ ବଡ଼ ହେଲା ? ନା, ହଉ ପ୍ରସେସନ୍ ! ଦାଦାର ଶବ, ବିଲୁବାବୁଙ୍କ ଶବ, 'ମାଷ୍ଟର ସାହେବ'ଙ୍କ ବେଟାର ଶବ ଯିବ, ଏଥିରେ ଲୋକେ ପ୍ରସେସନ୍ କରିବେ ନାହିଁ ତ, କରିବେ ଆଉ କେଉଁଥିରେ ? . . . ଗାଡ଼ୀ, ମୋଟର, ବିପୁଳ ଜନତା– ଫୁଲମାଳ– ଦେବଦାରୁ ପତ୍ର– ପ୍ରତି ଘରୁ ବର୍ଷିତ ହେଉଚି ଗଙ୍ଗାଜଳ– ଦୋତାଲାରୁ କେତେ ଖଣ୍ଡ ତାଳପତ୍ର ପଙ୍ଖା ପଡ଼ିଲା, ସେଥିପାଇଁ ଛଡ଼ାଛଡ଼ି – ଭିଡ଼, ଠେଲାପେଲା, ହୁଡ଼ାହୁଡ଼ି– ତା'ପରେ ଅନ୍ତହୀନ ଜନପ୍ରବାହର ସର୍ପିଳ ଗତି । . . . ନୀରବ– 'ଗାନ୍ଧିଜୀ କା ଜୟ' ନାହିଁ– 'ବିଲୁ ବାବୁ କା ଜୟ' ନାହିଁ– ଶୋକର 'ମସିୟା' ସଙ୍ଗୀତ ନାହିଁ– ବିଶୃଙ୍ଖଳ ଜନସମୁଦ୍ରର ଉଦ୍ଦଣ୍ଡତା ନାହିଁ । ଅଛି ମୁହ୍ୟମାନ ଶୋକର ନିଷ୍କ୍ରିୟତା– ଅଛି ଗୋଟିଏ ରାଷ୍ଟ୍ରୀୟ ପରିବାରର ଜଣକ ଛଡ଼ା ଅନ୍ୟ ସମସ୍ତଙ୍କ ପ୍ରତି ଅପରିସୀମ ସହାନୁଭୂତି– ଅଛି ସୁପ୍ତ ଦେଶାତ୍ମବୋଧର ଧିକ୍କାର– ଅଛି ଭାସ୍ୱର ପରିଦୃଶ୍ୟମାନ ଶୀତଳତା ତଳେ, ବ୍ୟର୍ଥ ଆକ୍ରୋଶର ଜାଗରୂକ ବହ୍ନି । ଗୋଟାଏ ଇସାରାରେ ଏଇ ଅସହାୟ, ଶାନ୍ତ ଜନତା, ହିଂସ୍ର, ଉନ୍ମାଦ ହୋଇ ମୋତେ ଛିଣ୍ଡାଇ ଟୁକ୍‌ରା ଟୁକ୍‌ରା କରି ଦେଇପାରେ । . . . ସମ୍ପୂର୍ଣ୍ଣ ହରତାଳ . . . ଜେଠେଇମା'ଙ୍କ ଘର ଆଗରେ ପ୍ରସେସନ୍ ଦଣ୍ଡକ ପାଇଁ ଅଟକି ଗଲା । ଜେଠେଇମା' କଣ ଏଇ ଶବପିଣ୍ଡର ମୁହଁ ଉପରୁ ଫୁଲଗୁଡ଼ାକୁ ଘୁଞ୍ଚାଇ, ତା ଆଡ଼କୁ ଚାହିଁ ପାରିବେ ? କେବଳ ମୁହଁ ଅଂଶଟି ଖୋଲା ହେବ । ଗଳାଟାକୁ ମୁଁ ଲୁଗାରେ ଢ଼ାଙ୍କିଦେବି । –ଫୁଲଚନ୍ଦନରେ ମୁହଁର ବୀଭତ୍ସତା ଢ଼ାଙ୍କି ହୋଇ ଯାଇଛି । ଓଠର ଗୋଟାଏ କୋଣରୁ କେତେବେଳେ ବୋହି ପଡ଼ିଥିଲା, କେତେ ବିନ୍ଦୁ ରକ୍ତମିଶା ଲାଳ–ଏବେ ଶୁଖି ରକ୍ତଚନ୍ଦନର ଛାପ ପରି ଦିଶୁଛି ।– ନାଁ ଜେଠେଇମାଙ୍କ ଘର ଆଗରେ ଶବଯାତ୍ରାକୁ କୌଣସିମତେ ନିଆ ଯିବ ନାହିଁ । . . . ଶ୍ମଶାନଘାଟରେ ବିସ୍ତୀର୍ଣ୍ଣ ଜନସମୁଦ୍ର.. ନାଲି ପଗଡ଼ିରେ ଚାରିଆଡ଼ ଛାଇ

ହୋଇ ଯାଇଛି– ବନ୍ଧୁକଧାରୀ ପୋଲିସ ସହିତ ମାଜିଷ୍ଟ୍ରେଟ ଓ ପୋଲିସ ସାହେବ ମୋଟରକାରରୁ ଓହ୍ଲାଇଲେ। ...ଦାହକାର୍ଯ୍ୟରେ ବିଶେଷଜ୍ଞ ମନ୍ତୀଦା ଚିତା ସଜାଉଛନ୍ତି। ସେ ସବୁ ପ୍ରକାର ଉଚ୍ଛ୍ୱାସ ଓ ଭାବପ୍ରବଣତାର ଉର୍ଦ୍ଧ୍ୱରେ। ପଚାରିଲା, ମ୍ୟୁନିସିପାଲିଟି କାଠ ବୋଧହୁଏ। ମଡ଼ା ପୋଡ଼ିବା ପାଇଁ ଯେବେଠୁ କାଠ ଷ୍ଟକ କରିବା ଆରମ୍ଭ ହୋଇଚି, ସେଇଦିନୁ ଏଇ କାଠ ଗୁଡ଼ାକୁ ଏଠି ଦେଖୁଚି। ଘୁଣ ଧରି ଗଲାଣି। ହେବ ନାହିଁ?''ଥାଡ଼୍ କ୍ଲାସ ମ୍ୟୁନିସିପାଲିଟି– ଏମାନଙ୍କ କାଠ ଖର୍ଚ୍ଚ କାହିଁ? – ମଡ଼ାପୋଡ଼ାଦିନ ମନ୍ତୀଦାକୁ ବୋତଲେ କରି ଦେଶୀମଦ ଦେବା ପାଇଁ ପଡ଼େ। ସମସ୍ତେ ଜାଣନ୍ତି। ଆଜିବି ମନ୍ତୀଦା ମୋତେ ମଦ ମାଗିବ ନାଁ କଣ? ପାଉଁଶ ନେବା ପାଇଁ ବି ବାଡ଼ାବାଡ଼ି। ସ୍ତ୍ରୀଲୋକମାନେ କାନିରେ ବାନ୍ଧି ନେଉଚନ୍ତି– କେହି କେହି ପିଲାମାନଙ୍କର କପାଳରେ ବୋଳି ଦେଉଚନ୍ତି। ...ଏତେବେଳେ କଣ କୋଉ ମା ପୁଅକୁ ମନେ ମନେ ଆର୍ଶୀବାଦ କରି ପାରିବ... ''ବିଲୁ ବାବୁ ପରି ହୁଅ।'' ନା, କଦାପି ପାରିବ ନାହିଁ। ...ସେଥର ମିଳିମିଳାରେ ପଡ଼ି ମୁଁ ଆଉ ଦାଦା ଏକାସାଙ୍ଗରେ ଆଶ୍ରମକୁ ଆସିଲୁ। ମା'ଙ୍କ ହାତରେ ପଙ୍ଖା– ଦୁଇଟା ବିଛଣାରେ ଦୁଇଜଣ ଶୋଇଛୁ। ମନର ଉତ୍କଣ୍ଠା ଓ ଗଭୀର ଯନ୍ତ୍ରଣା ଚାପିବାର ଚେଷ୍ଟା କରି ମା କହିଲେ, ''ତମେ ସବୁ ମତେ କଣ ପାଗଳ କରିଦେବ?'' ମା ଠିକ୍ କହିଥିଲେ। ...ମୁହୂର୍ତ୍ତକ ମଧ୍ୟରେ ଜନତାର ସଂଯମର ବନ୍ଧ ଭାଙ୍ଗିଗଲା– ''ଜୟ''। ''ଗାନ୍ଧିଜୀ କା ଜୟ''– ''ଜୟ ବିଲୁବାବୁ କା ଜୟ''। ''ନୌକର ଶାହୀ ନାଶ ହୋ।'' ଜୟଧ୍ୱନି ନିର୍ଘୋଷରେ ଗଗନପବନ ମୁଖରିତ। ମିଲ୍‌ର ସେଇ ମଜଦୁର୍‌ଟି ଠିକ୍ ଯଥା ସମୟରେ 'ନାରା' ଦେବାର ନେତୃତ୍ୱ ନେଇଚି। ସେ କହୁଚି ''ବନ୍ଦେ'', ଜନତା ଉତ୍ତର ଦେଉଛି ''ମାତରମ୍''। ସେ କହୁଛି ''ବିଲୁବାବୁ କା'', ଜନତା ପ୍ରତ୍ୟୁତ୍ତର ଦେଉଚି ''ଜୟ''। ପ୍ରତିଥର ଜୟଧ୍ୱନି ଦେଲାବେଳେ, ସେ ଡ଼ାହାଣ ହାତଟା ଉପରକୁ ଉଠାଉଚି–ମନେ ହେଉଛି, ତର୍ଜନୀରେ ଆକାଶର କୌଣସି ଅଜ୍ଞାତ ଲୋକକୁ ଚିହ୍ନାଇ ଦେଉଛି। ...ପୁଲିସ ଭିଡ଼ ଭାଙ୍ଗି ଦେଲା। ମୃଦୁ ଲାଠି 'ଚାର୍ଜ'ର ପ୍ରୟୋଜନ ପଡ଼ିଲା ନାହିଁ। ମଜଦୁର ନେତାଟିର କଣ୍ଠ ବସି ଗଲାଣି। ହାତ ଉଠାଇ, ମଝିରେ ମଝିରେ ଜୟଧ୍ୱନି ଦେବାର ଚେଷ୍ଟା କରୁଛି– ଟାୟାର ଫୁଟି ପବନ ବାହାରି ଗଲା ବେଳେ, ଯେପରି ଶବ୍ଦ ହୁଏ, ସେଇପରି ଗୋଟିଏ ଆୱାଜ ହେଉଛି।

ଯେଉଁ ପାଖରେ ଜେଲ୍ ସୁପରିଟେଣ୍ଡେଣ୍ଟଙ୍କ ଘର ଜେଲଗେଟ୍‌ର ସେଇ କୋଣରେ କାନ୍ଥରେ ଶାସ୍ତି ଦେବାର ନାନା ପ୍ରକାର ଯନ୍ତ୍ର ଖଞ୍ଜା ଯାଇଛି– ନାନା ରକମର ହାତକଡ଼ି, 'ଡ଼ାଣ୍ଡାବେଡ଼ି', 'ଶିକୁଳିବେଡ଼ି'। କେହି ଜେଲ୍ ଭିତରେ ୱାର୍ଡ଼ର ସାଙ୍ଗରେ ଟାଣଟାଣ କଥାବାର୍ତ୍ତା କରିଛି, କେହି ହୁଏତ ଜେଲର ସାହେବକୁ ଦେଖାଇ ଦେଇଚି, ଏଇ 'ଫୈଲ' ରେ (ପରିବେଷଣ କରିବାର ହତା) ସାଢ଼େ ପାଞ୍ଚ ଛଟାଙ୍କି ଚାଉଳ ଜାଗାରେ ସାଢ଼େ ତିନି ଛଟାଙ୍କି ଚାଉଳ ଦିଆଯାଉଛି, କେହି ହୁଏତ ଝଗଡ଼ା କରିଛି ଯେ, ତିନି ମାସ ହେଲା କଖାରୁ ତରକାରି ବ୍ୟତୀତ ସେମାନଙ୍କୁ କାହିଁକି ଅନ୍ୟ ତରକାରି ଦିଆଯାଉନାହିଁ, କେହି ହୁଏତ ଗଛରୁ ଗୋଟାଏ ବେଲ ପାରିଛି,– ଏଇପରି ଅସଂଖ୍ୟ ମାରାତ୍ମକ 'ଜେଲ..ଅଫେନ୍‌ସ୍'ର ସଜା ଦେବା ପାଇଁ ଏଇ ସବୁ ସାଜ ସରଂଜାମ! କେତୋଟି ବଡ଼ ବଡ଼ ପିମ୍ପାଉପରେ ଠିଆ କରି ରଖା ଯାଇଛି, ଶତାଧିକ ପାଚିଲା ବାଉଁଶ ଲାଠି । ହାତରେ ଝୁଲାଇବା ପାଇଁ ଲାଠି ମୁଣ୍ଡରେ ଗୋଟିଏ ଗୋଟିଏ ଚମଡ଼ା ଫାଶ। ଉପର କାନ୍ଥରେ ଟଙ୍ଗା ହୋଇଛି ଗୁଡ଼ାଏ ପୁଲିସ ବାଟନ୍, ଆଉ

ଡ଼ାହାଣ ପାଖ କୋଣରେ କାଛ ହୁକ୍‌ରୁ ଝୁଲୁଛି କେତୋଟି ଲାଲ୍ ବାଲ୍‌ଟି— ତା ଉପରେ ଲେଖା ରହିଛି FIRE। ଗୋଟାଏ ପାଖରେ ଗଦା ହୋଇଛି, ବାଉଁଶ ଅଗରେ କନା ଗୁଡ଼ାହୋଇଥିବା କେଇ ଡ଼ଜନ୍ ମଶାଲ୍। ରାତିରେ 'ଗିନ୍‌ତି ମିଲାନ୍' ହୋଇ ନ ପାରିଲେ ଏଇ ମଶାଲ ଗୁଡ଼ାକୁ କିରାସିନି ତେଲରେ ଭିଜାଇ ୱାର୍ଡ଼ର ମାନେ କୟଦୀ ଖୋଜିବାର ଚେଷ୍ଟା କରନ୍ତି। ଲଣ୍ଠନ୍ କିମ୍ବା ଟର୍ଚ୍ଚ ସେମାନଙ୍କ ହାତରେ ଦେଲେ ତ ଚଳନ୍ତା, ତା ନକରି ଯେତେ ସବୁ . . .

ସେଇ ଥରେ କୟଦୀ ପଳାଇବାର ରିହରସାଲ ହେଉଛି। 'କାଗଳା' ଘଣ୍ଟା ବାଜୁଛି। ସାହେବ ଠିଆ ହୋଇଛନ୍ତି ସେଣ୍ଟ୍ରାଲ ଟାୱାର୍ ଉପରେ। ୱାର୍ଡ଼ରମାନେ ସାହେବଙ୍କୁ ନିଜର କର୍ମକୁଶଳତା ଦେଖାଇବା ପାଇଁ, ମଶାଲ ନେଇ ଏପାଖସେପାଖ ଦଉଡ଼ୁଚନ୍ତି।— ଗଛମୂଳ ଓ ପାଇଖାନା ଗୁଡ଼ାକ ଉପରେ ସେମାନଙ୍କର ସତର୍କ ଦୃଷ୍ଟି। ଯୋଷୀଲାଲ ୱାର୍ଡ଼ ଭିତରୁ ବଡ଼ ପାଟିରେ ପଚାରିଲା, ''ସୁପରିଟେଣ୍ଡେଣ୍ଟ ସାହାବ ହେ ସୁପରିଟେଣ୍ଡେଣ୍ଟ ସାହାବ୍, କୟଦୀ ସଚ୍ ଭାଗା ହ୍ୟାୟ ନ ପେର୍‌କ୍‌ଟିସ୍ ପାଗଲୀ ହ୍ୟାୟ ? ଖୋଜାଖୋଜି ଶେଷ ହେବା ପରେ, ସୁପରିଟେଣ୍ଡେଣ୍ଟ୍ ଆମ ୱାର୍ଡ଼କୁ ଆସିଲେ। ଆମେ ସବୁ, ସେତେବେଳକୁ ସୁନାପିଲା ପରି ନିଜ ନିଜ ବିଛଣାରେ। କଥାଟା ଆଉ ବେଶୀ ଦୂର ଗଲା ନାହିଁ।

ଢ଼ଂ ଢ଼ଂ କରି ଦୁଇଟା ବାଜିଲା।

ଆଉ ମାତ୍ର ତିନି ଘଣ୍ଟା। ଆଜିକାଲି ନୂଆ ଟାଇମ୍ ଅନୁସାରେ ସାଢ଼େ ପାଞ୍ଚଟା ଆଗରୁ ବୋଧହୁଏ ସୂର୍ଯ୍ୟୋଦୟ ହୁଏ ନାହିଁ। ତା'ପରେ ? ସୂର୍ଯ୍ୟୋଦୟ ପୂର୍ବରୁ ଜେଲ୍‌ର ପ୍ରାତ୍ୟହିକ ଜୀବନ ଆରମ୍ଭ ହୋଇଯିବ। ସାତଟା ଆଗରୁ ସକାଳୁଆ ପାଣିଗୋଳା ଅଟା ଖିଆ ପର୍ବ ଶେଷ କରିବା ପାଇଁ ପଡ଼ିବ,— କାରଣ ସାତଟାକୁ ଫାକ୍ଟରୀ ଖୋଲିବ। ସାଢ଼େ ପାଞ୍ଚଟାରୁ ଚୁଲି ନ ଲଗାଇଲେ, ସାତଟା ଆଗରୁ ସକାଳ ଭୋଜନ ଶେଷ ହେବ କିପରି ? ଯେଉଁ ସବୁ କୟଦୀ ''ଭାଠ୍‌ଠହା'' (ରୋଷେଇଶାଳ) କମାଣ୍ଡରେ କାମ କରନ୍ତି, ସେମାନଙ୍କୁ ନିତ୍ୟକର୍ମ ପାଇଁ ତ ସମୟ ଦେବାକୁ ପଡ଼ିବ। ନା, ପାଞ୍ଚଟା ଆଗରୁ ବୋଧହୁଏ କାମ ଶେଷ ହୋଇଯିବ। . . .

. . . ଦାଦା ଏବେ କଣ କରୁଥିବ ? ହୁଏତ ଗରାଦ ଧରି, ନକ୍ଷତ୍ର ଖଚିତ ଅନ୍ଧକାର ଆକାଶକୁ ଚାହିଁ, ଆକାଶପାତାଳ ଭାବି ଚାଲିଥିବ। କିନ୍ତୁ ମୋ କଥା କ'ଣ ସେ ଥରେ ହେଲେ ଭାବୁଥିବ ? ଦାଦା କେବେହେଲେ ମୋତେ ଭୁଲ୍ ବୁଝିବ ନାହିଁ। ଏ ସମ୍ବନ୍ଧରେ ଦାଦା ସହିତ ପରିଷ୍କାର ଭାବରେ କଥାବାର୍ତ୍ତା କରି ବୁଝାଇବା ଦରକାର ପଡ଼ିବ ନାହିଁ; କିନ୍ତୁ ବୁଝାଇ ପାରିଥିଲେ ମୋର ମନର ଗ୍ଲାନି କିଛି ପରିମାଣରେ ଲାଘବ ହୋଇ ପାରିଥାନ୍ତା। ତା'ର ପାର୍ଟିର ପ୍ରୋଗାମ୍ କାର୍ଯ୍ୟକାରୀ କରିବା ଅର୍ଥ ଯେ, ପରୋକ୍ଷରେ ଫାସିଷ୍ଟ୍ ଶକ୍ତିକୁ ଦୃଢ଼ କରିବା— ଏକଥା ଦାଦା କଣ ବୁଝି ନାଇଁ ? କିନ୍ତୁ ସବୁ ଯୁକ୍ତିକୁ ପରାସ୍ତ କରି, ମନ ଭିତରେ ଖଚ୍ ଖଚ୍ କରି କ'ଣ ଯେପରି ଗୋଟାଏ ବିନ୍ଧି ଦେଉଚି। ବୋଧହୁଏ ଯୁକ୍ତିହୀନ ଭାବପ୍ରବଣତାର ଅହେତୁକ ଅନୁତାପ। ମୋ ନିଜ ପାର୍ଟିର ସ୍ଥାନୀୟ ଶାଖାର ମେମ୍ବର ମାନଙ୍କର ମତ ଯେ, ଦାଦା ବିରୁଦ୍ଧରେ ସାକ୍ଷ୍ୟ ଦେବା ମୋ ପକ୍ଷରେ ଠିକ୍ ହୋଇନାହିଁ— ଦାଦା ବିରୁଦ୍ଧରେ ବୋଲି ନୁହେଁ; ସେମାନଙ୍କ ମତରେ ଆମମାନଙ୍କ କର୍ତ୍ତବ୍ୟ ହେଉଛି, ଦେଶଲୋକଙ୍କୁ ସେମାନଙ୍କ ଭୁଲ୍ ଆଖିରେ ଆଙ୍ଗୁଠି ଗେଞ୍ଜି ସେମାନଙ୍କୁ

ଦେଖାଇଦେବା, ସେମାନଙ୍କୁ ବୁଝାଇବା। ସେମାନଙ୍କୁ ପୁଲିସ ହାତରେ ଧରାଇ ଦେବା, କୁଆଡ଼େ ଆମମାନଙ୍କ କର୍ତ୍ତବ୍ୟ ଭିତରେ ନୁହେଁ। ପୃଥିବୀର ଆଉ ସମସ୍ତେ ଯିଏ ଯାହା କରନ୍ତୁ, କିନ୍ତୁ ମୋ କାର୍ଯ୍ୟ ସମ୍ପର୍କରେ ମୋ ପାର୍ଟି ଲୋକଙ୍କର ଏଇ ମତ– Unkindest out of all, ମାର୍କସବାଦର ସୂକ୍ଷ୍ମ ବିଶ୍ଳେଷଣ ମୁଁ ହୁଏତ ଠିକ୍ ବୁଝେ ନାହିଁ। ଯେଦେଦିନ ଦାଦାଙ୍କ ଦଳରେ ଥିଲି, ଦାଦାଙ୍କ ହୁକୁମ ତାଲିମ୍ କରି ଆସିଛି। ଦାଦା କଥାକୁ ବେଦବାକ୍ୟ ବୋଲି ମନେ କରିଛି। 1942 ଫେବୃୟାରୀରେ ଦାଦା ହଜାରୀବାଗ ଜେଲ୍‌ରୁ ଛାଡ଼ ପାଇଲା। ସିକିଉରିଟୀ ବନ୍ଦୀ ମାନଙ୍କର କେସ୍‌ର Scrutiny ହେଉଥିଲା। ଜଣେ ହାଇକୋର୍ଟ୍ ବିଚାରପତିଙ୍କ ଉପରେ ଥିଲା ଏଇ ଦାୟିତ୍ୱ– ନାଁ ଟା କଣ ଟି ?– ମହାରାଷ୍ଟ୍ରୀୟ ଜଷ୍ଟିସ୍ ଭାଟେ। ଦାଦା ଛାଡ଼ ପାଇବା ପରେ, ଏପ୍ରିଲ ମାସରେ ଆମକୁ ଦେଉଳୀରୁ ହଜାରୀବାଗ୍ ଜେଲକୁ ନେଇ ଆସିଲେ। ଶୁଣିଲି ସମସ୍ତଙ୍କୁ ନିଜ ନିଜ ପ୍ରଦେଶକୁ ନେଇଯିବେ। ତା'ପରେ ଆମକୁ ଛାଡ଼ିଲେ ଜୁନ୍ 18 ଦିନ। ଫାସିଷ୍ଟ– ବିରୋଧି ଦଳ ମାନଙ୍କୁ ଆଉ ଜେଲ୍‌ରେ ରଖିବାର ପ୍ରୟୋଜନ ନାହିଁ; ଏହା ଥିଲା, ସେତେବେଳେ ସରକାରଙ୍କ ମନୋଭାବ। . . . ଜେଲରୁ ବାହାରିବା ବେଳେ, ଏତେ ଆନନ୍ଦ ଆଉ କେବେ ହୋଇ ନଥିଲା। ସର୍ବହରାର ଜନ୍ମଶତ୍ରୁ ଫାସିଜିମ୍ ବିରୁଦ୍ଧରେ ନିଜକୁ ନିୟୋଜିତ କରି ପାରିବି, ପ୍ରୟୋଜନ ପଡ଼ିଲେ, ଏଥିପାଇଁ ହସି ହସି ପ୍ରାଣ ବିସର୍ଜନ ଦେଇ ପାରିବି– ଏଇ ସୁଯୋଗ ଦେଇଥିବା ହେତୁ ସରକାର ପ୍ରତି ମନ କୃତଜ୍ଞତାରେ ଭରି ଉଠିଲା। ସ୍ପେନ୍‌ର କର୍ମୀ ମାନଙ୍କ କାହାଣୀ, ଲାଲଚୀନ୍‌ର ମରଣଜୟୀ ବୀରମାନଙ୍କ ଗାଥା, ମାଓ,-ସେ-ତୁଙ୍ଗଙ୍କ ଶୌର୍ଯ୍ୟ ଓ ଏକନିଷ୍ଠତା, ଚ୍ଚନ୍ଦ୍ରଦେଓର କ୍ଲାସରେ ପ୍ରାତ୍ୟହିକ ଭାଷଣ, ଦେହର ସ୍ନାୟୁରେ ସ୍ନାୟୁରେ ଉତ୍ସାହର ବହ୍ନି ଜାଳି ଦେଇ ଯାଇଛି। ମୋ ଜିଲ୍ଲାରେ ମୋ ପାଇଁ ଅନେକ କାମ ଅପେକ୍ଷା କରି ରହିଛି– ସେଠାରେ ଲୋକେ ମହାତ୍ମାଜୀ ଆଉ ମାଷ୍ଟର୍ ସାହେବ ଛଡ଼ା ଆଉ କାହାକୁ ଜାଣନ୍ତି ନାହିଁ। ଅନ୍ଧବିଶ୍ୱାସର ଏଇ ଅକଟିତ ଭୂମିରେ ମୋତେ ଯୁକ୍ତିବାଦର ଫସଲ ଫଳାଇବାକୁ ହେବ। ଆଶ୍ରମକୁ ଫେରି, ଥରେ ମା ସହିତ ସାକ୍ଷାତ ନକଲେ ନୁହେଁ– ମୋ ଅପରେସନ୍ ଘେନି ସେ ନିଶ୍ଚୟ ଖୁବ୍ ଚିନ୍ତିତା ଥିଲେ। ସେଠାରେ ସମସ୍ତଙ୍କ ସହିତ ଦେଖାସାକ୍ଷାତ ପରେ, କାମ ଆରମ୍ଭ କରାଯିବ। ମୋଟରବସ୍, କୋଡ଼ର୍ମା ଷ୍ଟେସନ, ଗୟା ୱେଟିଂ-ରୁମ୍‌ରେ କି ମଶା !–କିଉଲ୍–ସହେବଗଞ୍ଜ– ମଣିହାରୀ ଘାଟ, କାଟିହାର୍–ବାଟ ଯେମିତି ସରିବ ନାହିଁ।

ସେଇ ବ୍ୟାକୁଳତା ଆଜି ମୋତେ ବର୍ତ୍ତମାନ ସ୍ଥିତିକୁ ଆଣିଚି। ଦାଦା . . . ଜନମତ ଆଉ ସବୁଠାରୁ ଦୁର୍ବିସହ, ମୋ ପାର୍ଟିର ସ୍ଥାନୀୟ କମ୍‌ରେଡ୍ ମାନଙ୍କର ମତାମତ। ଭୁଲ। ସାରା ପୃଥିବୀ ଲୋକଙ୍କ ଭୁଲ ହୋଇପାରେ, ମୋର କିନ୍ତୁ ଭୁଲ ହୋଇ ନାହିଁ। ସେଇ 1942 ଅଗଷ୍ଟ ଘଟଣାବଳୀର ପରିବେଶରେ ମୋର ବିଚାର କରିବା ପାଇଁ ପଡ଼ିବ। . . . ଏକ ବୈଦ୍ୟୁତିକ ଶକ୍ତି ସହସା ସାରା ଦେଶର ଲୋକଙ୍କୁ ଉଦ୍‌ଭ୍ରାନ୍ତ ଓ ଜ୍ଞାନଶୂନ୍ୟ କରି ଦେଇଛି। ଯେଉଁଠିକୁ ଯାଅ, ମନେ ହେଉଛି ଯେପରି, ପାଗଳା ଗାରଦର ଫାଟକ ଖୋଲି ଦିଆ ଯାଇଛି। ବିକ୍ଷୁବ୍ଧ ଅଥଚ ନିଶାଗ୍ରସ୍ତ ଜନତା, କଣ କରିବେ ଭାବି ପାରୁ ନାହାନ୍ତି। ମାଇଲ୍ ମାଇଲ୍ ଧରି ରେଲରାସ୍ତା ତାଡ଼ି ଦେଉଚନ୍ତି– ଭାରି ଭାରି ରେଲ୍‌ୱେ ସ୍ଲିପର୍, ଆଉରି କେତେ ଜିନିଷ ତାଡ଼ି ନେଇ ଦୂରରେ ନଈରେ ନେଇ ପକାଇ ଆସୁଛନ୍ତି। ଟେଲିଗ୍ରାଫ ତାରକଟା,

ପୋଷ୍ଟ ଅଫିସ, ଆଉ ମଦଦୋକାନ ଜାଳିବା ଭାର ଗାଁ ପିଲାମାନଙ୍କ ଉପରେ। ବୟସ୍କ ଲୋକେ ଏସବୁ ତୁଚ୍ଛା କାମ କରି ହାତ ଗନ୍ଧେଇବାକୁ ଚାହାନ୍ତି ନାହିଁ। ତାରକଟା ଏତେ ସହଜ, ଟେଲିଗ୍ରାଫ୍‌ ତାର ଏତେ ଉଙ୍ଗପ୍ରବଣ, ଜଣା ନଥିଲା। ପ୍ଲାୟାର୍ସ, ଯନ୍ତ୍ରପାତି, କଇଁଚି, କଟୁରୀ କୌଣସି ଜିନିଷର ପ୍ରୟୋଜନ ନାହିଁ। ଦଉଡ଼ି ଝୁଲାଇ, ପିଲାମାନେ ଝୁଲି ପଡୁଚ୍ଛନ୍ତି, କୋଉଠି ବା ମୋଡ଼ି ଭାଙ୍ଗି ଦେଉଛନ୍ତି। ବୟସ୍କ ମାନେ ଚାହାନ୍ତି ନୂଆ କାର୍ଯ୍ୟକ୍ରମ। ଆଉ କ'ଣ କରିବାକୁ ହେବ, ଭାବି ସ୍ଥିର କରି ପାରୁ ନାହାନ୍ତି। ରେଲଷ୍ଟେସନ୍‌ ଖାସମାହାଲ୍‌ କଚେରୀ, ସବ୍‌ରେଜେଷ୍ଟ୍ରୀ ଅଫିସ ଓ ଥାନାପୋଡ଼ା ଶେଷ ହୋଇ ଯାଇଛି। ହାତରେ ଆଉ କିଛି କାମ ନାହିଁ। ଯେଉଁଠିକି ସେମାନେ ଦଳ ବାନ୍ଧି ଯାଉଚ୍ଛନ୍ତି, ସେଠାରେ ସେମାନଙ୍କ ସାମ୍‌ନାରେ ରାଷ୍ଟ୍ରଶକ୍ତିର ସ୍ତମ୍ଭ ସବୁ ଧୂଳିସାତ ହୋଇ ଯାଉଛି–ଅତ୍ୟାଚାରର ପ୍ରତୀକ ଗୁଡ଼ିକ ମୁଣ୍ଡ ନୁଆଇଁ ଦେଉଛନ୍ତି। ସରକାରୀ କର୍ମଚାରୀ ମାନେ, ଜନତାକୁ ଖୋସାମୋଦ୍‌ କରୁଛନ୍ତି, ମାରୱାଡ଼ିମାନେ ଅକାତଭରେ ଚାନ୍ଦା ଦେଉଛନ୍ତି, ଜମିଦାର କଚେରୀର ନାୟେବ୍‌ ସେମାନଙ୍କୁ ବର୍ଷକର ଖଜଣା ମାଫ୍‌ କରି ଦେବାର ଆଶ୍ୱାସନା ଦେଉଛି, ଦାରୋଗା ସାହେବ ମୁଣ୍ଡରେ ଗାନ୍ଧୀଟୋପି ପିନ୍ଧି ତ୍ରିରଙ୍ଗ ପତାକା ଉଡ଼ାଇ, ସେମାନଙ୍କ ମନୋରଞ୍ଜନର ଚେଷ୍ଟା କରୁଛନ୍ତି, ଚୌକୀଦାର୍‌ ତାର ଉର୍ଦ୍ଦିକୁ ନିଆଁରେ ଜଳାଇ କାମରୁ ଇସ୍ତଫା ଦେଉଛି। ଗରୀବ ଚାଷୀର ଆନନ୍ଦ, ଜମିଦାରକୁ ଆଉ ଖଜଣା ଦେବାକୁ ପଡ଼ିବ ନାହିଁ, ଚୌକିଦାରୀ ଟିକସରୁ ସେ ରିହାତି ପାଇବ। ନୂଆ କିଛି କରିବାର ସୁଯୋଗ ମିଳୁନାହିଁ। ଫରବିଶଗଞ୍ଜଲାଇନ୍‌ର ଯେଉଁ ଅଂଶଟା ଅକ୍ଷତ ରହିଥିଲା, ସେଥିରେ ବଞ୍ଚିବ୍‌ ଇଞ୍ଜିନ ଡ୍ରାଇଭର୍‌ ଓ ଗାର୍ଡ୍‌, ଜନତାର ହୁକୁମ ଅନୁସାରେ ଗାଡ଼ି ଚଳାଉଛନ୍ତି। ପ୍ରତି ଷ୍ଟେସନ୍‌ର ଟିକେଟ୍‌-ଘର ସାମନାରେ ଲେଖି ଦିଆ ଯାଇଛି, ଟିକେଟ୍‌ କରି ଯାତ୍ରା ନିଷିଦ୍ଧ। ଗଡ଼ବନେଲୀ ସ୍କୁଲର କେତେଜଣ ଛାତ୍ର ଅନବରତ ଚିତ୍କାର କରୁଛନ୍ତି– ''ଗାଡ଼ି କିସ୍‌କି ? ହମାରୀ !'' ଆଉ ଦଳେ ଲୋକ ଟ୍ରେନ୍‌ରେ ଟିକେଟ୍‌ ଚେକର କାମ କରୁଛନ୍ତି– ଯେଉଁ ମାନଙ୍କ ପାଖରେ ଟିକେଟ୍‌ ଥିବ ସେମାନଙ୍କୁ ଗାଡ଼ିରୁ ଓହ୍ଲାଇ ଦିଆଯିବ। ଜଣେ ଯାତ୍ରୀ ପାଖରୁ ଇନକ୍‌–ଏଣ୍ଡ–ରିଟର୍ଣ୍ଣର ଅଧେ ଟିକେଟ୍‌ ମିଳିଲା। ''ଉତର ଯାଓ, ଅଭି ଉତ୍‌ରୋ, ତୁମ୍‌ ସୂରାଜ୍‌ ନେହି ଚାହତେହୋ !'' ସେ କାକୁତି ମିନତି କଲା। କହିଲା, 'ଏଇଟା ପୁରୁଣା ଟିକେଟ୍‌। ତା କଥା ଶୁଣୁଚି କିଏ ? ଚେନ୍‌ ଟାଣି, ଗାଡ଼ି ଅଟକାଇ, ତାକୁ ଉତାରି ଦିଆଗଲା। ଅଳ୍ପ ଦୂର ଯିବା ପରେ ମଝିରେ ରାସ୍ତାରେ ଗାଡ଼ି ଅଟକିଲା। ତେୱାରୀଜୀ ଏଆଡ଼େ କୁଆଡ଼େ ମିଟିଙ୍ଗ କରିବା ପାଇଁ ଆସିଥିଲେ। ଏଠାରେ ଘଣ୍ଟା ଦୁଇ ଅପେକ୍ଷା କରିବା ପରେ, ଦୂରରେ କଂଗ୍ରେସ ପତାକା ଶୋଭିତ ତେୱାରୀଜୀଙ୍କ ଶଗଡ଼ ଦେଖାଗଲା। ତେୱାରୀଜୀ ଆସି ଗାଡ଼ିରେ ଚଢ଼ିଲେ। ''ଇନ୍‌କିଲାବ୍‌ ଜିନ୍ଦାବାଦ୍‌'' ଧ୍ୱନିରେ ଆକାଶ ବିଦୀର୍ଣ୍ଣ ହେଲା। ଗାଡ଼ି ଛାଡ଼ିଲା। ପ୍ରତି ଷ୍ଟେସନ୍‌ରେ ଚେଆର୍‌ ଟେବୁଲ୍‌, ଘଡ଼ି, ଷ୍ଟେସନ ମାଷ୍ଟରସ୍‌ ଅଫିସ ଲେଖା ସାଇନବୋର୍ଡ୍‌, ମୋଟା ମୋଟା ଖାତା, ବହି, ସବୁ ଏକାଠି ଗଦା କରି ଜଳା ଯାଉଛି। ଏମାନଙ୍କ ପ୍ରତି ରେଳ କର୍ମଚାରୀ ମାନଙ୍କ ସହାନୁଭୂତି ସୁଦ୍ଧା ଲକ୍ଷ୍ୟ କରୁଛି। କେଉଁଠି ବାଧା ଦେବାର ପ୍ରଚେଷ୍ଟା ନାହିଁ, ଅନେକ ସ୍ଥାନରେ ସେମାନେ ସ୍ୱେଚ୍ଛାରେ ମଧ ସାହାଯ୍ୟ କରୁଛନ୍ତି। ଜଣେ ଛାତ୍ର ପ୍ଲାଟଫର୍ମରେ 'ରାୟବେଶେ' ନୃତ୍ୟଭଙ୍ଗୀରେ ସମସ୍ତଙ୍କ ମନୋରଞ୍ଜନର ଚେଷ୍ଟା କରୁଛି। କସ୍‌ବା ଷ୍ଟେସନ୍‌ରେ ସ୍କୁଲ କଲେଜର ଛାତ୍ରମାନେ ବାଛୀ ସିଂକୁ ପାଳି କରି ମାଡ଼ ଦେଇ ବହୁ ଦିନର ସଞ୍ଚିତ ଅକ୍ରୋଶ ମେଣ୍ଟଉଛନ୍ତି। . . .

ଚୁକ୍‌ରୀ ଥାନାରେ 'ମହାତ୍ମାଜୀ କା ଇଜ୍‌ଲାସ୍' ବସିଛି। ଆଉ କେହି ସରକାରୀ ଇଜ୍‌ଲାସକୁ ଯିବେ ନାହିଁ। ଦାରୋଗା ବାବୁଙ୍କୁ ଗିରଫ କରାଯାଇଛି। ତାଙ୍କୁ 'କୌମୀ' (ଜାତୀୟ) ଜେଲ୍‌କୁ ନିଆଯିବ। ଦାରୋଗା ବାବୁଙ୍କୁ ଦ୍ୱିତୀୟ ଡ଼ିଭିଜନ କୟଦୀ କରାଗଲା। ''ପୁରୀ ଖିଲାନା ରୋଜ୍, ଔର୍ ଦେଖନା, ଉନକୀ ସ୍ତ୍ରୀ ଯାଁହା ଜାନେ ଚାହେଁ ଓଁହାଁ ପହଁଚା ଦେନା, ବହୁତ୍ ହିପାଜତ୍ ସେ! ଜେଲ୍ ଡ଼େଇଁ କୟଦୀ ପଳାଉଛି। ଜେଲ୍‌ଖାନା ଉପରେ ଉଡୁଛି କଂଗ୍ରେସ ପତାକା। ସରକାରୀ ଟ୍ରେଜରୀରେ ବିଡ଼ା ବିଡ଼ା ନୋଟ ପୋଡ଼ି ଦିଆ ଯାଉଛି। ପଶ୍ଚିମରେ ଗୋରଖପୁର ଜିଲ୍ଲାରୁ ଆରମ୍ଭ କରି ପୂର୍ବରେ ପୂର୍ଣ୍ଣିଆ ପର୍ଯ୍ୟନ୍ତ ସବୁଠି ଏଇ ଅବସ୍ଥା। ସମ୍ପୂର୍ଣ୍ଣ ଅରାଜକତା– ଫାସିଷ୍ଟ୍ ମାନଙ୍କ ରାଜତ୍ୱ—ଜାତୀୟ ଶକ୍ତିର ବିପୁଳ ଅପଚୟ—ଅସଂହତ୍, ଉଚ୍ଛୃଙ୍ଖଳ, ଅଦୂରଦର୍ଶୀ– ଅଥଚ୍ ଦୁର୍ଲଭ ନିଃସ୍ୱାର୍ଥ ତ୍ୟାଗର ମହିମାରେ ମହୀୟାନ। ନାଲି ପଗଡ଼ି, କଳା ମୁହଁ ହେଲ୍‌ମେଟପିନ୍ଧା ଗୋରା ମୁହଁ, ବନ୍ଧୁକ, ଟମିଗନ୍, ଜନତାକୁ କିଛି ବିଚଳିତ କରି ପାରୁ ନାହିଁ। ... ଦୂରରେ ବୀରଗାଁଉ ଷ୍ଟେସନ୍ ହାଟଆଡୁ ଟମିଗନ୍‌ର ଆୱାଜ ହେଉଛି– ଏ ଆଡ଼େ ମକାକ୍ଷେତ୍ରରେ ତାର ନକଲ କରି ପିଲାମାନେ ଷ୍ଟେସନ୍‌ର 'ଫଗ୍ ସିଗ୍‌ନାଲ୍' ଗୁଡ଼ାକୁ ଫୁଟାଉଚ୍ଛନ୍ତି। କାହିଁକି କରୁଚ୍ଛନ୍ତି। ସେମାନେ ଜାଣନ୍ତି ନାହିଁ। ହୋଲି ଦିନ ଗାଁସାରା ଲୋକେ ନିଶା ଖାଇ ଯେମିତି ହୁଅନ୍ତି, ଠିକ୍ ସେଇପରି। ଦାଦାର ଦଳ ଏଇ ଅଧିର ଉତ୍ତେଜନାକୁ କହନ୍ତି ବିପ୍ଲବର ଡ୍ରେସ– ରିହରସାଲ୍– ଏହା କୁଆଡ଼େ 'କ୍ରାନ୍ତିର ପ୍ରଚେଷ୍ଟା'। ବୀରଗାଉଁରେ ଏଇ 'କ୍ରାନ୍ତି ପ୍ରଚେଷ୍ଟା'ର ନେତା ପୁଣି କିଏ? ବିନାୟକ ମିସର୍। ସର୍ବଘଟରେ ତାଙ୍କର ଉପସ୍ଥିତି। ଆଖପାଖ ଗାଁରେ ''ସତ୍ୟଦେବ୍‌କେ କଥା'' ଶୁଣାନ୍ତି, 'ଛଟ ପରବରେ ପୌରୋହିତ୍ୟ କରନ୍ତି, ହିନ୍ଦୁ-ମିଶନ୍‌ରେ ଲେକ୍‌ଚର୍ ଦିଅନ୍ତି, ଖ୍ରୀଷ୍ଟାନ୍ ସାନ୍ତାଳ ମାନଙ୍କୁ ଶୁଦ୍ଧି କରାନ୍ତି, କଂଗ୍ରେସ ମିନିଷ୍ଟ୍ରି ବେଳେ, ମନ୍ତ୍ରୀ ଟୁରରେ ବାହାରିଲେ, ତାଙ୍କ ଦେହକୁ ଲାଗି ବସନ୍ତି। ସେ ହାତ ପରୀକ୍ଷା କରି, ବିବାହ ତିଥି ଦେଖି, ଜାତକ ତିଆରି କରି, ହୋମିଓପାଥି, ଆର୍ୟୁବେଦୀ ଓ ଟୁଟ୍‌କା ଔଷଧ ଦେଇ ବେଶ୍ ଦି ପଇସା ରୋଜଗାର କରନ୍ତି। ଖଣ୍ଡେ ମୋଟା ହିନ୍ଦୀ ବହି ତାଙ୍କର ଅସ୍ତ୍ର। ଏଥିରେ ଗୋଲକଧନ୍ଦାର ଉତ୍ତର ଠାରୁ, ଟୁଟ୍‌କା ଔଷଧ ପର୍ଯ୍ୟନ୍ତ ସବୁ ରହିଛି। ଧାଙ୍ଗଡ଼ା ବସ୍ତୀରେ କାଳୀପୂଜା ମନ୍ତ୍ର ପଢ଼ିବା ବେଳେ, ଏଇ ବହିରୁ ସେ ହିନ୍ଦୀରେ ରାମାୟଣ ଗପ ପଢ଼ି ଶୁଣାନ୍ତି। ଏଇ ପରି ନେତୃତ୍ୱ, ଏଇ ପରି ସଂଗଠନରେ, ଏଇପରି ସମୟରେ ହେବ କ୍ରାନ୍ତି? ଦାଦାକୁ ଏ କଥା ବୁଝେଇବ କିଏ? ମୁଁ କଦାପି ଅନ୍ୟାୟ କରି ନାହିଁ। ମୋର କର୍ତ୍ତବ୍ୟ ମାତ୍ର କରିଛି। ଆଉ ମୁଁ ସାକ୍ଷୀ ଦେଇ ନଥିଲେ, ଅନ୍ୟ ଲୋକେ ଦେଇଥାନ୍ତେ। ଗଭର୍ଣ୍ଣମେଣ୍ଟର ତ ଲୋକ ଅଭାବ ନାହିଁ। ତଫାତ୍ ଭିତରେ ମୁଁ ଦେଇଚ଼ି ନିଜ ରାଜନୈତିକ ସିଦ୍ଧାନ୍ତ ପାଇଁ, କର୍ତ୍ତବ୍ୟ ଜ୍ଞାନରେ, 'ଆଉ ଅନ୍ୟ ଲୋକେ ଦିଅନ୍ତେ ଲୋଭରେ ପଡ଼ି। ଦାଦା ସହିତ ଏ ବିଷୟରେ ଯଦି ପ୍ରାଣଖୋଲା ଆଲୋଚନା କରି ପାରିଥାନ୍ତି! ନା, ତା ବି ନିରର୍ଥକ ହୋଇଥାନ୍ତା। ମୁଁ କେତେ କଣ କହିଯାଇଥାନ୍ତି, ଦାଦା କିନ୍ତୁ ନୀରବରେ ଧୈର୍ଯ୍ୟର ସହିତ ସେସବୁ ଶୁଣି ମଝିରେ ମଝିରେ ହସୁଥାନ୍ତା। ହୁଏତ ଏପରି ଗୋଟାଏ ଅଧେ କଥା କହନ୍ତା, ଯୋଉଥିରେ ମୋର ଯୁକ୍ତିଧାରା ଗୋଳମାଳ ହୋଇଯାନ୍ତା। ମୁରୁକି ହସିଲା ବେଳେ ତା ଗାଲର ଟୋଲ ପଡ଼ିଲେ, ମୁଁ ବୁଝିପାରେ ମୋର ଆପାତତୀକ୍ଷ୍ଣ ଯୁକ୍ତି ତାର ଦୃଢ଼ ନିଷ୍ପତ୍ତି ଉପରେ ସାମାନ୍ୟ ଦାଗ ସୁଦ୍ଧା କାଟି ପାରି ନାହିଁ। ଦାଦାର

ହସ, ମୋତେ ପରସ୍ତ ନାକରିବା ପାଇଁ ନୁହେଁ; କେବଳ ନିରସ୍ତ କରିବା ପାଇଁ। ଗୋଟାଏ ଦୁଇଟା ସଂକ୍ଷିପ୍ତ ପ୍ରଶ୍ନରେ ମୋର ଯୁକ୍ତିସୌଧ ଧୂଳିସାତ୍ ହୋଇଯାଏ।

ଗତ ସପ୍ତାହରେ ଦାଦାକୁ ସାକ୍ଷାତ କରିବା ପାଇଁ ଆସିବାବେଳେ, ଏ ପ୍ରଶ୍ନ ପଚାରି ନାହିଁ।– ଯୁକ୍ତିରେ ପରାସ୍ତ ହେବା ଭୟରେ ନୁହେଁ, ସଙ୍କୋଚ଼ରେ। ଇଏ କଣ ଅପରାଧୀ ମନର ସଙ୍କୋଚ଼? ନାଁ, ମୁଁ ତ କୌଣସି ଅପରାଧ କରିନାହିଁ। ତେବେ ଅପରାଧଜନିତ ସଙ୍କୋଚ଼ ମୋ ମନ ଭିତରକୁ ଆସିବ କିପରି? ଏସବୁ କଥା ଉଠାଇବା ସମୀଚିନ ହୋଇ ନଥାନ୍ତା– ସଙ୍କୋଚ଼ ସେଇଥିପାଇଁ। ଅନ୍ତିମ ମୁହୂର୍ତ୍ତର ପ୍ରତୀକ୍ଷାରେ ଯାହାକୁ ତୁଳସୀ–ଚ଼ଉରା ମୂଳକୁ ଅଣା ଗଲାଣି, ତାକୁ କଣ ପଚ଼ାରାଯାଏ, ଉଇଲ୍‌ଟା ସେ କୋଉଠି ରଖିଯାଇଛି? ନା,ଦାଦାକୁ ବୁଝାଇବା ଦରକାର ନାହିଁ।

ଖାକୀ ହାଫ୍‌ପାଣ୍ଟପିନ୍ଧି ଜଣେ ଅଳ୍ପବୟସ୍କ ଅଫିସର ଗେଟ ଭିତରକୁ ପଶିଲେ। ବୋଧହୁଏ ଆସିଷ୍ଟାଣ୍ଟ ଜେଲର୍ ରାତି ରାଉଣ୍ଡରେ ବାହାରିଛନ୍ତି।

...ଗତ ସପ୍ତାହରେ ଦାଦା ସହିତ ଦେଖା କରିବାକୁ ପଡ଼ିଥିଲା ତା ସେଲ୍‌ରେ। ସଙ୍ଗରେ ସି. ଆଇ. ଡ଼ି ଭଦ୍ରଲୋକ। ଜଣେ ଓ୍ୱାର୍ଡ଼ର ଆଗରୁ ସେଠାରେ ଠିଆ ହୋଇଥିଲା। ସେମାନଙ୍କ ଉପସ୍ଥିତିରେ ଆଉ ବେଶୀ କଣ କଥାବାର୍ତ୍ତା ହୋଇ ପାରିବ? ମୋ ହାତରେ ରୁମାଲରେ କିଛି ଫଳ ବନ୍ଧା ଥିଲା। ଭିତରକୁ ଯିବା ବେଳେ, ସି. ଆଇ. ଡ଼ି. ଥଟ୍ଟା କରି କହିଲା, "ବାବୁ ତା ଭିତରେ କିଛି ଗୋଳମାଳିଆ ଜିନିଷ ନାହିଁ ତ? ଶେଷରେ ଚାକିରୀଟା ଯେପରି ନଖା'ନ୍ତି! ଏ ରାଜ୍ୟରେ ଆଜି କାଲି ବଙ୍ଗାଳୀଙ୍କ ଚାକିରୀର କି ଅବସ୍ଥା ଜାଣନ୍ତି ତ? ଖୁସୀରେ କଣ ଏ ଡ଼ିପାର୍ଟମେଣ୍ଟକୁ ଆସିଚ଼ି? ରୁମାଲ ଫିଟାଇ ତାକୁ ଦେଖାଇବାରୁ ସେ କହିଲା, "ଥାଉ ଥାଉ ସେମିତି କହିଦେଲି ସିନା! ଆପଣ ବି ଯେମିତି! ଆମେ ଲୋକ ଚିହ୍ନୁବାବୁ!" ସି. ଆଇ. ଡ଼ି. ବି ମୋତେ ବିଶ୍ୱାସ କରେ! ଜଣେ ରାଜନୈତିକ କର୍ମୀ ପକ୍ଷରେ ଏହାଠାରୁ ବଡ଼ ସାର୍ଟିଫିକେଟ୍ ଆଉ କଣ ହୋଇପାରେ? ଏଥିପାଇଁ ପ୍ରସ୍ତୁତ ନଥିଲି। ଦାଦା ବିରୁଦ୍ଧରେ ସାକ୍ଷ୍ୟ ଦେବାପରଠାରୁ ମୋ ଉପରୁ ସେମାନଙ୍କର ସନ୍ଦେହ ଦୂର ହୋଇ ଯାଇଛି। ...ଦାଦା ସେଲ୍ ଗରାଦ ପଛରେ ଠିଆ ହୋଇଛି। ନୁଖୁରା ବାଳ। ଭାରି ରୋଗା ଦିଶୁଛି, ନାକଟା ଖଣ୍ଡା ପରି ବାହାରି ପଡ଼ିଛି। ଦେହରଙ୍ଗଟା ପୂର୍ବ ଅପେକ୍ଷା ଯେପରି ଗୋରା ମନେ ହେଉଛି। ତାର ହସ ହସ ମୁହଁ, ଔତ୍ସୁକ୍ୟଭରା କୋମଳ ଦୃଷ୍ଟି ମୋତେ କେବେ କୁଣ୍ଠାବୋଧ ପାଇଁ ଅବକାଶ ଦିଏ ନାହିଁ। ସେ ନିଜ ଆଡୁ ପ୍ରଥମେ ପଚାରିଲା..." ରୁମାଲ୍‌ରେ ସିଏ କଣରେ? ମୁଁ ପ୍ରଥମେ କଥାବାର୍ତ୍ତା ଆରମ୍ଭ କରିବାର ସଙ୍କୋଚ଼ କଟିଗଲା... "ଜେଠେଇମା, ପଠେଇ ଦେଇଛନ୍ତି।" "ଓ! ଜେଠେଇମା, ଅଛନ୍ତି କିପରି?" ପ୍ରଥମେ ଭାବିଲି, ସତକଥାଟା କହିଦିଏ ଯେ, ଜେଠେଇମା ଗାଧୁଆ, ଖିଆ ଛାଡ଼ି ଦେଇଛନ୍ତି। ନା କାହିଁକି ବର୍ତ୍ତମାନ ପୁଣି ଦାଦାର ସ୍ନେହାତୁର ମନକୁ ଅଯଥା ଭାରାକ୍ରାନ୍ତ କରିଦେବି? ଉତ୍ତର ଦେଲି, "ଅଛନ୍ତି ଏକରକମ୍। ପ୍ରାୟ ତୁମ କଥା କୁହନ୍ତି।" ମୁହଁ ଦେଖି ମନେ ହେଲା, ଦାଦା ମୋ କଥାକୁ ଯେପରି ବିଶ୍ୱାସ କରୁ ନାହିଁ। ସି. ଆଇ. ଡ଼ି କହିଲା, "ଦରଜା ଖୋଲି ଭିତରେ ଯାଇଁ ବସନ୍ତୁ ନାଁ!" ଉତ୍ତର ଦେଲି... "ଥାଉ ଥାଉ"! କିନ୍ତୁ ଓ୍ୱାର୍ଡ଼ର ଦରଜା ଖୋଲି ଦେଲା। ଭିତରକୁ ଯାଇଁ, ଦାଦା କମ୍ବଳ ଉପରେ ବସିଲି। ସେଦ୍ଦିନ ଦାଦା କୌଣସି ପ୍ରଶ୍ନ ନିଜେ ପଚାରି

ପାରି ନଥିଲା । ସେ ଯେପରି ମୂକ ପାଲଟି ଯାଇଥିଲା । ଦାଦା ବୋଧହୁଏ ମୋର ମନର ଅବସ୍ଥା ବୁଝିଥିଲା । ସେ ନିଜେ ମୋତେ କେତେ କଥା ପଚାରିଗଲା । ମୁଁ ଗୋଟିକ ପରେ ଗୋଟିଏ ଉତ୍ତର ଦେଇଗଲି । ବିଦାୟ ନେଇ ଆସିବା ବେଳେ ଦାଦା କହିଥିଲା, ''ମା'ଙ୍କୁ ଦେଖା କରିବୁ ।'' ଦାଦା ସହିତ ଏହା ମୋର ଶେଷ କଥାବାର୍ତ୍ତା । ତାର ଏଇ ଶେଷ କଥା, ଶେଷ ଅନୁରୋଧ ସୁଦ୍ଧା ରକ୍ଷା କରି ପାରି ନାହିଁ । ମା' କାନ୍ଦି କାନ୍ଦି ମୋତେ କଣ କହିବେ, ସେଇଆ ଭାବି ମୁଁ ଥରି ଉଠିଲି । ଦାଦା ମୋ ମନ କଥା ଏତେ ବୁଝିପାରେ, ଆଉ ଏଇଟା ବୁଝିଲା ନାହିଁ ଯେ, ବର୍ତ୍ତମାନ ମା'ଙ୍କ ସହିତ ଦେଖା କରିବା ମୋ ପକ୍ଷରେ ଅସମ୍ଭବ । ସେ ଜାଣେ ମୋତେ କ'ଣ ଭଲ ଲାଗେ ନଲାଗେ । ଦାଦାକୁ ମୁଁ ଥରେ ଗୋଟିଏ ମନଲାଖି କବିତା ଲେଖି ଦେବାକୁ କହିଥିଲି । ବଡ଼ ବଡ଼ କବିଙ୍କର ଭାବୋଚ୍ଛ୍ୱାସର ନାକ କାନ୍ଦଣା, ମୁଁ ବୁଝି ପାରେ ନା । ସେଥିପାଇଁ ମୁଁ ତାରିଫ୍ କରିବା ପରି ଗୋଟିଏ କବିତା ଦାଦା ଲେଖିଦେଇଥିଲା :

''ଚାହେଁ ମୁହିଁ ସମସ୍ତଙ୍କ ପୂର୍ଣ୍ଣ ଅଧିକାର
ସେଥିରୁ ଅଳ୍ପରେ ତୁଷ୍ଟ କଦାପି ହେବିନି,
ପରିପୁଷ୍ଟ ଧନ୍ୟକର ଉପେକ୍ଷା ଅସହ୍ୟ
ଶ୍ରମିକର ପେଷଣର କେବେବି ପ୍ରତିକାର
ହେବ, ଅଛି ସେଇ ଦିନ ଆଡ଼େ ଚାହିଁ ।
ଅଛି ମୋର ନିଶ୍ଚିତ ବିଶ୍ୱାସ
ଯନ୍ତ୍ରପିଷ୍ଟ ଶ୍ରମିକର ହତାଶ ନିଃଶ୍ୱାସ
ଆଣିବ ପ୍ରଳୟ । ଆଉ ଅନ୍ୟ ପଥ ନାହିଁ ।
ଜାଗିବ ନୂତନ ସୂର୍ଯ୍ୟ, କ୍ଷୁଧାକ୍ଲିଷ୍ଟମୁଖେ ଦେଖା ଦେବ,
ହସରେଖା, ନଥାଉ କାହାର ବିତ୍ତ ପଛେ ଅତୁଳ ଅଗାଧ
ସାମ୍ୟରାଜ୍ୟେ କର୍ମଚିନ୍ତା ସ୍ୱାଧୀନ୍ ଅବାଧ ।''

ଆଉ ମନେ ପଡୁ ନାହିଁ । କବିତାଟା ପୂରା ମୋର ମୁଖସ୍ଥ ଥିଲା । ବର୍ଷ ଦୁଇଟା ଭିତରେ ମୋର କେତେ ପରିବର୍ତ୍ତନ ହୋଇ ଯାଇଛି । ଦାଦାର ପ୍ରଭାବରୁ ମୁକ୍ତି ପାଇବା ପାଇଁ ମୁଁ ପ୍ରାଣପଣେ ଚେଷ୍ଟା କରିଛି । ସେଥିପାଇଁ ମୋର ଅଚେତନ ମନ ବୋଧହୁଏ, ମୋର ସ୍ମୃତିପଟରୁ ଏଇ କବିତାଟିକୁ ପୋଛି ଦେବାରେ ସାହାଯ୍ୟ କରିଛି । ଆଶ୍ରମରେ ମା'ଙ୍କ ଘର ବାରଣ୍ଡାରେ କବିତାଟିକୁ ଟଙ୍ଗାଇ ରଖିଥିଲି । ଏବେ ଅଛି କି ନାହିଁ, କିଏ ଜାଣେ ? ଏତେ ଦିନ ସେ କଥା ଆଉ ଥରେ ହେଲେ ମନେ ପଡ଼ି ନାହିଁ । ଏଥର ଯାଇଁ ନିଶ୍ଚୟ ଖୋଜିବି ।

''ଜଗ ହୁଯେ ହାଁୟ କିୟା ବାବୁଜୀ ?''

ଦେଖିଲି ସୁବେଦାର ସାହେବ କ୍ୱାର୍ଟରରୁ ଫେରୁଛନ୍ତି । ଆଖିରୁ ମୁହଁରୁ ମନେ ହେଉଛି କିଛି ବେଳ ଶୋଇ ପଡ଼ିଥିଲେ । ଧଡ଼ପଡ଼ ହୋଇ ଉଠି ବସିଲି ।

''ବୈଠିୟେ, ବୈଠିୟେ, ଆରାମ କିଜିୟେ ବାବୁଜୀ ।'' କାହା ସହିତ କଥାବାର୍ତ୍ତା ହେବା ପାଇଁ ଇଚ୍ଛା ନଥିଲା । ସୁବେଦାର ସାହେବ ଗେଟ୍ ଭିତରକୁ ପଶିଲେ । ଅଫିସ୍ ଘର ଆଡ଼କୁ ଯାଉଛନ୍ତି... ଦାଦା ଏବେ କଣ କରୁଥିବ ? ଦାଦା ନିଶ୍ଚୟ କେତେଖଣ୍ଡ

ଚିଠି ଲେଖିଯିବ। ନେହାଲ୍ ସିଂକୁ ଖାତା ପେନ୍‌ସିଲ ପାଇଁ ଯେଉଁ ପଇସା ଦେଇ ଥିଲି, ସେଥିରେ ଦାଦାକୁ ଏସବୁ ଜିନିଷ କିଣି ଦେଇଚି କି ନାହିଁ, କିଏ ଜାଣେ ? ଦେଇଥିଲେ ବି ସେସବୁ ସେଲ୍ ଭିତରେ ରଖିବା ମୁସ୍କିଲ୍– ପ୍ରତ୍ୟହ ନିଶ୍ଚୟ ସର୍ଚ୍ଚ ହେଉଥିବ। ଲେଖିବାର ସୁବିଧା ଥିଲେ ବି, ଦାଦା ଅନ୍ୟ ମାନଙ୍କ ପରି ହୁଏତ ଚିଠି ଲେଖି ଛାଡ଼ି ଯିବ ନାହିଁ। ଆଶ୍ଚର୍ଯ୍ୟ ତାର ମନ। ସେ ଜେଉଁ କାର୍ଯ୍ୟକୁ ଯେ ଆଶୋଭନ ଓ ଦୃଷ୍ଟିକଟୁ ମନେ କରେ, ମୁଁ ତା'ର ଧାରଣା ସୁଦ୍ଧା କରି ପାରେ ନାହିଁ। ...ଶୁଣିଛି, ମୃତ୍ୟୁଦଣ୍ଡର ପୂର୍ବ ରାତିରେ ମେରୀ ଅଣ୍ଟୋନେଟ୍‌ଙ୍କର ମୁଣ୍ଡବାଳ ସବୁ ପାଚି ଯାଇଥିଲା। ଦାଦାର ପାଚିଲା ବାଳ ମୁଁ କଳ୍ପନା ସୁଦ୍ଧା କରି ପାରେ ନାହିଁ। ସେ ହୁଏତ ପରମ ନିଶ୍ଚିନ୍ତରେ ଶୋଇଛି। ସାର୍ ୱାଲଟର୍ ରାଲେ, ଯୂପକାଠରେ ମୁଣ୍ଡ ନୋଇଁବା ପୂର୍ବରୁ ଜଲ୍ଲାଦକୁ ଥଟ୍ଟା କରି କହିଥିଲେ "ଦେଖ ଭାଇ ଏତେ ସଉକରେ ବଢ଼ାଇଥିବା ମୋ ଦାଢ଼ିଟାକୁ ଯେମିତି କାଟି ନଦିଅ।" ଆଗେ ଏହା ଅତିରଞ୍ଜନ ବୋଲି ମନେ ହେଉଥିଲା। କିନ୍ତୁ ଦାଦା ସମ୍ବନ୍ଧରେ ଏହା ଆଉ ଅତ୍ୟୁକ୍ତି ବୋଲି ମନେ ହୁଏ ନାହିଁ। ଫାଶୀମଞ୍ଚରେ ଉଠିବା ପୂର୍ବରୁ କେତେ ରାଜବନ୍ଦୀଙ୍କର କେତେ ରକମ ଆଚରଣର କଥା ଶୁଣିଛି। କେହି ଅଜ୍ଞାନ ହୋଇ ପଡ଼ିଛି, କେହି ସୁପରିଟେଣ୍ଡେଣ୍ଟକୁ ଗାଳି ଦେଇଛି, କେହି ଭଗବାନଙ୍କୁ ଦୋଷୀ ସାବ୍ୟସ୍ତ କରିଛି, କେହି ଭଗବାନଙ୍କ ନାମ ଜପିଛି, କେହି ଭାଷଣ ଦେବାର ନିଷ୍ଫଳ ଚେଷ୍ଟା କରିଛି, କେହି ବା "ଶିର ଫରୋସୀ କା ତମନ୍ନା" ଗୀତ ଗାଇ ଗାଇ ନିର୍ବିକାର ଭାବରେ ଶିଡ଼ିରେ ଚଢ଼ି କାଠପଟା ଉପରେ ଠିଆ ହୋଇଛି। ଦାଦା ଏସବୁ କିଛି କରିବ ନାହିଁ। ତା ଓଠରେ ଲାଗି ରହିଥିବ ଅବଜ୍ଞାର ହସ। ସେଇ ତାସଲ୍ୟ ଆଗରେ ସୁପରିଟେଣ୍ଡେଣ୍ଟଙ୍କ ଆଖି ନଇଁଯିବ, ମାଜିଷ୍ଟ୍ରେଟ୍ ଅନ୍ୟ ଆଡ଼କୁ ଦୃଷ୍ଟି ବୁଲାଇନେବେ, ଜେଲର୍ ସାହେବ ଅକାରଣରେ ଟର୍ଚ୍ଚ ଜାଳି ମଣିବନ୍ଧର ଘଡ଼ି ଦେଖିବେ, ଯେଉଁ ନିର୍ବିକାର କୟଦୀ କିଛି 'ରେମିସନ୍' ଆଉ ପାଞ୍ଚଟା ଟଙ୍କା ପାଇଁ ଘାତକର ଘୃଣ୍ୟ କାର୍ଯ୍ୟ କରୁଛି, ତାର ହୃତସ୍ପନ୍ଦନ ମଧ୍ୟ କିଛିଟା ଦ୍ରୁତ ହୋଇ ଉଠିବ। ଦାଦାର ଅନ୍ୟ ପ୍ରକାର ଆଚରଣ ମୋ ପକ୍ଷରେ ଅପ୍ରତ୍ୟାଶିତ।...

ଖଟ୍, ଖଟ୍, ଖଟ୍। ଗେଟ୍‌ରେ ଦୋତାଲାରୁ କିଏ ଶିଡ଼ିରେ ତଳକୁ ଓହ୍ଲାଉଚି।– ବଳଦୃପ୍ତ ଗର୍ବାନ୍ଧ ବ୍ୟକ୍ତିର ପୌରୁଷବ୍ୟଞ୍ଜକ ପଦଧ୍ୱନି– ଧରଣୀ ତମେ ବୁଝିରଖ, ଏଇ ସ୍ଥାନ ଟିକକ ଭିତରେ ଆଉ କାହାରି କ୍ଷମତା ବା ଆଦେଶ ଚଳିବ ନାହିଁ। –ଏଠି ମୁଁ ଇ ସର୍ବେସର୍ବା– ଏଇପରି ଭାବ। ...ବହୁ ବେଳୁ ଏଇ ଶବ୍ଦଟିର ଅପେକ୍ଷା କରିଥିଲି। ଖାକି ଜେଲପୋଷାକ ପିନ୍ଧା ଜଣେ ବଳିଷ୍ଠ ଭଦ୍ରଲୋକ ଓହ୍ଲାଇ ଆସିଲେ। ଗେଟ୍‌ର ସେଣ୍ଟ୍ରି ଚଟାଣ ଉପରେ ଜୋତା ଠୁକି, ସାଲ୍ୟୁଟ କଲା, ତା'ପରେ ସିଧା ହୋଇ ସଙ୍କୁଚିତ ଭାବରେ ଠିଆ ହେଲା। ଭିତରର ୱାର୍ଡର୍ ସଲାମ୍ କରି ଗେଟ୍ ଦରଜା ଖୋଲିଲା। ସୁବେଦାର ସାହେବ୍ ଗେଟ୍ ସାମନାରେ ଠିଆ ହୋଇଛି। ସାମ୍ନା ପାଟିର ଧଳା କଳା ମିଶା ଦାନ୍ତ ଗୁଡ଼ାକ ପଦାକୁ ବାହାରି ପଡ଼ିଛି। ହସିବା ବେଳେ ଝଡସାରରେ ଖୋସାମୋଦ୍‌ର ବ୍ୟଞ୍ଜନା ପରିସ୍ଫୁଟ କରିବାର ପ୍ରୟାସ ବେଶ୍ ବୁଝା ପଡୁଛି। ସୁବେଦାର ସଲାମ୍ କରିବାରୁ ଜେଲର୍ ସାହେବ ପଚାରିଲେ... ସବୁ ଠିକ୍ ତ ?"

ସୁବେଦାର ସାହେବ ଉତ୍ତର ଦେଲା "ହଁ– ହଜୁର୍"– ରାତିସାରା ଏଇ ସବୁ ବ୍ୟବସ୍ଥା କରି କରି ସେ ଯେମିତି ଅଣନିଃଶ୍ୱାସୀ ହୋଇ ପଡ଼ିଛି।

ଜେଲର୍ ସାହେବଙ୍କ ଦୃଷ୍ଟି ପଡ଼ିଲା ଟ୍ରଲୀ ଲାଇନ୍ ପାଖରେ, ଇତସ୍ତତଃ ବିକ୍ଷିପ୍ତ ଗୋବର ଉପରେ। ପାଦ ଓଲଟାଇ ନିଜ ଜୋତା ତଳି ଦେଖିଲେ – ମୁହଁରେ ବିରକ୍ତିର ଚିହ୍ନ ସୁସ୍ପଷ୍ଟ। ସୁବେଦାର୍ ମଧ ଭୟ ମିଶ୍ରିତ ଦୃଷ୍ଟିରେ ଏଇ ଜୋତା ଆଡ଼କୁ ଚାହିଁ ଦେଖୁଛି। ରକ୍ଷା। ଜୋତା ତଳିରେ ଗୋବର ଲାଗି ନାହିଁ। – ସ୍ୱସ୍ତିର ନିଃଶ୍ୱାସ ପକାଇ ସେ ଯେପରି ବଞ୍ଚିଲା।

ଜେଲର୍ ସାହେବ ପଚାରିଲେ– ''ଏ ଗୋବର ପରିଷ୍କାର କରି ନାହଁ କାହିଁକି ?''

''ହଜୁର୍ କୌଣସି କୟଦୀ ମିଳିଲେ ନାହିଁ।''

''କାହିଁକି ? ଲକ୍ ଅପ୍ ପରେ ଗୋରୁ ତ ଆଉ ଗେଟ୍ ଭିତର ଦେଇ ଯାଇ ନାହାନ୍ତି !''

ଆଉ ବେଶୀ କିଛି କହିବାକୁ ପଡ଼ିଲା ନାହିଁ। ଭିତରର ୱାର୍ଡ଼ର୍ ନିଜେ ଏଇ କାମରେ ଲାଗିଗଲା। ସୁବେଦାର୍ ସାହେବର ଦିନ ଆଜି ଭଲରେ କଟିବ ନାହିଁ– ଭୋର୍ ନ ହେଉଣୁ ଏଇ କାଣ୍ଡ ! ଜେଲର୍ ସାହେବ ଭିତର ଦରଜା ଖୋଲାଇ ଜେଲ୍ ଭିତରେ ପଶିଲେ।

କହିଗଲେ – ''ଦେଖେ ଭିତରର ଅବସ୍ଥା କିପରି। ଆପଣମାନଙ୍କ ଉପରେ କୌଣସି ଦାୟିତ୍ୱ ଦେଇ ନିଶ୍ଚିନ୍ତ ହେବାର ତ ଉପାୟ ନାହିଁ। ସାହେବଙ୍କ କାମ୍‌ରା ଆଉ ମେ ଅଫିସ୍ ଠିକ୍ ଥାଏ ଯେପରି !''

''ହଁ ହଜୁର୍ ! ସେ କଥା ଆଉ କହିବା ପାଇଁ ପଡ଼ିବ ନାହିଁ। ସବୁ ଠିକ୍ ରଖିଛି।''

ସୁବେଦାର୍ ସାହେବ ୱାର୍ଡ଼ର୍‌କୁ କହିଲେ, ''ପେଚା ପରି ମୁହଁ କରି କଣ ଦେଖୁଚ ? ଯାଅ, ଦେଖ, ସାହେବର କାମ୍‌ରା ସଫାସୁତର୍ ହୋଇଛି କି ନାହିଁ। ଏଇ ସବୁ ନୂଆ ନୂଆ 'ବାହାଲୀ' (ନିଯୁକ୍ତ ଲୋକ) ମାନଙ୍କୁ ନେଇ କାମ ଚଳାଇବା କଠିନ। କଂଗ୍ରେସ ଆନ୍ଦୋଳନରେ ଯେତେ ସବୁ ଗାଡ଼ିଆଳ, ଦର୍‌ବାହା (ଚଷା) ଚର୍‌ବାହା (ଗୋରୁଚରାଳି) ଜେଲ୍‌ରେ ଆସି ଭର୍ତ୍ତି ହୋଇଛନ୍ତି। ସେମାନେ ନା ବୁଝନ୍ତି କଥା, ନା ବୁଝନ୍ତି ନିଜକାମ ! ଭାରି ଦିକ୍‌ଦାର୍ ଲାଗିଲାଣି।''

ଛୋଟରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ଅଧସ୍ତନ କର୍ମଚାରୀ ମାନଙ୍କ ସହିତ ଏକାଭାବରେ ବ୍ୟବହାର କରନ୍ତି। . . .

ରାତି ଚାରିଟା ବେଳର ଘଣ୍ଟା ବାଜିଲା। ନୂଆ ଦଳ ୱାର୍ଡ଼ର୍ ଆସିଲେ। ପ୍ରତି ଦଳରେ ଥା'ନ୍ତି ବାଇଶ ଜଣ। ସେଇ ଗୋଟିଏ ଦୃଶ୍ୟର ପୁନରାଭିନୟ – ଗୋଟିଏ ରାତି ଭିତରେ ସବୁ ଯେପରି ମୁଖସ୍ଥ ହୋଇଯାଇଛି। ରେଳଷ୍ଟେସନ୍ ପ୍ଲାଟ୍‌ଫର୍ମ ପରି – କେତେ ଲୋକ ଗାଡ଼ିରୁ ଓହ୍ଲାଇଲେ – କିଛି ଲୋକ ଉଠିଲେ – କୋଳାହଳ, ବିଶୃଙ୍ଖଳା – ପୁଣି ଯେମିତିକୁ ସେମିତି। . . . ଦାଦା କଣ ସେଲ୍‌ର ଗରଦବାଡ଼ାକୁ ଧରି ଚରମ ମୁହୂର୍ତ୍ତର ପ୍ରତୀକ୍ଷାରେ ଠିଆ ହୋଇଛି ? ଏବେ ରାତି ଚାରିଟା ବେଳର ଯେଉଁ ଘଣ୍ଟା ବାଜିଲା, ଦାଦା ତାହା କଣ ଶୁଣି ପାରିଛି ? ଗେଟ୍ ଉପରର ଶବ୍ଦତରଙ୍ଗ ବାୟୁମଣ୍ଡଳରେ କମ୍ପନ ସୃଷ୍ଟି କରି, ଫାଶୀ ଆସାମୀ ମାନଙ୍କ ସେଲ୍‌ମାନଙ୍କରେ ପହଞ୍ଚି ପାରୁଛି; ଆଉ ମୋର ଚିନ୍ତାତରଙ୍ଗ କଣ ପହଞ୍ଚି ପାରିବ ନାହିଁ ? ଦାଦା ଶେଷ ମୁହୂର୍ତ୍ତରେ କାହା କଥା ଭାବୁଥିବ ? – ମା କଥା, ଜେଠେଇ ମା କଥା, ନାଁ ମୋ କଥା ? ମୋ କଥା ଭାବିବ କାହିଁକି ? ନିଶ୍ଚୟ ଭାବିବ। ସେ ଚିନ୍ତାଜର୍ଜ୍ଜରିତ ଥିବ, ଗ୍ଲାନି, ବିଷାଦ ଆଉ ମୋ ପ୍ରତି ଅଭିମାନରେ। ସେସବୁ ଯୁକ୍ତିତର୍କର ବହୁ ଉପରର କଥା। . . . ଏହା ପରେ ମୋର ଆଉ ପୃଥିବୀରେ ରହିବା ଅସମ୍ଭବ। ଜେଠେଇମା'ଙ୍କୁ ମୁହଁ ଦେଖାଇବି କେମିତି ? ଲୋକମାନଙ୍କ ଆଗରେ, ଦାଣ୍ଡରେ ବାହାରିବି ବା କିପରି ? ସାକ୍ଷୀ ଦେବା ପର

ଠାରୁ ଏତେଦିନ ଏ ଅବସ୍ଥାଟା କେତେକ ପରିମାଣରେ ଦିହସହା ହୋଇଗଲାଣି । କିନ୍ତୁ ମା'ଙ୍କ ସାମ୍ନାକୁ ଆସିବା – ସିଏ ତ ଅସମ୍ଭବ । ଦାଦାର ଅନ୍ତିମ ଦିନର ଏଇ ଛବି ଅପ୍ରତ୍ୟାଶିତ ଓ ଆକସ୍ମିକ ନୁହେଁ । ଗତ କେତେ ମାସ ହେଲା, ଏଇ ଦିନ ପାଇଁ ମନକୁ ପ୍ରସ୍ତୁତ କରୁଛି । ସମୟ ଅସମୟରେ ଏଇ ଚିତ୍ର ମନକୁ ଭାରାକ୍ରାନ୍ତ କରିଛି । . . . ''ପାକୁଡ଼୍ ମର୍ଡ଼ର କେସ୍''ର ଖବର ପ୍ରତିଦିନ କାଗଜରେ ପଢ଼ି ମୁଁ ଆଉ ଦାଦା, ମା'ଙ୍କୁ ବୁଝାଇ ଦେଉଥିଲି । ମା କହୁଥିଲେ– ''ମା ଲୋ ମା ! ଭାଇ ଭାଇ ଭିତରେ ଏମିତି ପୁଣି ହୁଏ ନା କଣ ?'' – ଆଉ ଆଜି ? ଏତେ ଦିନ ଜନମତକୁ ଉପେକ୍ଷା କରି ଆସିଛି । କିନ୍ତୁ ଏବେ ମନ ଭାଙ୍ଗି ପଡୁଚି, କାହିଁକି ? ଜନମତକୁ ଉପେକ୍ଷା କରିବା ସମ୍ଭବ; କିନ୍ତୁ ମା'ଙ୍କର ଅବ୍ୟକ୍ତ ବେଦନାଭରା ଦୃଷ୍ଟି, ଜେଠେଇମା'ଙ୍କ ନୀରବ ଭର୍ତ୍ସନାକୁ ଉପେକ୍ଷା କରିବା ସମ୍ଭବ ନୁହେଁ । ସମ୍ଭବ ନୁହେଁ କାହିଁକି ? Sentimental nonsense... ମୋ ଆଗରେ ପଡ଼ିରହିଛି ବେଦନା ଜର୍ଜରିତ ସମାଜର ଅଗଣିତ କାର୍ଯ୍ୟ । ସମାଜର ଯୁଗଯୁଗ ସଞ୍ଚିତ ଅଶ୍ରୁମୋଚନ କରିବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ । ସଂକୀର୍ଣ୍ଣ ଘରକୋଣର ଦୁଇ ଚାରି ବିନ୍ଦୁ ତତଲା ଲୁହ କଥା, ମନରେ ଧରିଲେ ଚଳିବ କିପରି ? ଖଦଡ଼ ଶାଢ଼ୀର କାନିରେ ସେ କେଇ ବିନ୍ଦୁ ଲୁହ ପୋଛି ହୋଇଯିବ । ଜୀର୍ଣ୍ଣ କନ୍ଥା ଆଉ ମଇଳା ତକିଆ, ଏଇ ସାମାନ୍ୟ କେତେ ବିନ୍ଦୁ ଲୁହକୁ ତାତିଲା ବାଲି ପରି ଶୋଷି ନେବ । ଏଇଥି ପାଇଁ ମୁଁ ପଡ଼ି ରହିଲେ ଚଳିବ ? ଏବେ ବି ମୁଁ ମୋ ନିଜର ଭବିଷ୍ୟତ ଘେନି ଚିନ୍ତିତ । ମୋର କଣ ହେବ, ତାର ଗୁରୁତ୍ୱ ମୋ ପାଖରେ ବେଶୀ; ଦାଦାର କ'ଣ ହେଉଛି, ନ ହେଉଛି ନୁହେଁ ।

. . . କାନାଇଲାଲ୍‌ର ଶବପିଣ୍ଡର ଫଟୋଗ୍ରାଫ୍‌ରେ ତା ମୁହଁର ଚିତ୍ରଟା ମନେ ପଡୁଛି । ଦାଦାକୁ କଣ ସେଇପରି ଲୁହା ଷ୍ଟ୍ରେଚର୍‌ରେ ଶୁଆଇଦେବେ ? ଆଖି ଦୁଇଟି ଅର୍ଦ୍ଧନିମୀଳିତ – ଅନ୍ତିମ ନିଃଶ୍ୱାସ ନେବାର ପ୍ରାଣପଣ ଚେଷ୍ଟାରେ ମୁହଁଟା ବୀଭତ୍ସ ହୋଇନାହିଁ – ଆଖି ଡ଼ୋଳା ଦୁଇଟା କୋଟର ଭିତରୁ ଠେଲି ହୋଇ ପଦାକୁ ବାହାରି ପଡ଼ି ନାହିଁ – ସେ ଯେପରି ନିଶ୍ଚଳ ଭାବରେ ଶୋଇ ରହିଛି – ଗଳାଟା କେବଳ ଫୁଲିଚି . . . ରକ୍ତ ଜମି ନେଳି ଦାଗ ପଡ଼ିଯାଇଛି । . . .

ଜେଲ୍ ଡାକ୍ତର ଅଘୋରବାବୁ ଜେଲ୍‌ଗେଟ ଭିତରକୁ ପଶିଲେ । ଭଦ୍ରଲୋକ ଦ୍ରୁତ ପାଦରେ ଆସି ଧଇଁ ସଇଁ ହୋଇ ପଡ଼ିଛନ୍ତି । ଏଣିକି ତେଣିକି ଚାହିଁବା ପାଇଁ ତାଙ୍କର ଫୁରୁସଦ୍ ନାହିଁ । ଜେଲ୍‌ରେ ବୋଧହୁଏ ପାଞ୍ଚ ଛଅଜଣ ଡାକ୍ତର ଅଛନ୍ତି – କିନ୍ତୁ ଜେଲ୍‌ର ବଡ଼ ଡାକ୍ତର ସିଭିଲ୍ ସର୍ଜନ୍ ରହନ୍ତି ସହରରେ । ଏଠି ତାଙ୍କ କ୍ୱାର୍ଟର୍ ନାହିଁ । ଯୁଦ୍ଧ ପୂର୍ବରୁ ଅବଶ୍ୟ ସିଭିଲ୍ ସର୍ଜନ୍ ଜେଲ୍ ସୁପରିଟେଣ୍ଡେଣ୍ଟ୍ ହେଉଥିଲେ । ଅଘୋରବାବୁ ପୁଣି ଆସିଲେ କାହିଁକି ? ସୁବେଦାର୍ ପଚାରିଲା, ''ଡାକ୍ତରବାବୁ ଆପଣ ପୁଣି ଆସିଲେ କାହିଁକି ?''

''ଏଇ ଆସିଲି ଏମିତି !''

ସୁବେଦାର୍ ସାହେବ ନିଜେ ଘଟଣାଟା ଠିକ୍ ବୁଝିଚନ୍ତି । ସାହେବ ଆଗରେ ନିଜ ନିଜର କର୍ତ୍ତବ୍ୟପରାୟଣ ଦେଖାଇବା ପାଇଁ ଆଜି ସମସ୍ତେ ବ୍ୟଗ୍ର । ଅଘୋରବାବୁଙ୍କ ସହିତ ମୋର ଜଣାଶୁଣା ଅଛି । ଭାଗ୍ୟକୁ ମୋ ଉପରେ ତାଙ୍କ ନଜର ପଡ଼ିନାହିଁ । – ନୋହିଲେ କଣ ନାଇଁ କଣ ପୁଣି ପଚାରିଥାନ୍ତେ ! . . . ସେ ଅଫିସ୍ ଘର ଭିତରକୁ ଆସିଲେ । ଜେଲର୍ ସାହେବ ଇତି ମଧ୍ୟରେ ଫେରି ଆସିଲେଣି । ତାଙ୍କ ଅଫିସ୍ ଘରର ଆଲୁଅ ଜଳୁଛି – ଫ୍ୟାନ୍

ଘୁରୁଛି। ହାଫପାଣ୍ଟ, ଧଳା ହାଫସାର୍ଟ୍ ପିନ୍ଧି ସୁପରିଟେଣ୍ଡେଣ୍ଟ୍ ସାହେବ ଆସି ପହଞ୍ଚିଲେ। —ସାଙ୍ଗରେ ତାଙ୍କର ଧଳା ଆଉ ଖଇରାରଙ୍ଗମିଶା ଗୋଟାଏ ବୁଲ୍‌ଟେରିୟର୍। ୱାର୍ଡ଼ରମାନଙ୍କ ମୁହଁରେ ସନ୍ତ୍ରସ୍ତ ଭାବ—ସାଲ୍ୟୁଟ୍—ଆଟେନ୍‌ସନ୍। କୁକୁରଟା ଭିତରେ ପଶିବା ଆଗରୁ କଣ ଭାବି, ଥରେ ମୋ ଚାରିପଟେ ବୁଲିଗଲା। ଭିତରର ୱାର୍ଡ଼ର୍ କୁକୁର ପାଇଁ ଦରଜା ଅଧା ମେଲା କରି ରଖିଛି। ସାହେବ ଅପେକ୍ଷା ତାଙ୍କ କୁକୁର ପ୍ରତି ଜେଲ୍ କର୍ମଚାରୀ ମାନଙ୍କର ଆନୁଗତ୍ୟ କମ୍ ନୁହେଁ—ଏହାର ପ୍ରମାଣ ଦେବା ପାଇଁ ସମସ୍ତେ ସଚେଷ୍ଟ। ସାହେବଙ୍କୁ ଅଭ୍ୟର୍ଥନା କରିବା ପାଇଁ ଜେଲର୍ ସାହେବ ଅଫିସ ଘର ଭିତରୁ ବାହାରି ଆସିଲେ। ଅଘୋର ବାବୁ ମଧ୍ୟ ଆସି ସେଠାରେ ଠିଆ ହେଲେ। ଜେଲର୍ ସାହେବଙ୍କ ସମ୍ମାନରକ୍ଷା ପାଇଁ ସୁବେଦାର୍ ତାଙ୍କ ଦେହକୁ ଲାଗି ଠିଆ ନହୋଇ, ଟିକିଏ ଦୂରଛଡ଼ା ହୋଇ ଠିଆ ହେଲା। ସାହେବ ହସି ହସି କଣ କହୁଚନ୍ତି, ଆଉ ଅନ୍ୟମନସ୍କ ଭାବରେ ହାତରେ ଟର୍ଚ୍ଚଟାକୁ ଜାଳୁଛନ୍ତି, ପୁଣି ଲିଭାଇ ଦେଉଛନ୍ତି। କୁକୁରଟା ଅଫିସ୍ ଘରୁ ପାସେଜ୍, ପାସେଜ୍‌ରୁ ଅଫିସ୍‌ଘର ହୋଇ ବୁଲୁଛି। ମଶାଲ ଗୁଡ଼ାକୁ ଶୁଙ୍ଘୁଛି—ସାହେବ ପାଖକୁ ଆସି କ'ଣ ଯେପରି ଗୋଟାଏ ଖବର ଦେଇ ଚାଲିଗଲା। ...ରାତ୍ରିର ସ୍ତବ୍ଧତା ବିଦୀର୍ଣ୍ଣ କରି ମୋଟର ଲରୀର ଶବ୍ଦ ହେଲା—କ୍ରମେ ନିକଟରେ ହେଉଛି—ଭୋଁ ଭୋଁ—ମୋଟର ହର୍ଣ୍ଣ ପୁଣି ଏତେ ଜୋର୍‌ରେ ଶବ୍ଦ କରେ—ଦାଦା, ମା, ବାବା—ସମସ୍ତଙ୍କ କାନରେ ହୁଏତ ଏଇ ଶବ୍ଦ ପଡ଼ିଲା। ଗୋଟାଏ ମୋଟର ଭ୍ୟାନ୍ ଗେଟ୍‌ଠାରୁ କିଛି ଦୂରରେ ଆସି ରହିଲା। ଏଇ ବୋଧହୁଏ ସେମାନେ ଦରଜା ଖୋଲି ଡ଼େଇଁ ପଡ଼ିଲେ, ଜଣକ ପରେ ଜଣେ ଆର୍ମଡ଼୍ ପୋଲିସ୍। ଏବାଉଟ୍ ଟର୍ଣ୍ଣ—ରାଇଟ୍ ହୁଇଲ୍। ନା, କେହି ଓହ୍ଲାଇଲେ ନାହିଁ ତ! ସମସ୍ତେ ବୋଧହୁଏ ଗାଡ଼ି ଭିତରେ ରହିଗଲେ। ଡ୍ରାଇଭର୍ ଗାଡ଼ି ଆଲୁଅ ଲିଭେଇଲା। ରାସ୍ତା ଓ କ୍ୱାର୍ଟର୍ ଗୁଡ଼ାକ ଅନ୍ଧାରରେ ହଜିଗଲା। ସାହେବର କୁକୁର ଭୁକୁଛି—କୁକୁରଟା ଗେଟ୍ ଗରାଦ ଭିତରେ ଗଳି ବାହାରକୁ ଆସିଲା। —ଦେଖୁଚି ତା ରାଜ୍ୟରେ ଶାନ୍ତିଭଙ୍ଗ ଘଟାଇଲା କିଏ? ଆଲୁଅ ହଠାତ୍ ଜଳି, ପୁଣି ଲିଭିଲା କାହିଁକି? ତା'ରି ତଦାରଖରେ ସେ ପଦାକୁ ବାହାରିଛି।

ରାଷ୍ଟ୍ରର ସଞ୍ଚାଳନଚକ୍ର ଚାଲିଛି, ମନ୍ଥର କିନ୍ତୁ ନିଶ୍ଚିତ ଭାବରେ—ଅହର୍ନିଶି। କେବେ, କେତେ ଦିନ ପୂର୍ବେ କୌଣସି ହତଭାଗ୍ୟ ମୂର୍ଖ ଏହା ଆଗରେ ମୁଣ୍ଡ ଉଠାଇ ଠିଆ ହେବାର ବ୍ୟର୍ଥ ଦୁଃସାହସ କରିଥିଲା। ତା'ର ଯେପରି ପୁନରାବୃତ୍ତି ନହୁଏ, ସେଇ ଉଦ୍ଦେଶ୍ୟରେ ଦେଶବ୍ୟାପି ନିୟୋଜିତ ହୋଇଛି, ଛୋଟବଡ଼ ଅସଂଖ୍ୟଚକ୍ର। ସେଇ ଘଟଣା ଓ ତାର ନାୟକକୁ ନିଶ୍ଚିହ୍ନ କରି ସୁଦ୍ଧା ରାଷ୍ଟ୍ରର ଶାନ୍ତି ବା ସ୍ୱସ୍ତି ନାହିଁ। ଯେଉଁ ଆତ୍ମବିଶ୍ୱାସ ଗୁଡ଼ିଏ ଅର୍ବାଚୀନ ହୃଦୟକୁ ଉଦ୍‌ବେଳିତ କରି ରଖିଥିଲା, ଭବିଷ୍ୟତରେ ତାହା ଯେପରି ପଙ୍ଗୁ ଓ ସଙ୍କୁଚିତ ହୋଇଯାଏ—ଏହା ହିଁ ସେମାନଙ୍କର କାମ୍ୟ। ...କୋରହା ଥାନା, ଭେଙ୍କଟେଶ୍ୱର ଦାରୋଗା, ଫୌଜଦାର୍, ସେସନସ୍ କୋର୍ଟ୍, ସରକାରୀ ଓକିଲ, ଜଜ୍ ସାହେବ, ସରକାରୀ ସାକ୍ଷୀ ନୀଲୁ, ଜେଲ୍ କର୍ମଚାରୀମାନେ—ମାଳାରେ ଗୋଟିକ ପରେ ଗୋଟିଏ ନାନା ରଙ୍ଗର କାଚଗୁଳା ଗୁନ୍ଥା ହୋଇ ରହିଛି, ଗୋଟିଏ ସ୍ଥିର ଉଦ୍ଦେଶ୍ୟ ନେଇ। ଯେଉଁ ଉଦ୍ଦେଶ୍ୟରେ ଏମାନେ ନିୟୋଜିତ, ସେଇ ଚରମ ମୁହୂର୍ତ୍ତ ବା ଆଉ କେତେ ଡ଼େରି? ...କେବଳ ଘାତକକୁ ଦାୟୀ କଲେ ଚଳିବ କିପରି? ଏଇ ବର୍ବରତାର ନୈତିକ ଦାୟିତ୍ୱ ଜଜ୍‌ଠାରୁ ଆରମ୍ଭ କରି ୱାର୍ଡ଼ର୍ ପର୍ଯ୍ୟନ୍ତ ସମସ୍ତଙ୍କର ସମାନ। ବିଶେଷଜ୍ଞ ମାନଙ୍କର ଏଇ ଯୁଗରେ କେହି ନିଜର

ସୀମିତ କ୍ଷେତ୍ରର ବାହାରକୁ ଅନାନ୍ତି ନାହିଁ। ଯନ୍ତ୍ରର ଯେଉଁ ଅଂଶଟି ପାଇଁ ସେ ନିଜେ ଦାୟୀ, ଭଲରେ ଭଲରେ ସେତକ ଚଳିଗଲେ ହେଲା। ବିରାଟ ସଞ୍ଚାଳନ ଶକ୍ତିର ଉତ୍ସ କେଉଁଠି, ତାହା ଅନୁସନ୍ଧାନ କରିବାର ପ୍ରୟୋଜନ କଣ ? ଇଞ୍ଜିନ୍‌ରୁ ବେଲ୍‌ଟିଙ୍ଗ୍ ଦେଇ, ଏଇ ଶକ୍ତିର ଗୋଟିଏ ଅଂଶ ତା ପାଖରେ ପହଞ୍ଚିଲେ ହେଲା। ତା'ପରେ ସେ ତାର ଅର୍ଦ୍ଧପ୍ରସ୍ତୁତ କଞ୍ଚାମାଲ୍‌କୁ ତାର ପରବର୍ତ୍ତୀ ସ୍ଥାନରେ ପହଞ୍ଚାଇ ଦେବ। ଏତେ ଦୂର ପର୍ଯ୍ୟନ୍ତ ଯେତେ ହାତରେ ବୁଲି ବୁଲି ଘଟଣାଟି ଆସିଛି, ସେଥିରେ ସବୁଠି ରାଷ୍ଟ୍ରଦାନବର ନଗ୍ନତା ଓ ବର୍ବରତା ଢ଼ାଙ୍କିବାର ଗୋଟାଏ ଗୋଟାଏ ପ୍ରୟାସ। କିନ୍ତୁ ବର୍ତ୍ତମାନ ତାହା ଏପରି ଏକ ସ୍ଥାନରେ ପହଞ୍ଚିଛି; ଯେଉଁଠି ଆଉ ଚକ୍ଷୁଲଜ୍ଜ୍ୟାର ଅବକାଶ ନାହିଁ। Crush or be crushed- ଜଗନ୍ନାଥଙ୍କ ରଥ ନିଜ ଗତିର ଗର୍ବରେ ଚାଲିଥିବ। ଚକା ତଳେ, କୌଣସି ହତଭାଗ୍ୟ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା କି ନାହିଁ, ଅନାଇଁ ଦେଖିବା ପାଇଁ ତାର ବିନ୍ଦୁ ମାତ୍ର ଆଗ୍ରହ ନାହିଁ। ଶ୍ରେଣୀ ସ୍ୱାର୍ଥର ଷ୍ଟୀମ୍‌ରୋଲର୍ ରାସ୍ତା ଉପରେ ଅନବରତ ଚଳାଇ ଯିବା ପାଇଁ ପଡ଼ିବ। ବିରାମ ଦେଲେ ଅନାବନା ଗଛ ମୁଣ୍ଡ ଟେକି ଉଠିବ। . . . ଆଶ୍ରମରେ ପଶିବା ରାସ୍ତାଟାକୁ ଦାଦା ନିଜ ହାତରେ ତିଆରି କରିଥିଲା। ଦୁଇପାଖରେ ରଜନୀଗନ୍ଧା କିଆରି। ବେଳ ପାଇଲେ ଦାଦା ଖୁରୁପି ଧରି ଘାସ ଆଉ ଅନାବନା ଗଛ ଓପାଡ଼ିବା ପାଇଁ ବସିଯାଏ। ଦେହରେ ଖଣ୍ଡେ ଧଳା ଖଦଡ଼ ଗେଞ୍ଜି !

ଆଉ ଗୋଟାଏ ମୋଟର ଗାଡ଼ି ଆସି ରହିଲା। ବର୍ଦ୍ଦିପିନ୍ଧା ଚପରାଶି ଦରଜା ଖୋଲିଦେଲା। ହ୍ୟାଟ୍‌କୋଟ୍ ପରିହିତ ଭଦ୍ରଲୋକଙ୍କ ମୁହଁରେ ଚୁରୁଟ୍—ସିଭିଲ୍ ସର୍ଜନ୍। ସୁପରିଟେଣ୍ଡେଣ୍ଟ ସାହେବଙ୍କ ଦଳ ତାଙ୍କୁ ଅଭ୍ୟର୍ଥନା କଲେ।

ସିଭିଲ୍ ସର୍ଜନ୍ ପଚାରିଲେ . . ." ମୋର ଡ଼େରି ହୋଇଗଲା ନା କଣ ? ମୋ ପାଇଁ ଅପେକ୍ଷା କରୁ ନାହାନ୍ତି ତ ?"

"ନା, ନା, ଏବେ ସୁଦ୍ଧା ମାଜିଷ୍ଟ୍ରେଟ୍ ଆସି ପହଞ୍ଚି ନାହାନ୍ତି।

ସୁପରିଟେଣ୍ଡେଣ୍ଟ ରିଷ୍ଟୱାଚ୍ ଦେଖିଲେ। ମୁହଁରେ ବିରକ୍ତିର ଭାବ। "ଆସନ୍ତୁ, ଭିତରେ ବସାଯାଉ।" ଚେଆର୍ ଟାଣିବାର ଶବ୍ଦ ହେଲା। ଘର ଭିତରୁ କଥାବାର୍ତ୍ତାର ମୃଦୁ, ଅସ୍ପଷ୍ଟ ଶବ୍ଦ ଭାସି ଆସୁଛି। ପୁଣି ମୋଟର ହର୍ଣ୍ଣର ଶବ୍ଦ ହେଲା। ଆଉ ଗୋଟିଏ ଗାଡ଼ି ଆସି ଠିଆ ହେଲା। ହାଫ୍‌ପ୍ୟାଣ୍ଟ ପରିହିତ, ଜଣେ ଅଳ୍ପବୟସ୍କ ଭଦ୍ରଲୋକ ଗାଡ଼ି ଭିତରୁ ପଦାକୁ ଡ଼େଇଁ ପଡ଼ିଲେ। ଦଉଡ଼ି ଦଉଡ଼ି, ସେ ଜେଲ୍ ଗେଟ୍ ଭିତରକୁ ପଶୁଛନ୍ତି। ଜେଲର୍ ସାହେବ, ତାଙ୍କୁ ଅଭ୍ୟର୍ଥନ କଲେ।

"ନା ନା, ଆପଣଙ୍କର ଡ଼େରି ହୋଇ ନାହିଁ। ଆମେ ଶୀଘ୍ର ଆସି ଯାଇଛୁ। ଡାକ୍ତର ଓ ସୁପରିଟେଣ୍ଡେଣ୍ଟ୍ ଆର ଘରେ ଆପଣଙ୍କ ପାଇଁ ଅପେକ୍ଷା କରୁଛନ୍ତି। ଚାଲନ୍ତୁ ଘର ଭିତରେ ବସିବେ।"

ଘର ଭିତରକୁ ଯିବା ପାଇଁ ଆଉ ପଡ଼ିଲା ନାହିଁ। ସୁପରିଟେଣ୍ଡେଣ୍ଟ, ସିଭିଲ୍—ସର୍ଜନ୍, ସମସ୍ତେ ଜେଲ୍ ଭିତରକୁ ଯିବା ପାଇଁ ପ୍ରସ୍ତୁତ ହୋଇ, ଘର ବହାରକୁ ଆସିଲେ। ଜଣ ଜଣ ହୋଇ ସମସ୍ତେ ଭିତରକୁ ପଶିଲେ। ଦରଜାଟା ନୁଆଣିଆଁ—ସମସ୍ତଙ୍କୁ ମୁଣ୍ଡ ନୋଇଁବା ପାଇଁ ପଡ଼ିଲା। . . . ଦିଲ୍ଲୀ ଦରବାରରେ ଏଇପରି ଗୋଟିଏ ଫାଟକ କଥା ଶୁଣିଥିଲି। କୋଉଠାର ରାଜା ଏହାକୁ ଅପମାନ ମନେ କରି, ଭିତରକୁ ଆସିଲେ ନାହିଁ। ଯକ୍ଷପୁରୀର

ଅନ୍ଧକାର ସୁପରିଟେଣ୍ଡେଣ୍ଟଙ୍କ ଦଳର ସମସ୍ତଙ୍କୁ ଗୋଟି ଗୋଟି କରି ଗ୍ରାସ କରିଗଲା । . . . ଏବେ ଏଠାରୁ ପଳାଇ ଗଲେ କିପରି ହୁଅନ୍ତା ? ମୂର୍ଦ୍ଧର ଆଡ଼କୁ ମୁଁ ଅନାଇଁ ପାରିବି ନାହିଁ । ଏଠୁ ପଳାଇଗଲେ କେହି ଲକ୍ଷ୍ୟ ସୁଦ୍ଧା କରିବେ ନାହିଁ । . . . ମାଜିଷ୍ଟ୍ରେଟ୍‌ଙ୍କ ହୁକୁମ୍ ଜେଲ୍ ଲୋକମାନଙ୍କୁ ଦେଖାଇବା ପାଇଁ ପଡ଼ିବ । ତା ନହେଲେ ସେମାନେ ମୋତେ ଲାସ୍ ଦେବେ କାହିଁକି ? . . . କୋଉଠି ରହିଲା ସେଇ କାଗଜଟା ? ପକେଟ୍‌ରେ ନାହିଁ ତ ! କ'ଣ ହେଲା ? ଘରେ ପକେଇ ଆସି ନାହିଁ ତ ? ତା ହେଲେ ତ ବର୍ତ୍ତମାନ ପୁଣି ଘରକୁ ଫେରି ଯିବା ପାଇଁ ପଡ଼ିବ । ଯାଉ ଭଲ ହେଇଚି । ନ ମିଳିଲେ ଭଲ ! . . . ପର ଟ୍ରେନ୍‌ରେ ପାଟ୍‌ନା କିମ୍ବା ବମ୍ବେ ପଳାଇଲେ କେମିତି ହୁଅନ୍ତା ? ମୋ ଦଳର intellectual comrade ମାନଙ୍କ ସହିତ ସାକ୍ଷାତ କରିବା ନିହାତି ଦରକାର । – ନା, ଏଇତ କାଗଜଟା ପକେଟ୍‌ରେ ରହିଛି । . . . କାଲି ନିଜ ହାତରେ ଏଇ ପକେଟ୍‌ରେ ରଖିଥିଲି, ଯିବ କୁଆଡ଼େ ? ଅଥଚ୍ ଅଳ୍ପ ପୂର୍ବେ ସବୁ ପକେଟ୍ ଖୋଜି ଦେଖିଥିଲି . . . ମିଳି ନଥିଲା ।

ସୁବେଦାର୍ ଆଡ଼କୁ ଚାହିଁଲି । ସେ ମଧ୍ୟ ମୋ ଆଡ଼େ ଅନାଇଁ ଥିଲା । ମୋ ଆଖି ପଡ଼ିବା ମାତ୍ରେ ସେ ମୁହଁ ବୁଲାଇ ନେଲା । ମୋ ଆଡ଼େ ସେ ଆଉ ଅନାଇଁ ପାରୁ ନାହିଁ ।

ମନେ ହେଉଛି, ଦୂରରେ ଜଣେ ଦୁଇଜଣ କରି ଏକାଠି ହେଉଛନ୍ତି । ଆର୍ମଡ୍ ପୋଲିସ ଭୟରେ ବୋଧହୁଏ ବେଶୀ ଲୋକ ଆସି ନାହାନ୍ତି । ନ ହେଲେ ଏଇ ଛକ ଏତେବେଳକୁ ଲୋକରେ ଲୋକାରଣ୍ୟ ହୋଇଯିବା ଉଚିତ ଥିଲା । ଗୋଟାଏ କ୍ୱାର୍ଟର୍‌ର ଦରଜା ଫିଟିଲା । ସମସ୍ତେ ବୋଧହୁଏ ଲାସ୍ ଦେଖିବା ପାଇଁ ଉତ୍ସୁକ । . . . ଦାଦା ବେକରେ ଗୋଟାଏ କଳା ତିଳ ଚିହ୍ନ ଅଛି ? . . . ଶୀତଋତୁରେ ଗେରୁଆଧାରୀ ପଞ୍ଜାବୀ ଜ୍ୟୋତିଷୀ ମାନେ ଦଳ ଦଳ ହୋଇ ପୂର୍ଣ୍ଣିଆ ଆସନ୍ତି । ସେଥର ସେମାନଙ୍କ ଭିତରୁ ଜଣେ ଆମ ଆଶ୍ରମକୁ ଆସିଥିଲା । .. ବିକୃତ ଉଚ୍ଚାରଣରେ ଇଷତ୍ ହସି ସେ କହିଥିଲା, ''ମୁଁ ଫର୍‌ଚ୍ୟୁନ୍ ଟୋଲର୍'' ! ଦାଦାର ଆପତ୍ତି ସତ୍ତ୍ୱେ ସେ ତାର ହାତ ଦେଖି କହିଥିଲା, ତାର ପରମାୟୁ ଅଶୀବର୍ଷ । ଭଣ୍ଡ, ମିଥ୍ୟାବାଦୀର ଦଳ ! . . . ଦାଦା ତା କଥା ଶୁଣି କହିଥିଲା, ''ଏଇଟା କଂଗ୍ରେସ ଅଫିସ୍ । ତମ ମେହେନତ୍ ପାଇଁ ଆମେ ପଇସା ଦେଇ ପାରିବୁ ନାହିଁ ।''

ଆଚ୍ଛା, ଦାଦା ଭୟରେ ଯଦି ବେହୋସ୍ ହୋଇ ପଡ଼େ, ତା' ହେଲେ ସେଇ ଅବସ୍ଥାରେ ତାକୁ ଫାଶୀରେ ଝୁଲାଇବେ ନାଁ କଣ ? ସେମିତି କଣ ହୁଏ ? . . .

ଫାଶୀ ଦଉଡ଼ି ନେଇ 'ମେଟ୍' ଓ ପହରାଦାର୍‌ମାନେ ଟଣାଭିଡ଼ା କରୁଛନ୍ତି । ସେଥରର ଜେଲ୍‌କଥା ମନେ ପଡୁଛି : . . . ଦଉଡ଼ିଟାକୁ ସେମାନେ ଖଣ୍ଡ ଖଣ୍ଡ କରି କାଟିବା ପାଇଁ ଚେଷ୍ଟା କରୁଛନ୍ତି । ଚର୍ବିବୋଳା ଚିକ୍କଣ ଦଉଡ଼ି ଉପରେ ଦନ୍ତୁଡ଼ା ଲୁହା ପାତଟା ଖସି ଯାଉଛି । . . . ଭାଗ୍ୟବାନମାନେ ଖଣ୍ଡେ ଖଣ୍ଡେ ଟୁକ୍‌ରା ପାଇଲେ । . . . ସେଥିରେ କୁଆଡ଼େ ଆଶୁ ଫଳପ୍ରଦ ବଶୀକରଣ କବଚ୍ ତିଆରି ହୁଏ ।

ଏଥର ଭିତରର ଫାଟକ ଖୋଲିଲା । ସୁପରିଟେଣ୍ଡେଣ୍ଟ, ମାଜିଷ୍ଟ୍ରେଟ୍, ସିଭିଲ୍ ସର୍ଜନ୍, ଜେଲର୍ ଅଘୋରବାବୁ, ଆସିଷ୍ଟାଣ୍ଟଜେଲର୍, – ୱାର୍ଡ଼ର୍, ୱାର୍ଡ଼ର, ୱାର୍ଡ଼ର୍, କୁକୁର, ୱାର୍ଡ଼ର, ୱାର୍ଡ଼ର୍ –

ସମସ୍ତେ ଜୋର୍ କରି ମୁହଁରେ ହସ ଫୁଟାଇବା ପାଇଁ ସଚେଷ୍ଟ। ଦେଖାଇବା ପାଇଁ ଚାହାନ୍ତି ଯେ, ସାମାନ୍ୟ ଘଟଣାରେ ସେମାନେ ତିଳେ ମାତ୍ର ବିଚଳିତ ନୁହନ୍ତି। ଏଥିରେ ଚା' ପିଇବା ପାଇଁ, ସେମାନଙ୍କର ଅଳ୍ପ ଡେ଼ରି ହୋଇଗଲା ମାତ୍ର! ସିଭିଲ୍ ସର୍ଜନ୍ ଆଉ ମାଜିଷ୍ଟ୍ରେଟ୍‌ଙ୍କୁ ନିଜ ବଙ୍ଗଳାରେ ଚା ପିଇବା ପାଇଁ, ସୁପରିଟେଣ୍ଡେଣ୍ଟ୍ ଅନୁରୋଧ କଲେ। ଗେଟ୍ ଖୋଲା ହେଲା। କୁକୁରଟା ଆଗେ ଆଗେ ବାଟ କଢ଼ାଇ ଚାଲିଲା। ମୋଟର ଦୁଇଟା ସେମାନଙ୍କ ପଛେ ପଛେ, ବଙ୍ଗଳା ପାଖରେ ଆସି ଠିଆ ହେଲା। ଲରି ଡ୍ରାଇଭର୍, ପ୍ରସ୍ତୁତ ହୋଇ, ଷ୍ଟିଅରିଙ୍ଗ୍ ହୁଇଲ୍ ଧରି ବସିଲା। ଓ୍ୱାର୍ଡ଼ର୍ ଭିତର ଦରଜାକୁ ବର୍ତ୍ତମାନ ସୁଦ୍ଧା ଅଳ୍ପ ଫାଙ୍କ କରି ରଖିଛି... ଏଇ ସେମାନେ ବୋଧହୁଏ ଆସିଗଲେ—ଏଇ ମୁହୂର୍ତ୍ତରେ...

''ଆରେ ନୀଳୁବାବୁ ଯେ, ନମସ୍କାର! ଏତେ ସକାଳୁ ଏଆଡ଼େ କୁଆଡ଼େ? ଇଣ୍ଟରଭ୍ୟୁର ତଦ୍‌ବିର୍ ପାଇଁ ବୋଧହୁଏ? ସି.ଆଇ.ଡ଼ି.ତ ଆଠଟା ଆଗରୁ ଆସେ ନାହିଁ। ଆସନ୍ତୁ ମୋ ଘରକୁ। ଚା' ମୁନ୍ଦାଏ ପିଇବେ, ନାଁ କଣ କହୁଚନ୍ତି?''

ମୋତେ ଉତ୍ତର ଦେବା ପାଇଁ ଅଘୋରବାବୁ ସୁଯୋଗ ଦେଲେ ନାହିଁ। ଅତି କଷ୍ଟରେ କୌଣସି ପ୍ରକାରେ କହିଲି, ''ନା, ଇଣ୍ଟ୍ରଭ୍ୟୁ ପାଇଁ ଆସି ନାହିଁ।—ଆସିଥିଲି—ଆଜି ଦାଦାର ଇଯେ—'' ଆଉ କଥା ବାହାରିଲା ନାହିଁ। ଓଠ ଥରୁଛି, କିନ୍ତୁ କଥା ବାହାରୁ ନାହିଁ, କିଏ ଯେପରି ବଜ୍ରମୁଷ୍ଟିରେ ଗଳା ଚାପି ଧରିଛି। ମୋ ଆଖିକୁ ବି ଲୁହ ଆସିଗଲା। ଅନ୍ୟ ଆଡ଼େ ଚାହିଁ କୌଣସି ପ୍ରକାରେ ମାଜିଷ୍ଟ୍ରେଟ୍ ସାହେବଙ୍କ ଚିଠିଖଣ୍ଡ ତାଙ୍କୁ ଦେଲି। ଅଘୋରବାବୁ ଚିଠି ପଢୁଚନ୍ତି। ଆଖିରୁ ଲୁହ ପୋଛି ପକାଇଲି।

''ଆରେ, ସେଇଆ କହନ୍ତୁ। ଆପଣ କଣ ଶୁଣି ନାହାନ୍ତି?'' —ସେ ମୋତେ କୁଣ୍ଢାଇ ପକାଇଲେ।

''ଗଭର୍ଣ୍ଣମେଣ୍ଟ୍‌ରୁ ଚିଠି ଆସିଛି ଯେ, ଫାଶୀ ହୁକୁମ୍ ବର୍ତ୍ତମାନ ମୁଲତବୀ ରହିବ।'' ଆଁ, କଣ କହୁଛନ୍ତି? ଅଘୋରବାବୁ ପାଗଳ ହୋଇ ଯାଇଛନ୍ତି ନାଁ କଣ? ତାଙ୍କର ଦୁଇ ହାତ ଚାପି ଧରିଲି। ସେ କହି ଚାଲିଛନ୍ତି...

''ମିଲିଟାରୀ ଇଲାକା ଛଡ଼ା, ଭାରତବର୍ଷର ଅନ୍ୟତ୍ର, ଅଗଷ୍ଟ ଆନ୍ଦୋଳନ ବେଳେ ଭଙ୍ଗାରୁଜା କାମ ପାଇଁ ଯେଉଁମାନଙ୍କ ଉପରେ ଫାଶୀ ହୁକୁମ୍ ହୋଇଛି, ସେମାନଙ୍କ ଫାଶୀ ଅନିଶ୍ଚିତ କାଳ ପାଇଁ ସ୍ଥଗିତ ହୋଇଯାଇଛି। ଯେଉଁମାନଙ୍କ ଉପରେ ମର୍ଡ଼ର୍ ଚାର୍ଜ ଥିଲା, ସେମାନେ ଅବଶ୍ୟ ଏଇ ଅର୍ଡ଼ର୍ ଭିତରେ ପଡ଼ିବେ ନାହିଁ। ...ଆଜି ଫାଶୀ ଥିଲା ଜଣେ ସାଧାରଣ କୟଦୀର। ସେ ରହୁଥିଲା ତିନି ନମ୍ବର ସେଲ୍‌ରେ। ପଅରଦିନ ଅର୍ଡ଼ର୍ ଆସିଛି। ଆପଣଙ୍କ ଦାଦାଙ୍କୁ ଏକ ନମ୍ବର ସେଲ୍‌ରୁ ଅନ୍ୟତ୍ର ଆଉ ନିଆ ଯାଇ ନାହିଁ। ସାହେବ କହିଲା, ମିଛରେ ହାଙ୍ଗମା ବଢ଼ାଇବାରେ ଦରକାର କଣ? ସେଇଥିପାଇଁ misunderstanding ହେଉଛି। ପୁଣି, ଫାଶୀ ତାରିଖ ତ ଆଗରୁ ଜେଲ୍ କୟଦୀ ମାନଙ୍କୁ ଜଣାଇବାର ନିୟମ ନାହିଁ। ଅନ୍ଦାଜରେ ଜେଲ୍‌ର ଲୋକେ ଯେତିକି ଅନୁମାନ କରି ପାରନ୍ତି। ସେଥି ପାଇଁ ଆପଣମାନେ ଭଲ୍ ଖବର ପାଇଛନ୍ତି।''...

କଥା କହିବାର ଶକ୍ତି ମୋର ଲୁପ୍ତ ହୋଇଛି। ସବୁ ଶାନ୍ତ। ଧମନୀରେ ରକ୍ତପ୍ରବାହ ସୁଦ୍ଧା ଯେପରି ବନ୍ଦ ହୋଇଯାଇଛି। –ଗଛର ପତ୍ରଟି ସୁଦ୍ଧା ହଲୁ ନାହିଁ। ଗ୍ରହଗୁଡ଼ିକର ଗତି ଭୁଲି ସ୍ଥିର ହୋଇ ପଡ଼ିଛନ୍ତି—ବୀରଭୋଗ୍ୟା ବସୁନ୍ଧରାର ଅପର୍ଣ୍ଣା ମୂର୍ତ୍ତି! –ନିଶ୍ୱାସ ନେବାକୁ ସୁଦ୍ଧା ଭୟ ହୁଏ, ଉମାଙ୍କର ତପସ୍ୟା କାଳେ ଭାଙ୍ଗିଯିବ!

...ଧମନୀ ପୁଣି ସ୍ପନ୍ଦିତ ହୋଇଉଠିଲା। ଗଛମାନଙ୍କର ଶାଖାରେ ଶାଖାରେ ପକ୍ଷୀମାନଙ୍କର କାକଳି–ପତ୍ରେ ପତ୍ରେ ପ୍ରଭାତ ସମୀରଣର କମ୍ପନ–ଲାସ୍ୟମୟୀ ପୃଥିବୀ ପୁଣି ନାନା ଛନ୍ଦରେ ଲୀଳାୟିତା ହୋଇ ଉଠିଛି। ...ପଥର ଜେଲ୍‌ଗେଟ୍‌ର ଉପର ମହଲା ଚୂଡ଼ାରେ ଉଷାର ରକ୍ତିମ ଆଲୋକ ହଠାତ୍ ଝଲସି ଉଠିଲା।

Lasertypeset at Golden Graphics, Cuttack and Printed at J.J. Offset Printers, Delhi

ଜଣେ ସକ୍ରିୟ ରାଜନୀତିକ କର୍ମୀରୁ ଭାରତୀୟ ସାହିତ୍ୟାକାଶରେ ଏକ ଉଜ୍ଜ୍ୱଳ ତାରକାର ସ୍ଥାନ ଗ୍ରହଣ କରିବା ପଛରେ ଯେଉଁ ବ୍ୟାପକ ଜୀବନାନୁଭୂତି ଓ ସାଧନା ଦରକାର ତାହାର ନିଚ୍ଛକ ପ୍ରତିଫଳନ ହୋଇଛି 'ଜାଗରୀ' । 1942ର ଭାରତଛାଡ଼ ଆନ୍ଦୋଳନର ପଟ୍ଟଭୂମିରେ ଲିଖିତ ଭାରତୀୟ ଉପନ୍ୟାସମାନଙ୍କ ମଧ୍ୟରେ 'ଜାଗରୀ'ର ସ୍ଥାନ ସ୍ୱତନ୍ତ୍ର । ଲେଖକ ସତୀନାଥ ଭାଦୁଡ଼ୀଙ୍କର (1906-65) ଏହା ପ୍ରଥମ ଉପନ୍ୟାସ ହେଲେ ହେଁ ଭାରତୀୟ ସାହିତ୍ୟକୁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ ।

'ଜାଗରୀ' ଉପନ୍ୟାସରେ ବଙ୍ଗଳା ଉପନ୍ୟାସ ସାହିତ୍ୟର ଉତ୍କର୍ଷ ଓ ଭାରତୀୟ ଜନଜୀବନ ଯଥାର୍ଥଭାବେ ଫୁଟି ଉଠିଛି ।



**ଟ. 55.00**

**ISBN 81-237-2746-1**

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ